

# ଲଘୁ ସଂହିତା

ଚନ୍ଦ୍ରଶେଖର ରଥ

ଗ୍ରନ୍ଥ ମନ୍ଦିର

ଲଘୁ ସଂହିତା

ଲେଖକ : ଚନ୍ଦ୍ରଶେଖର ରଥ

ପ୍ରକାଶକ : **ଅଭିରାମ ମହାପାତ୍ର**
**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ମୁଦ୍ରକ : **ତପନ କୁମାର ମହାପାତ୍ର**
**ଅପ୍‌ଟିମା ଅଫସେଟ୍ ପ୍ରିଣ୍ଟସ୍**,
ସୂତାହାଟ, କଟକ-୭୫୩୦୦୧

ଡି.ଟି.ପି. : **ୟୁନିକର୍ଣ୍ଣ ଗ୍ରାଫିକ୍ସ**, କଟକ-୧

ପ୍ରଥମ ସଂସ୍କରଣ : ବିଜୟାଦଶମୀ, ୨୦୧୨

ମୂଲ୍ୟ : ଟ.୨୭୫.୦୦
ସାଦାବନ୍ଧେଇ : ଟ.୨୫୦.୦୦

# ସୂଚୀପତ୍ର

# ଏକବିଂଶ ଶତାବ୍ଦୀ-ଏକ ଅଦ୍ଭୁତ କାଳ

ନୂଆ ଶତାବ୍ଦୀଟାଏ ଆମର ଏତେ ପାଖରେ ଆସି ଠିଆ ହୋଇଗଲାଣି ଯେ ତା'ର ନିଃଶ୍ୱାସ ଆମ ମୁହଁରେ ବାଜୁଛି। ମନେ ହେଉଛି ଏଇଠି ଥାଇ ହାତ ବଢ଼େଇଦେଲେ ତାକୁ ଛୁଇଁଦେଇ ହେବ। କିନ୍ତୁ ଗୋଟିଏ ମାତ୍ର ଅନାଗତ ମୁହୂର୍ତ୍ତର ବ୍ୟବଧାନକୁ ଲଂଘି ପାରୁନଥିବା ଆମର ଅକ୍ଷମତାକୁ ନେଇ କେମିତି ଏ ବିଶାଳ କାଳଖଣ୍ଡକୁ ଛୁଇଁ ହେବ କିମ୍ବା ତା'ର ବାସ୍ତବତାକୁ ଅନୁଭବ କରିହେବ? ରହସ୍ୟମୟ ଏକବିଂଶ ଶତାବ୍ଦୀ ଆମର ସମସ୍ତ ଗଣିତ ହିସାବକୁ ଭୁଲ୍ ପ୍ରମାଣିତ କରି ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ବିସ୍ମୟ ପରେ ବିସ୍ମୟ ଦେଇ ଆମକୁ ହୁଏତ ଚକିତ କରିଦେଇପାରେ। କାରଣ ଆମ ବୁଦ୍ଧିକୁ ଯାହା ଦିଶିଲା ତାକୁ ହିସାବ କରି ଆମେ ଅନାଗତକୁ ଆକଳନ କରୁ। ବୁଝିପାରୁନା ଯେ ପ୍ରକଟ ଅପେକ୍ଷା ଅପ୍ରକଟର ମାତ୍ରା ସବୁକାଳେ ସର୍ବତ୍ର ଅଧିକ ଏବଂ ପ୍ରକଟର ବ୍ୟାପ୍ତିକୁ ଧାରଣ କରିବାକୁ ଆମେ ଅକ୍ଷମ। ଏଣୁ ଏକବିଂଶ ଶତାବ୍ଦୀ ବିଷୟରେ ଯାହା ସବୁ ଆନୁମାନିକ ଚିତ୍ର ଆମକୁ ଦିଆଯାଉଛି ସେଥିରେ ଭେଲିକି ଲଗେଇଲା ଭଳି ଯୁକ୍ତି ଅନେକ ଥାଇପାରେ କିନ୍ତୁ ସେଥିରେ ନିର୍ଭରଯୋଗ୍ୟତା କେତେ, କେହି କହି ପାରିବେ ନାହିଁ।

ଉପସ୍ଥିତ କାଳରେ ଯଦି ଯାବତୀୟ ଘଟନା ଓ ସୂଚନା ସମୂହକୁ ଆଧାର କରି ଆଗାମୀ ଦଶ, କୋଡ଼ିଏ ବା ପଚାଶ ବର୍ଷକୁ ଆମେ ଓହଟି ଦେଖିବାକୁ ଚାହୁଁ, ବିଶେଷ କିଛି ଉତ୍ସାହଜନକ ଦୃଶ୍ୟ ଦିଶିବ ନାହିଁ। କାରଣ ଏଇ ଯେଉଁମାନେ ତୁଣ୍ଡରେ ଗଣତନ୍ତ୍ରର ଗୁଣଗାନ କରନ୍ତି, ମୁଣ୍ଡରେ ବୋହିଚାଲିଥାନ୍ତି ନିଜର ଅସରନ୍ତି ତୃଷ୍ଣାର ବୋଝ, ସବୁବେଳେ ରାଣଖାଇ ଖଚ କହିବାକୁ ପଣ କରିଥାନ୍ତି, ଯାହାଙ୍କ ପାଇଁ ସ୍ୱାର୍ଥ କହିଲେ ସ୍ୱାର୍ଥ ହିଁ ବୁଝାଏ, ଦେଶ ବା ଦେଶବାସୀଙ୍କ ସ୍ୱାର୍ଥ କେବଳ କଥା ପାଇଁ ଆଳୁଆଳ, କର୍ମ ପାଇଁ ଆଳ ହୋଇଯାଏ, ସେଇମାନେ ତ' ରହିବେ। ତାଙ୍କର ଗଣତନ୍ତ୍ରରେ ସବୁ ଦି'କଡ଼ାରେ ବିକ୍ରି ହେବାପାଇଁ ପଣ୍ୟ ରୂପେ ବଜାରରେ ଥୁଆ ହୋଇଗଲେ ସେ ଗଣତନ୍ତ୍ର ନ ହୋଇ ଗଣିକା ତନ୍ତ୍ର ହୋଇଯାଏ। ମାଲିକ ଗରାକ ଭଳି ଯେ ମନ ସିଏ ପଇସା ଦେଇ ଯାହାକୁ ମନ ତାକୁ କିଣି ନେଇ ପାରିବ,

ଉପଯୋଗ କରିପାରିବ। ଦୋଗୁଅ ଚିପୁଡ଼ା ହେଲା ପରେ ଆମ୍ବଟାକୁଆ ଆଉ ଚୋପାକୁ ଖତଗଦାରେ ଫିଙ୍ଗିଦେଲା ପରି ବ୍ୟକ୍ତି ବା ଅନୁଷ୍ଠାନଟାକୁ ପ୍ରତ୍ୟାଖ୍ୟାନ କରି ଦେଇ ହେବ । ମୂଲ୍ୟ କେବଳ ଭାଉ, ଗୋଟାଏ ଦାମ୍ ଗୋଟାଏ ହାକ କେବଳ ଉପଯୋଗିତା ଛଡ଼ା ଆଉ କିଛି ନୁହେଁ । ସବୁ ଅନୁଷ୍ଠାନ ପଣ୍ୟ, ସବୁ ବ୍ୟକ୍ତି ପଣ୍ୟ, ସବୁ ଯୋଗ୍ୟତା, କ୍ଷମତା, ପଦୋନ୍ନତି, ଘୁଷୁରିଠାରୁ ବ୍ୟୋମଯାନ ଯାଏ ପଣ୍ୟ । ଏଣୁ ଯେତେ ଯେଉଁଠି ଅଛନ୍ତି ଦିଲ୍ଲୀ ଦରବାରଠାରୁ ଆରମ୍ଭ କରି ଗ୍ରାମପଞ୍ଚାୟତ ପର୍ଯ୍ୟନ୍ତ, ସମସ୍ତ ଶୁଳ୍କଭୋଗୀ ଚତୁର, ସିଆଣା, ଠାପୁଆ, ଅମାନିଆ, ବେତନକୁ ବକ୍‌ସିସ୍, ବକସିସ୍‌କୁ ବେତନ ବିଚାର କରୁଥିବା ଅସଂଖ୍ୟ ରାଜସେବକ ଏବେ ଗୋଡ଼ ଟେକି ରହିଛନ୍ତି ଏଗୁଣ୍ଡିବନ୍ଧ ଡେଇଁ ଏକବିଂଶ ଶତାବ୍ଦୀର ନୂଆ ବଖରାରେ ଆଗ ପଶିଯିବେ । ଖୁଣ୍ଟି ମାରିବେ, ଜାଲି ବିଛେଇବେ । ନୂଆ କୌଶଳମାନ ଖଞ୍ଜିବେ । ବିଶ୍ୱାସର ପତିଆରା ସଜେଇବେ, ବୁଢ଼ିଆଣୀ ଜାଲରେ ଶିଶିରବିନ୍ଦୁ ପରି । ମଶା ମାଛି ସେଥିରେ ପଡ଼ିବେ ଲାଖିବେ, ଶୋଷି ହୋଇ ମରିବେ। ବ୍ୟବସ୍ଥା ଏହିପରି । ଏଣୁ ଯାହା ଦିଶୁଛି ଏଠି ସେଠି ତାହ ସର୍ବାଙ୍ଗରେ ବ୍ୟାପିଯିବ। ଆଗାମୀ ଶତାବ୍ଦୀରେ ମଣିଷର ଅମଣିଷପଣିଆ ପାଞ୍ଚ ପା ବଢ଼ିଯିବ ହୁଏତ। ଯେଉଁଠି ଆଣ୍ଠୁଏ କାଦୁଅ ଥିଲା ସେଇଠି ଅଣ୍ଟାଏ, ଆଉ ଅଣ୍ଟାଏ ଜାଗାରେ ବୁକେ କାଦୁଅ ହୋଇଯିବ । ତେଣିକି ସେଥିରୁ ଉଠିବା ପ୍ରଶ୍ନ ଆଉ କାହାକୁ ଘାରିବ ନାହିଁ ବରଂ ସେଇଠି ବୁଡ଼ିଯିବା ଅଧିକ ଯୁକ୍ତିସଙ୍ଗତ ଓ ହୁଏତ ଆକର୍ଷଣୀୟ ମନେହେବ। ଏଠି କାଦୁଅର ଅର୍ଥ କେବଳ ମ୍ୟୁନିସିପାଲିଟି ପଙ୍କ ନର୍ଦ୍ଦମାକୁ ବୁଝାଉନାହିଁ, ତାଠୁ ଆହୁରି ବିଷାକ୍ତ, ଆହୁରି ଆଦିମ କଦର୍ମ ମଣିଷ ଭିତରେ ଅନ୍ଦିସନ୍ଧିରେ ଭର୍ତ୍ତି ହୋଇରହିଛି । ସେ ସବୁ ଉଛୁଳି ଆସିବ। ମଣିଷ ନଗ୍ନପଶୁଟିଏ ବା ତା'ଠାରୁ ଆହୁରି ଊଣା ଜନ୍ତୁଟିଏ ହୋଇଯିବ ତା' ଆଚରଣରେ, ଚିନ୍ତାରେ, ବ୍ୟବହାରରେ, ସମ୍ପର୍କରେ। ଏ ସ୍ତରରେ ପହଞ୍ଚିଗଲେ ତେଣିକି ପରସ୍ପରକୁ ବାଟ ଓଗାଳିବା, ଛକାଛକି ହେବା, ହଣାହଣି ହେବା, ମାରିବା ଓ ମରିବା ସ୍ୱାଭାବିକ ତଥା ଅନିବାର୍ଯ୍ୟ ହୋଇଯିବ। ସମସ୍ତ ବିଜ୍ଞାନ କୌଶଳକୁ ପ୍ରୟୋଗ କରି ଅତ୍ୟନ୍ତ ଦକ୍ଷତାର ସହିତ ମାନବଜାତି ନିଜକୁ ନିଜେ ଧ୍ୱଂସ କରିବାରେ ସମର୍ଥ ହେବ ଏବଂ ଆହୁରି ଅଧିକ ସାମର୍ଥ୍ୟ ପ୍ରକାଶ କରିବାକୁ ଚାହିଁଲେ ପୃଥିବୀକୁ ପ୍ରାଣୀଶୂନ୍ୟ କରିଦେବ। ଶେଷରେ ହୁଏତ ଏ ପୃଥିବୀ ପିଣ୍ଡଟିକୁ ଆଣବିକ ବିସ୍ଫୋରଣରେ ସୌରମଣ୍ଡଳରେ ବିକୀର୍ଣ୍ଣ କରିଦେବ। ବାଃ! ମଣିଷର ପାରିଲାପଣିଆର ଯାଠାରୁ ବଳି ଆଉ କ'ଣ ଚୂଡ଼ାନ୍ତ ନିଦର୍ଶନ ଥାଇପାରେ!

ଅତ୍ୟନ୍ତ ଅପ୍ରିୟ ହେଲେ ସୁଦ୍ଧା ଏଇଟା ଯେ ଅନ୍ଧାର ଘର ଭୂତ ପରି ଏକ ଦୂରସ୍ଥ ସମ୍ଭାବନା ଏକଥା ଅସ୍ୱୀକାର କରି ହେବନାହିଁ । କିନ୍ତୁ ଯେଉଁ ସବୁ ଉପାଦାନକୁ ନେଇ ମଣିଷର ଏପରି ଏକ ଭବିଷ୍ୟତ କଥା କୁହାଯାଉଛି, ସେଇଟା କ'ଣ ତା'ର ଏକମାତ୍ର ପରିଚୟ ? ତା' ଭିତରେ କ'ଣ କେବଳ ଜନ୍ତୁଟିଏ ଅଛି; କ୍ଳେଦ କର୍ଦ୍ଦମରେ ଘାଣ୍ଟି ହେଉଛି, ହିଂସା ହତ୍ୟାରେ ନିଜକୁ ପ୍ରକାଶ କରୁଛି, ଆଉ କିଛି ନାହିଁ ? ସେ ଆଣ୍ଠୁଏ କାଦୁଅରେ ଠିଆ ହୋଇଛି ସତ, ସେଇଟା ତା'ର ଜାନ୍ତବ ପରଂପରା । ସେଇଠି ଅଣ୍ଟାଯାଏ ବୁଡ଼ିଯିବାର ସମ୍ଭାବନା ରହିଛି ନିଶ୍ଚୟ । କିନ୍ତୁ ସେ ଯେ ସମ୍ପୂର୍ଣ୍ଣ ପଶୁପଣରୁ ଏଯାଏଁ ମୁକୁଳି ଆସିଛି, ସେ ଏକ ଉଦ୍‌ବର୍ତ୍ତିତ ପ୍ରାଣୀ । ସେ ଉପରକୁ ଉଠି ଆସୁଛି । ଏଣୁ ଏ କାଦୁଅରୁ ସେ ମୁକ୍ତ ହୋଇଯିବା ହିଁ ତା'ର ପ୍ରଗତିର କ୍ରମବିକାଶ, ତଳକୁ ବୁଡ଼ିଯିବା ନୁହେଁ । ତା' ଭିତରେ ଅନ୍ଧାର ଅଛି ସତ କିନ୍ତୁ ଆଲୋକ ପ୍ରତି ଉନ୍ମୁଖତା ହିଁ ତା'ର ମଣିଷପଣିଆ । କାଦୁଅରୁ ପଦ୍ମନାଡ଼ ସବୁ ଆସ୍ତରଣ ଭେଦ କରି ପାଖୁଡ଼ା ମେଲିଯିବା ହିଁ ସୂର୍ଯ୍ୟାଭିଳାଷ ଓ ତାହାହିଁ ତା'ର ପରିଚୟ । ଏଣୁ ଯେଉଁ କେତେଜଣ ବିଲୟ ଓ ବିନାଶର ପ୍ରବକ୍ତା ସେମାନଙ୍କୁ ଏପରି ଏକ ଭୟାବହ ଭବିତବ୍ୟରେ ବିଳାସ କରିବାକୁ ଛାଡ଼ିଦିଆଯାଉ । ମଣିଷ ଜାତି ଧ୍ୱଂସ ପାଇବ ନାହିଁ । କାରଣ ଏ ଯାଏଁ ବହୁ ରକ୍ତପାତ ପରେ ମଧ ସେ ଧ୍ୱଂସ ପାଇନାହିଁ । ମୃତ୍ୟୁର କଟାହରେ ପ୍ରାଣ ପୁନର୍ଜୀବିତ ହେଉଥାଏ, ତା'ର ପରାଜୟ ନାହିଁ । ଏଣୁ ସବୁ ପ୍ରଲୋଭନ ଓ ପ୍ରବଣତା ସତ୍ତ୍ୱେ ମଣିଷ ନିଜକୁ ନିଜେ ସଂହାର କରିବାର ନିର୍ବୋଧତା କରିବ ନାହିଁ। ଆଉ ଯୁଦ୍ଧ କରିବା ନାହିଁ, ଯୁଦ୍ଧ କଲେ ବଞ୍ଚି ରହିପାରିବ ନାହିଁ; ନିଶ୍ଚିହ୍ନ ହୋଇଯିବ। ଏ ନିଷ୍ପତ୍ତି ନିଆସିରିଛି କାରଣ ଏହାର ବିକଳ୍ପ ନାହିଁ । ଏହି ନିଷ୍ପତ୍ତି ଉପରେ ହିଁ ମଣିଷ ପାଇଁ ଏକବିଂଶ ଶତାବ୍ଦୀର ମୂଲ୍ୟ ଓ ସମ୍ଭାବନା ନିର୍ଭର କରେ ।

ବିଜ୍ଞାନର ପ୍ରୟୋଗ ବିଦ୍ୟା ଯେତେ ସବୁ ଚମତ୍କାର ପ୍ରଦର୍ଶନ କରିଛି, ତା' ଭିତରେ ଏବେ ସର୍ବାଗ୍ରେ ସ୍ଥାନ ପାଇଛି ଏପରି ଏକ କୌଶଳ ଯାଦ୍ୱାରା ଦୂରତା ବୋଲି ଆଉ କିଛି ରହୁନାହିଁ । ଇଂରାଜୀରେ ଏହାକୁ Death of Distance ବୋଲି କୁହାଯାଉଛି । ପୃଥିବୀର କୌଣସି ଏକ ପ୍ରାନ୍ତରୁ ଅନ୍ୟ ଯେକୌଣସି ପ୍ରାନ୍ତ ସହିତ ଯୋଗାଯୋଗ ହୋଇପାରୁଛି ତତ୍‌କ୍ଷଣାତ୍ । ଦିନକୁ ଦିନ ଏ କ୍ଷେତ୍ରରେ ନୂତନ କୌଶଳର ବିସ୍ଫୋରଣ ଘଟୁଛି । ଆଜି କଥା କାଲିକୁ ପୁରୁଣା ହୋଉଯାଉଛି ଏବଂ ନିକଟତର ହୋଇଯାଉଛନ୍ତି ମହାଦେଶ ସକଳ । ଗୋଲାର୍ଦ୍ଧର ସୀମାରେଖା ଲଂଘିଯିବା ଏକ ସାଧାରଣ ବ୍ୟାପାର ହୋଇଗଲାଣି । ଏହାର ପରିଣାମ ମଧ କ୍ରମଶଃ ସ୍ପଷ୍ଟ ହୋଇଗଲାଣି । ଅଷ୍ଟ୍ରେଲିଆ

ସହିତ ଆଲାସ୍କାର ଓ ଫିନ୍‌ଲ୍ୟାଣ୍ଡ ସହିତ ମାଡ଼ାଗାସ୍କାର୍‌ର ସମ୍ପର୍କ ସ୍ଥାପିତ ହେବାଦ୍ୱାରା ଐତିହାସିକ ଓ ଭୌଗୋଳିକ ବ୍ୟବଧାନ ସତ୍ତ୍ୱେ ସେଠାକାର ଅଧିବାସୀମାନେ ପରସ୍ପରକୁ ସ୍ୱୀକାର କରିବା ଆରମ୍ଭ କଲେଣି । କ୍ରମଶଃ ଏକ ନୂଆ ମାନସିକତାର ଉଦୟ ହେଲାଣି ଯଦ୍ୱାରା ସମସ୍ତ ବିଭାଜକ ରେଖାକୁ ଅତିକ୍ରମ କରି ରହିଛି ମାନବ ଗୋଷ୍ଠୀ ଏକ ବିପୁଳ ପ୍ରବାହରେ ପରସ୍ପରକୁ ସହାୟକ ଓ ପରିପୂରକ ରୂପେ ଗ୍ରହଣ କଲେଣି । ଯୁକ୍ତରାଷ୍ଟ୍ର ଆମେରିକାର ଅର୍ଥନୀତି ନିର୍ଧାରଣ କଲାବେଳେ ପୃଥିବୀର ନ୍ୟୂନତମ ଓ ଦରିଦ୍ରତମ ପ୍ରଦେଶକୁ ମଧ୍ୟ ବିଚାରକୁ ନେବା ଅନିବାର୍ଯ୍ୟ ହୋଇଗଲାଣି । କିନ୍ତୁ ପୁରୁଣା ଅଭ୍ୟାସରେ ନିଜ ବ୍ୟତୀତ ଆଉ କାହାକୁ ଗୁରୁତ୍ୱ ଦେଉନଥିବା ଲୋକେ ଏବେ ମଧ୍ୟ ଏ ନୂତନ ଖୋଲାପଣକୁ ବିରୋଧ କରୁଛନ୍ତି । କିନ୍ତୁ ଯାହା ଘଟୁଛି, ତାହା ସାରା ପୃଥିବୀକୁ ପାପୁଲି ଉପରେ ଧରି ରଖିଥିବା ଏକ ବିଶାଳ ଜାଗତିକ ମହାନିୟମରେ ହିଁ ଘଟୁଛି । ତାକୁ ନିବାରଣ କରିବାକୁ କେହି ସମର୍ଥ ନୁହନ୍ତି ।

ଏ ନୂଆ ମନସ୍ତାତ୍ତ୍ୱିକ ପରିବର୍ତ୍ତନ ସହିତ କେବଳ ଅର୍ଥନୀତି ନୁହେଁ, ଆନ୍ତର୍ଜାତିକ କୂଟନୀତି, ବାଣିଜ୍ୟ, ବ୍ୟବସାୟ କ୍ଷେତ୍ରରେ ମଧ୍ୟ ମଣିଷ ଅପେକ୍ଷା କମ୍ପ୍ୟୁଟର ନିଷ୍ପତ୍ତି ହିଁ ଅପରିହାର୍ଯ୍ୟ ହୋଇଗଲାଣି । ସ୍ୱତନ୍ତ୍ର ରାଷ୍ଟ୍ରମାନଙ୍କର ସଂଗୋଷ୍ଠୀ ଏକ ନବଯୁଗର ରାଜନୈତିକ ବିନ୍ୟାସର ସୂଚନା ଦେଉଛି । ସମରମୁକ୍ତ ପୃଥିବୀରେ କୌଣସି ଏକ ଶକ୍ତିଶାଳୀ ରାଷ୍ଟ୍ର ସମସ୍ତଙ୍କ ଉପରେ ପ୍ରଭୁତ୍ୱ ଜାହିର କରିପାରିବେ ନାହିଁ । ହାରିବା ଜିଣିବା ଉପରେ ଯେପରି ଭୂମି ବଣ୍ଟନ ହେଉଥିଲା ତାହା ଆଉ ସମ୍ଭବ ନୁହେଁ । ତାହା ଏବେ ଏକ ଅତିକ୍ରାନ୍ତ ଐତିହାସିକ ପୃଷ୍ଠା ରୂପେ ପଛରେ ପଡ଼ିରହିବ । ଛୋଟବଡ଼ ସବୁ ରାଷ୍ଟ୍ର ଏବଂ ସେହି ପରିମାଣରେ କୋଟି କୋଟି ରାଷ୍ଟ୍ରବାସୀ କ୍ରମଶଃ ଛୋଟ ହୋଇ ଯାଉଥିବା ପୃଥିବୀରେ ପାଖେଇ ଆସିଛନ୍ତି । ସ୍ୱଚ୍ଛନ୍ଦ ସ୍ୱାର୍ଥରେ ବିଚରଣ କରୁଥିବା ମଣିଷଙ୍କ ପାଇଁ ଏହା ନିଶ୍ଚୟ ଅସ୍ୱସ୍ତିକର । କିନ୍ତୁ ଏହି ଏକତ୍ରତା ଯେ ଏଣିକି ଅପରିହାର୍ଯ୍ୟ ଏଇଟା ଅନେକ ଲୋକ ବୁଝିପାରିନାହାନ୍ତି ।

ଏକତ୍ରତାରେ ଅଲଗା ଅଲଗା ରହିବାର ମାନସିକତା ସହିତ କିଛି କିଛି ବଞ୍ଚିବାର ନିୟମ ପରଂପରା ମଧ୍ୟ ଖସିଯାଏ । ଏଣୁ ଚଳଣି, ବେଶପୋଷାକ, ଖାଇବା ରୁଚି, କଥା କହିବାର ଢ଼ଙ୍ଗ ଓ ଭାଷା ସବୁ କେମିତି ଫେଣ୍ଟାଫେଣ୍ଟି ହୋଇ ଇଏ ତା'ର ସିଏ ୟାର କିଛି କିଛି ଶିଖାଶିଖି ହୋଇଯାନ୍ତି, ଉଦାହରଣ ସ୍ୱରୂପ– କିଏ ସେ ମହାପୁରୁଷ ପ୍ୟାଣ୍ଟ ଓ ହାୱାଇ ସାର୍ଟ ଉଦ୍ଭାବନ କଲା କେଜାଣି, ଏବେ ସମଗ୍ର ପୃଥିବୀର ଶହେରେ ଅଶୀ ଭାଗ ଲୋକ, ଉଭୟ ନାରୀ ପୁରୁଷ, ସେଇ ପୋଷାକରେ ମଣ୍ଡିତ ହେବାର

ଦେଖାଯାଉଛି । ସେହିପରି ଖାଇବା ରୁଚିରେ ମଧ୍ୟ ଏକ ପ୍ରକାର ଗରିଷ୍ଠ ସାଧାରଣ ଗୁଣନିୟକ ପାଖରେ ମଣିଷ ହାବୁଡ଼ିଲାଣି । ଭାଷା ମଧ୍ୟ ମୋଟାମୋଟି ଗୋଟିଏ ମାଧ୍ୟମ ଆଡ଼କୁ ମୁହାଁଇଲାଣି । ଏ ସବୁ ଏକତ୍ରତାର ବାହ୍ୟ ପରିଣାମ ।

କିନ୍ତୁ ଭିତରେ ବାଡ଼ ଭାଙ୍ଗିବାର ଅନୁଭବ ସମ୍ପୂର୍ଣ୍ଣ ନୂଆ । ଜଣେ ଆରଜଣକ ଠାରୁ ଭିନ୍ନ ହେବା ତ' ଅନିବାର୍ଯ୍ୟ । ଭିନ୍ନ ବୋଲି ତ ଶତ୍ରୁତା, ମିତ୍ରତା, ସଂଘର୍ଷ ଓ ପ୍ରଣୟ ସମ୍ଭବ– କିନ୍ତୁ ଭିନ୍ନତା ଅସମଞ୍ଜତା ନୁହେଁ। ପୃଥକ୍ ହେବା ବିରୋଧ କରିବା ପାଇଁ ବାଧ୍ୟ କରେ ନାହିଁ । କଣ୍ଠସଂଲଗ୍ନ ପ୍ରେମୀଯୁଗଳ ପରସ୍ପରଠାରୁ ପୃଥକ୍ ନହେଲେ ଏ ମଧୁର ସମ୍ପର୍କ ସମ୍ଭବ ନୁହେଁ। ଏଣୁ ଏହି ଭିନ୍ନତା ସାରା ବିଶ୍ୱରେ ବିପୁଳତା ବିବିଧତା ଓ ବୈଚିତ୍ର୍ୟ ପାଇଁ ଦାୟୀ । ଏବେ ମଣିଷ ଚେତନାରେ କ'ଣ ଗୋଟାଏ ନୂତନ ସଂଘାତ ତା'ର ମାନସିକତାକୁ ବଦଳାଇ ଦେଉଛି । ମଧ୍ୟ ଆଫ୍ରିକାରେ ଅନାହାରରେ ମରିଯାଉଥିବା ଶିଶୁ ପାଇଁ ପୃଥିବୀର ନିଶ୍ଚିନ୍ତ ପ୍ରାଚୁର୍ଯ୍ୟରେ ବଞ୍ଚୁଥିବା ମଣିଷକୁ ତାହା ଅସ୍ଥିର କରୁଛି । ଏପରି ସମ୍ପର୍କର ନିବିଡ଼ତା, ସଂବେଦନାର ଏମିତି ବିସ୍ତାର ତ' ଚାଳିଶ ପଚାଶ ବର୍ଷ ପୂର୍ବେ ଦେଖା ଦେଉନଥିଲା ! ସାଇବେରିଆର ଯାଯାବର ପକ୍ଷୀ ଭାରତର କୌଣସି ଜଳାଶୟରେ ନିରାପଦ ରହିପାରିବ କି ନାହିଁ ସେଥିପାଇଁ ସମଗ୍ର ସଭ୍ୟ ଜଗତ୍ ଚିନ୍ତିତ ହେବା ଏକ ନୂତନ ଲକ୍ଷଣ । ଗଛଟିଏ ହାଣିଦେବା ହତ୍ୟାପରାଧ ପରି ଏକ ଭୟାବହ ଅପରାଧ ବୋଲି କେହି କେବେ ଅନୁଭବ କରୁନଥିଲେ । ମନେ ହେଉଛି ସତେବା ମଣିଷ ଭିତରର ଉପାଦାନ ସକଳ କୌଣସି ଅଜ୍ଞାତ ରାସାୟନିକ ପ୍ରକ୍ରିୟାରେ ପରିବର୍ତ୍ତନ ହୋଇଯାଉଛନ୍ତି । ଏହା ଆସନ୍ତା ଶତାବ୍ଦୀରେ ଆହୁରି ବିକଶିତ ହେବାର ଯଥେଷ୍ଟ ସମ୍ଭାବନା ରହିଛି । ମୁଁ-ଭାବ ଓ ସେ-ଭାବର ବିଭାଜକ ରେଖା କ୍ରମଶଃ କ୍ଷୀଣ ହୋଇଯାଉଥିବାର ଲକ୍ଷଣ ଦେଖା ଦେଉଛି ।

ଏକତ୍ରତା ଭିନ୍ନତା ନ ଦେଖି ବିବିଧତା ଦେଖେ, ବୈଚିତ୍ର୍ୟ ଦେଖେ; ବିରୋଧ ନ କରି ବିସ୍ତୃତ ହୋଇଯାଏ । ଏହା ଭୂଗୋଳ ଇତିହାସକୁ ମଧ୍ୟ ବାଣ୍ଟିଦିଏ । ଏ ପୃଥିବୀ ଶାକମ୍ଭରୀ, ଏହା ସମସ୍ତଙ୍କର ପାଳନ କରେ, ପରିପୁଷ୍ଟ କରେ । ଏହା ସମସ୍ତଙ୍କର । ଏହାର ଶସ୍ୟସମ୍ଭାର ସମସ୍ତଙ୍କର । ଏ ସମୁଦ୍ର ସମସ୍ତଙ୍କର । ଏ ବିପୁଳ ଜଳରାଶି, ଏହାର ଅକଳନୀୟ ଜୀବସମ୍ପଦ ସମସ୍ତଙ୍କର । ମିଶର, ବେବିଲୋନ୍, ଗ୍ରୀସ, ଭାରତ, ଚୀନର ସଂସ୍କୃତି ମାନବର ସଂସ୍କୃତି। ଫରାସୀ ବିପ୍ଳବ ମାନବଜାତିର ଇତିହାସ। ଉପନିଷଦୀୟ ଜ୍ଞାନଭଣ୍ଡାର, ସାରା ପୃଥିବୀର ସମସ୍ତ ଜିଜ୍ଞାସୁ ମାନସ ପାଇଁ ଅବାରିତ ସମ୍ପଦ। କମ୍ପ୍ୟୁଟର ଓ ଆନୁଷଙ୍ଗିକ ପ୍ରୟୋଗ ବିଦ୍ୟା ପାଇଁ ମାନବ ମାତ୍ରେ ଅଧିକାରୀ।

ଆଲୋକ ପରି, ଆକାଶ ପରି, ପ୍ରେମ ପରି ଜ୍ଞାନ ମଧ୍ୟ ସାର୍ବଜନୀନ । ପୃଥିବୀର ସହସ୍ରାଧିକ ଗ୍ରନ୍ଥାଗାରରେ ଅଗଣିତ ମନୀଷୀଙ୍କର ଅକଳନୀୟ ଅବଦାନ ଏବେ ଭାଷା ନିର୍ବିଶେଷରେ ସମସ୍ତଙ୍କର ଉପଲଭ୍ୟ ।

ଏ ବିପୁଳ ବିସ୍ତାର, ଏପରି ଏକାଗ୍ରତା, ଉନ୍ମୁକ୍ତତା, ଆପଣାପଣର ନୂତନ ଶତାବ୍ଦୀ ସମସ୍ତ ଆଶୀର୍ବାଦ ନେଇ ଆଗରେ ଆସି ସନ୍ତୁଷ୍ଟ ଦେବତା ପରି ଠିଆ ହୋଇଛି । ତା'ର ସାନ୍ନିଧ୍ୟରେ ସୂର୍ଯ୍ୟୋଦୟର ପୂର୍ବରାଗପରି ଅନେକ ବିଚିତ୍ର ଲକ୍ଷଣ ଦେଖାଦେଲାଣି । ଏ ସମସ୍ତଙ୍କୁ ଆଖିବୁଜି ବସି ରହିଲେ ସୁଦ୍ଧା ଆମ ଭିତରେ ବାହାରେ ବିପୁଳ ଆଲୋକର ତରଙ୍ଗ ଆମକୁ ତୋଳି ନେଇଯିବ ତା' କୁଆଡରେ । ମଣିଷ ଏକ ନୂତନ ଚେତନାର ଅଧିକାରୀ ହୋଇ ଏଇ ପୃଥିବୀରେ ବିଚରଣ କରିବ । ବିପୁଳ ଶକ୍ତି, ଅସୀମ ସାମର୍ଥ୍ୟ ସତ୍ତ୍ୱେ ସେ ତା'ର ଦୀର୍ଘ ଜାନ୍ତବ ପରଂପରାକୁ ଆଉ ଉପଯୋଗ କରିବ ନାହିଁ । କାରଣ ସେ ତାକୁ ଅତିକ୍ରମ କରିସାରିଥିବ ।

ମୁଁ-ଭାବରେ ସେ-ଭାବ ଅନୁପ୍ରବିଷ୍ଟ ହେବ। ସେ-ଭାବରେ ମୁଁ ଭାବ ଅନ୍ୱିତ ହେବ, ବିଦ୍ୟୁତ୍ ବେଗରେ ପୃଥିବୀର ସର୍ବତ୍ର ଯାଇପାରୁଥିବା ଅଲୋକସାମାନ୍ୟ ଉପାଦାନରେ ଉଦ୍ଭାସିତ ହେଉଥିବା ଏ ନୂତନ ଯୁଗର ସମର୍ଥ ପୁରୁଷମାନେ ହୁଏତ ଚାହିଁଲେ କହିପାରିବେ– "ଆସ ହାତ ମିଳାଅ, ଏ ପୃଥିବୀକୁ ଆମେ ତୋଳି ନେଇଯିବା ଧ୍ରୁବଲୋକ ଯାଏ। ଏ ପୃଥିବୀର କାଳିମା ଧୋଇଦେବା। ଜୀବଯାତନାର ଅନ୍ତ ହେବ, ଭିତରୁ ଓ ବାହାରୁ ଅନ୍ଧାର ବିଲୁପ୍ତ ହେବ, ରୂପାନ୍ତରିତ ହେବ।"

ଅନନ୍ତ ସମ୍ଭାବନାମୟ ଭବିଷ୍ୟତ । ଆଗାମୀ ଶତାବ୍ଦୀ ଅନନ୍ତ ଭବିଷ୍ୟତ୍ କାଳର ନିକଟତମ କାଳଖଣ୍ଡ । ଏକବିଂଶ ଶତାବ୍ଦୀ ମଣିଷକୁ ସୁଯୋଗ ଦେବ ନିଜକୁ ନିଜେ ଆବିଷ୍କାର କରିବାକୁ । ଚେତନା କ'ଣ ବୋଲି ବସ୍ତୁବିଜ୍ଞାନୀମାନେ ପଚାରିଲେଣି। ସେମାନେ ତା'ର ଉତ୍ତର ନିଶ୍ଚୟ ପାଇଯିବେ। ଜ୍ଞାନର ବିସ୍ଫୋରଣ ହେବ। ନୂତନ ଚେତନାର ଅଭ୍ୟୁଦୟ ହେବ। ଯେଉଁମାନେ ମାନବଜାତିର ବିପର୍ଯ୍ୟୟକୁ ନେଇ ଚିନ୍ତିତ ହୋଇପଡ଼ିଛନ୍ତି ତା'ର ହିଂସ୍ରତା, ତା'ର କ୍ରୂରତା, ପାଶବିକତାକୁ ଦେଖି ଘୋର ନିରାଶ ହୋଇପଡ଼ିଛନ୍ତି, ସେମାନେ ନିଶ୍ଚିନ୍ତ ହୁଅନ୍ତୁ। କାରଣ ଯେ ପଦ୍ମଫୁଲକୁ ଫୁଟାଏ ସେ ଜାଣେ ତା' ମୂଳରେ ଥିବା କର୍ଦ୍ଦମକୁ କେତେ ମାତ୍ରାରେ ସ୍ୱୀକାର କରିବାକୁ ହେବ, ଏବଂ କେତେମାତ୍ରାରେ ଅତିକ୍ରମ କରିବାକୁ ହେବ । ଫୁଲର ପାଖୁଡ଼ାରେ କର୍ଦ୍ଦମ ନଥାଏ କିନ୍ତୁ ଥାଏ ସୂକ୍ଷ୍ମ ଉପାଦାନ ରୂପରେ । କିନ୍ତୁ ଫୁଟିଲା ପଦ୍ମର ଗନ୍ଧରେ କର୍ଦ୍ଦମର

ଲେଶ ସୁଦ୍ଧା ନଥାଏ । ବିକଶିତ ହେଉଥିବା ମାନବ ଚେତନା ଏପରି ଏକ ନୂତନ ପ୍ରସ୍ଥକୁ ଲମ୍ଫପ୍ରଦାନ କରିବାକୁ ପ୍ରସ୍ତୁତ ହୋଇ ସାରିଛି । ନୂତନ ଯୁଗ ଆମକୁ ଗ୍ରହଣ କରିବାକୁ ପ୍ରସ୍ତୁତ ରହିଛି । ଆମେ ତାକୁ ଗ୍ରହଣ କରିପାରିଲେ ହେଲା । ସେଥିପାଇଁ ଯୋଗ୍ୟତାର ପ୍ରୟୋଜନ ନାହିଁ। ଜୁଆରରେ ପହଁରାଳିର ପ୍ରୟୋଜନ ନାହିଁ, ଜୁଆରକୁ ସ୍ୱୀକାରି ପାରିଲେ ସେ ଟୋଳି ନେଇଯିବ ଅନାୟାସରେ । ଏକବିଂଶ ଶତାବ୍ଦୀ ସେହିପରି ଏକ ଜୁଆର । ତା'ର ପ୍ରବାହ ରତ୍ନଦ୍ୱୀପ ପର୍ଯ୍ୟନ୍ତ ନେଇଯିବ । ସେଥିରେ ନିଜକୁ ଖଞ୍ଜି ଜାଣିଲେ ହେଲା । ସ୍ୱାଗତ କରନ୍ତୁ ନୂତନ ସମ୍ଭାବନାକୁ, ନୂତନ ଚେତନାକୁ !



# ଅଯୋଗ୍ୟର ସ୍ୱଦେଶ ଚିନ୍ତା

ଜନନୀ ଭଳି ଜନ୍ମଭୂମି ମଧ୍ୟ ଏକ ଆକସ୍ମିକତା । ଅସହାୟ ଶୈଶବ କାଳରେ ଉପଯୋଗୀ ହୋଇଥିବାରୁ ଉଭୟେ ଅପରିହାର୍ଯ୍ୟ । କିନ୍ତୁ ପରବର୍ତ୍ତୀ କାଳରେ ଉଭୟେ ମୋର ବିକାଶର ଅନ୍ତରାୟ । ନୁଆଣିଆଁ ଚାଳ ତଳେ ମୁଁ ଖର୍ବ ହୋଇ ରହିଗଲି । ଅନୁର୍ବର ଭୂଇଁରେ କଣ୍ଟାଗଛ ଭଳି ମୁଁ ଉଧେଇ ପାରିଲି ନାହିଁ । ମୋତେ ଆପଣ ବିଶ୍ୱାସ କରିବେ ନାହିଁ ମୁଁ ଜାଣେ । କିନ୍ତୁ ମୁଁ ନିଜକୁ ନିଜେ କଳନା କରି ଜାଣିଛି ଯେ ମୁଁ ମହାଶୂନ୍ୟକୁ ଭେଦି ପାରିଥା'ନ୍ତି । ଅପହଞ୍ଚକୁ ଡେଇଁପାରିଥା'ନ୍ତି । ମୋ ଭିତରୁ କଢ଼ ଉଭାରି ଆସିଲା ବେଳକୁ ଏ କୃପଣ ଭୂଇଁ ମୋ ଚେରଆଡୁ ଶୋଷିନେଲା। ମୋ କଢ଼ଯାକ କଣ୍ଟା ହୋଇଗଲା ।

ମୁଁ କେବେ ମା' କ୍ଷୀର ଖାଇଛି ମନେ ନାହିଁ । ଗାଈ କ୍ଷୀର ବାଛୁରୀ ଚାଖେ, ମୁଁ ଚାଖେ ନାହିଁ । କ୍ଷୀର ବିକିଲେ ଲୁଣ କିଣା ହୁଏ, କୁଣ୍ଡା କିଣା ହୁଏ । ମୁଁ ଭାତ ସାଙ୍ଗରେ ଲୁଣ ଖାଏ, ଗାଈ କୁଣ୍ଡା ଖାଏ । ଶୋଷ କଲେ ବାଛୁରୀ ଓ ମୁଁ ଏକାଠି ପାଣି ପିଉ । ବାଛୁରୀ ବଡ଼ ହେଲେ ଗାଡ଼ି ଟାଣେ । ମୁଁ ବଡ଼ହେଲେ ମୂଲ ଲାଗେ । ପାଠ ପଢ଼ିବା ଏଠି ବ୍ୟତିକ୍ରମ । ନପଢ଼ି ମୂଲ ଲାଗିବା ଯାହା ପାଠ ପଢ଼ିବା ଏଠି ବ୍ୟତିକ୍ରମ । ନପଢ଼ି ମୂଲ ଲାଗିବା ଯାହା ପାଠ ପଢ଼ି ମୂଲ ଲାଗିବା ତାହା । ଏହା କଷ୍ଟ; କିନ୍ତୁ ପାଠ ପଢ଼ି ମୂଲ ଲାଗିଲେ ଦୁଃଖ ବେଶୀ । ମୁଁ ପାଠ ପଢ଼ିଛି । ଇଂରାଜୀ, ହିନ୍ଦୀ, ବଙ୍ଗଳା ପଢ଼ିଛି । ହେଲେ ଆପଣଙ୍କ ଖାତିରରେ ଓଡ଼ିଆ ଲେଖୁଛି, ଓଡ଼ିଆ କହୁଛି । ସେଇ ମୋର ଦୁଃଖ । ଆପଣ କ'ଣ ମୁଁ ଜାଣେ । ଆପଣଙ୍କୁ ମୁଁ ଭଲ ରୂପେ ଚିହ୍ନିଛି । ଆପଣ ଯାହା ଦିଶନ୍ତି, ଯାହା କହନ୍ତି ତାହା ନୁହଁନ୍ତି । ମୁଁ ସତରେ ଆପଣଙ୍କୁ ଖାତିର କରେ ନାହିଁ କି ଡରେ ନାହିଁ । ତେବେ ଆପଣଙ୍କ ଆଗରେ ମୁଁ ଦେଶଦ୍ରୋହର ବୟାନ ଦେବାକୁ ଚାହେଁ ଓଡ଼ିଆରେ । କାରଣ ମୋତେ ଆପଣ ଅପରାଧୀ ବୋଲି ଘୋଷଣା କଲାବେଳେ ନିଶ୍ଚୟ ମାନିବେ–''ଦେଶଟାକୁ ଗାଳି ଦେଲା ସିନା, ଓଡ଼ିଆ ତ କହିଲା''– ଶୁଣନ୍ତୁ ତା' ହେଲେ–

ମୁଁ ଆପଣଙ୍କ ଓଡ଼ିଶାକୁ ଦେଖିନାହିଁ କି ଜାଣିନାହିଁ । ଆପଣ ଏମିତି ଦେଶପ୍ରୀତିରେ ଉଚ୍ଛନ୍ନ ହେଉଛନ୍ତି ସିନା, ଆପଣ ବି ଦେଖିନାହାଁନ୍ତି । ହେଇ ସିଆଡ଼େ ବଙ୍ଗଳାର କାନ୍ଥକୁ

ଲାଗି ଯୋଉ ଖଣ୍ଡକ ଅଛି, ସେଇଟାତ ବାଲେଶ୍ୱର ତା' ପାଖକୁ ମୟୂରଭଞ୍ଜ, ସେଇଠୁ ସୁନ୍ଦରଗଡ଼, କେନ୍ଦୁଝର, କଟକ, ପୁରୀ ହୋଇ ତେଲୁଗୁ ରାଜ୍ୟରେ ହାବୁଡ଼ିବା ଆଗରୁ ସେ ସବୁ ଗଞ୍ଜାମ, କୋରାପୁଟ । ଆର ଆଡେ ହିନ୍ଦୀ ରାଜ୍ୟକୁ ଆଉଜି ରହିଛି ସମ୍ବଲପୁର, ବଲାଙ୍ଗିର, କଳାହାଣ୍ଡି । ଓଡ଼ିଶା କାହିଁ ମୁଁ ଖୋଜି ପାଉ ନାହିଁ ତ । ସେଇଟା କ'ଣ ଏଇ ମାନଚିତ୍ର ? ଏଥିପାଇଁ ଏମିତି କାହିଁକି ହେଉଛନ୍ତି ? ଭୂଗୋଳ ଭଳି ଯା'ର ଇତିହାସ ବି ଅସ୍ପଷ୍ଟ । ବାଉଳାରେ ଆପଣ ଓଡ଼ିଶାକୁ କଳିଙ୍ଗ, ଉତ୍କଳ ଓ ଉଡ୍ରଦେଶ ଏମିତି କ'ଣ ସବୁ କହନ୍ତି । କାହାରି ସରହଦ ସ୍ଥିର ନୁହେଁ । ଗଙ୍ଗାରୁ ଗୋଦାବରୀ ଯାଏ ବିସ୍ତାର କଥା ଆପଣ ବେଳେବେଳେ ନିଜ ନିଜ ଭିତରେ କୁହାକୁହି ହୁଅନ୍ତି । ବୁକୁବାଡ଼େଇ ସମସ୍ତଙ୍କ ଆଗରେ କହିବାକୁ ଆପଣଙ୍କର ବଳ ନାହିଁ, ସାହସ ନାହିଁ, ବୋଧେ ଇଚ୍ଛା ବି ନାହିଁ । ନିଜ ଗୋଡ଼ରେ ଠିଆହେବା ବଳ ନଥିଲେ ଖୁଣ୍ଟକୁ ଜାବୁଡ଼ି ଧରିଲା ପରି ଦୁର୍ବଳ, ଦରିଦ୍ର, ହୀନମାନ ଲାଗିଲାବେଳେ ଆପଣ ଅତୀତକୁ ଚାଟିବାରେ ସୁଖ ପାଆନ୍ତି । ଅତୀତ ଆଉ ନାହିଁ, ଯାହା ଅଛି, ଏଇ ବିକଟ ବିକଳ ବର୍ତ୍ତମାନ – ଏ ସତ୍ୟକୁ ଆପଣ ସାମ୍ନା କରିପାରନ୍ତି ନାହିଁ । ଆଖିବୁଜି ଖାରବେଳ, କପିଳେନ୍ଦ୍ରଙ୍କୁ କଳ୍ପନା କରିବା ସହଜ, ଆଖିମେଲି ମୋତେ ସାମ୍ନାସାମ୍ନି ଦେଖିବା ଭାରି ଅସୁବିଧା ।

ଆପଣ କିନ୍ତୁ ମୋତେ ଠିଆ କରେଇ ମୋ' ନାଁରେ ଆପଣଙ୍କ ଦେଶପ୍ରୀତି ଘୋଷଣା କରନ୍ତି । ମୋତେ ଲୁଗା ଦେବେ ପିନ୍ଧିବାକୁ, ପାଣି ଦେବେ ପିଇବାକୁ କହି ରୁଣ୍ଡେଇ ଆଣନ୍ତି ସାମଗ୍ରୀ । କିନ୍ତୁ ଆପଣଙ୍କ ଶୋଷ ମେଣ୍ଟୁ ମେଣ୍ଟୁ ପାଣି ସରିଯାଏ, ମୁହଁ ପୋଛୁ ପୋଛୁ ଲୁଗା ସରିଯାଏ । ମୁଁ ସେଇଠି ଥାଏ ଯୋଉଠି ମୋ ଗୋସେଇଁବାପା, ତା' ଗୋସେଇଁବାପା ମୋ ପାଇଁ ମୂଲ ଖଟି ଭୋକିଲା ପେଟ, ପୁଙ୍ଗୁଳା ପିଠି ଦେଖେଇ ମରିଗଲେ । ମୁଁ ତମକୁ ସବୁ ଘୃଣା କରେ । ତମ ଦେଶଟାକୁ ବି ଘୃଣା କରେ । ଏଠି ଜନ୍ମିବା ମୋର ଦୁର୍ଭାଗ୍ୟ। ଏଠି ବଞ୍ଚିବି ବଞ୍ଚିବି ହୋଇ ବଞ୍ଚିନପାରି ମରିବା ମୋର ବିଡ଼ମ୍ବନା । ମୋ ଭିତରେ ପାଟି ନ ଫିଟେଇ କବି ମରିଯାଏ । ହାତ ଟେକି ନ ପାରି କଳାକାର ମରିଯାଏ । ଭାଲ ଉଞ୍ଚେଇ ନପାରି ଯୋଦ୍ଧା ମରିଯାଏ । ସବୁଏ ଭୋକିଲା ଭୂଇଁ ଖାଇଯାଏ, ତମେ ସବୁ ଖାଇଯାଅ । ମୁଁ ତୁମକୁ ଧିକ୍କାର କରେ, ଦେଶଟାକୁ ଧିକ୍କାର କରେ । ମୁଁ ନଥିଲେ ତୁମେ ଉଣ୍ଶାସବୋଧ କରନ୍ତ, ଦେଶ ଉଣ୍ଶାସବୋଧ କରନ୍ତା । ମୁଁ ହିଁ ତମ ପାଇଁ କଣ୍ଟା । ମୁଁ ହିଁ ସମସ୍ୟା । ମୁଁ ହିଁ ତୁମର ଲଜ୍ୟା, ଅପମାନ, ପରାଜୟ, ଅନଗ୍ରସରତା । ମୁଁ ହିଁ ଅଯୋଗ୍ୟ । ଅତୀତର ପଥର ପାଲଟିଥିବା ଗୌରବକୁ

ବୋହିବା ପାଇଁ ଅଯୋଗ୍ୟ । ଭବିଷ୍ୟତର ଫୁଲମାଳ ପିନ୍ଧିବାକୁ ଅଯୋଗ୍ୟ । ମୁଁ ତୁମକୁ ଅସ୍ୱୀକାର କରେ, ଏଣୁ ଅପରାଧୀ । ଦେଶକୁ ଅସ୍ୱୀକାର କରେ, ଏଣୁ ଦେଶଦ୍ରୋହୀ ।

"ଶୁଣ ବାବୁମାନେ, ଶୁଣ୍ ଦେଶ । ମୋର କ୍ଷୁଧାର ଦ୍ୱାହି, ମୋର ଉଲଗ୍ନତାର ଦ୍ୱାହି, ମୋ ଅସହାୟ କ୍ରୋଧର ଦ୍ୱାହି ଦେଇ କହୁଛି ତମେ ସବୁ ଦେଶଦ୍ରୋହୀ – ଏ ଦେଶର ଅଯୋଗ୍ୟ । ଏ ଦେଶ ଆତ୍ମଦ୍ରୋହୀ, ମୋର ଅଯୋଗ୍ୟ । ଯେ ନିଜକୁ ନିଜେ ବିଶ୍ୱାସ କରେ ନାହିଁ, ସେ କି ମଣିଷ ? ଯେଉଁଠି କେହି କାହାକୁ ବିଶ୍ୱାସ କରନ୍ତି ନାହିଁ ସେ କି ଦେଶ ? ତମେ ଛୁଞ୍ଚୁମୁନରେ ମୁନେ ମାତ୍ର ଭୂଇଁ ମୋତେ ଛାଡ଼ିବ ନାହିଁ, ଭୟ କାଳେ ସାମ୍ରାଜ୍ୟ ନେଇଯିବି । ମୁଁ ତୁମର ନଥିଲି, କେବେ ହେବି ନାହିଁ । ତମେ ବି ମୋର ନୁହଁ । ଏ ଦେଶ ମୋତେ କିଛି ନ ଦେଇ ମୋଠୁ ସବୁ ଆଶା କରୁଛି, ଏଣୁ ଏ ଦେଶଟା ବି ମୋର ନୁହେଁ । ମୁଁ ଉଭୟକୁ ବର୍ଜନ କରୁଛି । ତମେ ଦୁହେଁ ମିଶି ମୋତେ ପୃଥିବୀର ଯେକୌଣସି ସ୍ଥାନକୁ ବହିଷ୍କାର କରିଦେଲେ ମୁଁ ଖୁସିରେ ଚାଲିଯିବି ।"

"ଯାହାକୁ ଆପଣ ଏଯାଏ ଶୁଣୁଥିଲେ, ସେଇଟା ଗୋଟାଏ ବ୍ୟତିକ୍ରମ । ସହସ୍ର ମଳିମୁଣ୍ଡିଆଙ୍କ ଛେଳିଗୋଠରୁ ଗୋଟାଏ, ସମ୍ପୂର୍ଣ୍ଣ ଅଯୋଗ୍ୟ । ସେଗୁଡ଼ାଙ୍କର ବଞ୍ଚିବାର ଅଧିକାର ନାହିଁ । ଚିପୁଡ଼ି ଜାଣିଲେ ପଥରରୁ ପାଣି ବାହାରିବ । ମୁଣ୍ଡରେ ମଗଜ ଥିବ, ନ ହେଲେ ବାହୁରେ ବଳ ଥିବ; ତେବେ ଏ ଲଢ଼େଇରେ ଜିଣିବ । ଭୂଇଁଟା ଏଇ ମଳିମୁଣ୍ଡିଆଙ୍କ ପାଇଁ ଠୋକରା ଦିଶେ । ଖାଇ ଜାଣିଲେ ହାତୀ ମାଉଁସ ! କଷ୍ଟିନ୍‌କାଳେ ସରିବ ନାହିଁ । ଦେଶ କଥା କାହିଁ ପଚାରୁଛନ୍ତି ? ସେଇଟା କ'ଣ ମୁଁ ଜାଣେ ନାହିଁ । ଇତିହାସ ଭୂଗୋଳଗୁଡ଼ାକ ପିଲାଙ୍କ ପାଠ । ଦି' ହାତରେ ପୁଳା ପୁଳା ଟଙ୍କା ରୋଜଗାର କରିବା, କୋଠାବାଡ଼ି, ଜମିଭୂମି, ଗାଡ଼ିଘୋଡ଼ା କରିବା, ପାଟ-ଛିଟ ଆୟ-ଅଳଙ୍କାର ଆଣି ଘରଣୀକୁ ମଣ୍ଡିଦେବା, ଖାଇପିଇ ଭୋଗ କରି ଜୀବନର ଶଧ ମେଣ୍ଟାଇବା ଯୋଗ୍ୟତା । ବୀରଭୋଗ୍ୟା ବସୁନ୍ଧରା । ଯେ ପାରିଲା ସେ ନେଲା । ଯେ ନ ପାରିଲା ହାତ ମନ୍ଥି ଓଠ ଚାଟି ଆଡ଼ ହୋଇଗଲା । ଏଇ ହେଲା ମୋଟାମୋଟି ଘଟଣା । ମୁଁ ଜାଣିଛି ଏଠି ନିଜ ପାଇଁ ନିଜେ ସବୁ ନକଲେ ପଛୁଆ ହୋଇଯିବ । ଚାନ୍‌ସ ମାରିବାର ଅଛି । ଯାହା ଯେତେବେଳେ ହାତରେ ପଡ଼ିଗଲା ତାକୁ ଥଳିରେ ପୂରେଇ ଦେବ । ମଣିଷକୁ, ବସ୍ତୁକୁ, ସିଂହାସନକୁ ବ୍ୟବହାର କରି ଜାଣିଲେ ସବୁ ସୁଖକର; ଖାଇ ଜାଣିଲେ ସ୍ୱାଦିଷ୍ଟ । ମୁଁ ଶାସ୍ତ୍ର ଫାସ୍ତ୍ର ଜାଣେ ନାହିଁ, ସେଗୁଡ଼ା ନିକମ୍ମା ପଣ୍ଡିତିଆ ପାଠ । ସେଇଥିପାଇଁ ଛନ୍ଦି ବାନ୍ଧି ହୋଇ ସବୁ ପଡ଼ିଛନ୍ତି । ସେଇଠି ସବୁପ୍ରକାର ନିୟମ, ସବୁପ୍ରକାର ଶୃଙ୍ଖଳା। ମୁଁ ସେଗୁଡ଼ାକୁ ଖାତିର କରେ ନାହିଁ। ସେଥିପାଇଁ ଭଲମନ୍ଦ ପାପପୁଣ୍ୟ ଗାଲୁଗପ ମୋ ସୀମା ସ୍ପର୍ଶ କରେ ନାହିଁ। ମୁଁ ମିଛ କହେ, ଜାଣିଶୁଣି

ଯୋଜନାବଦ୍ଧ ଭାବରେ କହେ। ଲୋକଙ୍କୁ ଭଣ୍ଡି ନ ଜାଣିଲେ ଜାତିକୁ ଭଣ୍ଡି ନ ଜାଣିଲେ, କେମିତି ମାନ ସମ୍ମାନ ଦୌଲତ ମିଳିବ ? ଗୋଡ଼ିଟାକୁ ଯଦି ମାଣିକ୍ୟ ବୋଲି ବିକି ନ ପାରିଲି ମୁଁ କି ବେପାରୀ? କେତେ ପରିମାଣରେ କୋଉଠି କେମିତି ମିଛ କହିବାକୁ ହୁଏ, ସେଇଟା ହେଲା ମୋର ସକ୍ସେସ୍‌ର ଚାବିକାଠି । ମୁଁ ଠକେ ମିଛ କହି, ଖୋସାମତ୍ କରେ ମିଛ କହି । ମିଛଟା ସତ କହିଲେ ମିଛ ନୁହେଁ । ମିଛଟା ମିଛ ବୋଲି ଜଣାପଡ଼ିଲା ବେଳକୁ ନଈ ପାଣି ନଈକୁ ଫେରିଯାଇଥିବ । କିଏ ବା ମିଛକୁ ଧରିବ? ସବୁଗୁଡ଼ାକ ପରା ମିଛୁଆ । ମୁଁ ଚୋରି କରେ । ଚୋରି କରିବା ଏକ ବିଦ୍ୟା । ନେଇ ଆଣି ଥୋଇ ଜାଣିବା ବିଦ୍ୟା । ମୁଁ ବିଭିନ୍ନ ମାର୍ଗରେ ଚୋରି କରେ । ଭଣ୍ଡାର ଚୋରି କରେ । ଗୋପନ ଦସ୍ତାବିଜ୍ ଚୋରି କରେ । ତା' ସହିତ ଟାଉଟରି କରେ, ରାଜନୀତି କରେ, କଳି ଲଗାଏ, କଳି ଭାଙ୍ଗେ, ନେତାଗିରି କରେ, ଶାସନ କରେ । ଶୋଷଣ କରେ । ମୁଁ ଶୋଷିବାରୁ ଶାସକ । ଦରବାର ମୋର, ଦପ୍ତର ମୋର । ଅମଲା ଅଫିସର ମୋର । ମୁଲକ ମୋର । ମୁଁ ସବୁ ଭୋଗ କରେ । ବିକେ, ଭାଙ୍ଗେ, ଛାରଖାର କରେ । ସେଇଟା ମୋର ମନମଉଜ ପାଇଁ, ଉପଭୋଗ ପାଇଁ। ସେ କୋଉଠି ପାଟିତୁଣ୍ଡ କଲେ ମୁଁ ପାଳବିଣ୍ଡା ମାଡ଼ିଦିଏ। ସେ ତୁନି ହୋଇଯାଏ ବର୍ଷେ। ପୁଣି ପାଟିକଲେ ଭୁଜାଲି ଭୁସିଦିଏ। ସେ ଚୁପ୍ ହୋଇଯାଏ– ସବୁ ଦିନକୁ । ଏଠି ଖେଳ ଚାଲିଛି । ମୁଁ ହେଲି ଖେଳୁଆଡ଼। ଏଇଟା ଜୁଆଖେଳ । ମୁଁ ଜୁଆଡ଼ି । ଏ ଦେଶ କୋଉଁଠୁ କୋଉଯାଏଁ ଜାଣି ନାହିଁ । ହେଲେ ଏଇଟା ମୋ ଦେଶ । କାରଣ ମୁଁ ଯାକୁ ଭୋଗୁଛି। ଶୋଷୁଛି ସବୁ ରନ୍ଧ୍ରରେ। ଶୋଷି ଶୋଷି ଚୋଉଡ଼ା କରିଦେବି। ତା'ପରେ ମୁହଁ କାଢ଼ି ନେବି, ଏଉଡ଼ି ମାରିବାକୁ । ତାରି ଭିତରେ ସେ ମଳିମୁଣ୍ଡିଆ ଯାକ ପୁଣି ତାକୁ ଓଦା ସରସର କରିଦେବେ ତାଙ୍କ ଝାଳରେ, ରକ୍ତରେ । ପୁଣି ଶସ୍ୟ ଉପୁଜିବ । ମୋତେ ଭୋକ କରିଥିବ । ମୁଁ ଫେର୍ ମୁହଁ ଲଗେଇ ତାକୁ ଝୁଣିବି । ମୁଁ ମୁହଁ ଟେକିନିଏ, ପଙ୍ଖା ଟେକେ ନାହିଁ । ମୋତେ ତମେ ସବୁ ଦେଖୁଚ । ଚିହ୍ନୁ ନାହଁ । ଚିହ୍ନୁଛ, କହିପାରୁନାହଁ ଚିହ୍ନୁଛ ବୋଲି। ମୁଁ ଖୋଳ ମଡ଼େଇ ଟୋପି ମଡେ ବିଭିନ୍ନ ବେଶରେ ଆସେ । ମୁଁ ବାରମ୍ବାର ଠକୁଥାଏ । ତମେ ହେଉଥାଅ । ଆହା ବିଚାରାମାନେ, ଆହା ମୋ ଦେଶ । ତମେ ଆସି କ'ଣ କରିପାରିବ ? ତମେ ମୋ ଆହାର ନ ହୋଇ ଆଉ କ'ଣ ହୋଇପାରିବ ? ମୁଁ ନୂଆ ମିଛ ତୁମ ପାଇଁ ଖର୍ଚ୍ଚ କରେ ନାହିଁ । ସେ ପୁରୁଣା ମିଛଟାକୁ ଏପାଖ ସେପାଖ ଦେଖେଇ ଭଣ୍ଡୁଥାଏ। ତମେ ଚାହୁଁଥାଅ ଜଳକା । ତମର ଦେଖିବା ଶକ୍ତି ନାହିଁ, ବୁଝିବା ଶକ୍ତି ନାହିଁ । ତମେ ଗୁଡ଼ା ସେଇ ମାଟି ସାଙ୍ଗେ ମାଟି । ଚକଟା ହେବାର ଯୋଗ୍ୟ । ମୁଁ ବଣ ଜଙ୍ଗଲ ହାଣିଯାଏ, ତମ ମୁଣ୍ଡ ଛିଣ୍ଡପଡ଼େ।

ମୁଁ କାଠଗଣ୍ଡି ବିକ୍ରି କରେ । ତମ ଗଣ୍ଡି ପଡ଼ିରହେ ଗଧିଆଙ୍କ ପାଇଁ । ମୁଁ ତମ ଭୂଇଁ ତାଡ଼ି ରତ୍ନ କାଢ଼ିନିଏ । ତମେ ସବୁ ପୋଡିହୋଇ ଯାଅ । ମୁଁ ମୋ ଉପପତ୍ନୀମାନଙ୍କୁ ମାଣିକ୍ୟରେ ମଣ୍ଡିଦିଏ । ଏଇ ହେଲା ମୋଟାମୋଟି ଘଟଣା ।

''ସେଇଟା ଯେ ଡାଇଲଗ୍ ମାରୁଥିଲା ମୁଁ ତାକୁ ଭଲ କରି ଜାଣିଚି । ସେଇଟା ଗୋଟାଏ ଇଡ଼ିଅଟ୍ । ସେଇଟା ଖାଇବ ଖାଇବ ହଉଥାଏ । ଖାଇ ଜାଣେ ନାହିଁ । ଧରା ପଡ଼େ । କିନ୍ତୁ ଖସିଯାଏ । ଆମେ ସବୁ ଖସେଇ ଦଉ । ଧରେଇ ବି ଦଉ । ଆମେ ହେଲୁ ପକ୍କା ମାଲିକ । ଏଗୁଡ଼ା ଆସନ୍ତି ଯାଆନ୍ତି । ଦେ କମ୍ ଏଣ୍ଡ ଗୋ । ଆମେ ଥାଉ । ଶାସନ ମାନେ ହେଲା କଲମ । ସବୁ ଅର୍ଡ଼ର । ସବୁ ଫାଇଲ୍ । ସେଥିରେ ସବୁ ଚାଲେ । ମୁଁ ସବୁଠି ଥାଏ, କୋଉଠି ନଥାଏ । ମୁଁ ତ ମଣିଷ ନୁହେଁ, ମୁଁ ଏକ ପଦବୀ । ପଦବୀ ମାନେ ପାୱାର । ଆଦେଶ ଦିଏ, ଦେଶବାସୀ ପାଳନ କରନ୍ତି । ପାୱାରକୁ ଦରଖାସ୍ତ କରାଯାଏ, ସେ ହଁ କହେ ବା ନାହିଁ କହେ । ଉଭୟ ଆଦେଶ । ମୁଁ ସେଇ ପାୱାର । ମୁଁ ମାରି ପାରେ ବା ତାରି ପାରେ । ମୋର ତାଲିମ୍ ହେଲା ବ୍ରିଟିଶ୍ । ମୋର କାଇଦା, କଟକଣା, ଷ୍ଟାଇଲ୍ ସବୁ ବ୍ରିଟିଶ୍ । ନେଟିଭ୍‌ମାନେ ହେଲେ ଗାଈଗୋଠ । ତାଙ୍କୁ ଡରେଇବା ମୋ କାମ । ଏ ଲୋକଗୁଡ଼ା ସବୁ ମହାମହିମ ସରକାରଙ୍କ ପ୍ରଜା । ସରକାର ବାହାଦୁର ହେଲି ମୁଁ । ମୋ ଭାଇ ବିରାଦର, ଆମେ ସବୁ ସାହେବ । ଆମ ଆଗରେ ପଛରେ ପିଆଦା । ଆଗରେ ପଛରେ ସାଲ୍ୟୁଟ୍ । ଆମ ତୁଣ୍ଡରୁ ଯାହା ବାହାରିଗଲା ତାହା ଫାଇନାଲ । ମୁଁ ତଳିଆଙ୍କୁ ଭୃତ୍ୟ ନ ମଣିଲେ ସେଗୁଡ଼ାକ ମୁଣ୍ଡରେ ଚଢ଼ିବେ । ମୁଁ ତାଙ୍କୁ ପାଖ ପୂରେଇ ଦିଏ ନାହିଁ । ମୁଁ ଦିନରେ ଆଲୁଅ ଜାଳି କାମ କରେ । କଡ଼ା ଇଂରାଜୀ ଲେଖେ । ଓଡ଼ିଆ ଫୋଡ଼ିଆ ଫାଲ୍‌ତୁ, ଟ୍ରାସ୍ । ଶାସନ ଇଂରାଜୀରେ ହେଇ ଆସିଛି । ହେଇ ଚାଲିଥିବ । ଏଇଟା ମୋର ଷ୍ଟ୍ରଙ୍ଗ୍ ପଏଣ୍ଟ । ମୂଳକୁ ଆମ ଗୋଷ୍ଠୀଟା ବିଶ୍ୱସ୍ତ କର୍ମଚାରୀ । ଆମକୁ ଡିସିପ୍ଲିନ୍ ଜଣା । ମାଲିକ ଯାହା କହିବେ ଆମେ ତାହା ଅକ୍ଷରେ ଅକ୍ଷରେ ପାଳନ କରୁ । ଉପର ସାହେବ ଯଦି କହନ୍ତି ସାତଦିନ ଘୁଷୁରି ଲଣ୍ଡି ଗୋଟେଇବାକୁ, ତାକୁ ସରକାରୀ ପବିତ୍ର କର୍ତ୍ତବ୍ୟ, ଅର୍ଥାତ୍ ସେକ୍ରେଡ଼ ଡ୍ୟୁଟି ମାନି ପାଳନ କରୁ । ଭଲ ଭୃତ୍ୟ ନ ହେଲେ ଭଲ ମାଲିକ ହେବା ସମ୍ଭବ ନୁହେଁ । ବ୍ରିଟିଶ୍ ରାଜ ଚାଲିଗଲା ପରେ ଗୁଡ଼ାଏ ଖଦଡ଼ିଆ ଏଣେ ତେଣେ ହେଲେ । ସେଗୁଡ଼ାକ ଗାଦିରେ ବସିବା ଜାଣିନଥିଲେ । କିନ୍ତୁ ସେଥିରୁ କାଠ ଗରିଣ୍ଡାକୁ ସେ ମହାମହିମ ଚୌକିରେ ନ ବସେଇଲେ, ଆମକୁ ଅସୁବିଧା ହେଲା । ଆମେ ତାଙ୍କ ପଛରେ ରହି ଆଦେଶ ଦେଲୁ । ଆଗରେ କୁର୍ଣ୍ଣିସ୍ କରି ପାଳନ କଲୁ । ଆମର ବିବେକ୍ ଫିବେକ୍ କିଛି ନାହିଁ । ଭୃତ୍ୟର ବିବେକ କ'ଣ ହବ ? କିନ୍ତୁ ଚେସ୍

ଖେଳରେ ଉଭୟଆଡ଼ୁ ଚାଲ୍ ଚାଳିବା ଭାରି ମଜା । ଆମେ ସେଇ କାମ ଏବେ କରୁଛୁ ।

କାଠ ଗରିଣ୍ଡା ସବୁ ଚାଲାକ ହୋଇଗଲେ, ମୂର୍ଖ ବାଦଶା ପରି ଗୁଡ଼ାଏ ପିଇଲେ, ଗୁଡ଼ାଏ ଗଡ଼ିଲେ, ଗୁଡ଼ାଏ ଗର୍ଜିଲେ । ମୋ ଭାଗରେ ଯେ ପଡ଼ିଲା ମୁଁ ତା ପାଇଁ ବନ୍ଦୋବସ୍ତ କରିଦେଲି । ବନ୍ଦୋବସ୍ତ ବଢ଼ିଆ ଇଂଲିଶ ୱାର୍ଡ଼ । ସେଥିରେ ସବୁ ଆସିଯାଏ । ବ୍ରିଟିଶ୍ ରାଜ ଶାସନରେ ଯାହା, ମନ୍ତ୍ରୀ ଶାସନରେ ସେଇଆ । କିନ୍ତୁ ଡକେଇତ ନ ହୋଇ ଚୋର ହୋଇଗଲେ ସେଗୁଡ଼ାକ । ମୋ ଭାଗରେ ଯେ ପଡ଼ିଲା ମୁଁ ତାକୁ ଚୋରି କରିବା ପାଇଁ ବନ୍ଦୋବସ୍ତ କରିଦେଲି। ମୋ ପାଇଁ ବଳେ ବନ୍ଦୋବସ୍ତ ହୋଇଗଲା । ମୋ କୋଠା, ମୋ ଗାଡ଼ି, ମୋ ଉଡ଼ାଣ, ମେଳନ, ଭୋଜନ, ରମଣ, ଶୟନର ବନ୍ଦୋବସ୍ତ ହୋଇଗଲା । ମୁଁ ଏ ଦେଶଟାକୁ ଫିଙ୍ଗର୍ ଟିପ୍ସରେ ରଖିଚି । ସବୁ ପଟୁଆରି ଲଗେଇ ମାପଚୁପ କରି ରଖିଛି । ଘରଗଣନା, ମୁଣ୍ଡ ଗଣନା, ଗାଁ ଗଣ୍ଡା, ହାଟବଜାର, ଗାଈଗୋରୁ, କୁକୁଡ଼ା, ମେଣ୍ଢା, ଘୁଷୁରି ସବୁ ତଥ୍ୟ ମୋ ପାଖରେ । କୋଉ ମାଟିରେ କେତେ ସୁନା, କେତେ କୋଇଲା ମୁଁ ଜାଣେ । କୋଉ ଶିରାରେ କେତେ ପାଣି ଚାଲିଚି ମୁଁ ଜାଣେ । ସବୁ ଜାଣି ଚୁପ୍ ରହିଥାଏ, ମୁଦା ମାଠିଆ ପରି ଆଦୌ ଚିହ୍ନାପଡ଼େ ନାହିଁ । ମୁଁ କାଠ ଗରିଣ୍ଡାକୁ ଚାରି ଥର ଚିତା କାଟିଲେ ବି ସେ ଜାଣିପାରେ ନାହିଁ । ପାନ ଚୋବାଏ, ଲାଞ୍ଚ ମିଛ ଚୋବାଏ । ମୋତେ ଚାହିଁ ନେହୁରା ହେଲାପରି କହେ । ଆଦେଶ ଦେଇ ଜାଣେ ନାହିଁ । ହଜାରେ ନୁଙ୍ଗୁରା କାମ କରେ । ମୋତେ କହେ କମ୍ବଳ ଘୋଡ଼େଇବା ପାଇଁ । ମୁଁ ଘୋଡ଼ାଏ ଯଥାସମ୍ଭବ । ତାପରେ ଛାଡ଼ିଦିଏ, ଯାହା ହଜାର ହଉ । ସେ ପଦାରେ ପଡ଼ିଯାଏ । ବଦ୍‌ନାମ ମୁଣ୍ଡାଏ । ଖସିଯାଏ ସିଂହାସନରୁ । ଯା', ପାୱାର ପୁଣି ଯୋଉଠି ଥିଲା ସେଠିକି ଫେରିଆସେ ।

ମୁଁ କୋତାରେ ବୋତାମ ଚିପିଲେ ଅର୍ଦ୍ଦଳି ଆସି ଠିଆ ହୁଏ । କୋତାରେ ମୁଁ ଏ ଦେଶକୁ ମଡ଼େଇ ରଖେ । ହଲଚଲ ହବାକୁ ଦିଏ ନାହିଁ । ମୁଁ ସବୁ କରେ, କରାଏ । ବିଲ ପାଣି ଖଳାରେ ମଡ଼େଇ ଦିଏ, ଖଳା ପାଣି ବିଲରେ ମଡ଼େଇ ଦିଏ । ମୋତେ କେହି କିଛି କହି ପାରିବେ ନାହିଁ । ସବୁ ନିୟମ ପରା ମୋର । ଅଠା କୋଉଠି ଥିଲେ ମୋର ଅଧସ୍ତନମାନଙ୍କ ମୁଣ୍ଡରେ ବୋଳିଦିଏ । ସେମାନେ ବି ତାଲିମ୍ ପାଇଗଲେଣି । ସେମାନେ ତାଙ୍କ ଅଧସ୍ତନଙ୍କ ମୁଣ୍ଡକୁ ଅଠାହାଣ୍ଡି ଟେକି ଦିଅନ୍ତି । ଏମିତି ଚାଲେ । ଦେଶ ଗୋଟାଏ କ'ଣ ? ଗୋଟାଏ ବଜାର । କିଣା ବିକା ବଜାର । ହାକିମହୁକୁମାଙ୍କ ରଙ୍ଗଭୂମି । ମୋର ଅଧିକୃତ ରାଜ୍ୟ । ଏଇଟା ଗୋଟିଏ ଦୁର୍ବଳିଆ ଜାଗା । ଜୋର ଲଗାଇ ପାଦ ଥାପିଦେଲେ ଥରଥର ହଉଚି । ତା' ଅଣ୍ଡା ଉପରେ

ପାଦ, ତଣ୍ଟି ଉପରେ ହାତ ରଖି ତାକୁ ଶାସନ କରେ । କାଠ ଗରିଣ୍ଡାକୁ ସନ୍ତୁଷ୍ଟ କରି ପଦକ ପିନ୍ଧି ବୁଲୁଥାଏ । ମୁଁ ସବୁ ଜାଣେ । ମୁଁ ଯାହା ଜାଣେ ଆଉ କେହି ଜାଣନ୍ତି ନାହିଁ । ଗୋଟାକୁ ସାର୍ ସାର୍ କଲେ କୋଡ଼ିଏ ମୋତେ ସାର୍ ସାର୍ କହି ଗୋଡ଼ାନ୍ତି । ସେ ଗୋଟାକୁ ମୁଁ ଚିତା କାଟିଦିଏ । ଏ କୋଡ଼ିଏଙ୍କୁ ବି ଚିତା କାଟିଦିଏ । ମୁଁ ସତରେ ବ୍ରିଟିଶ ସରକାର ପାଇଁ ଯୋଗ୍ୟ । ଏ ସରକାରଟା ନେସେଡ଼ା ଚୋରଙ୍କ ସରକାର । ମୋ ପାଇଁ ଯୋଗ୍ୟ ନୁହେଁ । ଏଗୁଡ଼ାକ କାଲି ଫକୀରା ଥିଲେ । ପୁଣି କାଲି ଫକୀରା ହୋଇଯିବେ । ମୁଁ ମାଲିକ ଥିଲି ମାଲିକ ରହିବି । ମୁଁ ସାହେବ । ମୁଁ ମହାମହିମ । ମୋ ଠାଣିକୁ ଚାହିଁଥାଅ । ମୋ କଲମକୁ ଚାହିଁଥାଅ । ବଜ୍ଜି କେଡ଼େ ଲୋକ । ମୁଣ୍ଡ ହଉଚି ଠକ ଠକ । ମୁଁ ସେଇ ବଜ୍ଜି । ଓଡ଼ିଆକୁ ଇଂରାଜୀ କହି ବ୍ରିଟିଶ୍‌କୁ ଠକିଥିଲି । ଏବେବି ଓଡ଼ିଆକୁ ଇଂରାଜୀ କହି ଠକୁଛି । ଏବେ ବଢ଼ିଆ ଚାଲିଛି । ମୁଁ ଖୁସି । ମଝିରେ ମଝିରେ ସେ କାଠ ଗରିଣ୍ଡାଟାକୁ ସଲାମ ମାରିବାକୁ ଲାଜ ମାଡୁଚି । ତାକୁ କାନ୍ଧେଇଲା ବେଳେ ବଳଦଟାକୁ ଟେକିଲା ପରି ଭାରି ଲାଗୁଚି । ହେଲେ ତାକୁ ନ କାନ୍ଧେଇଲେ ଦେଶଟାକୁ କେମିତି କାନ୍ଧେଇବି ? ବ୍ରିଟିଶ ସାହେବମାନଙ୍କ ପରି ମୁଁ ବି ଏ ନେଟିଭଗୁଡ଼ାକୁ ବୁଝିପାରେ ନାହିଁ । ମୋ ପ୍ରାଇଭେଟ୍ ସେକ୍ରେଟାରୀ ସୁନ୍ଦରୀ ହେଲେ ତମର କ'ଣ ଗଲା ? ମୋ ଦପ୍ତରରେ ଦିନବେଳେ କାମ କଲି କି ରାତିରେ କାମ କଲି ତମର କ'ଣ ଗଲା ? ଛୋଟଲୋକ ଗୁଡ଼ାକ । ସେଥିପାଇଁ ବୁଦ୍ଧିଟା ବି ଛୋଟ । ବମ୍ବେର କମ୍ପାନି ମେନେଜର ମୋତେ ଭାବଦୋସ୍ତିରେ ଗୋଟାଏ ଗାଡ଼ି ପଠେଇ ଦେଲା । କ'ଣ ହେଲା ସେଇଠୁ ? ତା' ଫାଇଲ୍‌ଟା ଯଦି ସେଇଦିନ ଦସ୍ତଖତ ହୋଇଗଲା ତା' ସାଙ୍ଗରେ ଯାର କ'ଣ ସମ୍ପର୍କ ଅଛି ?

''ଆମେ ହେଲୁ ଇଣ୍ଟେଲେକ୍‌ଚୁଆଲ । ଯେଉଁଠି ବସେଇ ଦେଲେ ଆମେ ବାଜା ବଜେଇ ଦବୁ । ଜଙ୍ଗଲ ବିଭାଗ ହଉ କି ସହର ଉନ୍ନୟନ ହଉ, ମହୁଲି ବିଭାଗ ହଉ କି ଚାଉଳି ବିଭାଗ ହଉ ସବୁଠି ଚୂଡ଼ାନ୍ତ ଜ୍ଞାନ ଆମର। ଚୂଡ଼ାନ୍ତ ନିଷ୍ପତ୍ତି ଆମର। ରିଲାକ୍ସେସନ୍ ପାଇଁ କ୍ଲବ୍ ଯାଉ । ଗଲେ ଖିଆପିଆ ହୁଏ । ନାଚଗୀତ ହୁଏ । ହେବା କଥା। ଆମେ ରଜା ଲୋକ, ବିଳାସ ଆମ ଅଧିକାର । କିନ୍ତୁ ଗୁରୁ ଗାଜୁରୁ ଗାଜୁରୁ ହୁଅନ୍ତି। ସେଥିରୁ ଗୋଟାକୁ ଆଣି ତେଣ୍ଟେଇ ଦେଲେ ଅଷ୍ଟକ ସ୍ତୁତି ଲେଖି ତା ଆରଦିନ ହାଜର ହୋଇଥାଏ । ଆମେ ଚାହିଁଲେ କବି ଲେଖକ ହୋଇପାରିବୁ । ସେଥିରେ ବି ସମସ୍ତଙ୍କୁ ଟପିଯିବୁ । ସବୁଥିରେ ଟପ୍ କରିବା ଆମ ଅଭ୍ୟାସ । ଏଗୁଡ଼ାକ କିଛି ବୁଝନ୍ତି ନାହିଁ । ଖାଲି ପାଟି କରନ୍ତି । ମାରି ନେଇଗଲା, ଖାଇ ଦେଇଗଲା । ଟିକିଏ ମୁଣ୍ଡ ଖଟେଇଲେ ପୁରସ୍କାର ଦଶ କୋଡ଼ିଏ କି ଛାର କଥା । ଟିକିଏ କଲମ ଦବେଇଲେ

ବି'ଚାରିଟା କୋଠା କି ଛାର କଥା । ମୁଁ ମୋ ଯୋଗ୍ୟତା ଅନୁସାରେ ବଞ୍ଚିଛି । ସେଥିରେ ଯଦି ଲୋକେ ଉଚ୍ଛନ୍ନ ହେବାକୁ ଚାହିଁବେ, ଉଚ୍ଛନ୍ନ ହେବେ । ଦେଶ ହୀନ ଦରିଦ୍ର ହେବାକୁ ଚାହିଁବ, ହେବ । ମୁଁ ସେଥିରେ କ'ଣ କରି ପାରିବି ?

ଆହେ ସେଇଟା ସ୍ଲେଭ୍‌। ମାନେ କ୍ରୀତଦାସ । ଯଦି ବିଶ୍ୱାସ ହଉ ନାହିଁ, ଆମ ଢେଙ୍କିଆ ନେତା ଆଗରେ କେମିତି ପାଦ ଯୋଡ଼ି, ହାତ ଯୋଡ଼ି ସେ ଫାଇଲ ପେଶ୍ କରେ ଥରେ ଦେଖନ୍ତୁ । ସେଇଠୁ ବାହାରି ଆସିଲେ ମେଣ୍ଢା ପୁଣି ସିଂହ ଚମଡ଼ା ମଡ଼େଇ କେମିତି ଠାଣି କାଢ଼େ ଦେଖନ୍ତୁ । ଏଗୁଡ଼ାକ ବ୍ରିଟିଶ ଶାସନର ଫମ୍ପା ଖୋଳଗୁଡ଼ିଏ । ମଣିଷ ନୁହଁନ୍ତି । ସ୍ୱାଧୀନ ଭାରତର ଅସ୍ୱାଧୀନ ବୁରୋକ୍ରାଟସ୍ । ଏମାନେ ଦେଖି ଦେଖନ୍ତି ନାହିଁ । ଜାଣି ଜାଣନ୍ତି ନାହିଁ । ଦେଖିଲେ ଜାଣିଲେ ବି କହିବାର ସ୍ୱାଧୀନତା ଯାଙ୍କର ନାହିଁ । ସେ କି ଇଣ୍ଟେଲେକ୍‌ଚୁଆଲ ? କ'ଣ ସେ ପଢ଼ିଚି ? ତା' ବିଦ୍ୟା କେତେ ? ବିଏ ଯାଏ ପାସ୍ କଲେ ପରା ସେ ଯୋଗ୍ୟ ହୋଇଗଲା ଏ ଚାକିରି ପାଇଁ । ଏଇଟା ପରା ଚାକିରି ? ଚାକରର କ'ଣ ସ୍ୱାଧୀନତା ? ବିଏ ପଢୁଆଟାର କି ବିଦ୍ୟା, କି ବୁଦ୍ଧି । ତାକୁ ମୁଁ ଚାରିବର୍ଷ ପାଠ ପଢ଼େଇଚି, ଆଉ ଦଶବର୍ଷ ପଢ଼େଇଲେ ସେ ମଣିଷ ହବ । ମୁଁ ହଉଚି ବିଦ୍ୟାଗୁରୁ ଯାର, ଏ ନେତାର, ଏ ସମାଜର, ଏ ଦେଶର । ମୋତେ ଏମାନେ ଯାଉଣୁ ଆସୁଣୁ ଖାଲି ମୁଣ୍ଡିଆ ମାରିବା କଥା । ହେଲେ କେହି ଖାତିର କରୁନାହାଁନ୍ତି । ସେଥିପାଇଁ ଏ ସମସ୍ତଙ୍କର ଏ ଦୁର୍ଦ୍ଦଶା। ମୁଁ କୁଆଡ଼େ ନ ପଢ଼ି ପଢ଼ାଏ, ନବୁଝି ବୁଝାଏ, ନ ଦେଖି ଦେଖାଏ । ଏଗୁଡ଼ାକ ମୂର୍ଖ ଥିଲେ। ମୂର୍ଖ ରହିବେ ଚିରକାଳ । ଏତିକି ସେମାନେ ବୁଝିପାରୁନାହାଁନ୍ତି ଯେ ପଢ଼ା ସାରିଦେଲା ପରେ ପଢ଼େଇବା ଦାୟିତ୍ୱ ମୁଁ ନେଇଛି । ଏଣିକି ପଢ଼ିବି ଆଉ କ'ଣ ? କିଏ ଅଛି ମୋତେ ପୁଣି ପଢ଼େଇବେ ? ମୁଁ ପରା ଜ୍ଞାନ ବାରିଧି । ଯାହା ବିଦ୍ୟା ଅଛି ସେଇଟା ବାଣ୍ଟିଲେ ସରିବ ନାହିଁ । ଯାହା ଜାଣିଚି ତାକୁ ହିଁ ବିକି ଭାଙ୍ଗି ଦିହକ ଯାକ ବିତିଯିବ । ଆଜି ଭୂରିଶ୍ରବା ତ କାଲି ଉଚ୍ଚୈଃଶ୍ରବା । ଏତିକି କହି କହି ମୁଁ ପଣ୍ଡିତ । ସେମାନେ ଶୁଣି ଶୁଣି ପଣ୍ଡିତ । ଆଉ କ'ଣ ଦରକାର । ମୁଁ ତାଙ୍କୁ ଏ ଦେଶର ଇତିହାସ କହିଚି । କିନ୍ତୁ କହି ନାହିଁ ଅଶୋକ ସାଙ୍ଗରେ କୋଉ ରାଜା ଲଢ଼ିଥିଲା । କହି ନାହିଁ, କୋଉ ଖଣ୍ଡକ କଳିଙ୍ଗ ଆଉ କୋଉଟା ଉତ୍କଳ । କହି ନାହିଁ ଓଡ୍ର ଦେଶର ଉଦ୍‌ଡ଼ିଆନତନ୍ତ କ'ଣ । ମୁଁ କୁଆଡ଼େ ଏ ସବୁ କିଛି ଜାଣି ନାହିଁ । ମୁଁ ସବୁ ଜାଣିଚି କିନ୍ତୁ କହିବି ନାହିଁ । ମୁଁ ପରା ଖପରାଟାଏ ଦେଖିଲେ ସଭ୍ୟତାଟାଏ ବଖାଣିଯିବି । ଆଙ୍ଗୁଠି ଦେଖେଇ ଦେଲେ ବାହା ଗିଳିବା ଭଳି ବୁଦ୍ଧି ନେଇ ମୁଁ ଜନ୍ମିଛି । ମୁଁ ପଞ୍ଚରାତ୍ର, ଷଡ଼ଦର୍ଶନ, ସପ୍ତମାତୃକା ଠଉଁ ଚୌଷଠି ବନ୍ଧ ହଉ କି ଚୌଷଠି ଯୋଗିନୀ ହଉ ସବୁ ସାଧିଛି । ମୁଁ ସାହିତ୍ୟରେ

ବହୁବାଟ ଗମିଛି । ସାଇଜନ୍‌ରେ ପେପର ଦେଇ ତାଟକା କରି ଦେଇଛି । ଦେଶୀ ବିଦେଶୀ ପନ୍ଦରଟା ଭାଷା ଜାଣେ । ଶହେ ପୁସ୍ତକ ଲେଖିଛି । ଆଉ ଚାରିଶହ ଲେଖିବାକୁ ମସଲା ନେଇ ବସିଛି । ମୋତେ ଏମାନେ କଳି ପାରିବେ ନାହିଁ । ମୁଁ ତାଙ୍କୁ କହିଲି, ଆରେ ମୋ ବୋଲ ମାନ । ଦେଶଟାକୁ ଖାଲି ବ୍ୟାକରଣ ବାରବର୍ଷ ପଢ଼େଇ ଦିଅ । ଦେଖିବ ଅବସ୍ଥା ସୁଧୁରିଯିବ । ବ୍ୟାକରଣ ପଢ଼ିଲେ ବାକ୍ୟ ଶୁଦ୍ଧ, ଚିନ୍ତା ଶୁଦ୍ଧ, ଅନ୍ତଃକରଣ ଶୁଦ୍ଧ, ଆତ୍ମା ଶୁଦ୍ଧ । ସେତିକି ହୋଇଗଲେ ସତ୍ୟଯୁଗ ଆସିଯିବ । ସତ୍ୟଯୁଗ ଆସିଗଲେ ଦିବ୍ୟଲୋକ ହୋଇଯିବ ପୃଥିବୀ । ଅଭାବ ଅସୁବିଧା, ଦୁଃଖ ଦୁର୍ଦ୍ଦଶା କିଛି ରହିବ ନାହିଁ । ମୋ ଦେଶ ପୁଣି ଥରେ...

''ଚୋପ୍ !'' ଚଡ଼କ ପଡ଼ିଲା ପରି ଏ ଶବ୍ଦ ଶୁଣି ସମସ୍ତେ ନିରବିଗଲେ । ଧାଡ଼ିବାନ୍ଧି ନିଜ ନିଜ ପାଳିକୁ ଅପେକ୍ଷା କରିଥିବା ବହୁ ଚରିତ୍ର ମଞ୍ଚ ଉପରୁ ଓହ୍ଲେଇଗଲେ । ସ୍ୱଦେଶ ଚିନ୍ତା ଆଉ ଶୁଭିଲା ନାହିଁ । ମଝିରେ ମଝିରେ କାହିଁ ଦୂରରୁ କି ଭୂଇଁ ତଳୁ କେହି ବିଳାପ କଲାପରି ଶୁଭୁଥିଲା ।

ବୋଧହୁଏ ଦେଶ କାନ୍ଦୁଥିଲା ।



# 'ଜାଣେ ଅନୁଭବୀ ଅନୁଭବରେ'- ହୃଦାନନ୍ଦ ରାୟଙ୍କ ଆତ୍ମଚରିତ– ଏକ ବିହଙ୍ଗାବଲୋକନ

ଆତ୍ମଜୀବନୀ ଏକ ସ୍ୱତଃପ୍ରବୃତ୍ତ ସତ୍ୟପାଠ । ଆତ୍ମାପୁରୁଷଙ୍କୁ ସାକ୍ଷୀ ରଖି ଅତୀତର ଆଲୋକ ଅନ୍ଧାର ଭିତରୁ ସ୍ମୃତିଚିତ୍ରମାନଙ୍କୁ ମଣିମାଳା ପରି କାଳକ୍ରମରେ ସଜ୍ଜିତ କରିଦେଲେ ତାହା ହୋଇଯାଏ ସଂପୃକ୍ତ ବ୍ୟକ୍ତିର ଜୀବନାଲେଖ୍ୟ । ଅତୀତକୁ ତ ଆଉଥରେ ବଞ୍ଚିହୁଏ ନାହିଁ, କିନ୍ତୁ ଭାଷାରେ ବଖାଣିଗଲେ, ଅତୀତ ପୁନର୍ଗଠିତ ହୋଇଯାଏ । ଏଭଳି ଏକ ଉଦ୍ଘାଟିତ ରାଜ୍ୟରେ ପ୍ରବେଶ କଲାବେଳେ ଯେଉଁ ପ୍ରଥମ ଓ ପ୍ରଧାନ ସର୍ତ୍ତ ପୂରଣ କରିବାକୁ ପଡ଼େ ତାହା ହେଲା Willing suspension of disbelief ବା ଜାଣିଶୁଣି ସ୍ୱେଚ୍ଛାରେ ନିଜର ଅବିଶ୍ୱାସକୁ ନିଲମ୍ବିତ କରି ରଖିବା । କାରଣ ଆତ୍ମଜୀବନୀରେ ବର୍ଣ୍ଣିତ ଘଟଣାର ପ୍ରାମାଣିକତା ଥିଲେ ସୁଦ୍ଧା ଅନୁଭବ ଉପଲବ୍ଧି, ଦୁଃଖ ସୁଖ ସଂଘର୍ଷରେ ପାରି ହେବା ବେଳର ମନସ୍ତାତ୍ତ୍ୱିକ ଆନ୍ଦୋଳନ ଓ ଅଲୌକିକ କିମ୍ବା ପରଲୌକିକ ସଂଘାତ ପାଇଁ କୌଣସି ପ୍ରମାଣ ନାହିଁ । ଏଣୁ ସତ୍ୟପାଠ କଲାପରେ କେବଳ Benid Crua ଙ୍କ ଭଳି ଲେଖକ କହିପାରନ୍ତି– "This is my world take it or leave it". ଏହା ହେଲା ମୋର ପୃଥିବୀ କେବଳ ମୋର ଜଗତ୍, ତୁମେ ତାକୁ ଗ୍ରହଣ କରିପାର ନ କରିପାର । ନ କହି କୁହାଯାଏ, ସେଥିରେ ମୋର କିଛି ଯାଏ ଆସେ ନାହିଁ। ମୋର ସତ୍ୟପାଠ ସରିଗଲା। ତେଣିକି ଆପଣଙ୍କୁ ସେଥିରେ ସତ୍ୟ ଦେଖାଗଲେ ଭଲ ମିଥ୍ୟା ଦେଖାଗଲେ ମଧ ମୋର କିଛି କରିବାର ନାହିଁ । ସେହିଭଳି କେତେକଙ୍କ ପାଇଁ ଜଗତ ସତ୍ୟ, ଆଉ କେତେକଙ୍କ ପାଇଁ ଜଗତ୍ ମିଥ୍ୟା । ସେଥିରେ ଜଗତ୍କର୍ତ୍ତାଙ୍କ କ'ଣ ଯାଏ-ଆସେ ! କବି, କଥାକାର କଳାକାର ସ୍ଥପତି ନିଜ ନିଜ ମାଧ୍ୟମରେ ନିଜ ନିଜ ଢ଼ଙ୍ଗରେ ନିଜକୁ ହିଁ ପ୍ରକାଶିତ କରୁଥାନ୍ତି । ନିରବ ନିଶ୍ଚଳ ବସିଥିବା ବ୍ୟକ୍ତିଟିଏ ସୁଦ୍ଧା ଆତ୍ମପ୍ରକାଶ କରୁଥାଏ ନିରବତାରେ ଓ ନିଶ୍ଚଳତାରେ। ଏଣୁ ଭାଷାର ବିବିଧ ବିଚିତ୍ରତା ସତ୍ତ୍ୱେ, କଳ୍ପନାର ଅତିରଂଜନ ସତ୍ତ୍ୱେ କଥାକାର ନିଜ କଥା ହିଁ ଲେଖୁଥାଏ । ନିଜର ବହୁବିଧ ରୂପ, ଗୁଣ ମାନସିକତାକୁ ହିଁ ବର୍ଣ୍ଣୁଥାଏ ଚରିତ୍ର ଓ ଘଟଣାମାନଙ୍କରେ । ସେ ନିଜେ ଲୁଚି ରହିଥାଏ ଗୋଟାଏ ଆବରଣର ଅନ୍ତୁଆଳରେ। କିନ୍ତୁ ଆତ୍ମଜୀବନୀରେ ଏ ଆଢୁଆଳ ନଥାଏ । ଲେଖକ ସର୍ବସାଧାରଣରେ ଘୋଷଣା

କରେ ଯେ ତା'ର ବୟାନ ଏକ ନିରାବରଣ ଆତ୍ମଚରିତ । ସେ ସତ୍ୟପାଠ କରି କହେ, 'ମୁଁ' ଯାହା କହୁଛି ସତ କହୁଛି । ସତ୍ୟ ବ୍ୟତିରେକ ଆଉ କିଛି କହୁନାହିଁ ।''

ଏଠି ସତ୍ୟର ଅର୍ଥ, ତାକୁ ଯାହା ସତ୍ୟ ରୂପେ ଦେଖାଗଲା ସେତିକି । ଯେତିକି ଦେଖାଗଲା ସେତିକି । କହିବାର ଅର୍ଥ ହେଲା ଯାହା ପାରିବି, ଯେତିକ ଯେଉଁ ଢ଼ଙ୍ଗରେ ପାରିବି କହିବି । ଶୁଣିବାକୁ ଅବଧାନ ହେଉ ।

ଏଣୁ ଆମ ସମୟର ବିଶିଷ୍ଟ ବିଦ୍ୱାନ, ବିରଳ ବାକ୍‌ଚତୁର ଏବଂ ପ୍ରିୟଦର୍ଶୀ ସଜ୍ଜନ କର୍ଣ୍ଣଧାରକ ହୃଦାନନ୍ଦ ରାୟଙ୍କ ପ୍ରକାଶଭଙ୍ଗୀ ସହିତ ଭାଷା ବିନ୍ୟାସ ଓ ପ୍ରସଙ୍ଗ ଅନୁଶୀଳନ ସହିତ ଭାବ ପଲ୍ଲବନ ବିଷୟରେ ପରିଚିତ ପାଠକ ତାଙ୍କ ଆତ୍ମଜୀବନୀ ସମ୍ବଳିତ ଗ୍ରନ୍ଥ 'ଜାଣେ ଅନୁଭୀ ଅନୁଭବରେ' ପାଠକରି ତା'ର ବ୍ୟାପକତା ଓ ଗଭୀରତାକୁ ଉପଲବ୍ଧି କରିପାରେ । ସେ ଜାଣେ ହୃଦାନନ୍ଦ ରାୟ ଏହିପରି କହନ୍ତି । ତାଙ୍କ ଭାଷା ଏହିପରି ଭଙ୍ଗୀ ଏହିପରି, ଏହା ଅସ୍ୱାଭାବିକ ନୁହେଁ ବରଂ ଅସାଧାରଣ । ଯାହା ବିଷୟରେ କହନ୍ତି ସେ ବ୍ୟକ୍ତି ହେଉ, ବସ୍ତୁ ହେଉ ବା ଅନୁଷ୍ଠାନ ତାହା ସ୍ୱତଃ ମଣ୍ଡିତ ହୋଇଯାଏ । ତାଙ୍କ ଢ଼ଙ୍ଗ ସେଇଆ । ପଲ୍ଲବିତ, ପୁଷ୍ପିତ କରି କହିବା ତାଙ୍କ ସାମଗ୍ରିକ ବ୍ୟକ୍ତିତ୍ୱର ସ୍ୱଲକ୍ଷଣ ।

ଏଣୁ ଯଦି ତାଙ୍କ ଆଈ 'ବାତ୍ସଲ୍ୟ ମମତା ଘେନି' ଧୂନରେ ଗାଈକୁ ଡାକନ୍ତି ଏବଂ ସେ ଠିଆହୋଇ ଢାଳେ କ୍ଷୀର ଦିଏ ହୃଦାନନ୍ଦ ପିଇବା ପାଇଁ, କାହାକୁ କାହାକୁ ଅତିରଞ୍ଜିତ ବୋଧ ହୋଇପାରେ । କିନ୍ତୁ ତା' ବୋଲି ତାହା ମିଥ୍ୟା କାହିଁକି ହେବ ? ଏଭଳି ପଦେ ମିଛ କହିବା ପଛରେ କ'ଣ ଅଭିସନ୍ଧି ଥାଇପାରେ ? କାହାକୁ ଆଚମ୍ବିତ ବା ଆମୋଦିତ କରିବାକୁ କ'ଣ ଏପରି କୁହାଗଲା ? କେଉଁ ଲାଭ ଆଶାରେ ? ଏଣୁ ଏ ଘଟଣାକୁ ଅସଂଖ୍ୟାସଂଖ୍ୟ ସାଧାରଣ, ନିଷ୍ପ୍ରଭ, ଘଟଣା ଭିତରେ ସ୍ୱୀକାର କରିନେଲେ କ୍ଷତି କ'ଣ ? ଅବିଶ୍ୱାସକୁ ରୋଧି ଏହାକୁ ଏକ ଶୋଭନ ବ୍ୟତିକ୍ରମ ବୋଲି ଗ୍ରହଣ କରିନେଲେ କ୍ଷତି କ'ଣ ?

ତାଙ୍କ ଜୀବନର ଆଉ ଗୋଟିଏ ଘଟଣା ବିଚାରକୁ ନିଆଯାଇପାରେ। ସ୍ଥାନ ବାରିପଦା, ସମୟ ୧୯୬୩ । ସେ ସେଇଦିନ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜକୁ ବଦଳିରେ ଆସି ଯୋଗ ଦେଇଥାନ୍ତି । ମୟୂରଭଞ୍ଜ ରାଜାଙ୍କ ଉଆସରେ କଲେଜ ଚାଲୁଥାଏ । ଅଧ୍ୟାପକମାନଙ୍କ ବିଶ୍ରାମ କକ୍ଷରେ ସେ ବସିଥାନ୍ତି । ସେଇ କକ୍ଷକୁ ତଳମହଲାରେ ଥିବା ଲାଇବ୍ରେରୀରୁ ପାହାଚରେ ଉଠି ଆସିଲେ ଜଣେ ଅଧ୍ୟାପକ । ଟେବୁଲ ଉପରେ ବହି ଥୋଇଦେଇ ହୃଦାନନ୍ଦ ରାୟଙ୍କୁ ଦେଖିବା ମାତ୍ରେ ବାହୁ ପ୍ରସାରି 'ଆହେ ବନ୍ଧୁ' ବୋଲି ସମ୍ବୋଧନ କଲେ। ଏବଂ ତଦ୍ରୂପ ଅନ୍ତରଙ୍ଗତା ପ୍ରକାଶ କରି

ଉଠିଆସିଲେ ହୃଦାନନ୍ଦ ରାୟ । ଉଭୟେ ପରସ୍ପରକୁ ଆଲିଙ୍ଗନ କରିବାରୁ ସେ କକ୍ଷରେ ଉପସ୍ଥିତ ଥିବା ଅନ୍ୟାନ୍ୟ ଅଧ୍ୟାପକମାନେ ବୁଝିଗଲେ ଯେ ନବାଗତ ହୃଦାନନ୍ଦଙ୍କର ବହୁକାଳର ଘନିଷ୍ଠ ବନ୍ଧୁ ହେଉଛନ୍ତି ଅଧ୍ୟାପକ ଚନ୍ଦ୍ରଶେଖର ରଥ । ସେପରି ଆଚରଣର ଅନ୍ୟ କୌଣସି ଅର୍ଥ କରାଯାଇ ନପାରେ । କିନ୍ତୁ, ପରମୁହୂର୍ତ୍ତରେ ସେ ଉଭୟେ ହଠାତ୍ ସଚେତନ ହେଲେ ଯେ ସେ ଦୁହେଁ କେହି କାହାକୁ ଜାଣନ୍ତି ନାହିଁ । ଜୀବନରେ ତାହା ହିଁ ତାଙ୍କର ପ୍ରଥମ ସାକ୍ଷାତ୍ । ଉଭୟେ ନିଶ୍ଚୟ ଚକିତ, ଅଭିଭୂତ ଓ ଅତ୍ୟନ୍ତ ଅପ୍ରତିଭ ବୋଧ କରିବା ସ୍ୱାଭାବିକ । ଏ ବାସ୍ତବତାକୁ ସେମାନେ ସହଜରେ ଗ୍ରହଣ କରିପାରୁନଥିଲେ, ବୁଝିବା ତ ଦୂରର କଥା ।

ଦୁହେଁ ସେତେବେଳକୁ ବେଶ୍ ପାକଳ ମଣିଷ । ଖୁବ୍ ସଂଯତ ଏବଂ ଭଦ୍ର । କେହି କାହାକୁ ନଦେଖି ନଜାଣି କାହିଁକି ଓ କେମିତି ସେଭଳି ଆଚରଣ କଲେ ତାହା ଉଭୟଙ୍କୁ ବିସ୍ମିତ କରିଥିଲା, ଏବଂ ଅଦ୍ୟାବଧି ବିସ୍ମିତ କରୁଛି । ମୁଁ ସ୍ୱୟଂ ସେଇ ଅପର ବ୍ୟକ୍ତି ଚନ୍ଦ୍ରଶେଖର ରଥ ଯେ ସେହି ଅତ୍ୟନ୍ତ ବିସ୍ମୟକର ଓ ନାଟକୀୟ ଘଟଣାର ସାକ୍ଷୀ ତଥା ଭୁକ୍ତଭୋଗୀ । ହୃଦାନନ୍ଦ ରାୟଙ୍କ ବର୍ଣ୍ଣନା ସମ୍ପୂର୍ଣ୍ଣ ସତ୍ୟ । ମୁଁ ସେଥିପାଇଁ ଯେ କୌଣସି ଶପଥପାଠ କରି ସାକ୍ଷ୍ୟ ଦେଇପାରେ । ଯେଉଁମାନେ ଅତିମାତ୍ରାରେ ବାସ୍ତବବାଦୀ ସେମାନେ ଏହାକୁ କପୋଳକଳ୍ପିତ ବୋଲି ଅଭିଯୋଗ କରିପାରନ୍ତି, ସମପରିମାଣରେ ମୋର ସାକ୍ଷ୍ୟ ପ୍ରମାଣକୁ ମଧ୍ୟ ସନ୍ଦେହ କରିପାରନ୍ତି । କାରଣ ଏହା ଏପରି ଘଟେ ନାହିଁ, ଏଣୁ ଅବାସ୍ତବ । ମୁଁ ମୋର ପ୍ରତ୍ୟକ୍ଷ ସମ୍ପୃକ୍ତି ଓ ଅନୁଭବ ସତ୍ତ୍ୱେ ତାଙ୍କ ଯୁକ୍ତିରୁ ଏତିକି ଅନ୍ତତଃ ସ୍ୱୀକାର କରିବି ଯେ ଘଟନାଟି ଆଦୌ ସ୍ୱାଭାବିକ ନୁହେଁ । ତାହା ଅସ୍ୱାଭାବିକ, ଅସାଧାରଣ, ହୋଇପାରେ ଅଲୌକିକ । ଅଲୌକିକ ବା ଅସାଧାରଣ, ଦୁର୍ବୋଧ ହୋଇପାରେ କାରଣ ତାକୁ ସାଧାରଣ ଯୁକ୍ତିରେ ଓ ଅନୁଭବରେ ବୁଝିହେଉନାହିଁ । କିନ୍ତୁ ତାହା ମିଥ୍ୟା ନୁହେଁ। ଏଭଳି ଭାବ ବିନିମୟ ପରେ ଆମେ ନିଜେନିଜର ପରିଚୟ ପ୍ରକାଶ କଲୁ। ଆମେ ମନେକଲୁ ଚିହ୍ନିବା ପୂର୍ବରୁ କେଉଁ ହଜିଲା ବନ୍ଧୁତା କ'ଣ ସତେ ବନ୍ଧ ଉହାଡ଼ରେ ରହିଥିଲା ଓ ସାକ୍ଷାତ ମାତ୍ରକେ ବନ୍ଧ ଭାଙ୍ଗି ବନ୍ୟା ପରି ବହିଗଲା । ଏହା ଅତିଶୟୋକ୍ତି ନୁହେଁ କି ଅତିରଞ୍ଜିତ ନୁହେଁ । ଏଭଳି ସତ୍ୟ ଯେ ସମ୍ଭବ ତାହା ଆମ ଦୁହିଁଙ୍କର ମଧ୍ୟ ବିଶ୍ୱାସ ଭିତରେ ନଥିଲା ।

ଏବେ ମଧ୍ୟ ଏ ଘଟନା ଆମ ଉଭୟଙ୍କ ପାଇଁ ଏକ ବିସ୍ମୟ। ନିରେଖି ଚାହିଁ ପ୍ରାୟ ସମସ୍ତଙ୍କ ଜୀବନରେ କେବେ କେମିତି ଏଭଳି ଅଦ୍ଭୁତର ସଂଘାତ ଘଟିଥାଏ। ତାକୁ ଅବାସ୍ତବ ଏଣୁ ମିଥ୍ୟା ବୋଲି ଅସ୍ୱୀକାର କଲେ ଜୀବନ ମହାର୍ଘ ଐଶ୍ୱର୍ଯ୍ୟ ଓ ବିସ୍ତାରକୁ ଅସ୍ୱୀକାର କଲା ପରି ହେବ।

ଏଭ ପର୍ଯ୍ୟାୟରେ ଆଉ ଅନେକ ଘଟନା ହୃଦାନନ୍ଦ ରାୟଙ୍କ ଏ ଆତ୍ମଜୀବନୀ ଗ୍ରନ୍ଥରେ ଲିପିବଦ୍ଧ ହୋଇଛି । କାଶୀରେ ଗଙ୍ଗା କୂଳରେ ଆଚାର୍ଯ୍ୟ ଶଙ୍କରଙ୍କର ଜୟପୁରରେ ଯିଶୁଖ୍ରୀଷ୍ଟଙ୍କର ଉପସ୍ଥିତି ଅନୁଭବ କରିବା ଏକ ଅସାଧାରଣ ମାନସିକ ସ୍ଥିତିରେ ହୁଏତ ସମ୍ଭବ ନୁହେଁ, କିନ୍ତୁ ତାହା ଭ୍ରମ ନୁହେଁ । ପ୍ରଚଳିତ ରୀତିରେ ତାହା ESP (Extra Sensory Perception) ବା ଅତୀନ୍ଦ୍ରିୟ ଅନୁଭବ ହୋଇପାରେ । କିନ୍ତୁ ମିଥ୍ୟା ନୁହେଁ । ପ୍ରତ୍ୟେକ ବ୍ୟକ୍ତି ଅନ୍ୟ ବ୍ୟକ୍ତିଠାରୁ ଭିନ୍ନ ଓ ସେ ଦୃଷ୍ଟିରୁ ଓ ସେତିକି ପରିମାଣରେ ଅନନ୍ୟ ଓ ଅସାଧାରଣ । ସାଧାରଣ ବୋଲାଉଥିବା କୌଣସି ବ୍ୟକ୍ତିବିଶେଷ ନାହିଁ। କାରଣ ଏକେ ଏକେ ସମସ୍ତେ କିଛି ମାତ୍ରାରେ ଅସାଧାରଣ। ଚେହେରାରେ, ଦୃଷ୍ଟିଭଙ୍ଗୀରେ, ମାନସିକତାରେ ଏବଂ ଅନୁଭବରେ– ଏ ଅସାଧାରଣତ୍ୱ କାହା ପାଖରେ ଟିକିଏ ବେଶି କାହା ପାଖରେ କମ୍ । ଜାଣେ ଅନୁଭବୀ ଅନୁଭବରେ ଗ୍ରନ୍ଥଟି ଏହିପରି ଏକ ଅସାଧାରଣ ବ୍ୟକ୍ତିତ୍ୱର ଅସାଧାରଣ ଆତ୍ମଲିପି ।

ହୁଏତ ବର୍ଣ୍ଣିତ ଘଟଣା ସାଧାରଣ ହୋଇପାରେ କିନ୍ତୁ ବର୍ଣ୍ଣନା ପରିପାଟି ଅସାଧାରଣ । ତାକୁ ବହୁବର୍ଷ ବ୍ୟବଧାନରୁ ଦେଖି ଆକଳନ କଲାବେଳେ ହୃଦାନନ୍ଦ ରାୟଙ୍କର ବହୁକର୍ଷିତ ରୀତିର ମନୋଭୂମିରୁ ସ୍ୱତଃ ଉଦ୍‌ଗତ ବିବିଧ ଆନୁଷଙ୍ଗିକ ବେଶବିନ୍ୟାସରେ ତାହା ଅଳଂକୃତ ହୋଇଯାଇଛି । ଏଣୁ ବାରିପଦାରେ ପହଞ୍ଚିବା ପୂର୍ବରୁ ମୟୂରଭଞ୍ଜର ଇତିହାସ, ଭୂତତ୍ତ୍ୱରେ ବିଭବ ସମ୍ବଳିତ ବିସ୍ତୃତ ପୃଷ୍ଠଭୂମି ରଚିତ ହୋଇଯାଇଛି । କେବଳ ବିବରଣୀ ହୋଇଥିଲେ ହୁଏତ ସାଧାରଣ ହୋଇଥାନ୍ତା । ଆଭରଣ ମଣ୍ଡିତ ହେବାରୁ ତାହା ଅସାଧାରଣ ।

ଏଭଳି ପ୍ରକାଶଭଙ୍ଗୀ ହୃଦାନନ୍ଦ ରାୟଙ୍କ ନିଜର ଶୈଳୀ, ତାଙ୍କର ମଣ୍ଡନଧର୍ମୀ ବ୍ୟକ୍ତିତ୍ୱ । କଥା ପ୍ରସଙ୍ଗରେ ଜଣେ ବିଦଗ୍ଧ ଶ୍ରୋତା ଏକଦା କହିଥିଲେ ଏବଂ ତାହା ସତ୍ୟ ଯେ ହୃଦାନନ୍ଦ ରାୟଙ୍କ ଜିହ୍ୱାଗ୍ରେ ବାଗ୍‌ଦେବୀ ନର୍ତ୍ତନରତା । ଭାଷାର ଔଜ୍ଜ୍ୱଲ୍ୟ, ଶାଳୀନତା, ବିଚିତ୍ରତା, ଭାବର ବିସ୍ଫୋରଣ, ଅବଲୀଳାକ୍ରମେ ନାନା ରାଜ୍ୟ ବିକ୍ରମି ଆସିବାର ଲୀଳା ବିଶ୍ୱାସ ତାଙ୍କର ଅସାଧାରଣ ବାଗ୍ମୀତା–ହୁଏତ ପ୍ରଗଳ୍ଭତାର ବୈଶିଷ୍ଟ୍ୟ। ମିତଂ ଚ ସାରସ ପାଇଁ ନବାକ୍ଷରୀ ଭାଗବତର ସରଳତା ଓ ଗଭୀରତା ତାଙ୍କ ଢଙ୍ଗ ନୁହେଁ । ଭଞ୍ଜୀୟ ଛଟା, ଠାଣି ଓ ରାଜକୀୟତା ତାଙ୍କ ବଖାଣରେ ସର୍ବଦା ବିଦ୍ୟମାନ। ବିଚିତ୍ର କବିତ୍ୱବନ୍ଧେ ବୁଦ୍ଧି ପ୍ରସାରିବା ତାଙ୍କ କଥା କହିବାର ଶୈଳୀ, ଏ ଗ୍ରନ୍ଥଟିରେ ମଧ୍ୟ ଆମୂଳଚୂଳ ପ୍ରକଟିତ ଗ୍ରନ୍ଥର ପୁରୀ ଅଧ୍ୟାୟରେ ହୃଦାନନ୍ଦବାବୁଙ୍କ ଭାବପ୍ରବଣତା ସବୁଠାରୁ ଅଧିକ ସ୍ପଷ୍ଟ । ବନ୍ୟାପ୍ରବାହ ପରି ବାସ୍ତବ ଅବାସ୍ତବ, ଲୌକିକ ଅଲୌକିକ ଘଟନା, ଚରିତ୍ର, ଅନୁଭବକୁ ନେଇ ତାଙ୍କ ବର୍ଣ୍ଣନାର ପ୍ରକାଶଧାରା ସବୁଠାରୁ ଅଧିକ ପ୍ରାଣବନ୍ତ

ସ୍ୱତଃସ୍ଫୂର୍ତ୍ତ ଓ ପାଠକକୁ ତଡ଼ିନେଲା ଭଳି ଶକ୍ତିଶାଳୀ । ପୁରୀରେ ମହାବୀରପୀଠରେ ପ୍ରସାଦ ସେବନ, ଝଡ଼ ତୋଫାନ, ରାଧାମୋହନ ବାବୁଙ୍କ ଭୋଜି ନଖାଇବାକୁ ବ୍ରତ- ଏସବୁ ଘଟନା; ସବୁ ଲୌକିକ ଓ ସାଧାରଣ । କିନ୍ତୁ ମହାବୀର ଆକାଶରେ ପ୍ରକଟ ହେବା, ପୀଠ ଉପରୁ କେବଳ ଝଡ଼ ଘୁଞ୍ଚିଯିବା, ରାଧାମୋହନବାବୁଙ୍କ ବିହ୍ୱଳ ଭାବ– ଏ ସମସ୍ତ ଅଲୌକିକ ଓ ଅସାଧାରଣ । ସମୁଦ୍ରରେ ତୋଫାନ ଉଠିବା, ନୋଳିଆମାନେ ଭାସିଆସୁଥିବା ପଦାର୍ଥକୁ ଉଦ୍ଧାର କରିବା ଓ ସେ ପଦାର୍ଥଟି ଏକ ବୃକ୍ଷ ହୋଇଥିବା ଘଟନା । କିନ୍ତୁ ଦଳପତିର ଆଦେଶରେ ଯୁବକ ନୋଳିଆମାନେ ସମୁଦ୍ରକୁ ପଶିବା ସହିତ ସେନାବାହିନୀରେ ସେନାପତି ଓ ତରୁଣ ଯୋଦ୍ଧାଙ୍କ ପ୍ରକାଶ, କୁଳପତିଙ୍କ ନିର୍ଦ୍ଦେଶରେ ତରୁଣ ବିଦ୍ୟାର୍ଥୀମାନେ ଜ୍ଞାନସମୁଦ୍ରରେ ପ୍ରବେଶ କରିବାର ଉଦାହରଣ ଭାସିଆସିଥିବା ବୃକ୍ଷରେ ଇନ୍ଦ୍ରବାଗ୍ମିଙ୍କ କିମ୍ବଦନ୍ତି ସହିତ ବାଙ୍କିମୁହାଣରେ ଦାରୁରୂପୀ ପରଂବ୍ରହ୍ମ ଲାଗିବା ଉପାଖ୍ୟାନରେ ଅଭିଭୂତ ହେବା– ଏ ସମସ୍ତ ଅସାଧାରଣ ଭାବବିଳାସ, କାବ୍ୟିକ, ବାରବିଳାସ ଶଢର ଡେଣା ଭିତରେ ସାତପାବଚ୍ଛ ପାଖରେ କେହିଜଣ ଉତ୍ତର ଭାରତୀୟ ଯାତ୍ରୀ ଠିଆହୋଇ ନଡ଼ିଆ ଖାଇବା ଘଟନା, କିନ୍ତୁ ନଡ଼ିଆ ଖୁଆଉଥିବା ବ୍ୟକ୍ତିର ସ୍ୱପ୍ନ ସାକାର କରିବାକୁ ପ୍ରଭୁ ଜଗନ୍ନାଥ ସେ ରୂପରେ ଉକ୍ତ ମନୋବାଞ୍ଛା ପୂର୍ଣ୍ଣକରିବା ଅଲୌକିକ ।

ଏପରି ବିବିଧ ଭୂମିରୁ ଆହରିତ ବିବିଧ ଉପାଦନକୁ ଏକତ୍ର ପରିବେଷଣ କଲାବେଳେ ବୋଧହୁଏ ବାଗ୍ମୀ ହୃଦାନନ୍ଦ ରାୟଙ୍କ ବିମୁଗ୍ଧ ଶ୍ରୋତା ପରି ତାଙ୍କ ପାଠକବୃନ୍ଦ ମଧ ତାଙ୍କୁ ସ୍ୱଚ୍ଛନ୍ଦରେ ଢୋକିଯିବେ ବୋଲି ବୋଧହୁଏ ସରଳବିଶ୍ୱାସରେ ଓ ଭାବାବେଶରେ ସେ ଲେଖିଯାଇଛନ୍ତି । ଶ୍ରୋତାଙ୍କ ଗହଣରେ ଆମୋଦିତ ଅଥଚ ଅବିଶ୍ୱାସରେ ଭ୍ରୂକୁଞ୍ଚନ କରୁଥିବା ସଂଶୟାତ୍ମା ନିଶ୍ଚୟ ଥିଲେ । ପାଠକ ସମ୍ପ୍ରଦାୟ କିନ୍ତୁ ଆହୁରି ସ୍ୱଚ୍ଛନ୍ଦ ଓ ସୁପ୍ରସାରିତ ଦେଶକାଳରେ । ତାଙ୍କ ଗହଣରେ ଭାକ୍ତିକ ମିଥ୍ୟାର ଆରୋପ କରୁଥିବା ବ୍ୟକ୍ତିଙ୍କ ସଂଖ୍ୟା ନିଶ୍ଚୟ ଅଧିକ ହେବା ସ୍ୱାଭାବିକ ।

ଲେଖକ ନିଜ ଭାବ ଓ ଭାଷାରାଜ୍ୟରେ ନିରଙ୍କୁଶ ସମ୍ରାଟ ପରି ସ୍ୱାଧୀନ । କିନ୍ତୁ ଭାଷାମାଧମରେ ଭାବାପ୍ରକଟ ହେବା ପରେ, ଲେଖକର ପ୍ରାଣସ୍ପନ୍ଦନକୁ ଧାରଣ କରିଥିବା ସତ୍ତ୍ୱେ, ଲେଖା ଲେଖକଠାରୁ ସ୍ୱତନ୍ତ୍ର ହୋଇଯିବା ମୁହୂର୍ତ୍ତରୁ ତାକୁ ସ୍ୱୀକାର କରିବା, ନକାରିବା, ମାନିବା ନମାନିବା ପାଇଁ ପାଠକର ମଧ ସମପରିମାଣରେ ସ୍ୱାଧିକାର ଓ ସ୍ୱାଧୀନତା ଅବଶ୍ୟ ସ୍ୱୀକାର୍ଯ୍ୟ । ଲେଖକ ପାଠକକୁ ହାତଧରି ତା'ର ରାଜ୍ୟକୁ ପାଛୋଟି ନେବାକୁ ଚାହେଁ । କିନ୍ତୁ ସେଥିପାଇଁ ରାଜି ହେବା ନହେବା ପାଠକର ମର୍ଜି । ସେ ତା'

ମାନଦଣ୍ଡରେ, ତା' ଢଙ୍ଗରେ ଲେଖାକୁ ଦେଖିବ, ମାପିବ, ମୂଲ୍ୟାଙ୍କନ କରିବ। ଏଣୁ ଆଶା କରାଯାଇଥାଏ, ଯେ ସମାନଧର୍ମା, ସହୃଦୟ, ସାମାଜିକ ବିଦଗ୍ଧ ପାଠକଟିଏ ଅସନ୍ଦିଗ୍ଧମନା, ରସିକ, ସଜ୍ଜନ ପରମତସହିଷ୍ଣୁ ସୁହୃତ୍‌ଟିଏ ପାଇବା ଲେଖକ ପାଇଁ ପରମ ସୌଭାଗ୍ୟ । ସେହିପରି ସପ୍ତଲୋକ, ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ, ଆକାଶ ପାତାଳରେ ଅକଳନୀୟ ଅନିର୍ବଚନୀୟ, ଭାବ, ଅନୁଭବର ଐଶ୍ୱର୍ଯ୍ୟରେ ଆଶ୍ଚର୍ଯ୍ୟଚକିତ, ମୁଗ୍ଧ, ଉଦ୍ଭାସିତ, କୃତାର୍ଥ କରାଇପାରୁଥିବା ବ୍ୟାସଟିଏ ପାଇବା, ପାଠକ ପାଇଁ ମଧ୍ୟ ପରମ ସୌଭାଗ୍ୟ। ଲେଖକ ତେଣିକି କହିପାରିବା "ବିପୁଳା ପୃଥିବୀ ଓ ନିରବଧି କାଳରେ କେହିହେଲେ ତ ସମାନଧର୍ମା ଜନ୍ମିଲା ମୋ' ସହିତ ଏକାତ୍ମ ହେବାପାଇଁ । ପାଠକ କହିପାରିବେ ଅହୋଭାଗ୍ୟ, ବିସ୍ମୟୋ ଯେ ମହାନ୍ ରାଜନ୍ ହୃଷ୍ୟାନ ଚ ମୁହୁର୍ମୁହୁଃ।

ଆକାଶରେ, ପବନରେ, ଜଳତରଙ୍ଗରେ ବିଶ୍ୱାସ ରଖି ପାଲଟଣା ନାଆ ମେଲିଦେଲା ପରି, ସଂଶୟ ବୃତ୍ତିକୁ କିଛିକାଳ ନିଲମ୍ବିତ ରଖି, ଜୀବନୀ, ଆତ୍ମଜୀବନୀ, ବିବିଧ ବର୍ଗ, ଅବର୍ଗର ଯାବତୀୟ ସଂଜ୍ଞା ଜାଲରୁ ସାମାନ୍ୟ ମୁକ୍ତ ହୋଇ ରସାସ୍ୱାଦ କରି କରି ଯଦି ଜଣେ ଏ ଗ୍ରନ୍ଥଟିକୁ ଆମୂଳଚୂଳ, ଅପ୍ରତିରୋଧ ଯୋଗରେ ପଢ଼ିଯାନ୍ତି ତେବେ ସେ ଗଭୀର ଉଲ୍ଲାସ ଲଭିବେ ବୋଲି ମୋର ବ୍ୟକ୍ତିଗତ ଅନୁଭବସିଦ୍ଧ ମତ।

## (ଖ)

'ପୋଥି' ଦେଖିଲେ ସିନା ଭରସା ଖଟେ, ଆଗ୍ରହ ହୁଏ ପତ୍ର ଲେଉଟାଇବାକୁ କିନ୍ତୁ 'ପୋଥା'କୁ ସାହସ କୁଳାଏ ନାହିଁ । ଆକାର ଦେଖି ମୁଁ ଶଙ୍କିଯାଏ । ସେଥିପାଇଁ ୱାର ଏଣ୍ଡ ପିସ୍, ଜ୍ୟା କ୍ରିଷ୍ଟଫ୍, ଗନ୍ ୱିଥ୍ ଦି ୱିଣ୍ଡ, ମୁଁ ଦେଖୁ ଦେଖୁ ଓହରି ଯାଇଥିଲି । ସେଥିପାଇଁ ଅତିକାୟ ବିକଟାଳ ମହାଗ୍ରନ୍ଥ ସବୁ ଲାଇଫ୍ ଡିଭାଇନ୍ ବା ବ୍ରହ୍ମବୈବର୍ତ୍ତ ପୁରାଣ ପରି ମାନନୀୟ ହେଲେ ସୁଦ୍ଧା ଭୟାବହ ମନେ ହୁଅନ୍ତି। ସମସ୍ତେ ବୃହଦାରଣ୍ୟକ। ଅକୂଳାନ ସମୁଦ୍ର । ଅତିମାତ୍ରାରେ ପ୍ରଣୟାସକ୍ତ ନ ହେଲେ ସେ ଦୁସ୍ତର ପାରାବାର ଲମ୍ଫ ଦେବା ସହଜ ବ୍ୟାପାର ନୁହେଁ। ଗଜଗାମିନୀ ପର୍ଯ୍ୟନ୍ତ ସିନା ପ୍ରଣୟ ସମ୍ଭବ କିନ୍ତୁ ପୂର୍ଣ୍ଣାବୟବାକାରିଣୀ ହାବୁଡ଼ିଗଲେ କ'ଣ କରାଯାଇପାରେ; ସ୍ୱୟଂ ଅପୂର୍ବ ସାହସ ଯୋଗରେ କରୀନ୍ଦ୍ର ନ ହେବାଯାଏ।

ସେହି ନ୍ୟାୟରେ ମୋର ପରମ ସୁହୃଦ୍ ଶ୍ରୀଯୁକ୍ତ ହୃଦାନନ୍ଦ ରାୟଙ୍କ ବିପୁଳ ଜୀବନାନୁସାରୀ ଜୀବନୀଗ୍ରନ୍ଥ 'ଜଣେ ଅନୁଭବୀ ଅନୁଭବରେ' ମୋଠାରୁ ସମ୍ମାନଜନକ ବ୍ୟବଧାନରେ ଅବସ୍ଥିତ ରହିଗଲା କିଛି କାଳ। ଇତି ଦୃଶ୍ୟତେ ନେପଲଭ୍ୟତେ ଚ। ଦୂରର ଦୃଶ୍ୟମାନ ସେହି ଅବସ୍ଥାରେ କିଛି ଅନୁଭବ କିଛି ଅବଳୟ ଏହିପରି–

ପ୍ରଚ୍ଛଦପଟରେ ପ୍ରଶାନ୍ତ ଉଷାଲୋକରେ ଆକାଶମଣ୍ଡନ କରିଛି ଗ୍ରନ୍ଥର ଦୁଇ ପଂକ୍ତିବିଶିଷ୍ଟ ନାମ ଜାଣେ ଅନୁଭବୀ ଅନୁଭବରେ ପଢ଼ିଲେ ଭଞ୍ଜୀୟ ଛନ୍ଦ ବ୍ୟଞ୍ଜିତ ହେଲାପରି ଲାଗୁଛି (ବିଭୂଷଣ ପୁଷ୍ପୋଯାକାନ୍ତି ଜାଣ) ବର୍ଣ୍ଣରେ ଅରୁଣାଭା, ନା ସନ୍ନ୍ୟାସ ଗୈରିକି, ଉଭୟ ନା ସହଜରେ କହି ହେଉ ନାହିଁ । ଏ ପୃଷ୍ଠପଟ ଉପରେ ଆରୋପିତ ହୋଇଛି ଏକ ଆଲୋକିତ ଦୃଶ୍ୟ । ଜଣାଯାଉଛି ଏ ଦୃଶ୍ୟକୁ ତା'ର ଭବ୍ୟ ଉପସ୍ଥିତିରେ ଆବୋରି ରହିଥିବା ଓ ଆଂଶିକ ମାତ୍ର ପ୍ରକଟିତ ହେଉଥିବା ଏକ ବିଶାଳ ବୃକ୍ଷ ଶୋଭମାନ । ଏହା ଉପରେ ଆରୋପିତ ବନ୍ଧୁ ହୃଦାନନ୍ଦଙ୍କ ଆଲୋକ ଚିତ୍ର । ଆସି ବସିଯିବାଭଳି, ବସି ଉଠିଯିବା ଭଳି ସ୍ଥିରରେ ଅସ୍ଥିର ଭାବ ସୂଚିତ ହେଉଛି । ଗୋଟିଏ ହାତ କହୁଛି 'ରହ, ବସିଯା, କିଛି କାଳ ଆର ହାତ କହୁଛି ଉଠ୍ ଯିବା।' ବସିଛନ୍ତି ପଦ୍ମାସନ ବା ସିଦ୍ଧାସନରେ ନୁହେଁ, ଏକପ୍ରକାର ଆଲମ୍ବ ଆସନ ବା ସହଜାସନରେ। କିନ୍ତୁ ସୁଖାସନ ନୁହେଁ। କାରଣ ସୁଖାସନରେ ଉଠିବା ଉଠିବା ଭାବ ନଥାଏ। ପୃଷ୍ଠଭୂମିର ବୃକ୍ଷ ମଧ ବୋଧିଦ୍ରୁମ ନୁହେଁ। ବଟବୃକ୍ଷ ନୁହେଁ । ତାହା ଅଶ୍ୱତ୍ଥ ସର୍ବ ବୃକ୍ଷାଣାଂ– ଉଦ୍ଭିଦ ଜଗତରେ ଦିବ୍ୟବିଭୂତି । ବୋଧିଦ୍ରୁମ ତଳେ ସମାଧିସ୍ଥ ଯୋଗୀ ପୁରୁଷ ବୋଧିପ୍ରାପ୍ତ ହୁଅନ୍ତି । 'ଚଳଦଳ ପବିତ୍ର ପିପ୍ପଳ' ସାନ୍ନିଧରେ ଜାଗ୍ରତ ପୁରୁଷ, ଅନୁଭବ ବିଚରଣ କହନ୍ତି ।

ଅଶ୍ୱତ୍ଥ ବୃକ୍ଷର ଅଦୃଶ୍ୟ ଅଥଚ ସମ୍ଭାବ୍ୟ ମୂଳ ଭୂମିରେ ସବୁଠାରୁ ଅଧିକ ଜାଜ୍ୱଲ୍ୟମାନ ଦଗ୍ଧକାଞ୍ଚନ ବର୍ଣ୍ଣରେ ଲିଖିତ 'ଶ୍ରୀ ହୃଦାନନ୍ଦ ରାୟ' ଆକାରରେ କ୍ଷୁଦ୍ର କିନ୍ତୁ ସାନ୍ଦ୍ର ଓ ସ୍ପଷ୍ଟ ।

ନାମ, ରୂପ, ଉପାଧି ସଂବଳିତ ଏହା ପ୍ରଥମ ପରିଚୟ । କିଏ ନାମ କିଏ ଉପାଧି ନିର୍ଣ୍ଣୟ କରିବା ବିଚାରସାପେକ୍ଷ। କିନ୍ତୁ ନାମରୂପଉପାଧି ଅତିକ୍ରାନ୍ତ ସାକ୍ଷୀସତ୍ତା, ଯେ ନିରବ ନିଜ ଉପସ୍ଥିତିରେ ତାକୁ ସାର୍ଥକ କରୁଛି ସେ ସ୍ୱୟଂ ବନ୍ଧୁଙ୍କ ଆଲୋକ ଚିତ୍ର । ସେ ପ୍ରଚ୍ଛଦପଟରେ ଉପସ୍ଥିତ ଅଥଚ ଅନାସକ୍ତ । ଅନୁଭବ ବେଳେବେଳେ ଉଷାଲୋକ ପରି ବିସ୍ତୃତ ଓ ଅସ୍ପଷ୍ଟ ବା ଦିବାଲୋକ ପରି ସ୍ପଷ୍ଟ ଅଥଚ ସୀମିତ। ଅନୁଭବୀକୁ ଚିହ୍ନାଇବା ପାଇଁ, ନାମ ରୂପ ଉଭୟ ଉପସ୍ଥିତ ଯେ ଦେଖିଛି ସେ ଜାଣିଛି । ଚିତ୍ର ଦେଖି ଯେ ଚିହ୍ନି ନ ପାରୁଛି ସେ ନାଁ ପଢ଼ିଲେ କ'ଣ ବା ଚିହ୍ନିବ ? ଯେ ନାଁ ଶୁଣିବା ମାତ୍ରେ ପୁଲକିତ ହେଉଛି, ତାପାଇଁ ଚିତ୍ରର ବା କି ପ୍ରୟୋଜନ ?

କିନ୍ତୁ ଯେ ଜାଣେ ସେ କେଉଁଠି ନାହିଁ । ''ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା'' । ସେ ଜାଣେ ଅର୍ଥାତ୍ ସବୁ ଜାଣେ, ଯାହା ଜାଣିବା କଥା ନଜାଣିବା କଥା

ସବୁ ଜାଣେ । କହେ ଅଳ୍ପ କିଛି। ବଡ଼ଭାଗ ଅକୁହା ରଖିଦିଏ । ସେଇଟା ତା' ମର୍ଜି, ସେଇଟା ନିଜେ ଜାଣିବ ଓ ଅପରକୁ ଜଣାଇବା ଭିତରେ ଅନିବାର୍ଯ ବ୍ୟବଧାନ । ତେବେ ସେ ଜ୍ଞାନୀ ପୁରୁଷକୁ ଭେଟିବାକୁ ହେଲେ, ଭାଷାରେ ପ୍ରକଟିତ ତାଙ୍କ ବିଭୂତି ଜାଣିବାକୁ ହେବ। ଗ୍ରନ୍ଥରେ ପ୍ରକାଶ କରିବାକୁ ହେବ। ସେ ବିସ୍ତାରରେ କହିନାହାନ୍ତି କାରଣ 'ନାସ୍ତ୍ୟନ୍ତ ବିସ୍ତରସ୍ୟ ମେ'। ଠିକେ ଠିକେ କହୁ କହୁ ତ ଏ ବିଶାଳ ବପୁ– ବିସ୍ତାରରେ କହିଥିଲେ କ'ଣ ହୋଇନଥାନ୍ତା ଭଲା । ରକ୍ଷା ହେଇଛି ବିସ୍ତାରର ଅନ୍ତନାହିଁ, ଏଣୁ ତାହା ପ୍ରକାଶ କରିହେବ ନାହିଁ। ଏଭଳି ପ୍ରଥମ ଦର୍ଶନେ ଆଚାର ପ୍ରଥମ ଅନୁଭବ ।

**ଦ୍ୱିତୀୟ ଅନୁଭବ ଏହିପରି –**

ଏହା ବନ୍ଧୁ ହୃଦାନନ୍ଦଙ୍କ ସ୍ମୃତିଚାରଣ ଗ୍ରନ୍ଥ। ଅତୀତର ରୋମନ୍ଥନ। ରଣାଙ୍ଗନରୁ ଓହରିଗଲାପରେ ଯୁଦ୍ଧର ବିବରଣୀ ଶୁଣେଇଲା ପରି ଏକ ପ୍ରକ୍ରିୟା ! ଅତୀତ ଅପସରି ଗଲା ପରେ ତାକୁ ଆଉଥରେ ବଞ୍ଚି ହୁଏ ନାହିଁ । କିନ୍ତୁ ଅତୀତକୁ ଭୁଲି ବି ହୁଏ ନାହିଁ । ତାକୁ ଧରିହୁଏ ନାହିଁ କି ଛାଡ଼ିହୁଏ ନାହିଁ । ସ୍ମୃତି କେବଳ ଚିତ୍ରପଟ ଦେଖାଏ । ପୁଣିଥରେ ଅତୀତ ଅଭିନୀତ ହୁଏ । କିନ୍ତୁ ତାକୁ ଛୁଇଁବା ମନା । ଚଳଚ୍ଚିତ୍ର ଜୀବନ୍ତବତ୍ ଦେଖାଯାଏ ସତ, କିନ୍ତୁ ଜୀବନ୍ତ ନୁହେଁ । ଏଣୁ ସ୍ମୃତିରାଜ୍ୟରେ ଭ୍ରମିବା ହୋଇପାରେ ଏକ ବିଳାସ, ହୋଇପାରେ ଏକ ଅନିବାର୍ଯତା, ହରାଇ ପାଇବାର, ପାଇ ହରାଇବାର ଏକ ବିଡ଼ମ୍ବନା ।

ଜୀବନର ସାୟାହ୍ନରେ ହିଁ ଅତୀତ ପୁଣିଥରେ ଛାୟା ରୂପରେ ମଞ୍ଚ ଅଧିକାର କରେ । ପୂର୍ବାହ୍ନ ଉପସ୍ଥିତ କାଳରେ କବିଙ୍କର ଅତୀତ ଓ ଭବିଷ୍ୟତ ଉଭୟ ଅନୁପସ୍ଥିତ ରହନ୍ତି । ମଧ୍ୟାହ୍ନରେ ସଂଗ୍ରାମ ଚାଲିଥାଏ, ଭବିଷ୍ୟତର ବିକଳ୍ପ ସ୍ୱପ୍ନ ତାକୁ ଉତ୍ତେଜିତ କରୁଥାଏ। ଅତୀତ ନଥାଏ । ସାୟାହ୍ନରେ ଭବିଷ୍ୟତ ଅସ୍ପଷ୍ଟ, ବର୍ତ୍ତମାନ ତାତ୍ପର୍ଯ୍ୟହୀନ । କେବଳ ଅତୀତ ହିଁ ଆବୋରି ରହେ ଜୀବନର ଦିଗ୍‌ବଳୟ । ସେଥିପାଇଁ ରୋମନ୍ଥନ-କରୁଥିବା ଜେଜେବାପା ନାତିନାତୁଣୀଙ୍କୁ ନିଜର ହିଁ ଅଙ୍ଗେ ନିଭେଇଥିବା 'କାହାଣୀ' ଶୁଣାଇ ତୃପ୍ତିଲାଭ କରନ୍ତି – ଉତ୍ତରପୁରୁଷଙ୍କୁ ଉଲ୍ଲସିତ ଆମୋଦିତ ବେଳେବେଳେ ବିସ୍ମିତ କରନ୍ତି। କିନ୍ତୁ ମୂଳତଃ ନିଜେ ହିଁ ସନ୍ତୋଷ ଲାଭ କରନ୍ତି, ଆତ୍ମତୁଷ୍ଟି ଲାଭ କରନ୍ତି । ଉତ୍ତମ। ବନ୍ଧୁ ହୃଦାନନ୍ଦ ରାୟ ସେପରି ପେଡ଼ି ପେଟେରା ଫିଟେଇ ବସିଛନ୍ତି । ତା' ଭିତରେ ଫାଳେ ସୋରାଏ ଏ ଅକିଞ୍ଚନର ଆଭାସ ଅବଶ୍ୟ ଆସିଥିବ । କାରଣ ଅତୀତର କୌଣସି ମୁହୂର୍ତ୍ତକୁ ଜୀବନରୁ ବାଦ୍ ଦେବା ସମ୍ଭବ ନୁହେଁ । ଗୋଟାଏ ଗ୍ରନ୍ଥରେ ଯଦି ଆମ୍ଭେ ରହିଗଲୁ, ତାହେଲେ ସ୍ୱୟଂ ଏପରି କର୍ମ କରିବାକୁ ରୁଚି ମିଳିଗଲା । ଦାଶ ବେନ୍‌ହୁର୍‌ଙ୍କ ପ୍ରକଟ ସତ୍ତ୍ୱେ ଆମ୍ଭେ ଆଉ ଆତ୍ମଜୀବନୀ ଲେଖିବାର

ଦାୟ ମୁଣ୍ଡାଇବୁ ନାହିଁ। ଶୁଣୁଛୁ, ବନ୍ଧୁ ମହାପାତ୍ର ନୀଳମଣି ଏବେ ମନ ବଳାଉଛନ୍ତି ଏଇ କାର୍ଯ୍ୟ ପାଇଁ । ଆହୁରି ଫାଳେ ସୋରାଏ ଆମ୍ଭେ ଆସିବାର ଆଶା ଉଜ୍ଜ୍ୱଳ । ସେ ଚିତ୍ରମାନଙ୍କରେ ଆମ୍ଭେ ଯେତିକି ଦିଶିଲୁ ସେଇ ଯଥେଷ୍ଟ । ତା'ପରେ ତ' ପୋଛାପୋଛି ଅଭାବରେ ସବୁଚିତ୍ରରେ ଧୂଳି ମାଡ଼ିଯାଏ। ଏହି ଚାଲିଛି ୨୦୦୫ । ୨୦୦୫ ବେଳକୁ କ'ଣ ଦିଶିଚି ବା ନଦିଶିବ କହିହେବନାହିଁ । ଏବଂ ୩୦୦୫ ବେଳକୁ ନିଶ୍ଚିନ୍ତ ରହିଯିବା କଥା। ତେଣିକି କିଛି ଦିଶିବ ନାହିଁ।

ଅନ୍ୟ କେତେକ କାରଣରୁ ଆମ୍ଭେ ଆତ୍ମଜୀବନୀ ପାଇଁ ଅଭାଜନ । ସେପରି ଗ୍ରନ୍ଥରେ ଗୋଟିଏ ସତ୍ୟପାଠ ଥାଏ । ମୁଁ ଯାହା କହିବି ସତ କହିବି, ସତ୍ୟ ବ୍ୟତିରେକେ ଆଉ କିଛି କହିବିନାହିଁ । କିନ୍ତୁ ମୁଁ ହିଁ ନିର୍ଣ୍ଣୟ କରିବି କିଏ ସତ, କିଏ ସତ ନୁହେଁ । କାରଣ ସେ ଭୂମିରେ ସତ ଦେଖିବାକୁ ମାତ୍ର ଦୁଇଜଣ । ମୁଁ ଏବଂ ଅନ୍ତର୍ଯାମୀ ଈଶ୍ୱର । ସେ ସବୁ ଜାଣନ୍ତି କିଛି କହନ୍ତି ନାହିଁ । ମୁଁ କିଛି ଜାଣେ କିଛି କହେ । ସତ୍ୟପାଠରେ ମଧ୍ୟ ମୁଁ ସବୁ ସତ କହିବି ବୋଲି ପ୍ରତିବଦ୍ଧ ନୁହେଁ । ଏଣୁ ସତ କହିଲେ ସୁଦ୍ଧା ମାତ୍ରାଭେଦରେ ତା'ର ରୂପ ଓ ଅର୍ଥ ଅନ୍ୟପ୍ରକାର ହୋଇଯିବ । ମୁଁ ତାହା ଜାଣେ ଓ ବାରଣ କରେ ବା କରିପାରେନାହିଁ ବା କରିବାକୁ ଚାହେଁ ନାହିଁ । ମୋ ଜୀବନର କିଛି ଆଭ୍ୟନ୍ତର ଅନୁଭବ ଅଛି । କିଛି ପ୍ରକଟ ଇତିହାସ ସମର୍ଥିତ ଘଟନା ଅଛି । ଦ୍ୱିତୀୟ ପର୍ଯ୍ୟାୟରେ ଦେଶକାଳପାତ୍ରକୁ ନେଇ ସତ କହିବାକୁ ବାଧ୍ୟ । କାରଣ ତାହା ଅନ୍ୟସୂତ୍ରରୁ ପରୀକ୍ଷା କରାଯାଇପାରେ । କିନ୍ତୁ ସେଥିରେ ମୋର ସଂପୃକ୍ତି ବିଷୟରେ ସତର ମାତ୍ରାଭେଦ ଆସିବାକୁ କ'ଣ ଅସ୍ୱୀକାର କରିହେବ ?

ଏପରି କ୍ଷେତ୍ରରେ, ମୁଁ ସତ କହିବାକୁ ପ୍ରତିବଦ୍ଧ ହୁଏ, କିନ୍ତୁ ନ କହିବାକୁ ପ୍ରଲୁବ୍ଧ ହୁଏ । ସଂକଳ୍ପ କରେ କିନ୍ତୁ ସାହସ କରିପାରେ ନାହିଁ । ବିଧାତାର ଆସନରେ ବସି ଅତୀତର ବକ୍ରତା ସଳଖିବାକୁ ବା ଅନ୍ତତଃ ତାକୁ ଅପ୍ରକଟ ରଖିବାକୁ ମୁଁ ପ୍ରବୃତ୍ତ ହୁଏ । ଏଣୁ ସ୍ମୃତି ସହିତ ଅତି ସନ୍ତର୍ପଣରେ କଳ୍ପନା ମିଶିଯାଏ । ଚିତ୍ରପଟରେ ପୁଟ ସଜେଇ ହୋଇଯାଏ ଆୟତରେ ବା ଅଣାୟତରେ ।

ଅଣାୟତରେ ଏଇଥିପାଇଁ ଯେ ବିଷୟଠାରୁ ଉପଯୁକ୍ତ ଦୂରତାରେ ନ ରହିଲେ ତାକୁ ଦେଖିହୁଏ ନାହିଁ । ନିଜର ଅତୀତ କାଳ ସ୍ୱତଃ ଘୁଞ୍ଚିଯାଉଛି ଦୂରକୁ । ହୁଏତ ଏତେ ଦୂରକୁ ଯେ ତାକୁ ସ୍ପଷ୍ଟ ଦେଖି ହେଉନାହିଁ । ସବୁ ଦିଶୁ ଅଛି । ଯାହା ଦିଶୁଛି ସେଥିରୁ ବାଛି ବାଛି ମନଲାଖି କିଛି ଚିତ୍ର ମୁଁ ସଂଗ୍ରହ କରିନେଉଛି । ସେଥିରେ ବି ଯଦି କୋଉଠି କେମିତି କିଛି ଦିଶୁନାହିଁ । ତାକୁ ମନଲାଖି ଗଢ଼ି ନେଉଛି । ଏଣୁ ଆପାତତଃ ସତ୍ୟପାଠର କୌଣସି ଅପଲାପ ହେଉନାହିଁ । ସତ କହୁଛି ଅର୍ଥାତ୍ ମୋତେ

ଯାହା ସତ ପରି ଦିଶୁଛି ତାହା କହୁଛି। କହୁକହୁ କଥାରେ ଭଙ୍ଗୀରେ ଯେଉଁ ବାଙ୍କ ଆସିଯାଉଛି ତାହା ମୋର ଅଣାୟତରରେ ମଧ ହେଉଥାଇପାରେ ।

ଏଣୁ ଏହା ଏକ ଚରିତୋପନ୍ୟାସ । ଜଣକର ଚରିତ ଏବଂ ସେ ଜଣକ ମୁଁ ନିଜେ । ମୁଁ ମୋତେ ଦେଖୁଛି, ମୋତେ ଲେଖୁଛି, କାହାରି ତାକୁ ପ୍ରଶ୍ନ କରିବାର ଜୁ ନାହିଁ, ଅବକାଶ ବି ନାହିଁ – ହଁ କେବଳ ବାହ୍ୟ ବିବରଣୀ ବେଳେ ଦେଶକାଳ-ପାତ୍ରରେ ଯଦି ପ୍ରମାଦ ରହିଗଲା ତେବେ ଅସୁବିଧା। ପ୍ରାଣୀମାତ୍ରେ ନିଜର ଅବୟବକୁ ଚାଟିବାକୁ ଭଲପାଏ। ପକ୍ଷୀ ନିରୋଳାରେ ବସି ଥଣ୍ଟରେ ପେଟ ପିଠି ଡେଣା ମାଜେ। ପଶୁଟିଏ ଯଥାସମ୍ଭବ ତା' ନିଜ ଦେହକୁ ଚାଟେ । ମଣିଷ ବି ବୋଧହୁଏ ସେଇଆ କରେ । ଆତ୍ମବିଭୋର ଅବସ୍ଥାରେ, ନିଜର ସନ୍ତୋଷ ପାଇଁ। ଏକପ୍ରକାର ଆସ୍ୱାଦ ପାଇଁ ଏତେ ସତ୍ତ୍ୱେ ଆତ୍ମଜୀବନୀମାନଙ୍କୁ ମୁଁ ସାହିତ୍ୟିକ ମାନ୍ୟତା ଦେବାରେ ଆଦୌ କୃପଣ ନୁହେଁ । ଅନେକ ତା' ଭିତରୁ ଉଚ୍ଚକୋଟୀର ସୁଖପାଠ୍ୟ ଓ ଆହ୍ଲାଦଦାୟକ ଗ୍ରନ୍ଥ ବା ବନ୍ଧୁ ହୃଦାନନ୍ଦ ରାୟଙ୍କ କଥନଶୈଳୀ ମନୋମୁଗ୍ଧକର । ସେ ଯଦି ସେଇଭଳି ଲେଖିଥାନ୍ତି ତା'ହେଲେ ଏ ଗ୍ରନ୍ଥଟି ଅବଶ୍ୟ ପଠନୀୟ ।

**ଦ୍ୱିତୀୟ ଅନୁଭବ ଏହିପରି–**

ହୃଦାନନ୍ଦ ରାୟ ଅଧିପବନ୍ଦୀ, ବହୁଶାସ୍ତ୍ରନିଷ୍ଣାତ, ଗୌତମୀବନ୍ଦନା, ବିଶାରଦ ପ୍ରଖର ବକ୍ତା। ସହସ୍ରାଧିକ ସଭାରେ ଅର୍ଦ୍ଧଶତାବ୍ଦୀ କାଳ ଶବ୍ଦାୟିତ ହୋଇଛି ତାଙ୍କ ଶାଣିତ ସ୍ୱର, ରୁଚିଶୀଳ ଓ ପାଣ୍ଡିତ୍ୟପୂର୍ଣ୍ଣ ବକ୍ତବ୍ୟ। ସେ ପଢ଼ି ପଢ଼ାଇବାରେ ବିଶ୍ୱାସୀ। କେତେଥର ଆମ ଭିତରେ ଯୁକ୍ତି ହୋଇଛି ଲେଖିବା ସପକ୍ଷ ବିପକ୍ଷରେ। ସେ କହନ୍ତି, ଯାହା ଯେଉଁଠି ବାକ୍‌ରେ ପ୍ରକାଶିତ ହୋଇଗଲେ ତାତ୍‌କାଳିକ ପରିଣାମ ମିଳିଗଲା। ଆଉ କ'ଣ ଲୋଡ଼ା – ସହସ୍ରାଧିକ ଭାଷାରେ କୋଟି କୋଟି ଗ୍ରନ୍ଥ ଲିଖିତ ହୋଇ ଗ୍ରନ୍ଥାଗାରମାନଙ୍କରେ ସଜ୍ଜିତ ରହିଛନ୍ତି। ନହେଲା ବା ଆମ୍ଭେ ଲେଖିଥିଲେ ଆଉ ଦଶ କୋଡ଼ିଏଖଣ୍ଡ ସେ ବିପୁଳ ଭଣ୍ଡାରରେ ଯୋଡ଼ି ହୋଇଥାନ୍ତା। କିଏ କୋଉ କାଳେ ସମାନଧର୍ମା ଜନ୍ମ ହେବା ଏପତ୍ର ବୋଲି ଏତେ ପରିଶ୍ରମ କରିବାର ଅର୍ଥ କଣ, ଆଲୋକିତ ମଞ୍ଚ ଉପରେ ଠିଆ ହୋଇ ସାମ୍ନାରେ ଏଇ ମୁହୂର୍ତ୍ତରେ ମୋର ସହସ୍ରାଧିକ ଶ୍ରୋତା ଓ ଗ୍ରାହକ ଯଦି ମୋତେ ଗ୍ରହଣ କରୁଛନ୍ତି, ତା'ହେଲେ ଆତ୍ମପ୍ରକାଶର ସାର୍ଥକତା ଆସିଗଲା – ମୋଟ ଉପରେ ସେ କଲମ ଧରିବା ପାଇଁ କେତେବେଳେ ରାଜି ନଥିଲେ।

ପରିଶେଷରେ ସେ ଲେଖିଥିଲେ ସହସ୍ରାଧିକ ପୃଷ୍ଠାର ବହୁବିଧ ପ୍ରଶ୍ନ; ସେ ସବୁ ପ୍ରକାଶିତ ହେଲା ଓ ବନ୍ଧୁ ଲେଖକର ମାନ୍ୟତା ଓ ମର୍ଯାଦା ସ୍ୱୀକାର କଲେ, ଏହା ଆମ୍ଭ ପାଇଁ ପରମ ଆନନ୍ଦର ବିଷୟ । 'ଜାଣେ ଅନୁଭୂବୀ ଅନୁଭବରେ' ପାଇଁ ଏବର୍ଷ

ଶାରଳା ପୁରସ୍କାରରେ ସେ ସମ୍ବର୍ଦ୍ଧିତ ହେବା ଏ ବିଶୁଦ୍ଧ ବକ୍ତାଙ୍କ ଜୀବନରେ ଏକ ସ୍ମରଣୀୟ ଘଟନା ଓ ଆମ୍ଭ ପାଇଁ ପରମ ବିସ୍ମୟର ଘଟନା ମଧ୍ୟ । ଆମ୍ଭେ ଏ ଲେଖକକୁ ସ୍ୱାଗତ ଇତି ଗ୍ରନ୍ଥ ପ୍ରବେଶର ପୂର୍ବାନୁରାଗ ସମାପ୍ତ ଜଣାଉଛୁ । ବେଳକାଳ ଦେଖି ଦିନେ ବନ୍ଧୁଙ୍କ ଅନୁଭବ ଜାଣିବାକୁ ଏ ଗ୍ରନ୍ଥଟିକୁ ପଢ଼ିବା ଆରମ୍ଭ କଲି । ପ୍ରଥମ ପରିଚ୍ଛେଦ । ଅଥମାରମ୍ଭ । ସୂଚୀପତ୍ରରେ ଆଖି ପକେଇଲି । ଘଟଣାକ୍ରମରେ ଆଗପଛ ନାହିଁ । ସମୁଦ୍ରଗାମିନୀ ସ୍ରୋତସ୍ୱିନୀ ପରି ଘଟନାପ୍ରବାହ ଗଡ଼ିଚାଲିଛି, ବଢ଼ିଚାଲିଛି । କୂଳଲଂଘନ କରିନାହିଁ, କି ଲେଉଟାଣି ପଶ୍ଚିମବାହିନୀ ଗଙ୍ଗା ପରି ଉଜାଣି ଟେକିନାହିଁ । – ବେଶ୍ ସୁଗମ, ଅବାଧ, ସରଳ ଗତି ଓ ଛନ୍ଦ । ଖୁସି ହେଲି । ଆକୃଷ୍ଟ ହେଲି । କିନ୍ତୁ ବୃତ୍ତାନ୍ତ ପଢ଼ିବାର ଏକ ଅଭ୍ୟାସଗତ ବିଳାସରୁ ବଞ୍ଚିତ ହେବାକୁ ପଡ଼ିଲା । କାରଣ ଶେଯରେ ଶୋଇ ଗୋଟିଏ ହାତରେ ବହିଟିକୁ ଟେକି ପଢ଼ିବା ସମ୍ଭବ ହେଲାନାହିଁ । ତଦ୍ଦୁତ୍ତାର ଗ୍ରନ୍ଥକୁ ବୁକୁ ଉପରେ ରଖି ପଢ଼ିବାର ଅପଚେଷ୍ଟା କଲାପରେ ବାଧ୍ୟ ହୋଇ ଆଠଅଙ୍କ ଚୌକିରେ ବସି ସେ ସାଧନା କରିବାକୁ ନିଷ୍ପତ୍ତି ନେଲି ।

ଗୋବିନ୍ଦାପେଟା (ଆହା, ବିଚାରା ଗୋବିନ୍ଦ !) ରୁ ଆରମ୍ଭ; ଘଟନାରୁ ନୁହେଁ ତତ୍ତ୍ୱରୁ । ଜନ୍ମିଗଲେ ତ' ଘଟନା ହୋଇଗଲା । କିନ୍ତୁ କାହିଁକି ସେ ସେଇ ଦେଶକାଳରେ ଜନ୍ମିଲେ, ଏକ ତାତ୍ତ୍ୱିକ ପ୍ରଶ୍ନ । ଏଇଠୁ ପାଠକ ସତର୍କ ହୋଇଯିବା କଥା – ଆଗକୁ ଆଗକୁ ଏକ ଅସାଧାରଣ ବୟାନ ପାଇଁ । ତାଙ୍କ ଆବିର୍ଭାବ ଅବଧାରିତ ଥିଲା ଓ ଗୋବିନ୍ଦାପେଟା ଜାଣିଥିଲା ସେ ଆସିବେ ବୋଲି । ଲୋକଙ୍କ ମୁହଁରେ ସେ ତାହା ଘୋଷଣା ବି କରିଦେଲା। ହେଉ । ଆମ୍ଭେ ତାକୁ ସ୍ୱୀକାର କଲୁ ।

ତା'ପରେ ସେଇ ପ୍ରଥମ ପୃଷ୍ଠାରେ ଦୁଇଥର ଝୁଣ୍ଟିଲୁ । ଏଣେ କହୁଛନ୍ତି ଆଈମା, ତେଣେ ବନ୍ଧନୀରେ କହୁଛନ୍ତି ପିତାମହୀ, ଜେଜେମା ଅଥଚ ପ୍ରପିତାମହୀ । ପଣିଅଜା, ଅଣିଅଜା, ଅଜା ଧାରାରେ 'ବାପା' ଆସିଲେ କାହୁଁ। ହୋଇପାରେ ଆଖିରେ ପଡ଼ିନାହିଁ ବା ହେଜି ପାରିନାହାନ୍ତି ।

ବିସ୍ମୟ ପରେ ବିସ୍ମୟ ମଡ଼େଇ ହୋଇ ପଡୁଛି । ବନ୍ଧୁଙ୍କର ବର୍ଣ୍ଣନା ସର୍ବଦା ମଣ୍ଡନଧର୍ମୀ ବୋଲି ଆମ୍ଭେ ଜାଣିଛୁ । ଅଳ୍ପକୁ ବହୁଗୁଣିତ କରିବା ତାଙ୍କର ସ୍ୱଭାବସୁଲଭ ସୁଜନତା, ବ୍ୟକ୍ତିକୁ ବସ୍ତୁକୁ ଘଟନାକୁ ବିଚାର କଲାବେଳେ ତାଙ୍କ ଆଖିକୁ ଦୋଷ ଦେଖାଯାଏ ନାହିଁ । ସାମାନ୍ୟ ଗୁଣ ଥିଲେ, ତାହା ଅସାମାନ୍ୟ ଦିଶେ, ଏପରିକି ଦୋଷ ବି କିନ୍ତୁ ବନ୍ଧୁକ୍ତିରେ ଗୁଣପ୍ରାୟ ପ୍ରତୀୟମାନ ହୁଏ –

ଏଇ ଦୃଷ୍ଟିଭଙ୍ଗୀରେ ଦେଖିଲେ ଗୋବିନ୍ଦାପେଟା ସାରା ଅପାର୍ଥିବ ଉଲ୍ଲାସ ଓ ଉତ୍କଣ୍ଠାରେ ଗୋଟିଏ ସନ୍ତାନ ଜନ୍ମକୁ ଅପେକ୍ଷା କଲାପରି ଜଣାଯିବ ଏବଂ ପରିବାରରେ

ଅଲୌକିକ ସ୍ୱପ୍ନ ତା ଘଟଣାମାନ ଘଟିବ, ହୃଦାନନ୍ଦଙ୍କ ଭୂମିଷ୍ଠ ହେବା ଅସାଧାରଣ ମହିମାମଣ୍ଡିତ ଦିବ୍ୟ ଆଶୀର୍ବାଦ ପରି ବୋଧହେବ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ପିତାମହ ଅଲେଖ ଚରଣ ପିତା ଭୋଳାନାଥଙ୍କ କ୍ଷାତ୍ର ତେଜ, ରାଜକୀୟ ଆଚରଣ, ଗୋବିନ୍ଦାପେଟାରେ ତଦନୁପାତ ସ୍ୱଚ୍ଛଳତା, ଦୁଧ ଦହି ଲହୁଣୀରେ ପରିପ୍ଲୁତ ପରିବାର – ହୃଦାନନ୍ଦଙ୍କ ସ୍ମୃତି ଆଶ୍ରିତ ବର୍ଣ୍ଣନାରେ ଏକ ସ୍ୱପ୍ନରାଜ୍ୟର ବାତାବରଣ ସୃଷ୍ଟି କରୁଛି। କିନ୍ତୁ ଏ କ୍ଷାତ୍ରକୁଳର ଚିହ୍ନଟ କ'ଣ, ପାରିବାରିକ ସାଙ୍ଗିଆ କ'ଣ ତାହା କୁତ୍ରାପି ଦେଖିବାକୁ ମିଳିଲା ନାହିଁ । ଅଲେଖ ଚରଣ କ'ଣ ? ସେ ତ ଅଲେଖ ଚରଣ ରାୟ ହୋଇଥିବେ । ଭୋଳାନାଥ ରାୟଙ୍କ ପିତା ଏବେ ପୁରୁଷାନୁକ୍ରମେ ରାୟ ବୋଲାଉଥିବା କୁଳ ପରମ୍ପରାର ଦାୟାଦ । ତାକୁ ବନ୍ଧୁ ତାଙ୍କ ଢ଼ଙ୍ଗରେ କହିଥିଲେ ଆମ୍ଭେ ଶୁଣି ପୁଲକିତ ହୋଇଥାନ୍ତୁ ।



# କିଶୋରୀବାବୁଙ୍କ ସହିତ ଏକ ସ୍ୱଗତ ସଂଳାପ

ଆମ ମଝିରେ କୁହୁଡ଼ିର ଏ ବାଡ଼ଟାକୁ ମୁଁ ଅସ୍ୱୀକାର କରୁନାହିଁ । ଟିକିଏ ଧୂଆଁଳିଆ ନିଶ୍ଚୟ, କିନ୍ତୁ ଆପଣଙ୍କୁ ମୁଁ ସ୍ପଷ୍ଟ ବାରିପାରୁଛି । ଆପଣଙ୍କ ଚାହାଣି ଓ ଚେହେରାରୁ ଜଣାପଡୁଛି ଯେ ଆପଣ ବି ମୋତେ ବେଶ୍ ଅନୁଭବି ପାରୁଛନ୍ତି ନା କଣ ! ଆପଣଙ୍କ ଓ ମୋ ଭିତରେ ପୂର୍ବବତ୍ ଶ୍ରଦ୍ଧା ସମ୍ମାନ ତ ବଜାୟ ରହିଛି ନିଶ୍ଚୟ, ବରଂ ମୋ ଆଡୁ ଆପଣଙ୍କ ପ୍ରତି ସମ୍ଭ୍ରମବୋଧ ଏବେ ଅନେକ ବେଶି ବଢ଼ିଯାଇଛି । ଆପଣ କାଚ ବନ୍ଧେଇ ପଛରୁ ନିଶ୍ଚଳ ଚାହିଁ ରହିଛନ୍ତି । ଆଖିରେ ପତା ପଡୁନାହିଁ । ହସରେ ମୁହଁ କୁଞ୍ଚକୁଞ୍ଚ ହେଉନାହିଁ । ଆପଣ ଜମା କଥା କହୁନାହାନ୍ତି । ଭାରି ଅଡୁଆ ଲାଗୁଛି ନିଶ୍ଚୟ । କିନ୍ତୁ ଆପଣ ଯେତେ ଆପଣାପଣ ଦେଇଛନ୍ତି ତା'ରି ବଳରେ ଆପଣଙ୍କ ଆଗରେ ପୁରୁଣା ଅଭ୍ୟାସରେ ଗପିବାକୁ ଇଚ୍ଛା ହେଉଛି । ଆପଣ ଶୁଣୁଛନ୍ତି ଏବଂ ଜବାବ ବି ଦେଉଛନ୍ତି ଆପଣଙ୍କ ନୀରବ ଠାରରେ । –ଏଇଟା ମୋର ବିଶ୍ୱାସ ।

ଆପଣ ଅବଶ୍ୟ ମୋ ଅପେକ୍ଷା ଅନେକ ବେଶି ଭଦ୍ର, ସ୍ୱଳ୍ପଭାଷୀ – ଗପ ଲେଖିବା ବେଳ କଥା କହୁନାହିଁ – ଭାରି ମଧୁରିଆ ଦରହସା ମଣିଷ । ମୁଁଟା ଟିକିଏ ଅଧିକ ବାଙ୍ଗୁରିଆ ଅଲାଜୁକିଆ, ସାହସିଆ । ସେ ତୁଳନାରେ ଆପଣ ଲାଜରା, କିଛି ମାତ୍ରାରେ ଡରକୁଳା ନୁହନ୍ତି କି ? ଓ, ଆଇ ଏମ୍ ସରି – ଖରାପ ଭାବିଲେ କି ? ମୋର ଦେଖିବାରେ ନ ହେଲେ ବୁଝିବାରେ ଭୁଲ୍ ଥାଇପାରେ ? ହଁ, ଥାଇପାରେ । କିନ୍ତୁ ବିଶ୍ୱାସ କରନ୍ତୁ ଆପଣ ମୋତେ ସେଇଭଳି ମନେହୁଅନ୍ତି – ବେଶ୍ ସୂକ୍ଷ୍ମ କାରିଗିରିର ମାଇଅଂଶିଆ କଳାକାର ପରି, ମନକୁ ମନ ବେହାଗ ରାଗରେ ଗୁଣୁଗୁଣଉଥିବା, ନିରୋଳାରେ ପେନ୍ଥା ପେନ୍ଥା ଫୁଲ, ବଡ଼ ଉକୁଟଉଥିବା ଶଙ୍ଖଶିଳ୍ପୀ ପରି, ମୋ ଅପେକ୍ଷା ଢ଼େର୍ ବେଶି ନିପୁଣ, ନିଖୁଣ ନିଆରା କଥାକାର ଆପଣ । ମୁଁ ସେ ତୁଳନାରେ ଅନେକ ନିଦା, ମାଖୁନା, ଓଜନିଆ । ହୁଏତ କିଛି ଅଧିକ ବୁଡ଼ିପାରେ, କିନ୍ତୁ ଆପଣଙ୍କ ଭଳି ଉଡ଼ିପାରେ ନାହିଁ । ଆପଣ ଆଖି ତଳକୁ କରି ଲାଜଉଛନ୍ତି କି ଏସବୁ କଥାକୁ ନାପସନ୍ଦ କରୁଛନ୍ତି ମୁଁ ଜାଣିପାରୁନାହିଁ । ତେବେ ମୁଁ ସେ ଖିଅ ଛାଡ଼ି ଦେଉଛି, ଆପଣଙ୍କ ଖାତିରରେ ।

ଆପଣ ଭାବୁଥିବେ ଏଇଟା ଗୋଟାଏ ଅଭିଲା ମଣିଷ। ଉପରେ ପଡ଼ି ଏତେଗୁଡ଼ାଏ ବକ୍‌ବକ୍ ହଉଚି କାହିଁକି ? ମୁଁ ଏଇଆ ବୁଝିପାରୁଛି ଆପଣଙ୍କ ଚାହାଣିରୁ।

କଥା କ'ଣ କି କିଶୋରୀ ବାବୁ, ଆପଣ ସତରେ ଭାରି ଲୋଭନୀୟ ମଣିଷ । ଆପଣଙ୍କୁ ପାଇଲେ – ସେ ଯେମିତି ହେଉ ଏବେ ନ ହେଲେ ସେବେ – ଛାଡ଼ିବାକୁ ମନ ହୁଏନାହିଁ । ଆପଣଙ୍କ ସାଙ୍ଗରେ ବହୁବାର ଆଳାପ ହେଇଚି । କିନ୍ତୁ ମଞ୍ଜକଥା ବା ମଞ୍ଜିକଥାଯାକ ବାକି ରହିଗଲା ପରି ଲାଗୁଛି । ଏଣୁ ଏ ପ୍ରକାର ସ୍ୱଗତ ଆଳାପ, ଆପଣଙ୍କ ଢ଼ଙ୍ଗରେ ଆପଣଙ୍କ ସାଙ୍ଗରେ ।

ଆପଣ ଜାଣନ୍ତି କିଶୋରୀ ବାବୁ ? –ନା କେମିତି ଜାଣିବେ ? – ମୁଁ ତ' ଆପଣଙ୍କୁ କେବେ କହି ନାହିଁ । ଆପଣଙ୍କ ନାଁଟାକୁ ନେଇ ପ୍ରଥମେ ମୋତେ ଭାରି କଉତୁକିଆ ଲାଗିଥିଲା।

'କିଶୋର' ହେଲେ ସିନା ବାବୁ, 'କିଶୋରୀ' କେମିତି ବାବୁ ହବ ମ' – ସେ ତ କିଶୋରୀଟିଏ । ସେତେବେଳଯାଏଁ ମୁଁ ଆପଣଙ୍କୁ ଦେଖି ନଥାଏ । ତାପରେ ହଠାତ୍ ଆଉ କଥାଏ ମନେ ପଡ଼ିଯିବାରୁ ଜିଭ କାମୁଡ଼ି ପକେଇଲି । ଗୋପୀବାବୁ ! ତାଙ୍କୁ ଥରେ ଯେ ଦେଖିଛି ତା'ର ମୋହଭଙ୍ଗ ହୋଇଯିବ । ତା'ପରେ ତା' ଜିଭରେ ହାଡ଼ ନାହିଁ ସେ ପାର୍ବତ୍ୟ ଚେହେରାକୁ 'ଗୋପୀ'ଟିଏ ବୋଲି କହିବାକୁ । ଡାକିବାରେ ସିନା ଟିକିଏ ଅଡୁଆ, ଗୋପୀବାବୁ, କିଶୋରୀବାବୁ, ସଚ୍ଚି ବାବୁ, କିନ୍ତୁ ନାଁଟା ପୂରା ଲମ୍ବିଗଲେ ସମାସ ପଦମାନଙ୍କରେ ଆଉ ଅସୁବିଧା କିଛି ନାହିଁ ।

ଆପଣଙ୍କ ସଙ୍ଗେ ଦେଖାହେଲା ଅନେକ ବିଳମ୍ବରେ । ସେତେବେଳେ ଆପଣ ଦୀର୍ଘପ୍ରବାସ ସାରି 'ଘରବାହୁଡ଼ା'ରେ ଓଡ଼ିଶା ଆସିଥାନ୍ତି । ଆମର ଭେଟ ହେଲା ଦିଲ୍ଲୀରୁ ଫେରିବା ବାଟରେ ଟ୍ରେନ୍‌ରେ । ମନେ ପଡୁଛି ନା ? – ଆଳାପ ପରିଚୟ ପରେ 'କଥା ସାହିତ୍ୟର କଳା ଓ କାରିଗରି' ବହିଟି ମୋତେ ଦେଲେ ଏବଂ ଗପ ଜମେଇ ଦେଲେ ବହୁଦିନର ପୁରୁଣା ବନ୍ଧୁ ପରି ।

ସେଦିନ ପ୍ରଥମେ ଜାଣିଲି ଆପଣ ଜଣେ ଖୁବ୍ ପଣ୍ଡିତ ଲୋକ । ଢେର୍ ପଢ଼ାପଢ଼ି କରିଛନ୍ତି, ଢେର୍ ମିଞ୍ଚେଇଛନ୍ତି । ଗଳ୍ପରେ କେତେବେଳେ କେମିତି ସେ ଝଲକ୍ ଦିଶିଯାଏ ଯେ ହେଲେ ଆପଣଙ୍କ ଗପର ଭେଳିକି ଭିତରେ ଆଖି ମଟମଟ କରି ନ ଚାହିଁଲେ ଦିଶେ ନାହିଁ । ସେ ପସରା ଆପଣଙ୍କ ସ୍ୱତନ୍ତ୍ର ଭାବରେ ମେଲିଛନ୍ତି ଯେତେବେଳେ ଗଳ୍ପ ସଂକଳନମାନଙ୍କର ମୁଖବନ୍ଧରେ 'ନିଜକଥା' ଲେଖିଛନ୍ତି । ସେଗୁଡ଼ିକୁ କ'ଣ କହିବା ? ପାଦଟୀକା ? ଭାଷ୍ୟ ? ଆପଣଙ୍କ ଗଳ୍ପ ମଞ୍ଚରେ ପହଞ୍ଚିବା ପାଇଁ ପୃଷ୍ଠପଥ ? – ନା ଏକ ପ୍ରକାର ସତ୍ୟପାଠ, ବୟାନ ଅଥଚ କୈଫିୟତ, କଥା ପାଇଁ, କଥାକାର ପାଇଁ, ସାମ୍ପ୍ରତିକ ସବୁ ସାହିତ୍ୟ-ସାଧକ ପାଇଁ ? କ୍ୟାମୁ, ସର୍ତ୍ତ, ସେକ୍‌ସପିଅର, ହାଇଜେନ୍‌ବର୍ଗ, ଫେଡ୍‌ହଏଲ, ଆଇନଷ୍ଟିନ୍, ଆଲାନ୍ ଓ୍ୱାଟ୍ସଂ ସାଙ୍ଗକୁ

ହିରାକ୍ଲିଟସ୍, ପ୍ଲାଟୋ ବା ହିରୋଡ଼ୋଟସ୍ କେତେ କେତେ ପ୍ରାଚ୍ୟ ପାଶ୍ଚାତ୍ୟର ମହା ମନୀଷୀଙ୍କ ସହିତ ଆପଣଙ୍କ ଭାବଦୋସ୍ତି ।

ଖୁବ୍ ପଢ଼ାପଢ଼ି କରିଥିବା ମଣିଷ ଅନେକ ସମୟରେ ବୋଝ ମୁଣ୍ଡେଇ ଟଳମଳ ହେଉଥାନ୍ତି । ମୁଣ୍ଡ ତ' ନୁହେଁ, ସତେବା ଗୋଦାମଘର । – କିନ୍ତୁ ଆପଣ ନିଆରା ଜଣାଗଲେ । ବାଟୋଇ କୋଳିଗଛ ମୂଳେ ଖରାବେଳେ ବିଶ୍ରାମ ନିଏ । ଦି ଚାରିଟା କୋଳି ଖାଏ, ଦି ଚାରିଟା ବାଟ ପାଇଁ ହୁଏତ ଗୋଟାଏ । କିନ୍ତୁ ଗଛଟିକୁ ଯୋଉଠି ଥିଲା ସେଇଠି ଛାଡ଼ିଦେଇଯାଏ । ଏଇ ବିଚାରରେ ଆମ ଉଭୟଙ୍କ ଢଙ୍ଗରେ ଆଉ ବିଚାରରେ କିଛିକିଛି ମେଳ ଥିଲା ପରି ମୋତେ ଲାଗୁଛି । ନା' କ'ଣ କହୁଛନ୍ତି ? –ହଁ, ଆପଣ ଆଉ ପାଦେ ବି ପାଦ କଥାଟାକୁ ଆଗେଇ ନେବାକୁ ଚାହୁଁଛନ୍ତି ତ ? ଏମିତି ବାଟରୁ ଦି' ଚାରିଟା କୋଳି ଗୋଟେଇ ପାଟିରେ ପକେଇ ଚାକୁଳେଇବା ଲୋକ ଚୋର । ସେଗୁଡ଼ା ସବୁ ଚାକୁଣିଆ, ପଲ୍ଲବଗ୍ରାହୀ । କିନ୍ତୁ ଯେ ପେଟଭରି, ମନଭରି ଖାଏ ତାକୁ ଗୋଟାଏ ପ୍ରକାର ନିଶା ଘାରେ – ଭାଲୁ ମହୁଆ ଫୁଲ ଖାଇଲା ପରି ।

ହସୁଛନ୍ତି କ'ଣ ମ ? ମହୁଆ ଖୁବ୍ ଖାଇଲାପରେ ତା' ମୁଣ୍ଡ ଚକ୍କର ଖାଏ । ସେ ଚାହେଁ ଆଉବାଗେ, ଚାଲେ ଆଉ ବାଗେ, ଠିକ୍ ନା ? ସେ କ'ଣ କିଶୋରୀଚରଣ ହେଇଚି ଯେ ସବୁ ଜିରେଇ ନିର୍ବିକାର ରହିପାରିବ ?

ଯେମିତି ଧରାଯାଉ ଫ୍ରଏଡ୍ ସାହେବଙ୍କୁ ମନଧ୍ୟାନ ଦେଇ କେହିଜଣେ ପିଇଗଲା । ତାକୁ ଗୋଟାଏ କଥା ଚାରିଆଡ଼େ ଦିଶିବ ଯାହା ସେ ଲୁଚି ଲୁଚେଇ ହୁଏତ ଦେଖିଛି, ଆଉରି ଦେଖିବାକୁ ଲୋଭେଇଚି, ହେଲେ ଲାଜେଇଚି । କିନ୍ତୁ ସେ ସାଇବ ଯେମିତି ଲଗାମ୍‌ଛଡ଼ା ତାକୁ ନିଃସଂକୋଚ ସବୁଠି ଖାପି ଦେଇଚି, ଚିନ୍ତାରେ ଚେତନାରେ, ଆଚରଣରେ ଅଭ୍ୟାସରେ, ସ୍ୱପ୍ନରେ ଜାଗରଣରେ ! ସେମିତି କସ୍ମିନ୍ କାଳେ କେହିହେଲେ ଭାବି ନଥିଲେ । ପାଟିରେ ଆଙ୍ଗୁଠି ଦେଲେ ଯାହା, ଜୋତାରେ ପାଦ ଗଳେଇଲେ ତାହା, କାନ କୁଣ୍ଡେଇଲେ ତାହା, ପିଲାଟାଏ ମା' କ୍ଷୀର ଖାଇଲେ ସେଇଆ, ଏମିତି କି ନାକବାଟେ ପବନ ଆତଯାତ ହେଲେ ବି ସେଇଆ !

ହୋଃ, ସେ ସାଇବଟାକୁ ବୋଧେ ମହୁଆ ନିଶା ଭାଲୁଠୁ ବି ଅଧିକ ଘାରିଯାଇଚି ନା' କ'ଣ ? ନହେଲେ ସବୁଠି କେମିତି ତାକୁ ଯୌନ ଦର୍ଶନ ହୁଅନ୍ତା, ସିଦ୍ଧଯୋଗୀର ବ୍ରହ୍ମଦର୍ଶନ ପରି ? ହଁ କିଶୋରୀ ବାବୁ, ମୁଁ ମାନୁଚି ଯେ ସେ ମଣିଷର ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ଅବସ୍ଥାରେ ତା' ମନ ଗହନ ଭିତରେ ବୁଡ଼ିଥିବା ଜଣେ ବିରଳ ବୈଜ୍ଞାନିକ ।

କିନ୍ତୁ ଯେଉଁ କଥାଟା ତା'ର ବେଶି କାଟ୍‌ତି ହେଇଗଲା ସେଥିରେ ଆମର ବନ୍ଧୁ ପାଠୁଆଙ୍କୁ ଟେଣା କରିଦେଲା । ସେମାନେ ଗୋଟାଏ କ'ଣ ଅପୂର୍ବ ପାଇଗଲା ପରି ସେଥିରେ ମସ୍‌ଗୁଲ୍ ରହିଲେ । ହଁ ବାବୁ ସେଇଟା ସତ, ନିରାଟ ସତ ! କିଏ ନାହିଁ କଲା ? କିନ୍ତୁ ଏତେବଡ଼ ପରିବ୍ୟାପ୍ତ ଜୀବନରେ କ'ଣ ଯୌନସତ୍ୟ ସିବା ଆଉ ସତ୍ୟର ବିସ୍ତାର କିଛି ନାହିଁ ?

ଆପଣ ତ' ଜାଣନ୍ତି କିଶୋରୀ ବାବୁ, ମୋର ଟିକିଏ 'ବାହୁଣିଆ' ଖୋଇ ରହିଛି । ମୁଁ ସେମାନଙ୍କୁ ବେଳ ପଡ଼ିଲେ କହେ, 'ଏ ଯେଉଁ ତତ୍ତ୍ୱ ତୁମେ ବଖାଣୁଛ, ଆମେ ଏଇଠି ଆଉବାଗେ ତାକୁ ବହୁକାଳୁ ସ୍ୱୀକାର କରିସାରିଛୁ । ମାଟି, ପାଣି, ପବନ, ଆକାଶ ଆଉ ନିଆଁକୁ ସ୍ୱୀକାର କରିଛୁ । ଏଇଟା ଜଡ଼ ଉପାଦାନ ପୁଣି ଏଇଟା ହିଁ ଜୀବ ଉପାଦାନ । ସେଥିରୁ ନିଆଁଟା ହେଉଛି ଭୋକ । ତାଳୁରୁ ତଳିପା ଯାଏଁ ମନ ପ୍ରାଣ ଶରୀରରେ ସବୁଠି ଭୋକ, ସବୁଠି ଦିକ୍ ଦିକ୍ ଜଳୁଥିବା ନିଆଁ; କିନ୍ତୁ ଜିଭ ଆଗରେ ଆଉ ଉପସ୍ଥରେ ଅଗ୍ନି ବିନ୍ଦୁ ସବୁଠୁ ପ୍ରଖର । ଜିଭରେ ଭୋଜନ ଓ ଉପସ୍ଥରେ ପ୍ରଜନନର କ୍ଷୁଧା । ଏଣୁ ଜୀବମାତ୍ରେ ମୋଟାମୋଟି ଏଇ ଦୁଇଟି କ୍ଷୁଧା ପାଇଁ ବଞ୍ଚିଥା‸ କ୍ଷୁଧାରେ ଜଳୁଥାଏ । ମଣିଷଟା ଜୀବ ନିଶ୍ଚୟ, କିନ୍ତୁ ଏକ ନିଆରା ଜୀବ । ତା'ର ଦୁଇପାଦ ହୁଏତ କାଦୁଅରେ । ମଝିରେ ଜୈବ କେନ୍ଦ୍ର । କିନ୍ତୁ ଶୀର୍ଷଟା ଆକାଶମୁଖୀ । ମନରେ ସେ ସପ୍ତଲୋକ ଭେଦିଯାଏ । ମନରେ ତା'ର ଉଡ଼ାଣ, ତା'ର ଅତିକ୍ରମଣ, ତା'ର ଦିଗ୍‌ବିଜୟ । ମନକୁ ନେଇ ତ' ମଣିଷ, ଯୌନକୁ ନେଇ ଜୀବ । ସେ ଜୀବ ହୋଇ ବଞ୍ଚିବ କିନ୍ତୁ ମଣିଷ ହୋଇ ଆକାଶ ଲଘିବ, ବେଦନା ଭୋଗିବ, ଅମୃତ ଭୁଞ୍ଜିବ, ଅପହଁଚରେ ପହଞ୍ଚିବ । ଏଇଟା ତା'ର ମାନବଧର୍ମ, ଦେବଧର୍ମ । ଯାକୁ ଛାଡ଼ି ଦେଲେ ମଣିଷକୁ ଛାଡ଼ି ଭାଲୁଟାକୁ ଧରି ବସିଥିବ।

ମୁଁ ବି ସତେ କେଡ଼େ ଅଭିଳା । କାହାକୁ କ'ଣ କହିଯାଉଛି । କିନ୍ତୁ କ'ଣ କରାଯାଏ କିଶୋରୀ ବାବୁ । ଆପଣ ସିନା ଅଡ଼ିଟ୍ ଆଣ୍ଡ ଏକାଉଣ୍ଟସ୍‌ରେ ରହିଗଲେ, ନ ହେଲେ ଯଦି ଇତିହାସରେ ଅଧାପକ ହେଇଥାନ୍ତେ ଆପଣ ବି ଆମ ମାର୍ଗେ ଭାଷଣ-ବାଜିଆ ହୋଇଯାଇଥାନ୍ତେ । ମୋ କଥା ଶୁଣି ଏମିତି ମୁଚ୍‌ମୁଚ୍ ହସୁ ନଥାନ୍ତେ; ବିଜ୍ଞତା ସାଙ୍ଗକୁ ଭଦ୍ରତା ମିଶିଲେ ହସଟା ଯେମିତି ହୁଏ ।

ହଉ ହେଲା – ଏ ଯେଉଁ ପଞ୍ଚାକ ଲେଖାଲେଖି କରନ୍ତି ଜୀବନ କଥା, ମଣିଷ କଥା, ଦେଖିଥିବା ନ ଦେଖିଥିବା କଥା, ହେବା କଥା ହୋଇପାରିଥାନ୍ତା କଥା, କହନ୍ତି ଜୀବନର ସଂହିତା ଲେଖୁଛନ୍ତି ବୋଲି, ମାରନ୍ତୁ ଗାଲୁଗପ – ହେଉ ଆପଣଙ୍କ କଥା ରହୁ । ଗଳ୍ପ ଉପନ୍ୟାସ ଲେଖନ୍ତି – ସେମାନେ ସତରେ କ'ଣ ଦେଖନ୍ତି କହିଲେ ?

ମଣିଷ ନା ଭାଲୁ ? ମୋତେ ଲାଗେ ସେମାନେ ଗୋଟାକୁ ଦେଖିଲେ ଆରଟାକୁ ପ୍ରାୟ ଆଖି ବୁଜି ଦିଅନ୍ତି । ମଣିଷକୁ ଦେଖି ତାକୁ ଏମିତି ଚିକଣେଇ ଦିଅନ୍ତି, ଏମିତି ବଢ଼େଇ ଚଢ଼େଇ ଆତସବାଜିଆ କରି ଦିଅନ୍ତି, ଏକାଥରେ ମର୍ଯାଦା ପୁରୁଷୋତ୍ତମ । ଏକେବାରେ ନିର୍ମଳ, ମଳିଝଳି କିଛି ନାହିଁ । ନାଇଁ ଯଦି ଫୁଙ୍ଗୁଳା ନଙ୍ଗଳା ମଣିଷଟାକୁ ଦେଖନ୍ତି ତାକୁ କରି ଦିଅନ୍ତି ଏକାଥରେ ନାଲା ଏକ ଭାଲୁଆ ପୁରୁଷାଧମ । କିଛି ଅଛନ୍ତି ମିଶାମିଶି କରନ୍ତି ଡକ୍ଟର ଜେକିଲ୍ ମିଷ୍ଟର ହାଇଡ୍ ଭଳି କେହି କାହାସଙ୍ଗେ ମିଶୁନଥିବା ଅଥଚ ଏକାଠି ଛନ୍ଦି ହୋଇଥିବା ଗୋଟାଏ ଅଜବ ଅକୀର୍ତ୍ତିପସର । ଏମିତି ସେମାନେ ଆକାଶ ଦେଖନ୍ତି ନ ହେଲେ ପାତାଳ, ନତୁବା ଏବେ ଆକାଶ ତ ଆଉଟିକକୁ ପାତାଳ । ତା'ମାନେ ତାଙ୍କୁ ଥରକେ ବର୍ତ୍ତୁଳ ପୃଥିବୀ ଉପରେ ଆମେରିକା ଦିଶେ ନହେଲେ ଏସିଆ । ଉଭୟ ସତ୍ୟ । ଭାଲୁ ଯେତିକି ସତ, ମଣିଷ ବି ସେତିକି ସତ । କିନ୍ତୁ ଖୁବ୍ କମ୍ ଲୋକଙ୍କୁ ଉଭୟ ଦେଖାଯାଏ । ସେମାନଙ୍କର ଦୃଷ୍ଟି ଅଜବ, ଏକାଥରେ ବିସ୍ତୃତ ଆଉ ଗଭୀର । ସେମାନେ ଆକାଶରେ ପାତାଳ, ପାତାଳରେ ଆକାଶ ଦେଖିପାରନ୍ତି । ସେମାନେ ପୂର୍ବ ପଶ୍ଚିମକୁ ଏକାଠି ଦେଖିପାରୁଥିବା, ଧରିପାରୁଥିବା ଧୁରନ୍ଧର ।

ମୁଁ କାହିଁକି ଏକଥା କହୁଛି କି କିଶୋରୀ ବାବୁ – ଆପଣ ହେଲେ ସେପରି ଜଣେ ଧୁରନ୍ଧର । ମଣିଷ ମନର ଭିତର ବାହାର ନିଖାରିବାରେ, ତା'ର ଆବରଣ ତଳେ ଛପି ରହିଥିବା ବିଷମ ରୂପକୁ ଦେଖି ଦେଖେଇବାରେ ଆପଣଙ୍କ ପାରିଲାପଣ ଆମକୁ (ଅନ୍ତତଃ ମୋଭଳି ଅନେକଙ୍କୁ) ତାଜ୍ଜୁବ୍ କରିଛି । ନାରୀ ପୁରୁଷ ମୌଳିକ ସମ୍ପର୍କଟି ଏକ ଆଦିମ ସତ୍ୟ । ସେଇଠି ଭଲମନ୍ଦ, ଧର୍ମ ଅଧର୍ମ, ନୀତି ଅନୀତିର ବାଛବିଚାର ସତରେ ନାହିଁ । ଏଣୁ ଆପଣ ଜାଣିଶୁଣି ସେଆଡୁ ମାନେ ସେଭଳି କୌଣସି ମାପକାଠି ଆଡୁ – ମୁହଁ ଫେରେଇ ନେଇଛନ୍ତି ।

ସତ କହିବାକୁ ଗଲେ, କିଶୋରୀ ବାବୁ, ଆପଣଙ୍କ କଳା ଆଉ କାରିଗରୀରେ ଆପଣ ଆମକୁ ଏମିତି ମଜ୍ଜେଇ ଦିଅନ୍ତି ଯେ ଆମେ ପ୍ରାୟ ଆବିଷ୍ଟ ହେଲାପରି ଅନେକ ନିଷିଦ୍ଧ 'ଅଗମ୍ୟ' ଅଞ୍ଚଳକୁ ଗମିଯାଉ । ଆମକୁ ଭଲ ବି ଲାଗେ ସେ କଥା ଶୁଣିବାକୁ, ସେ ଚିତ୍ର ଦେଖିବାକୁ – ଗୀତା ଆଉ ତା' ବୋଉ 'ଭଙ୍ଗା ଖେଳନା' ଗଳ୍ପରେ ଆମ ଆଗରେ ଉଭା ହୋଇଯାନ୍ତି । ଗୀତା କିଶୋରୀ । ବୁଝି ସମଝି ଆସିଲାଣି, ହେଲେ ବୁଝିନାହିଁ ଢେର୍ କଥା, ଜୀବନର ଜଟିଳ ଗଣିତ । କୁଶଳୀ କଳାକାର ଆପଣ । କେତେବେଳେ କାୟାପ୍ରବେଶ କେତେବେଳେ ଛାୟା ପ୍ରବେଶ କରି ଆପଣ ସ୍ୱୟଂ କିଶୋରୀଟିଏ ହୋଇ ଯାଇଛନ୍ତି । ତା'ର ଭୂମି, ତା'ରି ଭୂମିକାରେ କଥାଟିକୁ କେତେ ସରଳ, ଅବୋଧ, କଅଁଳିଆ ଭାବନା ଚିନ୍ତାକୁ ଯେମିତି ନେଇ ଠିଆ କରିଛନ୍ତି, ତାହା ଅତୁଳନୀୟ । କିନ୍ତୁ ଗୀତା ବୋଉକୁ ମଞ୍ଚ ମଝିକୁ ଆଣିନାହାନ୍ତି, ତା' ବାପା ବିଚାରାଟିକୁ

ତ' ଆଦୌ ନୁହେଁ । ମଜ କଥାଟା କିନ୍ତୁ ଗୀତାବୋଉକୁ ନେଇ । ତାକୁ ଦେଖେଇଛନ୍ତି ନିରାପଦ ଦୂରତାରୁ । ଦେଖେଇଛନ୍ତି ଯେତେ, ସୂଚେଇଛନ୍ତି ତା'ଠୁ ଢେର୍ ବେଶି । ବୁନୁ ଦାଦା ଓ ସେ ହସିବାରେ ଅସୁବିଧା କ'ଣ ? ଗୀତା ବରଂ ଭାବୁଛି ବାପା ଆଉ ବୋଉ କାହିଁକି ସେମିତି ହସୁନାହାନ୍ତି । ଆମେ ବି ଭାବୁଛୁ ସେଇଆ, କିନ୍ତୁ କୈଶୋର ପାରି ହୋଇ ଆସିଥିବା ଆମର ସୁଜାଣ ଢଙ୍ଗରେ । ବୁନୁଦାଦା ଆସୁ ଆସୁ ନୂଆବୋଉଙ୍କୁ ଶୁଣାଉଛନ୍ତି, ତାଙ୍କୁ ଭାରି ଭୋକ । କି ଭୋକ ସିଏ ? – କି ଶେଷ ? ତା'ପରେ ସନ୍ଧ୍ୟାର ଜାଗୁଲୁ ଜାଗୁଲୁ । ବାଡ଼ି କବାଟ ମେଲା । ତାଜମହଲ । ଆଉ ଆଉ ଅନେକ କଥା ନ କହି କହିଦିଅନ୍ତି ଆପଣ 'ଖେଳନା'ଟିକୁ। ତା'ପରେ ଖୁବ୍ ନିପୁଣ, ସୁପରିକଳ୍ପିତ ସଚେତନ ଭାବରେ ଭାଙ୍ଗିଦିଅନ୍ତି । ଜନ୍ମଦିନ ଉପହାର ଜଣେ ମଧ୍ୟବୟସ୍କା ମହିଳା ପାଇଁ ମୋଟ ଉପରେ 'ଖେଳନା' କାହିଁକି ହେବ ? ତା'ପରେ 'ତାଜମହଲ'ଟିଏ କୋଉ ପ୍ରକାରର 'ଖେଳନା' ହୋଇପାରେ ? ଆମେ ଆପଣଙ୍କଠାରୁ ବୁଝୁଛୁ, ମତଲବ୍ ବି ବୁଝୁଛୁ । 'ତାଜମହଲ' ଭାଙ୍ଗିବା କେବଳ ଆଳ । ଭାଙ୍ଗିଛି ଦାମ୍ପତ୍ୟ ପ୍ରେମ । ଭାଙ୍ଗିଛି ନିଷ୍କଳଙ୍କ ମାତୃପ୍ରତିମା । ଭାଙ୍ଗିଛି ପରିବାରର ପଥର ଚଟାଣ । ତା' ଉପରେ ଆମେ ଗଢ଼ି ଥୋଇଥିବା କାରୁକାର୍ଯ୍ୟ ଖଚିତ ଆମର ପ୍ରିୟ 'ଆଦର୍ଶ'ର ଖେଳନା । ଗଳ୍ପ ପଢ଼ିବାର ଆବେଶ ଓ ଆପଣଙ୍କ ଯାଦୁବିଦ୍ୟାରୁ ମୁକୁଳିଲା ପରେ ଆମେ ଚକିତ ହୋଇ ଚାହିଁରହୁ ଚୂର୍‌ମାର୍ ହୋଇଥିବା ସେ ମାର୍ବଲ ଇମାରତ୍‌ଟିକୁ । ବ୍ୟଥିତ ହେଉ, ଉତ୍ପୀଡ଼ିତ ହେଉ । ଆପଣଙ୍କୁ ଚାହୁଁ, କ୍ରୋଧମିଶା ଅଭିଯୋଗ ନେଇ । ଆପଣ ନିର୍ବିକାର ଭଦ୍ର ମୃଦୁ ହସ ଭିତରେ କହନ୍ତି ''ଏପରି ବି ହୁଏ''। ଆମର ସନ୍ଦେହ ହୁଏ ଆପଣ ଭାରି ଖୁସି ହେଉଛନ୍ତି ଏମିତି ଏକ ଚିତ୍ର ଦେଖେଇବାରେ । ସନ୍ଦେହ ହୁଏ ଆପଣ କିଛି କିଛି ପରପୀଡ଼ନର ସୁଖ ପାଉଛନ୍ତି ବୋଲି, ଖୁବ୍ ମାର୍ଜିତ ଶାଳୀନ ଢ଼ଙ୍ଗର ସାଡ଼ିଷ୍ଟ ପରି । – ଗୀତା ଆଖିରେ ଦେଖେଇଛନ୍ତି ମା'ଟିଏ। କିନ୍ତୁ ଆଢୁଆଳରେ ସେଇ ମା'ଟିକୁ ଦୋଚାରିଣୀ କରିଦେବାରେ ଆମକୁ ଆମର ଆକାଂକ୍ଷା ମାଆ ରୂପର ଖେଳନାଟିକୁ ଭାଙ୍ଗି ଧରେଇ ଦେଇଛନ୍ତି ଆମ ମୋହ ଭଙ୍ଗ କରିବାକୁ ଆଉ ଏକ ମୋହରେ, ଖୁବ୍ ବାହାଦୁରିଆ ଆଇକନୋକ୍ରାଷ୍ଟ ପରି । ଆପଣଙ୍କ ଅନୁପମ ଲେଖକ ସ୍ରଷ୍ଟା ପଛରେ ସତରେ କ'ଣ ଆପଣଙ୍କ ଜାଣତରେ ବା ଅଜାଣତରେ ଆପଣ ଜଣେ ସ୍ୟୁଡ଼ୋ ସାଡ଼ିଷ୍ଟ ଓ ସେଇ ମାନସିକତାରେ ଜଣେ ଆଇକନୋକ୍ରାଷ୍ଟ ?

ଆପଣ ପଣ୍ଡିତ ଲୋକ । ଭାରି ସମଝଦାର୍ । ଆପଣ ସେଥିପାଇଁ ବୁଝିପାରୁଥିବେ ମୁଁ ଏମିତି କାହିଁକି ଅଭିଯୋଗ କରୁଛି । ମୁଁ ଆପଣଙ୍କୁ ପଢ଼ି ଯେତିକି ମୁଗ୍ଧ, ସେତିକି ଚକିତ ଓ ସେତିକି ବ୍ୟଥିତ । ଖାଲି କ'ଣ 'ଭଙ୍ଗା ଖେଳନା' ?

ଆପଣ ହାତଟେକି ବାରଣ କରୁଛନ୍ତି । ମୋତେ ଶୁଭୁଛି ''ହଁ ହଁ, ଆଉ ଆଗେଇବା ପୂର୍ବରୁ ମୋତେ ଶୁଣନ୍ତୁ । ଗୀତାକୁ ଆଳ କରି ମୁଁ ମୋ ଖେଳନାଟି ହିଁ ଭାଙ୍ଗିଛି–ଆଉ ଯାହା ଯାହା ଭାଙ୍ଗିବା କଥା ଆପଣ କହିଛନ୍ତି ସେସବୁ ବି ହୁଏତ ତା' ସାଙ୍ଗରେ ଭାଙ୍ଗିଯାଉଛି । ଭାଙ୍ଗିଲାବେଳେ ମୁଁ ଖୁସି ହୁଏ ବୋଲି ଆପଣ କେମିତି ଭାବିଲେ ? ବରଂ ମୋ ଆଖି ସେତେବେଳେ ଛଳଛଳ ହୋଇଯାଇଛି । ଦୀର୍ଘଶ୍ୱାସଟିଏ ବାହାରି ଯାଇଛି ସମସ୍ତଙ୍କ ଅଲକ୍ଷ୍ୟରେ । ଆପଣ କାନେଇ ଜାଣିଲେ ଏବେବି ସେ ଦୀର୍ଘଶ୍ୱାସ ଶୁଣିପାରିବେ ଆପଣ । କଷ୍ଟ ହେଉଥିବ କାରଣ ମୁଁ ନିଜେ କଷ୍ଟ ପାଇଛି । ମୁଁ ଯେତେବେଳେ କହେ "ଏମିତି ବି ହୁଏ କେବେ ବି ଖୁସିରେ କହେ ନାହିଁ । ବରଂ ମନେ ମନେ ଭାବୁଥାଏ । ଏମିତି ସତେ କାହିଁକି ହୁଏ ? - ନହେଲେ କ'ଣ ହୁଅନ୍ତା ନାହିଁ ? – ମାଆଟିକୁ ମାଆ ରୂପରେ ମୁଁ ଦେଖିବାକୁ ଚାହେଁ, କିନ୍ତୁ ନାରୀଟି ଦୋଚାରିଣୀ ହେଇଯିବା ଏବଂ ସେଥିରେ ଦାମ୍ପତ୍ୟର ଐତିହାସିକ ସୌଧ ତାଜମହଲ ଭାଙ୍ଗିଯିବା ମୋତେ ବି ବାଧେ – ଏଇଟା କ'ଣ କୌଣସି ସାଡ଼ିଷ୍ଟ କିମ୍ବା ଆଇକନୋକ୍ଲାଷ୍ଟର ଲକ୍ଷଣ ବୋଲି ଆପଣ ଭାବୁଛନ୍ତି ?''

ଆପଣ ଦୟାକରି ସେମିତି ଚାହାନ୍ତୁ ନାହିଁ । କିଶୋରୀବାବୁ ଭାରି କାନ୍ଦ କାନ୍ଦ ଦେଖାଯାଉଛନ୍ତି । ମୁଁ ଆପଣଙ୍କୁ ଏ ବାଗେ ବୁଝି ନଥିଲି । – ଆଇ ଏମ୍ ସରି । – ମୁଁ ସେଇ 'ଭଙ୍ଗାଖେଳନା'ଠୁ ଅନେକ ଅନୁପମ ଗଳ୍ପ 'ମଣିହରା' କଥା କହିଥାନ୍ତି । ସେଇଠି ବି ପୁଣି ସେଇ ପ୍ରକାର ବିଡ଼ମ୍ବନାଟିଏ ସହିତ ଆମର ଭେଟ ହେଉଛି । ବିଚାରୀ ପୁତ୍ରହରା ନିର୍ମଳା ଦେବୀ । ତାଙ୍କର ପୁତ୍ରଶୋକ ନିର୍ବାକ୍ ଟଳମଳ ଦୁଃଖର ଭରା କଳସୀ; ଅନ୍ଧାର ନୀରବତା, ଅସହାୟତା ଭିତରେ ଉଡ଼ିଯାଉଛି ଏବଂ ଗଡ଼ିଯାଉଛି ସେଇ ଗୋଟାଏ ମାତ୍ର ଗର୍ଭକୁ । ଏଠି ବୁନୁଦାଦା ବା ପରପୁରୁଷଟିଏ ନ ଥାଇପାରେ । ହେଲେ ଏତିକିବେଳେ, ଜୀବନ ଲହୁଲୁହାଣ ହୋଇ ଛିନ୍ନଛତ୍ର ପଡ଼ିଥିଲାବେଳେ, ପର୍ବତ ପରି ଦୁଃଖର ମୁହୂର୍ତ୍ତ ସବୁ ପାରିହେଲା ବେଳେ ପତିସଙ୍ଗ ଲୋଡୁଛି ନାରୀ! ଅସ୍ୱାଭାବିକ, ଅସଂଗତ ବିଦ୍ରୂପ କଲା ପରି ଲାଗୁ ନାହିଁ ? – କିନ୍ତୁ ଯେତେ ନିଷ୍ଠୁର ହେଲେ ସୁଦ୍ଧା ମାନିବାକୁ ପଡୁଚି ଯେ ''ଏମିତି ବି ହୁଏ ।'' ଆପଣଙ୍କ ଉତ୍ତର ଶୁଣିଲା ପରେ ଭାବୁଛି ଯେ, ଆପଣଙ୍କୁ ଏ ବିଡ଼ମ୍ବନା ନିଶ୍ଚୟ ବାଧିଥିବ। 'ଏମିତି ସତେ କାହିଁକି ହୁଏ ?' ବୋଲି ଆପଣ ନିଜକୁ ନିଜେ ପଚାରିଥିବେ। କିନ୍ତୁ 'ମଣିହରା' ଲେଖିଦେଇ ସର୍ବହରା ପରି ଚୌକିକୁ ଆଉଜି ପଡ଼ି ଆଖି ବୁଜିଦେଇଥିବେ। – ମୁଁ ବୁଝିପାରୁଛି ଆପଣଙ୍କ ମନ କଥା ।

କିନ୍ତୁ ମୋତେ କହନ୍ତୁ ନା ଦେଖି, ଏ ସେକ୍ସ ବୋଲାଉଥିବା ମାରାତ୍ମକ ସତ୍ୟଟି ଏମିତି ଅଠିକଣା ବେଳେ କାହିଁକି ଫଣା ଟେକି ତା' ବିଳରୁ ବାହାରେ ? - ଯୌନସୁଖ କ'ଣ ଏକ ସମାଧାନ – ଯାବତୀୟ ତାଡ଼ନା, ପୀଡ଼ା ଅସହାୟତାର ଆତ୍ମଆଳ, ଲୁଚିଯିବାର ଏକ ଆଶ୍ରୟ – ଜୀବନର ଜୀବ ଭିତରୁ ଖସିଯିବାର ଏକ ଉପାୟ – ଗୋଟାଏ ସୁଲଭ ଏସ୍କେପ୍‌ର ମାର୍ଗ ? – ପୁତ୍ର ଶୋକରେ ମା'ର ହୃଦୟ ବିଦାରି ହେଉଥିଲା ବେଳେ, ଆଦିମ ନାରୀଟି ତାକୁ ହାତଧରି ନେଇଯାଇଛି ପୁରୁଷସଙ୍ଗ ପାଇଁ । ସ୍ୱାମୀ ନ ହୋଇ, 'ସ୍ୱାମୀ ଧରଣର' ଆଉ କେହି ପୁରୁଷ ହୋଇଥିଲେ ମଧ୍ୟ କିଛି ଫରକ୍ ପଡ଼ି ନଥାନ୍ତା ! – ଏମିତି ସତେ କାହିଁକି ହୁଏ ?' କିଶୋରୀ ବାବୁ – ମଣିଷର ଅବଚେତନ ଭିତରେ ଏତେ କଥା ସତେ କାହିଁକି ଲୁଚି ରହିଥାଏ ?

ମୋଟାମୋଟି ଭାବରେ ସବୁ ନାରୀ ଚରିତ୍ରରେ ସେଇ ଗୋଟିଏ ମାତ୍ର ଗଡ଼ାଣି ଆପଣଙ୍କ ଗଳ୍ପ ସମ୍ଭାରରେ । କିଏ ନାହିଁ କଲା ଜୀବ ସମ୍ପର୍କରେ ସେକ୍ସ ଅନିବାର୍ଯ୍ୟ । କିନ୍ତୁ ତାକୁ ମଣିଷ ଜୀବନର କେନ୍ଦ୍ରବିନ୍ଦୁ ରୂପେ ଦେଖିବା ଏବଂ ବୁଝିବା କ'ଣ ସେପରି ଅନିବାର୍ଯ୍ୟ ? ଏପୋଲୋ କିମ୍ବା ପର୍ସିଅସ୍‌ଙ୍କ ଅନିନ୍ଦ୍ୟସୁନ୍ଦର ମାର୍ବଲ ପ୍ରତିମାର ଯୌନାଙ୍ଗ ଉପରୁ ଡିମ୍ବିରି ପତ୍ରଟିକୁ ଅପସାରିତ କରିବା କ'ଣ ଅନିବାର୍ଯ୍ୟ ? ରୋଦାଙ୍କ 'ଚୁମ୍ବନ' ମୂର୍ତିକଳାରେ ନଗ୍ନିକା ନାରୀ ରୂପ ଆଉ ସେ ଉତ୍ତେଜକ ଉଦ୍ଦୀପକ ଭଙ୍ଗୀ କ'ଣ ଯଥେଷ୍ଟ ନୁହେଁ ଯେ ଆଉ କ'ଣ କୋଉଠି ଅପ୍ରକଟ ଅଛି ତାକୁ ଖୋଜିବୁଲିବା ? କୋଣାର୍କ ମନ୍ଦିରର ରତିବନ୍ଧ ମୂର୍ତ୍ତି ଦେଖି ଏକଦା ଗୋପୀବାବୁ କହିଥିବାର ଶୁଣାଯାଏ ''ଫାଜିଲ ବାବାଜିଟା !'' ସେଥିରେ ସତରେ ସ୍ଥୂଳ ସଂଗମର ଚିତ୍ର ସିବା ଆଉ ସେପରି କିଛି ମୂର୍ତ୍ତିକଳାର ଉତ୍କର୍ଷ ନାହିଁ ଯେମିତି ଅଛି ସୂର୍ଯ୍ୟ ମୂର୍ତ୍ତିରେ ବା ମୃଦଙ୍ଗିନୀ ଅଥବା ଶାଳଭଞ୍ଜିକାରେ । ଡିମ୍ବିରି ପତ୍ର ଟେକିବା ଯାହା ଜୀବନର ବିପୁଳ ବିଭବ ସତ୍ତ୍ୱେ ସେକ୍ସକୁ ଅନାବୃତ କରିବା ତାହା ନୁହେଁ କି ? ସେଥିରେ କ'ଣ ଏମିତି ବିସ୍ମୟଟା ଅଛି କି ? ଯଦି ଅଛି, ମଣିଷର ମାନସିକତାରେ ଦୋମିଶା, ବହୁମିଶା ଜଟିଳ ବୈଚିତ୍ର୍ୟରେ ! ଆପଣ ସେଇଆ ହିଁ ଦେଖାଇବାକୁ ପ୍ରୟାସ କରିଛନ୍ତି ନା ?

ମୋର ଆପଣଙ୍କ ସାଙ୍ଗରେ କଜିଆ କରିବାର ନାହିଁ, କିଶୋରୀବାବୁ । ମୁଁ କେବଳ ଏଇ ଗଣ୍ଠି କଥାଟାକୁ ଟିକିଏ ଫିଟେଇବାକୁ ଚାହେଁ । ଆପଣ ବେଶ୍ ଜାଣନ୍ତି ଯେ ନାରୀଟିଏ କେବଳ 'ନାଲି', ନେଳୀ ସିଲ୍‌କରେ ବନ୍ଧା ମାଂସପିଣ୍ଡୁଳା ନୁହେଁ । ତାକୁ କେବଳ ସମ୍ଭୋଗ ବସ୍ତୁ ବା 'ସେକ୍ସ ଅବ୍‌ଜେକ୍ଟ' ବୋଲି ଭାବିବା ଏକପ୍ରକାର ଅସ୍ୱାଭାବିକ ଏକବାଗିଆ ମାନସିକତା – ଏକ 'ଅବସେସନ୍' । ଆଦ୍ୟ ଯୌବନର ଅପ୍ରାପ୍ତବୟସ୍କ ମାନସିକତା ! କାବ୍ୟଶାସ୍ତ୍ରରେ ଆପଣ ପ୍ରବୀଣ । ଆପଣଙ୍କୁ ମୁଁ ବା କ'ଣ କହିବି ?

ଶୃଙ୍ଗାର ରସର ବହୁ ସ୍ତର ଓ ବିସ୍ତାର ରହିଛି ତ ! ତା'ର ପ୍ରେମଭାଗ ଅଛି, କାମଭାଗ ବି ଅଛି । ତା'ର ସୁକୁମାର ଲଳିତ ବିଭବ ଅଛି । ତା'ର ଉଜ୍ଜ୍ୱଳ ଐଶ୍ୱର୍ଯ୍ୟମୟ ଉତ୍ତୀର୍ଣ୍ଣ ସ୍ଥିରରୂପ ମଧ୍ୟ ଅଛି । ଉଭୟରେ ରସୋତ୍ପତ୍ତି ଘଟେ ପ୍ରାଣକେନ୍ଦ୍ରରେ । ଏପରିକି କାମଭାଗ ମଧ୍ୟ ବେଶ୍ ମର୍ଯ୍ୟାଦାବନ୍ତ ହୋଇପାରେ । ସେଥିରେ ଲୁଚାଚୋରା ସଂକୋଚ ଦ୍ୱିଧା ବି ନ ରହିପାରେ। ପରକୀୟା ମଧ୍ୟ ଜୈବିକ ଯୌନାଚାର ନ ହୋଇ ଏକ ମାନବୀୟ ସଂପର୍କ ହୋଇପାରେ। କିନ୍ତୁ ଆପଣ 'ରାତି କୁକୁର' ଗଳ୍ପରେ ଯେଉଁ କୁତ୍ସାଟିକୁ ଦେଖେଇଛନ୍ତି ଖାଲି ରୂପବଜଳ କରି ଆମ ନରନାରୀ ସମ୍ପର୍କକୁ କଟାକ୍ଷ କରିନାହାନ୍ତି କି ? ଆମର ଗୋଟାଏ ଭାଗ କାଦୁଅ ନିଶ୍ଚୟ କିନ୍ତୁ ଅବଶିଷ୍ଟ ବୃହତ୍ ଭାଗରେ ଯେଉଁ ଦୀପ୍ତି, ଯେଉଁ ସୁରକ୍ଷା, ଯେଉଁ ନିର୍ମଳତା ଅଛି ତା' ଉପରେ କାଦୁଅ ବୋଲି ତାକୁ ନ୍ୟୂନ କରିଦେବାରେ କ'ଣ ସାର୍ଥକତା ବା ଅନିବାର୍ଯ୍ୟତା ଅଛି ? ବରଂ ସେ ମହତ୍ତର ଭୂମିକୁ କାଦୁଅ ଭାଗରେ ରଞ୍ଜେଇ ପାରିଥିଲେ କେମିତି ହୋଇଥାନ୍ତା ?

ଆପଣ ସାମାନ୍ୟ ବିସ୍ମିତ ଓ ବିରକ୍ତ ହେବାର ମୁଁ ଅନୁଭବ କରୁଛି । ''ଭଲା ଲୋକ ହାବୁଡ଼ରେ ପଡ଼ିଲି ! ଇଏତ ମୋର ନୀରବତାର ଫାଇଦା ଉଠେଇ ଚାଲିଛି । ମୋତେ ପାଠ ପଢ଼େଇବା ଆରମ୍ଭ କରିଦେଲାଣି ! ଆରେ ବାବୁ ମୁଁ ଏମିତି ନ କରି ସେମିତି କରିଥିଲେ କ'ଣ ହୋଇଥାନ୍ତା କହି ଲାଭ କ'ଣ ? ସେଇଟା କ'ଣ ତୁମ ଲେଖା ପାଇଁ କୁହାଯାଇପାରିବ ନାହିଁ ନା ସେକ୍ସପିଅର, ଦାନ୍ତେଙ୍କୁ କୁହାଯାଇପାରିବ ନାହିଁ ? – ବିକଳ୍ପ ତ ବାର ହଜାର ହୋଇପାରେ । କିନ୍ତୁ ବାସ୍ତବତା ହେଲା ଆଚ୍ଛା, କହନ୍ତୁ ନା ଆପଣଙ୍କୁ ଭଲ ନ ଲାଗିପାରେ, କିନ୍ତୁ ମଣିଷକୁ ମୁଁ ଯେମିତି ଦେଖେଇଛି, ସେଇଟା ସତ ନା ନୁହେଁ ?''

ନିଶ୍ଚୟ ସତ । ମୁଁ ଆପଣଙ୍କୁ ନ ପଢ଼ି, ନ ବୁଝି ଏମିତି ଖାଲି ବକ୍‌ବାସ୍ କରୁଛି ନା କ'ଣ ? ଯାହାକୁ ଯେ ଭଲପାଏ, ତାକୁ ଆଉ ଟିକିଏ ଭଲ ରୂପରେ ଦେଖିବାକୁ ମନ କରିବା ପାଇଁ ମନା ଅଛି ? ମଣିଷ ମନର ଯେଉଁ ଜଟିଳତା କଥା ଆପଣ ସୂଚେଇଛନ୍ତି ମୁଁ ଅଳ୍ପେ ବହୁତେ ତାକୁ ବୁଝିଛି । ଅନେକେ ଜାଣନ୍ତି କିନ୍ତୁ ମାନନ୍ତି କି ନାହିଁ କେଜାଣି ଯେ ମେଦିନୀ ତ୍ରିପାଦ । ପାଦକେ ପୃଥିବୀ । ଦ୍ୱିପାଦରେ ଆକାଶ । ତ୍ରିପାଦରେ ଅନ୍ତରୀକ୍ଷ । ଏ ବିସ୍ତାର ଭିତରେ ମଣିଷ ମନର ବୈଚିତ୍ର୍ୟ ବିଭବ ଅସୁମାରି । କେବଳ ଗୋଟିଏ ଅଖଜା ଦେଖେଇଦେଲେ ଯଥେଷ୍ଟ ହେଉନାହିଁ । ଏ ବୈଚିତ୍ର୍ୟ ଏକ ଅତି ଜଟିଳ ବହୁ ସ୍ଥୂଳ ସୂକ୍ଷ୍ମ ଉପାଦାନର ଅଦ୍ଭୁତ ବିନ୍ୟାସ ତ ହୋଇପାରେ । – ନା ନା ମୁଁ କୌଣସି କଟ୍ଟର ନୀତିବାଦୀ ବା ଆଦର୍ଶବାଦୀ ନୁହେଁ । ଭଲ ଅସାର କ'ଣ, ଆପଣ କହିଲା ପରି, କ'ଣ ସହଜ ହେଇଚି ଜାଣିବା ପାଇଁ ? ସତରେ ଏଇଠି ନିରୁତା ଭଲ କେହି ନାହାନ୍ତି, ନିଛକ

ମନ୍ଦ ବି କେହି ନାହାନ୍ତି । ସବୁ ଦୋମିଶା, ବହୁମିଶା, ବିଚିତ୍ର ଜୀବ । କେବଳ ଭାଗମାପ ନେଇ ଆପଣଙ୍କ ସାଙ୍ଗରେ ମୋର ଏ ଭିଡ଼ାଭିଡ଼ି ଚାଲିଛି ।

ହେଲା, ହେଲା ! ଆପଣ ଚିଡ଼ନ୍ତୁ ନାହିଁ । ମୁଁ ଆପଣଙ୍କ ଭଳି କହିପାରୁଥିଲେ ପନ୍ଦର ପୃଷ୍ଠା ଯାଏଁ ଗପିଗଲେ ବି ଶୁଣିବା ଲୋକ ବିରକ୍ତ ହେବାର ପ୍ରଶ୍ନ ଉଠୁ ନଥିଲା । ଆମେ ତ ଫେର୍ ଆପଣଙ୍କୁ ଶୁଣୁଛୁ । ଆପଣ କଥା କହିଲାବେଳେ ଶୁଣିବା ଲୋକର ନାଡ଼ି ଉପରେ ଟିପ ମଡ଼େଇଥାନ୍ତି । ସେଇଠି ସାମାନ୍ୟ ଅନାଗ୍ରହ ଦେଖାଦେବା ପୂର୍ବରୁ ଆପଣଙ୍କୁ ମାଲୁମ୍ ହୋଇଯାଏ । ଆପଣ ସାଙ୍ଗେ ସାଙ୍ଗେ ସ୍ୱର, ଭଙ୍ଗୀ ବଖାଣ ବଦଳେଇ ଦିଅନ୍ତି । କଥା କହି କାନମୂଳେ ଥାପୁଡ଼ି ମାରି ସେ ବିଚାରାକୁ ଶୁଆଇ ଦିଅନ୍ତି ନାହିଁ । ବହୁ କଥାକାର ସେଇଆ କରିଥାନ୍ତି । ଆପଣ ବରଂ ତା' ଆଖିରୁ ନିଦ ଉଡ଼େଇ ଦିଅନ୍ତି; ଚମକେଇ ଦିଅନ୍ତି ତା' ନାଭିକେନ୍ଦ୍ର ।

ଭାବୁଛି ଆପଣଙ୍କ ଅବସରପ୍ରାପ୍ତ ଉଚ୍ଚାଧିକାରୀ 'ଗଗନବାବୁ'ଙ୍କୁ ଆଜିର ଆଳାପ ପାଇଁ ଶେଷ ପ୍ରସଙ୍ଗ ରଖିବି । ଆପଣଙ୍କର କିଛି ଆପତ୍ତି ଅଛି କି ? –

'ଆପତ୍ତି ଥିଲେ ବି ଆପଣ କ'ଣ ମାନିବା ଜନ୍ତୁ । କହନ୍ତୁ କ'ଣ କହିବାକୁ ଚାହୁଁଛନ୍ତି ।'

'ଭୟ, ପ୍ରେମ, ଗେଣ୍ଡୁଫୁଲ' ଗଳ୍ପଟିକୁ ବାଛିବାର କାରଣ ହେଲା ଯେ, ଆପଣ ସେଥିରେ ସମଗ୍ର ପାଣ୍ଡୋରା ପେଡ଼ିଟିକୁ ଫିଟେଇ ଦେଇଛନ୍ତି । ବଢ଼ିଆ ଗଳ୍ପ ବିନ୍ୟାସରେ, କଥନଶୈଳୀରେ ଆଉ ମୃଦୁ ବ୍ୟଙ୍ଗ ବିଦ୍ରୂପରେ । ଆଉ ଗୋଟିଏ କାରଣ ହେଲା ଯେ ଆପଣଙ୍କ ସର୍ବଶେଷ ଗଳ୍ପ 'ଗଦ୍ୟ ଓ ଗେଣ୍ଡୁଫୁଲ' ଏ ଗଳ୍ପର ଏକପ୍ରକାର ପରିପୂରକ । ଭୟ, ପ୍ରେମ, ଗେଣ୍ଡୁଫୁଲ ପୁରୁଷପକ୍ଷର ବୟାନ ଏବଂ ଅନ୍ୟଟି ନାରୀର । ବିଷୟ ଗୋଟିଏ । – ଆଚ୍ଛା 'ଗେଣ୍ଡୁଫୁଲ'କୁ ଏମିତି କାହିଁକି ବେଜ୍ଜିତ୍ କରିଛନ୍ତି । ସତେବା ବିଦ୍ରୂପର ସାକାର ନିଲଠା ରୂପ ହେଲା ଗେଣ୍ଡୁଫୁଲ । ଆଉ ବି ଅନେକ ରଜନୀଗନ୍ଧା ଓ ଗୋଲାପର ଗରାକ ଅଛନ୍ତି ଯେଉଁମାନେ ଏ ନିଦା, ମାଳୁରା ଓଜନିଆ ଗେଣ୍ଡୁଫୁଲଟାକୁ ଫୁଲ ବୋଲି ମାନନ୍ତି ନାହିଁ । ଖାଲି ପ୍ରଥମ ପ୍ରେମିକାର ଗଳାରେ ଏଥିରୁ ଗୋଟିଏ ମାଳ ଲମ୍ବେଇ ଦେବାର କଳ୍ପନା କଲେ ହିଁ ଏହାର ଅଯୋଗ୍ୟତା ବୁଝାପଡ଼ିଯାଏ ।

ସେଇ ଗଳ୍ପକୁ ଫେରିଆସିବା । ପ୍ରଥମେ 'ଭୟ' । ଭୟ କାହାକୁ ଓ କାହିଁକି ? ଏଭଳି ବ୍ୟାପାରରେ ପ୍ରଥମେ ଭୟ ବିବାହିତା ପତ୍ନୀକୁ, ପରିବାରକୁ, ସମାଜକୁ, ଲୋକଲଜ୍ଜାକୁ, ବଦନାମକୁ, ଅପରାଧବୋଧକୁ, ପାପବୋଧକୁ, ଦଣ୍ଡକୁ, ପ୍ରାୟଶ୍ଚିତ୍ତକୁ ଓ ଆଉ ଅନେକ ପ୍ରକାର ପରିଣାମକୁ । ଠିକ୍ ନା ?

କାହିଁକି ? – ଗଗନବାବୁ 'ଅବସରପ୍ରାପ୍ତ ଉଚ୍ଚାଧିକାରୀ' ବୁଝିଛନ୍ତି, ନୀତି କ'ଣ, ନୀତି ଲଙ୍ଘନ କ'ଣ ଓ ସେଇ କାରଣରୁ ଅପରାଧ କ'ଣ। ଏଣୁ ଅପରାଧ କରି ତାକୁ ସ୍ୱୀକାର କରି ନ ପାରିବା, ସ୍ୱୀକାର କରିବାକୁ ଦେଦୋପାଞ୍ଚ ହେବା, ଧକପଚ ହେବା ହିଁ ତ ଭୟ ! ଭଲମନ୍ଦର ମାପକାଠିରେ ଭୁଲ୍ ଥାଇପାରେ କିନ୍ତୁ ଏଇ ଭଲମନ୍ଦକୁ ମୋଟାମୋଟି ମାନିନେବା ତ ସାମାଜିକତା ଶିଷ୍ଟାଚାର କିମ୍ବା ହୋଇପାରେ କିଛି ମାତ୍ରାରେ ଶଠତା, ବା କପଟତା। ଗଗନବାବୁଟି ବିଚରା ମୂଳରୁ ଡରକୁଳା । କିନ୍ତୁ ଶୋଷବେଳେ ବୁଡ଼ି ବୁଡ଼ି ପାଣି ପିଇବାରେ ପକ୍କା ଜଣେ। ଆଚରଣର ମୁଖଟିଏ ଜାଣିଶୁଣି ପିନ୍ଧିଥାନ୍ତି କାରଣ ତାକୁ କାଢ଼ି ଥୋଇଦେବାକୁ ଜୀବନର ଏତେକାଳ ଭିତରେ ତାଙ୍କର ସାହସ ହୋଇନାହିଁ, ସେଥିପାଇଁ ତାଙ୍କର ଦୋମିଶାପଣ। ଦୋଦୋପାଞ୍ଚ ସଂକୋଚ।

ତା'ପରେ 'ପ୍ରେମ' । ନାରୀ ପୁରୁଷ କଥା ତ । ତାକୁ ଏ ପରିଣତ ବୟସରେ ସେ ସହଜରେ କହିଦେଇ ପାରୁନାହାନ୍ତି କାହିଁକି ? – ଏବଂ ପରିଶେଷରେ କହୁଛନ୍ତି ବା କାହିଁକି ? – କହିପାରୁ ନାହାନ୍ତି କାରଣ କହିବାକୁ ଡରୁଛନ୍ତି, ଡରୁଛନ୍ତି କାରଣ ଭିତରେ ଭିତରେ ଭୁଲ୍ କରିଛନ୍ତି ବୋଲି ଜାଣୁଛନ୍ତି । ଶେଷରେ କହିଦେଉଛନ୍ତି କାରଣ ସେ ବୋଝଟାକୁ ଆଉ ସେ ବୋହିପାରୁ ନାହାନ୍ତି । ଲୁଚେଇ ରଖିପାରୁ ନାହାନ୍ତି ବଡ଼ଭାଇଙ୍କ କଲମଚୋରି କରିଥିବା ପ୍ରସଙ୍ଗ ପରି । – କହୁଛନ୍ତି କାରଣ କହିଦେଲେ ହାଲୁକା ଲାଗିବ ନିଜକୁ, କାରଣ ଡିଙ୍ଗୁରା ପିଟି କହିଦେଇ ପାରିବା ଗୋଟାଏ ପ୍ରକାର ବାହାଦୁରି ବି ତ ହୋଇପାରେ । – ଯେମିତି ଧରାଯାଉ ସେ କହୁଛନ୍ତି – ''ଏଇଟାକୁ ଅନୀତି, ଅପରାଧ ବୋଲି କହୁଛ ତ ? – ହଁ ମୁଁ ଏସବୁ କରିଛି । କ'ଣ ହେଇଗଲା ସେଇଠୁ ? କିଏ ସେମିତି କରି ନାହିଁ ? ସତସତିକା କରିଛି ନ ହେଲେ ମନେ ମନେ କରିଛି। – ମୁଁ ତ ଆଉ ଲୁଚଉ ନାହିଁ । ତମେ କ'ଣ କରୁଚ କରୁନା' । ମୁଁ ମୋର ଅନ୍ୟତମ ମଉସାଙ୍କ ଝିଅ 'ବିନି'କୁ ଅର୍ଥାତ୍ କାଦମ୍ବିନୀକୁ ପ୍ରେମ କରିଛି, କରିଛି, କରିଛି !'' ବୁଢ଼ାଟା ମୁହଁରେ ଏମିତି ପ୍ରେମ ଜିନିଷଟା 'ଜୋକ୍' ପରି ଲାଗିବା କଥା, ଏବଂ ତଥାପି କହିଦେଲା ପରେ ହାଲିଆ ଲାଗିବା କଥା । ଯା'ପରେ ତମ ପ୍ରେମର ଗେଣ୍ଡୁଫୁଲକୁ ବୁଲାଗୋରୁ ଖାଇଯିବା କଥା – ହସିବା କଥା, କାନ୍ଦିବା କଥା !!

ପ୍ରେମ କଥାଟାକୁ ଆପଣ ଆଦ୍ୟ ଯୌବନର ଚୁଲ୍‌ବୁଲିଆ ବୟସରେ ବେଶ୍ୟାଳୟକୁ ଯିବାଠୁ ଆରମ୍ଭ କରିଛନ୍ତି । ତା' ମାନେ ମୋଟ ଉପରେ ଆପଣ ପ୍ରେମ ନାଁରେ ସେକ୍ସ କଥା ହିଁ କହୁଛନ୍ତି । ନାରୀକୁ ପ୍ରେମ କରିବାର ମୋଟାମୋଟି ଅର୍ଥ

ହେଲା ତା' ସହିତ ସେକ୍ସ ଘଟଣା ଘଟାଇବା । ନାରୀ ଆଉ ଯାହା ହେଉ ନହେଉ, ଏ ଦୃଷ୍ଟିରୁ ସେ ଗୋଟିଏ ଭୋଗ୍ୟବସ୍ତୁ । – ଅର୍ଥାତ୍ ସେକ୍ସ ଅବ୍‌ଜେକ୍ଟ ।

ନା ନା ''ପ୍ରେମ ମାନେ ପ୍ରେମ । ଭଲପାଇବା ଯେତେହେଲେ ଗୋଟାଏ ଭଲ କଥା । ତେଣୁ ତାକୁ ସ୍ୱୀକାର କରିବାରେ କୌଣସି ବାଧା ନାହିଁ ।'' – କେତେ ଥଙ୍ଗାଳିଆ ଶୁଭୁଚି କଥାଟା ।

ହଁ 'ଜୟନ୍ତୀ' ବନ୍ଧୁପତ୍ନୀଟିକୁ ଚୁମ୍ବନ କରିବାରେ ଅସୁବିଧା ନାହିଁ ? – ସତେ ? – କୌଣସି ଅସୁବିଧା ନାହିଁ ? – ତା'ହେଲେ ଗଗନବାବୁ ଆଉସବୁ ଚାହିଁବା, ହସିବା ଆଦି ସାଧାରଣ ଘଟଣା ଭଳି ତାକୁ ଭୁଲିପାରୁନାହାନ୍ତି କାହିଁକି ?

ପୂର୍ଣ୍ଣିମା ଦାସ, ବିଚାରୀ ମାଷ୍ଟ୍ରାଣୀ ତା' ସହିତ କବିତା ଦିଆନିଆ ଭାବ ଦିଆନିଆ । ତା'ପରେ "ଦୁଃଖର ବିଷୟ ଯେ ଥରେ ସେକ୍ସ ଘଟଣା ବି ଘଟିଗଲା ତା' ସାଙ୍ଗକୁ ।'' ଦୁଃଖର ବିଷୟ । ସତେ । ସତେ !

ତା'ପରେ ସତ୍ୟବତୀ ମେହେଟା – ଜୁନିଅର ସହକର୍ମିଣୀ, ଅବିବାହିତା । ତା' ହାତଟିକୁ ଧରିବା, ପିଠିକୁ ଆଉଁଶି ଦେବା – ଏଭଳି ବଡ଼ଭାଇମାନଙ୍କ ଗ:ସା:ଗୁ: ଆଚରଣ ଆଢୁଆଳରେ କ'ଣ ସତେ ଚାହୁଁଥିଲେ ଗଗନବାବୁ ? ସେକ୍ସ ? – ନା' ବାବା ନା' । ସେଥିପାଇଁ ସାହସ କାହିଁ ? ସାହସ ନଥିବା ଅର୍ଥ ଅପରାଧବୋଧ ଆଉ ଭୟ, ନା' ନୁହେଁ ?

''ଗଗନବାବୁ କଠୋର ନୀତିବାଦୀ (!) ପରଫେକ୍ସନିଷ୍ଟ । ଏଣୁ ତାଙ୍କ ଆଚରଣ ସବୁ ସ୍ୱାଭାବିକ, ନିର୍ଦ୍ଦୋଷ ! ଏତେ ଟିକେ ମଳି ଝଳି ଯାହା ଦିଶୁଚି, ଏବଂ ଯେଉଁଥିପାଇଁ ସେ ଏତେକାଳ ଦହଗଞ୍ଜ ହୋଇଛନ୍ତି, ତାହା ଚନ୍ଦ୍ରମାରେ କଳଙ୍କ ଭଳି । ବାଃ ବାଃ !!

ତା'ହେଲେ ଗଗନବାବୁଙ୍କୁ ସର୍ବସାଧାରଣ ପୁରୁଷଙ୍କ ନମୁନା ବୋଲି ଧରିନେବା କି ? ଏବଂ ସେଇପ୍ରକାରେ 'ଗୀତା ବୋଉ'କୁ ବା ଆପଣଙ୍କ ଶେଷଗଳ୍ପ ବା 'ଗଗନବାବୁଙ୍କ' ମୁଦ୍ରାର ଆରପାଖ ଧେଡ଼ୀ ଶୁକୁଟୀ ସୁମିତ୍ରାକୁ ନାରୀଙ୍କ ନମୁନା ବୋଲି ମାନିନେବା – ଅନ୍ତତଃ ମାନସିକତାରେ ?

ଆପଣ ହୁଏତ କହିବେ, ''ଆରେ, ଆପଣ ଭାରି ତୁରୁତୁରିଆ ଲୋକ ଦେଖୁଚି । ଗଳ୍ପର ଚରିତ୍ର ଗୋଟାଏ ବ୍ୟବଚ୍ଛେଦ, ଗୋଟାଏ କୋଣରୁ ଉଠାଇଥିବା ପରିଚିତ ବା ଅପରିଚିତ ଆଲୋକ ଚିତ୍ର । ତାକୁ ଏମିତି ଗୋଟାଏ ନମୁନା, ମାନଦଣ୍ଡ କରି କାହିଁକି ମାପିବାକୁ ତରବର ହଉଚନ୍ତି ? – ମୋତେ, ମୋର ଜୀବନଦର୍ଶନକୁ, ମୋ ସାହିତ୍ୟ,

ଗଳ୍ପ, କଳା ଓ କାରିଗରିକୁ ? – ମିଶାଗୋଳିଆ କରନ୍ତୁ ନାହିଁ । ମୁଁ ଗୋଟାଏ ଢ଼ଙ୍ଗରେ ଦେଖିଛି, ବୁଝିଛି । ଏଣୁ ସେଇଭଳି ଦେଖେଇବାକୁ ବୁଝେଇବାକୁ ଚାହିଁଛି । ସେମିତି ଆପଣଙ୍କ ଗଳ୍ପର ଚରିତ୍ରକୁ କ'ଣ ନମୁନା କରି ନେଇହେବ ବା ନେବା ଉଚିତ ?

ବାଃ ବଢ଼ିଆ, କିଶୋରୀବାବୁ ! ମାନିଗଲି । ଆପଣ ଭାରି ସିଆଣା, ଚମତ୍କାର ରସିକ ଲୋକ । ଆପଣଙ୍କ ସାଙ୍ଗେ ଆଳାପ ଜମିଗଲେ ସ୍ୱର୍ଗ ମର୍ତ୍ତ୍ୟ ଭୁଲି ହୋଇଯାଏ ।

ଏବେ ଜାଣିଛନ୍ତି ନା କିଶୋରୀବାବୁ ଆପଣ ଏ କୁହୁଡ଼ି ଆଡୁଆଳକୁ ଚାଲିଯିବା ପରେ ଥାକ ଥାକ ପୋଥି, ପ୍ରବନ୍ଧ ଲେଖାଚାଲିଛି । ଭାରି ପଣ୍ଡିତିଆ, କଷ୍ଟିଆ କଷ୍ଟିଆ ନିବନ୍ଧ । ଆପଣ ପଢ଼ିଥିଲେ କ'ଣ ହୋଇଥାନ୍ତେ କେଜାଣି । ଆପଣ ଯେମିତି ଲାଜକୁଳା ଭଦ୍ରଲୋକ ନା, କିଛି କହି ନଥାନ୍ତେ ହୁଏତ । କିନ୍ତୁ ଭିତରେ ଭିତରେ ଭାରି କୁତୁକୁତୁ ଅନୁଭବ କରିଥାନ୍ତେ – ଆରେ, ଏତେ କଥା ମୋ ଗଳ୍ପ ଭିତରେ ସତରେ ଥିଲା ନା' କ'ଣ ? ଏମାନେ ସବୁ ସେତେବେଳେ ଏମିତି କହୁନଥିଲେ କାହିଁକି ?

ମୋତେ ଚାହିଁଲେ ମୁଁ କ'ଣ ଜବାବ ଦେବି । ଖାଲି ଆପଣ ପରିହାସ କଲାପରି ହୁଏତ କହିବି, 'ଏମିତି ବି ହୁଏ ।'

ବିଦାୟ ନେବାକୁ ମନ ହଉ ନାହିଁ । ଆଉ ଢ଼େର୍ ଢ଼େର୍ ରହିଗଲା । ପୁଣି ଆଉ ଗୋଟାଏ ଆସରରେ ଆପଣଙ୍କ ସହିତ ଆଳାପ କରିବାକୁ ଇଚ୍ଛା । ଆସିବି ନା ? ଆପଣଙ୍କଠାରୁ ମୁଁ ବୁଝିପାରୁଛି । ମୁଁ ନିଜେ କୁହୁଡ଼ି ସେପାରି ଚାଲିଗଲେ ଆହୁରି ସୁବିଧାରେ ଗପ ଜମନ୍ତା । ଆପଣ କ'ଣ ସତରେ ସେଇଆ ଚାହାନ୍ତି ?

ଆପଣଙ୍କ ସେ 'ବେବିଫେସ୍'ରୁ ମନକଥା କ'ଣ ସତରେ ଜାଣିହୁଏ ? ଭାରି କଅଁଳିଆ, ଗୁମ୍‌ସୁମିଆ, ଭଦ୍ରଲୋକିଆ ଚେହେରାଟା ତ ! – ହଉ, ଆସୁଚି ! ନମସ୍କାର !



# ପ୍ରଦକ୍ଷିଣ

ମୋ ସାମ୍ନାରେ ଯେଉଁ ମାଲ୍ୟାର୍ପିତ ସ୍ଥିରଚିତ୍ରଟି ଦିଶୁଚି ତାହା ସାରସ୍ୱତ ପୁରୁଷ ଗୋପୀନାଥଙ୍କର । ସାରଳା, ଜଗନ୍ନାଥ, ଉପେନ୍ଦ୍ର, ଫକୀରମୋହନ, ରାଧାନାଥଙ୍କ ଗହଣରେ ଗୋପୀନାଥ ଏ ସାହିତ୍ୟର ବନ୍ଦନୀୟ ପିତୃପୁରୁଷ । ଦୁସ୍ତର ବ୍ୟବଧାନ ଏପାରିରୁ ପିତୃଲୋକ ଏଇଭଳି ସ୍ଥିରଚିତ୍ରମାନଙ୍କର ଅପହଞ୍ଚ ଇଲାକା । ସେଇଠି ପ୍ରତ୍ୟେକଙ୍କୁ ଦୂରରୁ ଶ୍ରଦ୍ଧାରେ, ଭକ୍ତିରେ ପ୍ରଣାମ କରାଯାଏ, ତାକୁ ନେଇ ଗର୍ବ କରାଯାଏ, ଗୌରବ ଅର୍ଜନ କରାଯାଏ, କିନ୍ତୁ କାହାକୁ ଟିପମାରି ସ୍ପର୍ଶ କରିହୁଏ ନାହିଁ, କାହାକୁ ଏ ଧରତିନ୍ ଆଉ ଆକାଶ ମଝିରେ ଠିଆହୋଇ ମେଘ ଘେରା ପାହାଡ଼କୁ ଅନେଇଥିଲାବେଳେ ହେଇ ଗୋପୀବାବୁ ବୋଲି ଚିହ୍ନଟ କରି ହୁଏନାହିଁ । ଗୋପୀନାଥ ଏବେ ଅବିସ୍ମରଣୀୟ ପ୍ରବାଦ ପୁରୁଷ । ତାଙ୍କୁ ଜାତି ସମ୍ମାନ ଜଣାଉଛି ଏବଂ ଏହିପରି ଜଣାଉଥିବ ପୁରୁଷ ପୁରୁଷ ଧରି । କିନ୍ତୁ ଯେଉଁ କେତେଜଣ ତାଙ୍କୁ 'ଗୋପୀବାବୁ' ବୋଲି ଜାଣିଥିଲେ, ସେ କେବେ ଆମେରିକାରୁ ତାଙ୍କ ପ୍ରିୟ ମାଟି ଓ ପ୍ରିୟଜନଙ୍କ ପାଖରୁ ଫେରିଆସିବେ ବୋଲି ଅପେକ୍ଷା କରିଥିଲେ, ଏବଂ ଏବେ ସେ ଆଉ ଆସିବେ ନାହିଁ ଶୁଣି ନେଲାପରେ ଆନ୍ଦୋଳିତ ଅତୀତରେ ବିକୀର୍ଣ୍ଣ ମୁକ୍ତା ପରି ସ୍ମୃତିଗୁଡ଼ିକୁ ଦରାଣ୍ଡି ବୁଲୁଛନ୍ତି, ବାଷ୍ପାକୁଳ ଆଖିରେ ନୀରବ ଝୁରି ହେଉଛନ୍ତି ଗୋପୀବାବୁଙ୍କୁ, ସେମାନେ ଏ ମାଲ୍ୟାର୍ପିତ ସ୍ଥିରଚିତ୍ରର ଗୋପୀନାଥଙ୍କୁ ଏ ପର୍ଯ୍ୟନ୍ତ ଗ୍ରହଣ କରିପାରି ନାହାନ୍ତି; ସେ ମହାର୍ଘ ପ୍ରିୟଜନଟି ପରିବର୍ତ୍ତେ ଏ ଚିତାଭସ୍ମ ମୁଠାଏକୁ ସ୍ୱୀକାର କରି ପାରିନାହାନ୍ତି। ମୁଁ ବି ସେମାନଙ୍କ ସାଙ୍ଗରେ ଥାଇ ଝୁରିହେଉଛି ଗୋପୀବାବୁଙ୍କୁ । ମୁଁ ଅନଭବ କରୁଛି ମୋ ଦକ୍ଷିଣରେ ଏକ ଉପସ୍ଥିତି । ଅନୁଭବ କରୁଛି ମୋତେ ପୃଥକ୍ କରୁଥିବା ବ୍ୟବଧାନକୁ। ମୁଁ ସେତିକି ବ୍ୟବଧାନରେ ଏ ପୁଣ୍ୟପୀଠକୁ କେବଳ ଘେରାଏ ପ୍ରଦକ୍ଷିଣ କରି ଆସିପାରେ । ମୁଁ ତାକୁ ହିଁ ସାକ୍ଷୀ ରଖି ଆଖି ବୁଜି ଦେଉଛି; ଓହ୍ଲାଇଯାଉଛି ବାଷ୍ପାକୁଳ ବର୍ତ୍ତମାନରୁ ଅତୀତର ଖାଳଢ଼ିପ ଉପରକୁ।

କୋରାପୁଟର କାକିରିଗୁମା, ଲକ୍ଷ୍ମୀପୁରରେ ଅନ୍ୟ କାହାଠୁ ବାରି ନ ହେଲାପରି ଚେହେରା ଓ ଆକୃତି ନେଇ ବୋଧେ ସେ ଜନ୍ମିଥିଲେ । ଟିକିଏ ବେଶ ପୋଷାକ

ବଦଳେଇଦେଲେ ସେ ଶୁକ୍ରୁ ଜାନି କାନ୍ଧରେ ହାତ ପକେଇ ଠିଆହୋଇ ପାରିଥାନ୍ତେ– ସରବୁ ସାଉଁତା ପାଖରେ ବସି ପିକା ଖାଇପାରିଥାନ୍ତେ । ଅଥଚ କେହି ତାକୁ ସହରିଆ ଇଂରାଜୀ ପଢୁଆ ଅଫିସରିଆ ମଣିଷ ବୋଲି ଚିହ୍ନଟ କରିପାରି ନଥାନ୍ତେ । ଯାହାଙ୍କ ସହିତ ତାଙ୍କର ଏତେ ସାରୂପ୍ୟ, ସେମାନଙ୍କ ପାଖରୁ ଯେ ଗୋପୀବାବୁ ଟାଣି ହେଇଯିବେ, ତାଙ୍କ ସାଙ୍ଗରେ, ଜୀବନରେ, ଚେତନାରେ, ସୁଖଦୁଃଖରେ ଏକୀଭୂତ ହୋଇଯିବେ, ଦ୍ରବିଯିବେ ସେମାନଙ୍କ ଅଶ୍ରୁରେ ଓ କାରୁଣ୍ୟରେ ଏଥିରେ ବିସ୍ମିତ ହେବାର କ'ଣ ଅଛି । ବୋଧହୁଏ ପାହାଡ଼ରୁ ପାହାଡ଼କୁ ଶୁଭିଲା ଭଳି ତାଙ୍କ ଡାକ। ସେଥିପାଇଁ ବୋଧହୁଏ ବଡ଼ପାଟିରେ କଥା କହିବାକୁ ତାଙ୍କ ସ୍ୱରଯନ୍ତ ସୃଷ୍ଟି ହୋଇଥିଲା। ଆମ ସଙ୍ଗରେ ଆଳାପ କଲାବେଳେ ଶିଷ୍ଟାଚାରରେ ତାଲିମ ଦେଇ ସେ ପ୍ରଗାଢ଼ ସ୍ୱରକୁ ସେ ନରମାଇ ଦେଉଥିଲେ । ତେବେ ମଝିରେ ମଝିରେ ବୈଠକ ଘରୁ ଉପର ମହଲାରେ କାର୍ଯ୍ୟବ୍ୟସ୍ତ ଥିବା ପତ୍ନୀଙ୍କୁ ଯେତେବେଳେ ଡାକ ଛାଡୁଥିଲେ, ''ହଇହୋ ! ପାନ ଆଣ, ଅମୁକ ବାବୁ ଆସିଛନ୍ତି'' ସେତିକିବେଳେ ସେ ସ୍ୱରର ସ୍ୱରୂପ ପ୍ରକାଶ ପାଇଯାଉଥିଲା। ଚଷମା ଉପରୁ ଢଳଢଳ ଅନେଇଥିବା ଆଖି ଯୋଡ଼ିକ ବୋଧହୁଏ ସେହିପରି ବହୁ ଦୂରକୁ, ଅନେକ ଗହୀରକୁ କାହିଁ କୋଉ ଆକାଶକୁ ଦେଖିବାକୁ ସୃଷ୍ଟି ହୋଇଥିଲେ। ସେ ଗୋଡ଼ ଯୋଡ଼ିକ ସୃଷ୍ଟି ହୋଇଥିଲେ ଖୁବ୍ ଲମ୍ୱା ପାହୁଣ୍ଡ ପକେଇ ଅତିକ୍ରମି ଯିବାକୁ । ଗାନ୍ଧୀ ଭଳି । ସେଥିପାଇଁ କେତେ ଦୀର୍ଘଦେଖା ଯାଉଥିଲେ ସେ ମଧ୍ୟମ କାଟର ମଣିଷଟି ? – ସତେବା ସମସ୍ତଙ୍କ ଉପରେ ସେ ମଥା ଉଟାରି ରହିଥିଲା।

କୋଉ ଜାନି ପାଖରୁ ଆଣିଥିବା ମାଟି ଗୋଟାଳିର ମାଳ ପରି ପ୍ରତିଶବ୍ଦ ବର୍ତ୍ତୁଳ ଓଜନଦାର, ସ୍ୱଚ୍ଛ ଗଡ଼ିଆସୁଥିଲା ସେ ମୁହଁରୁ । ଇଚ୍ଛା ହେଲେ ଅନବରତ ପ୍ରବାହ ଘଣ୍ଟା ଘଣ୍ଟା ଧରି ବହୁଥିଲା । କେତେ ଚରିତ୍ର, ଘଟଣା ପରିବେଶ ଗୁନ୍ଥି ହୋଇ କାହାଣୀ ସୃଷ୍ଟି ହେଉଥିଲା । ମିଥ୍ଟାଏ ପୁଣି ଜୀଇ ଉଠୁଥିଲା । ସେପରି ଗୋଟିଏ ବଖାଣ ଗୋରୁମୁଣ୍ଡିଆ ଅର୍ଘା ସାପକୁ ନେଇ । ବାହାରେ ଝିପ୍‌ଝିପ୍ ମେଘ ବର୍ଷା । ସଞ୍ଜବେଳ । ଗୋପୀବାବୁ ଦୁଇଘଣ୍ଟା ଧରି ବଖାଣୁଥାନ୍ତି ସେ ଅସମ୍ଭବ ପରିବେଶ, ଆଉ ସେ ଅସମ୍ଭବ ଜୀବକୁ, ପ୍ରଗାଢ଼ ପ୍ରତ୍ୟୟ ଦେଲା ଭଳି, ନୂଆ ବିଶ୍ୱାସ ସଞ୍ଚାର କଲାଭଳି ଭାଷା ଆଉ ଭଙ୍ଗୀ । ମୁଁ ନାବାଳକ ପରି ନିଷ୍କଳଙ୍କ ପିଇ ଯାଉଥିଲି ସେ କାହାଣୀ । ମୁଁ ଚାହିଁଥିଲେ ବୋଧେ ସେ ଗୋରୁମୁଣ୍ଡିଆ ଅର୍ଘାସାପକୁ ଟିପମାରି ଛୁଇଁ ଦେଇପାରିଥାନ୍ତି, ସେଇଟା ମୋର ଏତେ ପାଖରେ ନିଶ୍ୱାସ ମାରୁଥିବା ମୁଁ ଅନୁଭବ କରୁଥିଲି । ଗୋପୀବାବୁଙ୍କ ବଖାଣିବାର

ଛନ୍ଦରେ ଥରେ ପଡ଼ିଗଲେ ତେଣିକି ପାଞ୍ଚଶ ପୃଷ୍ଠା ହେଉ ବା ବାରଶ ପୃଷ୍ଠା ହେଉ ଗହୀରରୁ ଗହୀରକୁ ବୁଡ଼ିଯିବା ପାଇଁ ଆଉ ଏକ ଜଗତରେ ପାହାଡ଼ର ଶୀର୍ଷ ଛୁଇଁ ଗଛଲତାରେ ଘଷି ହୋଇ ଝୋଲା ପାଣିରେ ହାତ ଝଳଝଳ କରି ଆସିବା ଅତି ଅପୂର୍ବ ଅନୁଭବ । କିନ୍ତୁ ଛନ୍ଦ ନ ଧରିଲେ ପାହାଡ଼ ପରି ମଡ଼େଇ ଦେଇପାରିବ ମାଟିମଟାଳ, ନିଘଞ୍ଚ ପଥର ପରି ଘୁଞ୍ଚିବ ନାହିଁ ଅମୃତର ସନ୍ତାନ। ସେହିପରି ଏକ ବେଜୋଡ଼ ମାନସିକ ସ୍ଥିତିରେ ଥାଇ ଥରେ ଅଖିଳ ବାବୁ ପରିହାସ କରିବାର ମନେ ପଡୁଚି । "ବାବା, ଗୋପୀବାବୁଙ୍କୁ ମୁଁ ଦୂରରୁ ଦଣ୍ଡବତ କରୁଚି । ତାଙ୍କ ଢ଼ଙ୍ଗ ଅଲଗା, ଅନନ୍ତକାଳକୁ ନେଇ ସେ ଖେଳୁଥାନ୍ତି ତ' ମୋ ପାଖରେ ଅନନ୍ତକାଳ କାହିଁ?" ଗୋପୀବାବୁଙ୍କ ଚରିତ୍ର ଯଦି ବର୍ଷାରେ ଛତା ଫୁଟାଇବ, ସେ ଫୁଟିବା ପ୍ରକ୍ରିୟା କହିବାକୁ ଗୋପୀବାବୁ ଦଶପୃଷ୍ଠା ନେବେ । ଛତାଟିଏ ଫୁଟୁଥିବ ଦଶପୃଷ୍ଠା ଧରି । ଆମେ ଆମୋଦିତ ହୋଇ ହସିଥିଲୁ। ବାକ୍‌ପଟୁ ଓକିଲ ଅଖିଳବାବୁ ବି ଅନନ୍ୟ ଗୋପୀବାବୁଙ୍କୁ ଏଭଳି ସମ୍ମାନ ଦେବାରେ ।

ଆଉବେଳେ ମନ ହେଲେ ଗୋପୀବାବୁ ଠାରରେ କଥା ହେବାକୁ ଭଲପାଆନ୍ତି। ମୋ ସହିତ ଆତ୍ମୀୟତା ଜମି ଆସିଥାଏ। ସେଦିନ ଆଉ ପାଞ୍ଚ ଛ' ଜଣ କିଏ ସବୁ ସେଇଠି ବସିଥାନ୍ତି। ହଠାତ୍ ମୋ ଉଦ୍ଦେଶ୍ୟରେ ଗୋପୀବାବୁ ପ୍ରଶ୍ନ କଲେ–

"ଆପଣଙ୍କ ଋତୁ ?

"ଶରତ୍"

"ବେଳା ?"

"ପାହାନ୍ତା ପହର"

"ଢ଼ଙ୍ଗ ?"

"ଆରାମଚୌକିରେ ହାତଲେଖା ପଟା"

ସେ ଉଲ୍ଲସିତ ହେବାର ମୁଁ ଦେଖିଲି । ଅନ୍ୟମାନେ ଏ ସାଙ୍କେ‌ତିକ ଭାଷାରୁ କ'ଣ ଅର୍ଥ କଲେ ମୁଁ ପଚାରି ବୁଝିନାହିଁ । ସେ ହସିଲେ ପାନଖିଆ ଛାମୁଦାନ୍ତ ଯୋଡ଼ିକ ଦିଶେ । ପାହାଡ଼ ଭିତରୁ ଝରଣା ଗବ୍ ଗବ୍ ବାହାରିଲା ପରି ସେ କୁହାଟିଆ ହସ । ସେ ହସ ଅପୂର୍ବ, ସେ ସ୍ନେହ ଅପୂର୍ବ– ମୋଟା ଧୋତି ଖଣ୍ଡିଏ ପିନ୍ଧି ମେଲା ଦେହରେ ବସିଥିବା ସେ ରୂପ ଅପୂର୍ବ ।

ଖୁବ୍ ନିଠେଇ ନିଠେଇ ସୀତାକାନ୍ତଙ୍କ କବିତା ପଢ଼ିବା ମୁଁ ଦେଖିଛି, ଶୁଣିଛି । ଶ୍ରୀ ଅରବିନ୍ଦଙ୍କ ଦିବ୍ୟ ଜୀବନ ଚିହ୍ନ ମାରି ମାରି ବୁଝିବା, ବୁଝେଇବା, ଆଲୋଚନା

କରିବା ଶୁଣିଛି । ପାଦ୍ଲୋ ନେଗ୍ରୁଦା ଉପରେ ଉଚ୍ଛ୍ୱସିତ ହେବାର ସଲଝେନ୍ ଷିନ୍ ଉପରେ ମୁଗ୍ଧ ବିସ୍ମିତ ହେବାର ଦେଖିଛି । ଏ ଦେଶର ସାହିତ୍ୟ ସଂସ୍କୃତିକୁ ପ୍ରଗାଢ଼ ଭଲପାଇବା, ଏ ମାଟି ପାଣି ପବନକୁ ଏ ଗଛଲତା ପାହାଡ଼ ଝରଣା, ଏ ଛୋଟବଡ଼ ମଣିଷ ଅମଣିଷ ସମସ୍ତଙ୍କୁ ତାଙ୍କ ବିସ୍ତାରରେ ଗ୍ରହଣ କରିବାର ଆଶ୍ଚର୍ଯ୍ୟ ହୋଇ ଅନୁଭବ କରିଛି ।

ତାଙ୍କ ଘରକୁ ପଶିଗଲେ ପାଛୋଟି ନେବାର ଭଙ୍ଗୀ ବାହାରି ଆସିଲାବେଳେ ଗେଟ୍ ପାଖରେ ଠିଆହୋଇ ମେଲାଣି ଦେବାର ସହୃଦୟତା; ଆଉ ମିଳିବ ନାହିଁ। ତାଙ୍କ ଥାକ ଥାକ ବହି ପୃଷ୍ଠା ଭିତରେ ତାଙ୍କୁ ଖୋଜିଲେ ସେ ମିଳିବେ କି ନା ମୁଁ ଜାଣେନା । କିନ୍ତୁ ଯେ ମିଳିବେ ସେ ବୋଧହୁଏ ଗୋପୀନାଥ, ଗୋପୀବାବୁ ନୁହଁନ୍ତି।



# କବି ନନ୍ଦକିଶୋର ବଳ - ଏକ ପୁନର୍ବିଚାର

ବଡ଼ଲୋକଙ୍କ ଜୀବନରେ ବି ବିଚିତ୍ର ଘଟଣା ସବୁ ଘଟେ । ୧୮୯୮ ବେଳକୁ କବି ନନ୍ଦକିଶୋର ରେଭେନ୍ସା କଲେଜର ତୃତୀୟ ବାର୍ଷିକ ଛାତ୍ର । ଟାଲଚେର ପଦକ ପାଇଁ ଇଂରାଜୀରେ ପ୍ରବନ୍ଧ ପ୍ରତିଯୋଗିତା ହେଲା ଏବଂ ''ଉତ୍କଳର ପଲ୍ଲୀଜୀବନ'' ଶୀର୍ଷକ ପ୍ରବନ୍ଧ ଦ୍ୱାରା ସେ ପ୍ରଥମ ସ୍ଥାନ ଅଧିକାର କରି ସେ କାଳର ସେହି ଅନନ୍ୟ ସମ୍ମାନ ଲାଭ କଲେ । ସେ କି ଜାଣିଥିଲେ ଯେ ଅଧ୍ୟକ୍ଷ ତଥା ତାଙ୍କ କାବ୍ୟଗୁରୁ ମଧୁସୂଦନ ରାଓଙ୍କ କଥାରେ ସେ ପ୍ରବନ୍ଧଟିର କଥାବସ୍ତୁକୁ ଓଡ଼ିଆ କବିତାରେ ପ୍ରକାଶ କରିବେ ଏବଂ ତାହାହିଁ ତାଙ୍କ ସାରସ୍ୱତ ପରିଚୟର ନିୟାମକ ହେବ ? 'ପଲ୍ଲୀଚିତ୍ର' ଲେଖି ସେ ବହୁ ପ୍ରଶଂସା ଓ ସ୍ୱୀକୃତିର ଅଧିକାରୀ ହେଲେ ସତ, କିନ୍ତୁ ତାଙ୍କ କବିପଣର ଆଉ ଅନେକ ବିସ୍ତାର ଏବଂ ବିକାଶ ସତ୍ତ୍ୱେ ସେ ହୁଏତ ଜାଣିନଥିଲେ ଯେ ସେ ସବୁଦିନ ପାଇଁ 'ପଲ୍ଲୀକବି' ହୋଇ ରହିଯିବେ । ତାଙ୍କୁ ସେହିଭଳି ନାମିତ କରିବା ଆମ ପାଇଁ ସୁବିଧାଜନକ ହୋଇପାରେ; କିନ୍ତୁ ତାହା ଯଥେଷ୍ଟ ନୁହେଁ କି ଯଥାର୍ଥ ନୁହେଁ । ଯେ କେହି ବିନା ଦ୍ୱିଧାରେ ସ୍ୱୀକାର କରିବ ଯେ ନନ୍ଦକିଶୋର ବଳ ପଲ୍ଲୀକବି । କାରଣ ତାଙ୍କ ଭଳି ଉତ୍କଳୀୟ ପଲ୍ଲୀଜୀବନର ନୈସର୍ଗିକ ସରଳତା, ନିଷ୍କପଟ ପ୍ରାଣପ୍ରାଚୁର୍ଯ୍ୟ, ପ୍ରକୃତି ସହିତ ଓତପ୍ରୋତ ଭାବରେ ଜଡ଼ିତ ଗ୍ରାମ୍ୟଜୀବନର ଆବେଗ, ସଂବେଗ, ବିଶ୍ୱାସ ଓ ବିଚାରର ବିବିଧତାକୁ ଏତେ ସମ୍ବୋଦନଶୀଳତା ସହିତ ଆଉ କେହି ଅନୁଭବ କରି ନାହାନ୍ତି କିମ୍ବା ଏତେ ସରଳ ସ୍ୱଚ୍ଛନ୍ଦ ଅଥଚ ମୌଳିକ ଓ ସ୍ୱଚ୍ଛ କବିତାର ଛନ୍ଦରେ ପ୍ରକାଶ କରି ନାହାନ୍ତି । କିନ୍ତୁ ତା' ବୋଲି ତାଙ୍କ ପୁଷ୍କଳ କବିମାନସର ଅନନ୍ୟ ବିସ୍ତାର ଓ ବିପୁଳତାକୁ ଯଥାଯୋଗ୍ୟ ସ୍ୱୀକୃତି ନ ଦେଇ କେବଳ ଶହେବର୍ଷର ପୁରୁଣା ଅଭ୍ୟାସରେ ତାଙ୍କୁ ସେହି ଗୋଟିଏ ଉପାଧିରେ ସୀମିତ ରଖିଦେବା ତାଙ୍କ ପ୍ରତି ଅନ୍ୟାୟ ବିଚାର ହେବ ନାହିଁ କି ?

ଜୀବନର ପର୍ଯ୍ୟାୟକ୍ରମେ ଅନୁଭବ ଏବଂ ଉପଲବ୍ଧିର ପରିସର ପ୍ରସାର ହୁଏ । ନନ୍ଦକିଶୋରଙ୍କ ବାଲ୍ୟଜୀବନ ସରଳ ଗ୍ରାମ୍ୟ ପରିବେଶରେ ଅତିବାହିତ ହୋଇଥିଲା । ମୂଳରୁ ସଂବେଦନଶୀଳ ଏବଂ ସ୍ପର୍ଶକାତର ମନପ୍ରାଣ ହେତୁ ସେ ପ୍ରାକୃତିକ ଶୋଭା ଓ ପଲ୍ଲୀଜୀବନର ସରଳତା ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ । ଅଭିଜାତ ପରିବାରରେ

ଜନ୍ମଲାଭ କରି ଏବଂ ସେ ସମୟର ଉଚ୍ଚ ଇଂରାଜୀ ଶିକ୍ଷା ସମାପ୍ତ କରି ସୁଦ୍ଧା ଗ୍ରାମ୍ୟ ଜୀବନ ପ୍ରତି ଆକୃଷ୍ଟ ହେବା ଏକ ପ୍ରକାର ବ୍ୟତିକ୍ରମ । କିନ୍ତୁ ତାହାହିଁ ତାଙ୍କର ବୈଶିଷ୍ଟ୍ୟ । ଏହି ସ୍ୱାଭାବିକ ଅନୁରକ୍ତି 'ପଲ୍ଲୀଚିତ୍ର'ରେ ପ୍ରକାଶ ପାଇଛି । ନନ୍ଦକିଶୋରଙ୍କ କବିମାନସର ପ୍ରଥମ ସ୍ଫୁରଣ ଏହି ବାଲ୍ୟଜୀବନର ଅନୁଭୂତିକୁ ଉପଜୀବ୍ୟ କରିଛି । ପଲ୍ଲୀର ପରିବେଶ, ପଲ୍ଲୀବାସୀଙ୍କର ଜୀବନଚର୍ଯ୍ୟା, ସେମାନଙ୍କର ସାମାଜିକ ପାରିବାରିକ ଚଳଣି, ପରଂପରା ଓ ରୀତି ନୀତିକୁ ସେ ଖୁବ୍ ନିକଟରୁ ଦେଖିଛନ୍ତି, ଅନୁଭବ କରିଛନ୍ତି ଓ ଭଲ ପାଇଛନ୍ତି । ସେଥିପାଇଁ ତାଙ୍କ କବିତାରେ ଏତେ ମାର୍ମିକତା, ଏତେ ଆପଣାପଣ ଏବଂ ଏତେ ନିଷ୍କପଟ ସ୍ୱଚ୍ଛତା । କିନ୍ତୁ ବେଳେବେଳେ ସେ ପଲ୍ଲୀଚିତ୍ର ମାଧ୍ୟମରେ ଏକ ଉଚ୍ଚତର କାବ୍ୟିକତା, ପ୍ରତୀକଧର୍ମିତା ଏବଂ ଚିରନ୍ତନ ସାର୍ବଜନୀନ କବିତା ପ୍ରଣୟନ କରିଛନ୍ତି । 'ନିର୍ଝରିଣୀ'ରେ କାକ-ବାରତା ସେପରି ଏକ କାଳଜୟୀ କବିତା । 'ଉଚ୍ଚ ପରବତ କୁହୁକୁହୁକା' ଆଦି ଲୋକଗୀତର ସଂଗୀତମୟତା, ତା'ର ଲୋକପ୍ରିୟତା ତଥା ତା'ର ଅର୍ଥ ରହସ୍ୟକୁ ନନ୍ଦକିଶୋର ଅତି ସାବଲୀଳ ଢ଼ଙ୍ଗରେ ପ୍ରୟୋଗ କରିଛନ୍ତି । ତା' ସହିତ ଡାମରା କାଉକୁ ଦୃଶ୍ୟରୁ ଦୃଶ୍ୟାନ୍ତରକୁ ଉଡ଼ାଇନେଇ ସେ ଦେଶ କାଳର ଯେଉଁ ବ୍ୟାପ୍ତି ଆଣି ପାରିଛନ୍ତି, ଯେଉଁ ସାମାଜିକ ଓ ନୈତିକ ବିଚାର ସହିତ ତତ୍ତ୍ୱ ଦର୍ଶନର ସନ୍ନିବେଶ କରିପାରିଛନ୍ତି ତାହା ଅନନ୍ୟ । ଏହାକୁ କେବଳ ପଲ୍ଲୀଚିତ୍ର କୁହାଯାଇପାରିବ ନାହିଁ ।

ତା' ବାହାରେ 'ବାଲ୍ୟବିଧବା', 'ପଲ୍ଲୀର କ୍ଷୁଦ୍ରତା', 'ପଲ୍ଲୀ କୁସଂସ୍କାର' ଆଦି କବିତା, ପଲ୍ଲୀ ପ୍ରକୃତିରେ ଋତୁଚିତ୍ର ଭଳି କେବଳ ବର୍ଣ୍ଣନା ପ୍ରଧାନ ନୁହେଁ । ସେଥିରେ ସମାଜ ସଚେତନତା ସହିତ ସଂସ୍କାରର ସ୍ୱର ଅତି ସ୍ପଷ୍ଟ । ପଲ୍ଲୀବାସୀ ଖଣ୍ଡାୟତ, କରଣ, ବ୍ରାହ୍ମଣମାନଙ୍କର ଆଚରଣ ନୀତିହୀନତା ଓ ମୂର୍ଖତା ପ୍ରତି କଟାକ୍ଷ ଏବଂ ସେମାନଙ୍କର ସଂଶୋଧନ ପାଇଁ ବିଜ୍ଞ ପରାମର୍ଶ – ସାଧାରଣ ପଲ୍ଲୀଚିତ୍ର ନୁହେଁ । ସମର୍ଥ ଭିକ୍ଷୁକ ଓ ବିଳାସୀ ଯୁବକକୁ ଆକ୍ଷେପ କରି ଯେଉଁ କବିତା ସେ ରଚନା କରିଛନ୍ତି ତାହା ଏବେ ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ ।

ବୟସ ବୃଦ୍ଧି ସହିତ ନନ୍ଦକିଶୋରଙ୍କ ଜ୍ଞାନ ପରିସର ବୃଦ୍ଧି ପାଇଛି । ସେ ଏକ ବୃହତ୍ତର ସମାଜ ଏବଂ ସଂସ୍କାର ବିଷୟରେ ସଚେତନ ହୋଇ ଉଠିଛନ୍ତି । ଇଂରାଜୀ କବି Shelley, Wordsworth, Tennyson ଆଦିଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ କିଛି କବିତା ଏ ପର୍ଯ୍ୟାୟର ଲେଖା । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ରାଧାନାଥ, ଫକୀରମୋହନ ଏବଂ ମଧୁସୂଦନ ଆଦି ଯେଉଁ ଆଧୁନିକତାର ସ୍ୱର ଶୁଣାଇ ଓଡ଼ିଆ ସାହିତ୍ୟର ନବଜାଗରଣ ଆଣିଥିଲେ, ତଦ୍ଦ୍ୱାରା ନନ୍ଦକିଶୋର ବିଶେଷ ପ୍ରଭାବିତ କିମ୍ବା

ପ୍ରୀତ ନଥିଲେ । ସେ ବରଂ ସ୍ୱଦେଶ ପ୍ରୀତି ଏବଂ ପରଂପରାକୁ ଅଧିକ ଗୁରୁତ୍ୱ ପ୍ରଦାନ କରିଥିଲେ । ସେ ଦୃଷ୍ଟିରୁ ନନ୍ଦକିଶୋରଙ୍କ ସହିତ ଗୋପବନ୍ଧୁଙ୍କର ଚିନ୍ତା ଓ ଚେତନାଗତ ସାମ୍ୟ ଲକ୍ଷଣୀୟ ।

ମିଥ୍ ପ୍ରୟୋଗରେ ନନ୍ଦକିଶୋର ଏକ ବିଶିଷ୍ଟମାନ୍ୟତାର ଅଧିକାରୀ। 'ଜେମାଦେଈ' କବିତାରେ 'ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପକ୍ଷୀ' ଲୋକଗୀତର ପଂକ୍ତି ସହିତ 'ଜେମାଦେଈ'ର ବୁଢ଼ାବର ପ୍ରସଙ୍ଗକୁ ସେ ପୁନର୍ବିନ୍ୟାସ ଦ୍ୱାରା ନୂତନ ଜୀବନ୍ୟାସ କରିଛନ୍ତି । ଲୋକକଥାର ଏ ନାୟିକା, ଜୀବନରେ କାରୁଣ୍ୟ ଏବଂ ଅସହାୟତା ସମୟର ବନ୍ଧନୀକୁ ଅତିକ୍ରମ କରି ଚିରନ୍ତନ ସତ୍ୟର ସ୍ପର୍ଶଲାଭ କରିଛି। 'ଅର୍ଜ୍ଜୁନୋର୍ବଶୀ' ଏବଂ 'ସପତ୍ନୀ' ସେହିପରି ଏକ ଉପନ୍ୟାସ ଉପରେ ଆଧାରିତ ହେଲେ ସୁଦ୍ଧା ତାକୁ କବି ନୂତନ ଛନ୍ଦ ଓ ଆବେଦନରେ ଏ ଯୁଗର ଚେତନା ପାଖରେ ପହଞ୍ଚାଇ ପାରିଛନ୍ତି ।

ଚିନ୍ତା ଓ ଭାବନା ଗଭୀର ହେବା ସହିତ ନନ୍ଦକିଶୋରଙ୍କ ପାଇଁ କବିତାର ଆଲମ୍ବନ ମଧ୍ୟ ତଦ୍ରୂପ ପରିବର୍ତ୍ତିତ ହୋଇଯାଇଛି । 'ମାନବ', 'ନାରୀ', 'ନର-ନାରୀ', 'ନାରୀଶିକ୍ଷା', 'ବାଳ ବିଧବା', 'ବୃଦ୍ଧ ବିବାହ' ଏବଂ 'ଏକତା' ଆଦି ଶୀର୍ଷକରେ କେହି ଜଣେ ନିବନ୍ଧ ଲେଖି ପାରନ୍ତି । କିନ୍ତୁ ନନ୍ଦକିଶୋର ଏ ସବୁ ଗମ୍ଭୀର ବିଷୟରେ ନିଜର ସାବଲୀଳ ଢ଼ଙ୍ଗରେ କବିତା ରଚନା କରିଛନ୍ତି । 'ଏକତା' କବିତାର ଉଦାହରଣ ନିଆଯାଉ । 'ଏକତା' ଏକ ମହିମାମୟୀ ଦେବୀ ରୂପରେ କଳ୍ପିତ ହୋଇଛନ୍ତି ଏବଂ ଏହି ରୂପକଳ୍ପ ମାଧ୍ୟମରେ ଭାରତବର୍ଷର ସମଗ୍ର ଇତିହାସର ଚିତ୍ର କବି ପର୍ଯ୍ୟାୟକ୍ରମେ ଉପସ୍ଥାପିତ କରିଛନ୍ତି । ପଟ୍ଟଭୂମି ବିଶାଳ, ଚିନ୍ତା ଗମ୍ଭୀର, ଅଥଚ ଭାଷା ଓ ଆବେଦନ ଏତେ ହୃଦ୍ୟ – ଏହା ନନ୍ଦକିଶୋରଙ୍କ ଅସାଧାରଣ କୃତିତ୍ୱ । ସ୍ୱଦେଶ ପ୍ରେମ ଓ ରାଷ୍ଟ୍ରଭାବନାରେ ଅନୁପ୍ରାଣିତ କବି 'ଜନ୍ମଭୂମି' କବିତା ଗୁଚ୍ଛରେ ତାଙ୍କର ଆଉ ଏକ ଉତ୍ତରଣର ପ୍ରମାଣ ଦେଇଛନ୍ତି । 'ଉତ୍କଳ-ପ୍ରଭାତ', 'ଭାରତୀ ଉଦ୍‌ବୋଧନ', 'ଉତ୍କଳ ମଙ୍ଗଳଗୀତ' କବିଙ୍କର ସ୍ୱଦେଶ ପ୍ରୀତି, ସ୍ୱାଭିମାନ ଏବଂ ଅତୀତ ଗୌରବ ପ୍ରତି ମର୍ଯ୍ୟାଦାବୋଧର ଆଲେଖ୍ୟ। ଏହି ପର୍ଯ୍ୟାୟରେ ତାଙ୍କ ରଚିତ 'ମାତୃଭୂମି' ଉତ୍କଳର ବୀରତ୍ୱ, କବିତ୍ୱ ଏବଂ ଜଗନ୍ନାଥ ସଂସ୍କୃତିର ଏକ ବିଶଦ ବର୍ଣ୍ଣନା। ଏ କବିତାମାନଙ୍କରେ କବିଙ୍କର ସମ୍ପୃକ୍ତି ଦେଶର ପୁନରୁତ୍ଥାନ ପାଇଁ ଆତୁରତା ଜନିତ ଆବେଗ ସୁସ୍ପଷ୍ଟ। ଦେଶ ବନ୍ଦନା ସହିତ ଉପେନ୍ଦ୍ର ଭଂଜ, ସାମନ୍ତ ଚନ୍ଦ୍ରଶେଖର, କବିବର ରାଧାନାଥ, ଫକୀରମୋହନ, ଗଙ୍ଗାଧର ଆଦିଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି କବିଙ୍କର ଉତ୍କଳର ସୁଯୋଗ୍ୟ ସନ୍ତାନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପାଠକ ପାଇଁ ଏକ ପ୍ରେରଣାର ଉତ୍ସ।

ଆଉ ଏକ ପାବଚ୍ଛ ଅତିକ୍ରମ କରି ଦେଶକାଳର ଉତୀର୍ଣ୍ଣ, ବିଭୁ ପ୍ରସାଦ ପାଇଁ କବିମାନସ ପ୍ରସ୍ତୁତ ହୋଇଯାଇଛି । 'ପ୍ରଭାତ ସଂଗୀତ' ସଂକଳନରେ 'ପ୍ରାର୍ଥନା', 'ବିଭୁପ୍ରେମ', 'ଶୁଭ-ବିଧାନ', 'ଏକାନ୍ତ ନିର୍ଭର', 'ଭକ୍ତ ଭଗବାନ' ଆଦି କବିତାରେ ଆଧାତ୍ମିକତା ମୁଖ୍ୟ ସ୍ୱର । ଗୌତମ ବୁଦ୍ଧଙ୍କୁ ଆଧାର କରି କିଛି କବିତା ତାଙ୍କର ସତ୍ୟାନ୍ୱେଷୀ ମନର ପ୍ରମାଣ ଦିଏ । 'ନୀଳାଦ୍ରି କନ୍ଦର'ରେ ଜଗନ୍ନାଥ ଏବଂ ଉତ୍କଳର ଆଧାତ୍ମିକ ପରଂପରା–ସିନ୍ଧୁ ତଟର ବିଶାଳତା ପରି ପରିବ୍ୟାପ୍ତ । 'ତୀର୍ଥଯାତ୍ରା' ଏକ ଅସଂପୂର୍ଣ୍ଣ ଦୀର୍ଘ କବିତା । 'ଭୁବନେଶ୍ୱର'କୁ ଆସିବା ପାଇଁ ଆସ୍ପୃହାବନ୍ତ ପ୍ରାଣର ଆତୁରତା ଏବଂ ଅତି ପରିଚିତ ପରିବେଶ ମଧ୍ୟରେ ଅପରିଚିତ ଅନୁଭୂତିର ସନ୍ଦେଶ ପାଇଁ ଏହା ଏକ ବିଶିଷ୍ଟ ପ୍ରୟାସ ।

'ସୀତା ବନବାସ', 'କୃଷ୍ଣକୁମାରୀ' ଓ 'ଶର୍ମିଷ୍ଠା' କାବ୍ୟକୃତି ଏକ ସ୍ୱତନ୍ତ୍ର ଅନୁଶୀଳନର ଅପେକ୍ଷା ରଖେ । ଐତିହାସିକ ଓ ପୌରାଣିକ ବିଷୟଭିତ୍ତିକ ଏ କାବ୍ୟପ୍ରସଙ୍ଗର ବିନ୍ୟାସ, ଉପସ୍ଥାପନା ଓ ଆବେଦନ ଏମାନଙ୍କ ପାଇଁ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବି କରେ । ନନ୍ଦକିଶୋରଙ୍କ ସ୍ୱାଭାବିକ ପ୍ରକାଶଭଙ୍ଗୀ ସରଳ ଓ ନିରାଡ଼ମ୍ବର । ତାହା ତାଙ୍କର ମୌଳିକତା । ଅତ୍ୟନ୍ତ ଗମ୍ଭୀର ବିଷୟରେ ସୁଦ୍ଧା ନନ୍ଦକିଶୋର ସ୍ପଷ୍ଟତା ଓ ସରଳତା ପରିହାର କରିନାହାନ୍ତି । ବରଂ ଯେଉଁ କେତୋଟି କବିତାରେ ସେ କ୍ଲିଷ୍ଟ ଭାଷା ପ୍ରୟୋଗ କରିଛନ୍ତି, ତାହା ଅସ୍ୱାଭାବିକ ମନେ ହୋଇଛି ଏବଂ ସେଗୁଡ଼ିକୁ ବ୍ୟତିକ୍ରମ ବୋଲି ଗ୍ରହଣ କଲେ ହୁଏତ ଯଥାର୍ଥ ହେବ ।

କାବ୍ୟ କବିତା ଭଳି ଗଦ୍ୟ ସାହିତ୍ୟରେ ମଧ୍ୟ ନନ୍ଦକିଶୋର ତାଙ୍କର ଅଲିଭା ସ୍ୱାକ୍ଷର ରଖିଯାଇଛନ୍ତି । ଉପନ୍ୟାସ କ୍ଷେତ୍ରରେ 'କନକଲତା' ଏକ ଅନବଦ୍ୟ ସୃଷ୍ଟି । 'ଲକ୍ଷ୍ମୀ' ହୁଏତ ଆଉ ଟିକିଏ ବିକଶିତ ହୋଇଥିଲେ ଅନ୍ୟ ଏକ ଉପନ୍ୟାସର ରୂପ ଲାଭ କରିପାରିଥାନ୍ତା । କିନ୍ତୁ ହେଲାନାହିଁ ।

ସାହିତ୍ୟ ସମାଲୋଚନା ଏକ ଅତ୍ୟନ୍ତ ଦାୟିତ୍ୱପୂର୍ଣ୍ଣ ଏବଂ ପାଣ୍ଡିତ୍ୟସାପେକ୍ଷ କାର୍ଯ୍ୟ । କବି ନନ୍ଦକିଶୋର ତାଙ୍କ ସମୟର ମୂର୍ଦ୍ଧନ୍ୟ କବି ରାଧାନାଥଙ୍କ କବିତା ସମ୍ପର୍କରେ ଯାହା ଯେପରି ଭାବରେ କହିଛନ୍ତି ତାହା ଅତ୍ୟନ୍ତ ବିସ୍ମୟ କଥା । ତାଙ୍କର ପାଣ୍ଡିତ୍ୟ, ରସଗ୍ରାହିତା, ବିଚକ୍ଷଣତା ଏବଂ ବିଚାରବୁଦ୍ଧିର ପଟାନ୍ତର ନାହିଁ । ରାଧାନାଥଙ୍କର କାବ୍ୟିକ ଆକଳନ ଅଦ୍ୟାବଧି ନନ୍ଦକିଶୋରକୁ ଉତୀର୍ଣ୍ଣ ହୋଇଥିବା ଦୃଷ୍ଟାନ୍ତ ବିରଳ । ସେ ପାଶ୍ଚାତ୍ୟ ଓ ପ୍ରାଚ୍ୟ ମୂଲ୍ୟବୋଧ ଏବଂ ମାନଦଣ୍ଡକୁ ଅତି ଦକ୍ଷତାର ସହିତ ପ୍ରୟୋଗ କରି ସମାଲୋଚନାର ଏକ ନିର୍ଭୀକ ଓ ସୁସ୍ଥ ପରମ୍ପରା ସୃଷ୍ଟି କରିଛନ୍ତି । ସେହିପରି 'ଛାନ୍ଦମାଳା'ର ଆଲୋଚନା ମଧ୍ୟ ଅତି ଉଚ୍ଚକୋଟୀର । ସେଥିରେ ସେ

ତାଙ୍କର କବିଗୁରୁ ମଧୁସୂଦନ ରାଓଙ୍କୁ ମଧ୍ୟ ନିଜ ନିର୍ଭୀକ ବିଚାର ବୁଦ୍ଧି ଦ୍ୱାରା ସମାଲୋଚନା କରିବାକୁ ପଶ୍ଚାତ୍‌ପ୍ରଦ ହୋଇନାହାନ୍ତି ।

ମଧୁସୂଦନଙ୍କ ଉପରେ ବଙ୍ଗୀୟ ପ୍ରଭାବ ପଡ଼ିଥିବା ଦୃଷ୍ଟିରୁ ନନ୍ଦକିଶୋର ତାଙ୍କର କ୍ଷୋଭ ଅତି ସ୍ପଷ୍ଟ ଭାଷାରେ ସୂଚିତ କରିଛନ୍ତି । 'ସାମାଜିକ ଯତ୍‌କିଞ୍ଚିତ୍'ରେ ସମାଜ ସଂସ୍କାରକୁ ଭିତ୍ତିକରି 'କର୍ମ' ତଥା 'ସଂଗ୍ରାମ ଓ ଜୀବନ' ଶୀର୍ଷକ ନିବନ୍ଧମାନଙ୍କରେ ଜୀବନର ଆଦର୍ଶ ଓ ଆଭିମୁଖ୍ୟ ବିଷୟରେ ଗଭୀର ମନନଧର୍ମୀ ଆଲୋଚନା କରିଛନ୍ତି ।

ଏପରି ପରିବ୍ୟାପ୍ତ ଯାହାଙ୍କର ସୃଷ୍ଟି ଏବଂ ସ୍ରଷ୍ଟାମାନସ, ସେହି ନନ୍ଦକିଶୋରଙ୍କୁ 'ପଲ୍ଲୀକବି' ମାତ୍ର ଏକକ ବିଶେଷଣ ଦ୍ୱାରା ଚିହ୍ନିତ କରିବାର ଯଥାର୍ଥତା ସୁଧୀ ପାଠକ ବର୍ଗ ବିଚାର କରିବେ ।

# ଅମ୍ଳାନ ବିଗ୍ରହ

ଅଗଷ୍ଟ ପନ୍ଦର ଶ୍ରୀଅରବିନ୍ଦଙ୍କ ଜନ୍ମତିଥିରେ ସ୍ୱାଧୀନ ଭାରତର ଆବିର୍ଭାବ ଯେପରି କୌଣସି ଆକସ୍ମିକତା ନୁହେଁ, ସେହିପରି ସେହିଦିନ ରାମନାଥ ପଣ୍ଡାଙ୍କ ତିରୋଭାବ ମଧ୍ୟ ଆକସ୍ମିକତା ନୁହେଁ । ଆତିଳତାରକା ପରିବ୍ୟାପ୍ତ ବିଶ୍ୱଛନ୍ଦରେ ଏ ଘଟଣାଟି ଅବଧାରିତ ବିଧି ବିଧାନର ଅନ୍ତର୍ଭୁକ୍ତ । ଆଉ କାହା ନିର୍ଦ୍ଦେଶରେ ୨୦୦୪ ମସିହା ଅଗଷ୍ଟ ପନ୍ଦର ଭଳି ପୁଣ୍ୟତିଥିରେ ଭୁବନେଶ୍ୱରରେ ତାଙ୍କର ଜଡ଼ପିଣ୍ଡକୁ ପରିହାର କରି ସକାଳ ୮ଟା୪୦ ମିନିଟ୍‌ରେ ପଣ୍ଡିଚେରୀରେ ଗୁରୁଦର୍ଶନ ପାଇଁ ଠିଆ ହୋଇଥିବା ସାଧକମାନଙ୍କ ପଂକ୍ତିରେ ରାମନାଥ ପଣ୍ଡା ସୂକ୍ଷ୍ମ ଶରୀରରେ ଉପସ୍ଥିତ ନଥିଲେ ବୋଲି କିଏ କହିବ ? ଜୀବନର ଉତ୍ତରାର୍ଦ୍ଧରେ ତାଙ୍କର ଏକାଗ୍ର ଅଭୀପ୍ସା ପ୍ରୟାଣ କାଳରେ ହିଁ ଫଳବତୀ ନହେଲା ବୋଲି କିଏ କହିବ ?

କେବେ କାହା ପାଇଁ କେଉଁଠି କାହାର ଜନ୍ମ ଓ ମୃତ୍ୟୁ ନିର୍ଧାର୍ଯ୍ୟ ହୋଇ ରହିଛି ସିନା କହିହେବ ନାହିଁ, କିନ୍ତୁ ବେଳେବେଳେ ଜାଗ୍ରତ ଆତ୍ମାପୁରୁଷ ସ୍ୱେଚ୍ଛାରେ ବାଛି ନିଅନ୍ତି ସ୍ଥାନ ଓ କାଳ । ଏଣୁ ଡଙ୍ଗରପାଉଁଶି ଭଳି ଅଖ୍ୟାତ ପଲ୍ଲୀରେ ଏକ ଅବିସ୍ମରଣୀୟ ଦିବସରେ ପ୍ରୟାଣ କରିବା ଏହି ଅସାଧାରଣ ଆତ୍ମାର ସ୍ୱେଚ୍ଛାକୃତ ପରି ମନେହୁଏ ।

ଚାଳିଶ ବର୍ଷ ତଳେ ଜୟପୁର ବିକାଶ ପ୍ରତିଷ୍ଠାନରେ ରାମନାଥ ପଣ୍ଡାଙ୍କୁ ଦେଖି ମୋର ମନେହେଲା ଯେ ସେ ରାଜକଳା ନେଇ ଜନ୍ମ ହୋଇଛନ୍ତି । ତାଙ୍କର ବ୍ୟକ୍ତିତ୍ୱ, ହାବଭାବ କଥାବାର୍ତ୍ତା ଢଙ୍ଗଢାଙ୍ଗରେ ଏକ ଆଭିଜାତ୍ୟ ଏକ ରାଜପୁରୁଷର ଲକ୍ଷଣ ବାରି ହୋଇ ପଡୁଥିଲା । ଭଦ୍ରୋଚିତ ବ୍ୟବହାରରେ ଶଳୀନତା ଓ ବିନୟ ପ୍ରକାଶ ପାଉଥିଲେ ସୁଦ୍ଧା, ସ୍ୱାଭିମାନ ଓ ଆତ୍ମମର୍ଯ୍ୟାଦା ଲୁଚି ରହିପାରୁନଥିଲା । ଏଣୁ ସେ କାହାରିକୁ ପାଦ ଛୁଇଁ ବା ମୁଣ୍ଡନୁଆଁଇ ନମସ୍କାର କରିବା ମୁଁ ଦେଖୁନାହିଁ । ସାହିତ୍ୟ, ସଂସ୍କୃତି, ସମାଜ, ରାଜନୀତି କ୍ଷେତ୍ରରେ ସେ ବହୁ ବ୍ୟକ୍ତି ଓ ଅନୁଷ୍ଠାନ ସହିତ ଜଡ଼ିତ ଥିଲେ କିନ୍ତୁ ସବୁଠି ଏକ ପ୍ରକାର ଅସଂପୃକ୍ତି । ମିଶି ମିଶୁ ନଥିବାର ଅଭିଜାତ ବ୍ୟବଧାନ ତାଙ୍କୁ ସ୍ୱତନ୍ତ୍ର ମର୍ଯ୍ୟାଦା ଆଣି ଦେଇଥିଲା । ବ୍ୟକ୍ତିଗତ ବନ୍ଧୁତାକୁ ସେ ଯଥେଷ୍ଟ ମୂଲ୍ୟ ଦେଉଥିଲେ । ସେହି କାରଣରୁ ଜଣକ କଥା ନେଇ ଆଉ ଜଣକ ପାଖରେ କହିବାର ଅଭ୍ୟାସ ତାଙ୍କର ନଥିଲା । ପ୍ରତ୍ୟେକଙ୍କ ପାଇଁ ସ୍ୱତନ୍ତ୍ର ଆସ୍ଥାନ, ସ୍ୱତନ୍ତ୍ର ମର୍ଯ୍ୟାଦା ।

କାହା ଆଗରେ ମୁଣ୍ଡ ନୁଆଁଉ ନଥିବା ଏ ସମ୍ଭ୍ରାନ୍ତ ରୁଚିଶୀଳ ଲୋକଟିକୁ ମୁଁ କିନ୍ତୁ ଦେଖିଛି ଶ୍ରୀଅରବିନ୍ଦଙ୍କ ସମାଧି ପାଖରେ ଭୂଇଁରେ ମଥା ରଖି ସମ୍ପୂର୍ଣ୍ଣ ସମର୍ପଣର ମୁଦ୍ରାରେ ଲୋଟିପଡ଼ିବାର ଭଙ୍ଗୀରେ । ସେ ହିଁ ମୋତେ ପ୍ରଥମେ ପଣ୍ଡିଚେରୀ ନେଇ ଯାଇଥିଲେ। ଏବଂ କ୍ରମଶଃ ଆମ ସମ୍ପର୍କର ଆଉ ଏକ ବିରଳ ପ୍ରସ୍ଥ ଉନ୍ମୋଚିତ ହେଲା ଏବଂ ତାହାହିଁ ହେଲା ଆମ ମିତ୍ରତାର ଭିତ୍ତିଭୂମି । କେତେ ଆଡ଼େ ଯାଇଛୁ, କେତେ ସଭାମଞ୍ଚରେ ଏକାଠି ଭାଷଣ ଦେଇଛୁ । ଗୋଟିଏ ପରିବାର ପରି ଚଳିଛୁ । ସୁଖ ଦୁଃଖରେ ସମଭାଗୀ ହୋଇଛୁ । ହେଇ ଜଣେ ସେଇଠି ଅଛି ଯାହା ପାଖରେ ମନ କଥା ଖୋଲି କହିଦେଇ ହେବ ବୋଲି ମୁଁ ଅନୁଭବ କରିଛି । ଏବେ ସେ ସହୃଦୟ ବନ୍ଧୁଟିର ଅବର୍ତ୍ତମାନରେ ସୃଷ୍ଟି ହୋଇଥିବା ଖାଲିପଣକୁ ସହଜରେ ଗ୍ରହଣ କରି ହେଉନାହିଁ । ରବୀନ୍ଦ୍ରନାଥ କହିଲା ପରି– 'ଦୂରେ ଯାବ ଯବେ ଚଲେ, ତଖନି ଚିନିବେ ମୋରେ' ଭଳି ରାମନାଥ ପଣ୍ଡାଙ୍କ ମହାର୍ଘ ସାନ୍ନିଧ୍ୟର ମୂଲ୍ୟ ଏବେ ବୁଝାପଡୁଛି । ଦେଖୁ ଦେଖୁ ବର୍ଷେ ବିତିଗଲା । ସ୍ୱଜନ ନିଧନରେ ନିଜର ମଧ୍ୟ କିଛି ପରିମାଣରେ ମୃତ୍ୟୁ ହୋଇଯାଏ । ତାହା ଅନୁଭବକୁ ଆସିଗଲା । ଅଗତ୍ୟା ଅନିବାର୍ଯ୍ୟକୁ ସ୍ୱୀକାର କରିବାକୁ ହେଲା ।

ମନେହୁଏ ସଶରୀରୀ ରାମନାଥ ଅପେକ୍ଷା ଅଶରୀରୀ ରାମନାଥ ଅଧିକ ଶକ୍ତିଶାଳୀ । ସ୍ମୃତି ରାଜ୍ୟରେ ସେ ମୁହୁର୍ମୁହୁଃ ପୁନର୍ଜୀବିତ ହେଉଛନ୍ତି, ମୋ ଶ୍ରଦ୍ଧା ସମ୍ମାନରେ ପରିପୁଷ୍ଟ, ମୋର ପ୍ରାଣ ସଞ୍ଚାରରେ ଅଧିକ ପ୍ରାଣବନ୍ତ, ରୂପବନ୍ତ ହୋଇ ଉଭା ହେଉଛନ୍ତି । ହେଇତ ତାଙ୍କର ମଠ ମଠ ଚାଲି, ହସ, 'ରଥ ଆପଣେ' ବୋଲି ସମ୍ଭାଷଣ କରିବାର ଭଙ୍ଗୀ ସବୁ ପ୍ରତ୍ୟକ୍ଷ ହୋଇଯାଉଛି । ସେ ଆଉ ଗଲେ କୁଆଡ଼େ ? ସେ ତ ଏଇଠି ଉପସ୍ଥିତ ଅଛନ୍ତି ସର୍ବଦା । ଏଣୁ ତାଙ୍କୁ ବିଦାୟ ଦେବା କିମ୍ୱା ତାଙ୍କଠାରୁ ବିଦାୟ ନେବା ଉଭୟ ଅର୍ଥହୀନ । ବରଂ ତାଙ୍କୁ ସସମ୍ମାନେ ସ୍ୱାଗତ ଜଣାଉଛି ସୂକ୍ଷ୍ମ ଜଗତରେ, ତାଙ୍କ ସ୍ୱଚ୍ଛ ଅମ୍ଳାନ ରୂପରେ ।



# ଯୋଗଶିକ୍ଷା – ୧

ଓଡ଼ିଶା ବିଧାନସଭାରେ ଏବେ ଯୋଗଶିକ୍ଷାକୁ କେନ୍ଦ୍ରକରି ଅନେକ ଆଗ୍ରହ ଏବଂ ଉତ୍ସାହ ପ୍ରକାଶ ପାଇଛି। ସଦସ୍ୟମାନେ ପ୍ରସ୍ତାବ ଦେଇଛନ୍ତି ଯେ ଶିକ୍ଷାନୁଷ୍ଠାନମାନଙ୍କରେ ଅନ୍ୟାନ୍ୟ ପାଠ୍ୟକ୍ରମ ଭଳି ଯୋଗ ପ୍ରଚଳିତ ହେବା ଉଚିତ । ସେମାନେ ଆଶା କରିଛନ୍ତି ଯେ ତଦ୍ୱାରା ଛାତ୍ରମାନଙ୍କର ଚରିତ୍ର ସଂଶୋଧିତ ହେବ, ଆଚରଣ ମାର୍ଜିତ ହେବ ଏବଂ ସେମାନେ ସଂଯତ, ସଂହତ ଏବଂ ସୁଶୃଙ୍ଖଳିତ ହେବେ । ତରୁଣଙ୍କ ସମସ୍ୟାରେ ଦେଶ ଯେଭଳି ବର୍ତ୍ତମାନ ଭାରାକ୍ରାନ୍ତ ବୋଧ କରୁଛି, ତାହା ଆଉ ହେବ ନାହିଁ । ଅତି ଉତ୍ତମ କଥା । ଭାରତ ଭଳି ଦେଶରେ ପାରମ୍ପରିକ ମୂଲ୍ୟବୋଧକୁ ଯଦି ସ୍ୱୀକୃତି ନ ମିଳେ, ଯଦି ଏଇଠି 'ପ୍ରାଚୀନ-ଯୋଗ୍ୟ' ହେବାକୁ ଇଚ୍ଛା ପ୍ରକାଶ ନପାଏ, ନିର୍ଦ୍ଦିଷ୍ଟ ଚରିତ୍ରକୁ ନେଇ ସମଗ୍ର ଜାତି ଗର୍ବ ନ କରେ, ପୃଥିବୀରେ ଆଉ କେଉଁଠି ତାହା ଏତେ ସ୍ୱାଭାବିକ ଏବଂ ସମୀଚୀନ ହୋଇପାରିବ ? ଏଣୁ ବିଧାନସଭା ସଦସ୍ୟଙ୍କର ଏ ପ୍ରସ୍ତାବ ପାଇଁ ଯେତେ ନୁହେଁ, ତା' ପଶ୍ଚାତରେ ଥିବା ଦୃଷ୍ଟିଭଙ୍ଗୀ ପାଇଁ ଏହା ସ୍ୱାଗତଯୋଗ୍ୟ ।

ଏ ବିଷୟରେ ଯେଉଁଭଳି ଉତ୍ସାହ ପ୍ରକାଶ ପାଇଲାଣି, ହୁଏତ 'ଶୁଭସ୍ୟ ଶୀଘ୍ରମ' ନୀତିରେ ଆଉ କାଳବିଳମ୍ୱ ନ କରି କାର୍ଯ୍ୟାନୁଷ୍ଠାନ ଆରମ୍ଭ ହୋଇଯାଇପାରେ । ତତ୍‌ପୂର୍ବରୁ କିନ୍ତୁ ସୁସ୍ଥ ଏବଂ ନିରୁଦ୍‌ବିଗ୍ନ ମନରେ ଯୋଜନାଟିକୁ ପରିପକ୍ୱ କରିବାକୁ ଯଥେଷ୍ଟ ଚିନ୍ତା କରିବାର ପ୍ରୟୋଜନ ରହିଛି । କୌଣସି ଆବେଗରେ ଫଳାଫଳ ପ୍ରତି ଭ୍ରୂକ୍ଷେପ ନ କରି ଡେଇଁପଡ଼ିବା ତରୁଣର ଲକ୍ଷଣ । ଦୋଷ କହନ୍ତୁ ଅଥବା ଗୁଣ କହନ୍ତୁ, ଆମର ଜାତୀୟ ଚରିତ୍ରରେ ଏହି ପ୍ରକାର କିଛି ତାରୁଣ୍ୟ ରହିଯାଇଛି । ଆମେ ଗୋଟିଏ ଭାବବିହ୍ୱଳ, ସ୍ୱପ୍ନବିଭୋର ଜାତି। ଶହ ଶହ ନୂତନ ଏବଂ ମୌଳିକ ଯୋଜନା ସୃଷ୍ଟି କରିବାରେ ପୃଥିବୀରେ ବୋଧହୁଏ ଆମର ସମକକ୍ଷ ଆଉ କେହି ନାହାନ୍ତି। ତା' ସହିତ ସ୍ୱୀକାର କରିବାକୁ ପଡ଼ିବ ଯେ ଏତେ ସଂଖ୍ୟାରେ ବିଘ୍ନିତ, ଖଣ୍ଡିତ, ବ୍ୟର୍ଥ ଏବଂ ପରିତ୍ୟକ୍ତ ପ୍ରକଳ୍ପ ମଧ୍ୟ ଆଉ କୌଣସି ଦେଶରେ ନାହିଁ । କୌଣସି ସମୃଦ୍ଧ ଦେଶର ଜଣେ ପର୍ଯ୍ୟଟକ ସେଥିପାଇଁ ଥରେ ଥଟ୍ଟାରେ କହୁଥିଲେ, 'ଆମ ଦେଶ ଏବଂ ଆପଣଙ୍କ ଦେଶ ଭିତରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ଖାଲି ଏତିକି ଯେ ଆମେ ତିରିଶବର୍ଷ

ନିଠେଇ ନିଠେଇ ଯୋଜନା କରୁ ଏବଂ ବର୍ଷକରେ ତାକୁ କାର୍ଯ୍ୟରେ ପରିଣତ କରିଦେଉ । ଆପଣମାନେ ବର୍ଷେ ମଧ ଧୈର୍ଯ୍ୟ ଧରି ଯୋଜନା କରନ୍ତି ନାହିଁ ଏବଂ ତିରିଶ ବର୍ଷକାଳ ତାକୁ ଘୋଷାରୁଥାଚି, ତଥାପି ସେ କାର୍ଯ୍ୟ ସରେ ନାହିଁ ।'

ଏଣୁ ଏ ଯୋଜନା ସମ୍ପର୍କରେ ଟିକିଏ ସତର୍କ ହେବା ଉଚିତ ନୁହେଁ କି ? ଏ ପର୍ଯ୍ୟଟକ ମହାଶୟ କହିଛନ୍ତି ବୋଲି ନୁହେଁ, ବରଂ ଆମେ ମଧ ସେଇଭଳି କିଛି କିଛି ଅନୁଭବ କରି ସାରିଲୁଣି ବୋଲି । ଅନ୍ୟ ବିଭାଗ କଥା ଛାଡ଼ନ୍ତୁ । ଏଇ ଶିକ୍ଷା ବିଭାଗ କେତେଥର ଏବଂ କେତେ ପ୍ରକାର ନୂତନ ପଦ୍ଧତି ଏବଂ ପଠ୍ୟକ୍ରମ ପ୍ରଚଳିତ କରି ଦେଇ ପୁଣି ଦୂରଦର୍ଶିତା ଅଭାବରୁ, ଅପ୍ରତ୍ୟାଶିତ ଅସୁବିଧାରେ ବାଧାପ୍ରାପ୍ତ ହୋଇ ସେ ସମସ୍ତକୁ ଅଧାପନ୍ତରିଆ ଅବସ୍ଥାରେ ଛାଡ଼ି ନ ଦେଇଛି ? କୌଣସି ପଦ୍ଧତି ଆମ ମନକୁ ପାଉ ନାହିଁ । ସବୁବେଳେ ନୂଆ କ'ଣଟାଏ କରି ପକେଇବାର ଆତୁରତା ନେଇ ଆମେ ବାଲିଘର ଭଳି ଭାଙ୍ଗୁଛୁ ଏବଂ ଗଢୁଛୁ । ଶିକ୍ଷାଭୂମି ସର୍ବଦା ଅସ୍ଥିର । ଲକ୍ଷ୍ୟ ଏବଂ ଆଭିମୁଖ୍ୟ ଅସ୍ଥିର । ପୁରାତନକୁ ଛାଡ଼ିପାରୁ ନାହୁଁ। ନୂତନକୁ ଗ୍ରହଣ କରିପାରୁ ନାହୁଁ। ଉଭୟର ସମନ୍ୱୟ କରିପାରୁ ନାହୁଁ । ମୋଟ ଉପରେ ଏ ବିଷୟରେ ଆମର କୌଣସି ନିର୍ଦ୍ଦିଷ୍ଟ ଏବଂ ପରିଷ୍କାର ଚିନ୍ତା ନାହିଁ । ଆଶ୍ରମ ସ୍କୁଲ, ବେସିକ୍ ଟ୍ରେନିଂ, କିଣ୍ଡର ଗାର୍ଟେନ୍, କନ୍‌ଭେଣ୍ଟ, ସେଣ୍ଟ୍ରାଲ ସ୍କୁଲ, ପୂର୍ଣ୍ଣାଙ୍ଗ ଶିକ୍ଷା, ପବ୍ଲିକ୍ ସ୍କୁଲ ପ୍ରଭୃତି ବିଭିନ୍ନ ଆୟତନମାନଙ୍କରେ, ତ୍ରିଭାଷୀ ଚଳାଅ, ଧନ୍ଦା ଶିଖ, ଇଂରାଜୀ ହଟାଅ, ଇଂରାଜୀ ରଖ, ସଂସ୍କୃତ ପଢ଼, ସଂସ୍କୃତ ହଟାଅ, ଚାରି-ଆଠ-ଦୁଇ-ଦୁଇ, ଏଗାର-ଏକ-ତିନ୍, ଦଶ-ଦୁଇ-ତିନ୍ ଇତ୍ୟାଦି ଅତି ବିଭ୍ରାନ୍ତିକର କେହି ଠିକ୍ ବୁଝିପାରୁନଥିବା ଏବଂ ବୁଝେଇ ପାରୁନଥିବା ଉଦ୍ଭଟ ପରୀକ୍ଷା ଚାଲିଛି । ସ୍ଥିରଭୂମିଟିଏ ନ ପାଇଲେ ସୁସ୍ଥ ଗଛଟିଏ ବଢ଼ିପାରିବ ନାହିଁ । ଏଭଳି ଅସ୍ଥିର ଭୂମିରେ ସୁସ୍ଥ ମଣିଷ ବଢ଼ିବ ଏବଂ ସେ ସୁସ୍ଥ ଜାତି ଗଢ଼ିବ ବୋଲି ଆମେ କେମିତି ଆଶା କରିବା ।

ଏଣେ ପୁଣି ଶିକ୍ଷା ସହିତ ବୃତ୍ତିର ସମ୍ପର୍କ ରହୁନାହିଁ । ସମାଜର ପ୍ରୟୋଜନ, ବ୍ୟକ୍ତିର ଜୀବନ ନିର୍ବାହ ପାଇଁ ପ୍ରୟୋଜନ ସକାଶେ ଶିକ୍ଷା ଦାୟୀ ନୁହେଁ । ଯଦି କୌଣସି ବିଶିଷ୍ଟ ଶିକ୍ଷାବିତ୍ କିମ୍ବା ଶିକ୍ଷା ଦାୟିତ୍ୱରେ ଥିବା ଗଣନେତାଙ୍କୁ ପଚରାଯାଏ, 'ଆପଣ କ'ଣ ଶିକ୍ଷା ଦେବାକୁ ଚାହୁଁଛନ୍ତି ? ଏ ଶିକ୍ଷାର ଲକ୍ଷ୍ୟ କ'ଣ ? ଏ ଶିକ୍ଷା ପାଇଲା ପରେ ସେ ବ୍ୟକ୍ତିଟି କ'ଣ ହେବାକୁ ଆପଣ ଆଶା କରୁଛନ୍ତି ?' – ସେ ହୁଏତ ହଠାତ୍ କୌଣସିଟିର ଉତ୍ତର ଦେଇପାରିବେ ନାହିଁ । ଯାହାବା ଉତ୍ତରଦେବେ ତା'ର ମର୍ମ ହେବ, 'ଆମେ ଯାହା ମନ ତାହା ଶିକ୍ଷା ଦେବୁ; ତା'ର ସେମିତି କିଛି

ଲକ୍ଷ୍ୟ ନାହିଁ । କିନ୍ତୁ ଯାପରେ ସେ ଏକ ଦାୟିତ୍ୱବାନ, କର୍ତ୍ତବ୍ୟନିଷ୍ଠ, ଦେଶଭକ୍ତ ନାଗରିକ ହେବାକୁ ଆମେ ଆଶା କରୁଛୁ ।

କୌଣସି ଯୋଜନାକୁ ଆମେ ଏ ଯାଏଁ ନିଷ୍ଠାର ସହିତ କାର୍ଯ୍ୟକାରୀ କରିନାହୁଁ । ଫଳତଃ ଘର ନଥାଇ ସ୍କୁଲ ଚାଲେ, ସ୍କୁଲ ନଥାଇ ଶିକ୍ଷକ ଦରମା ନିଅନ୍ତି। ଶିକ୍ଷକ ନଥାଇ ପିଲାଏ ପଢ଼ନ୍ତି। ପିଲାଏ ପଢ଼ିବାକୁ ବହି ଛାପା ହୁଏନାହିଁ । ଛାପା ହେଲେ ତାକୁ ପଢ଼ିପାରନ୍ତି ନାହିଁ । ନୂଆ ପାଠ ଚଳେଇ ଦିଆଯାଏ । ପାଠ ଜାଣିଥିବା ଶିକ୍ଷକ ନ'ଥାନ୍ତି । ଫଳରେ ପଢ଼ିବାକୁ ଇଚ୍ଛା କରୁ ନ ଥିବା, ପଢ଼ିବାରେ କୌଣସି ଲାଭ ପାଉ ନ ଥିବା, ଦିଗ୍‌ଭ୍ରାନ୍ତ ଏବଂ ହତାଶବୋଧ କରୁଥିବା, କୌଣସି ମୂଲ୍ୟକୁ ଚିହ୍ନି ନ ପାରିବା ହେତୁରୁ ଅସ୍ୱୀକାର କରୁଥିବା, ଦୁର୍ଦ୍ଦାନ୍ତ, ବିଶୃଙ୍ଖଳ, ଅସାମାଜିକ, ତରୁଣ ସଂପ୍ରଦାୟ କେବଳ ନାଁକୁ ଶିକ୍ଷାୟତନ ବୋଲାଉଥିବା ଅଞ୍ଚଳକୁ ଅଧିକାର କରିଛନ୍ତି। ଏଭଳି ଜଟିଳ ପରିସ୍ଥିତିରେ 'ଯୋଗ' ପ୍ରଚଳିତ ହେବା ପୂର୍ବରୁ ତା'ର ସମୀଚୀନତା, କାର୍ଯ୍ୟକାରିତା, ଫଳାଫଳ ଆଦି ବିଚାର କରିବାର ପ୍ରୟୋଜନ ରହିଛି।



# ଯୋଗଶିକ୍ଷା – ୨

ବିଦ୍ୟାଳୟ ସ୍ତରରେ 'ନୂତନ ବିଷୟଟିଏ ପ୍ରଚଳନ କରିବା ପୂର୍ବରୁ ତା'ର ଆନୁଷଙ୍ଗିକ ଆୟୋଜନ ଏବଂ ପ୍ରସ୍ତୁତି ପ୍ରତି ଦୃଷ୍ଟିଦେବାକୁ ହୁଏ, ଯଥା– ପିଲାଏ କ'ଣ ପଢ଼ିବେ, ଅର୍ଥାତ୍ ପାଠ୍ୟକ୍ରମ କ'ଣ ହେବ – କିଏ ପଢ଼ାଇବେ, ଅର୍ଥାତ୍ ସେଥିପାଇଁ ଉପଯୁକ୍ତ ତାଲିମପ୍ରାପ୍ତ ଅଧିକାରୀ ଶିକ୍ଷକ ଅଛନ୍ତି ନା ନାହିଁ – କେଉଁଠି ପଢ଼ିବେ, ପରିବେଶ ବାତାବରଣ ଅଛି ନା ନାହିଁ ଏବଂ ଶେଷରେ ସେ ବିଷୟଟିକୁ ପିଲାଏ କାହିଁକି ପଢ଼ିବେ; ତା'ର ଉଦ୍ଦେଶ୍ୟ କ'ଣ, ଆଭିମୁଖ୍ୟ କଣ – ଇତ୍ୟାଦି ଇତ୍ୟାଦି, ଆହୁରି ଅନେକ କଥା ।

ଭାରତୀୟ ଯୋଗକ୍ରିୟା କିମ୍ବା ଯୋଗପଦ୍ଧତି କହିଲେ, କୌଣସି ଗୋଟିଏ ଅର୍ଥକରୀ, ବୃତ୍ତି- ଅଭିମୁଖୀ, ତାଲିମକୁ ବୁଝାଏ ନାହିଁ । ଦି' ଅକ୍ଷର ଶିଖି ଦେଇ କୌଣସି ପ୍ରକାରେ ପରୀକ୍ଷା ଅର୍ଗଳରେ ଗଳିଯାଇ ପେଟ ପୋଷିବାକୁ ମୁଣ୍ଡିବିକା ଚାକିରି କରିବା ତା'ର ଉଦ୍ଦେଶ୍ୟ ନୁହେଁ । କେବଳ ହାତଗୋଡ଼ ମୋଡ଼ି କିମ୍ବା ନିଶ୍ୱାସ ରୁନ୍ଧି ବ୍ୟାୟାମ କରିବା ବି ଯୋଗ ନୁହେଁ । ଭାରତୀୟ ଯୋଗ ଏକ ଗହନ ଏବଂ ଗମ୍ଭୀର ବ୍ୟାପାର । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଗୋଟିଏ ନିର୍ଦ୍ଦିଷ୍ଟ ମାର୍ଗରେ, ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ଏବଂ ଆଭିମୁଖ୍ୟ ନେଇ ଅଖଣ୍ଡୈକ ଜୀବନଚର୍ଯା ହିଁ ଯୋଗ । ତାହା ଏକ ସ୍ୱୟଂସମ୍ପୂର୍ଣ୍ଣ ଜୀବନଧାରା ଯେଉଁଠି ବ୍ୟକ୍ତି, ସମାଜ, ଶାସନ ବିଭିନ୍ନ ପ୍ରକାର ସମ୍ପର୍କ, ଏ ସମସ୍ତ ତାତ୍ପର୍ଯ୍ୟ ଏବଂ ଲକ୍ଷ୍ୟ ନୂତନ ଅର୍ଥରେ ବୁଝିବାକୁ ହୁଏ । ଏଣୁ ମହୁଚାଷ କିମ୍ବା ଇଲେକଟ୍ରନିକସ ଭଳି, ଏହା କେବଳ ଧନ୍ଦାମୂଳକ ବିଦ୍ୟାଟିଏ ଯାହାକୁ ଛଅମାସଠାରୁ ଦୁଇବର୍ଷ ଭିତରେ ଆୟତ୍ତ କରାଯାଇପାରେ ବୋଲି ଭାବିବା ସାଂଘାତିକ ଭୁଲ ବୁଝାମଣାର ପରିଚାୟକ ହେବ ।

ଯୋଗାଶିକ୍ଷା ପାଇଁ, ଧରାଯାଉ, ପାଠ୍ୟକ୍ରମଟିଏ ପ୍ରସ୍ତୁତ କରାଯିବ । ପତଞ୍ଜଳି ମହର୍ଷି ବୋଧହୁଏ ସର୍ବପ୍ରଥମେ ସେଭଳି ଗୋଟିଏ କାର୍ଯ୍ୟ କରିଥିଲେ । ତାଙ୍କର ପ୍ରଣୀତ ଅଷ୍ଟାଙ୍ଗ ଯୋଗପଦ୍ଧତି ଏପର୍ଯ୍ୟନ୍ତ ଭାରତୀୟ ଯୋଗ ବିଷୟରେ ଅଦ୍ୱିତୀୟ ଗ୍ରନ୍ଥ । କିନ୍ତୁ ତାଙ୍କ ପରେ ବହୁ ଧାରା-ଉପଧାରାରେ ବିଭକ୍ତ ହୋଇ ଆମ ସମୟକୁ ଅନେକ ଗୁରୁ ଏବଂ ଆଶ୍ରମକୁ ଆଶ୍ରୟ କରି ବିଭିନ୍ନ ବିଚାର, ବିଶ୍ୱାସ ଏବଂ ପଦ୍ଧତି ଦେଖାଦେଉଛି । ବ୍ୟାପକ ଅର୍ଥରେ ଭଗବତ୍ ଗୀତାର ଅଠରଟି ଅଧ୍ୟାୟରେ ବର୍ଣ୍ଣିତ ଅଠର ପ୍ରକାର

ଯୋଗକୁ ଗ୍ରହଣ ନ କଲେ ମଧ୍ୟ ଅନ୍ତତଃ ଜ୍ଞାନ, ଭକ୍ତି ଏବଂ କର୍ମ – ଏଇ ତିନୋଟି ଧାରାରେ ଯୋଗାଭ୍ୟାସ ଆମର ପରମ୍ପରାସମ୍ମତ । କିନ୍ତୁ ଏ ଦିଗରେ ଅନବହିତ ଥିବା ସାଧାରଣ ଲୋକଙ୍କ ପାଇଁ ଯୋଗ କହିଲେ କେବଳ ହଠଯୋଗ ହିଁ ବୁଝାଏ । ଆସନ-ପ୍ରାଣାୟାମ କ୍ରିୟା ବଳରେ ସାମାନ୍ୟ ସିଦ୍ଧି ହିଁ ଯଥେଷ୍ଟ । ଶିଖିବା ଏବଂ ଶିଖାଇବା ପାଇଁ କେଉଁ ମାର୍ଗ ଜଣେ ଗ୍ରହଣ କରିବ ? ମହର୍ଷି ମହେଶ ଯୋଗୀଙ୍କ ଲୋକୋତ୍ତର ଧ୍ୟାନ ନା' ଯୋଗଦାଶ୍ରମର କ୍ରିୟାଯୋଗ, ନା ପଣ୍ଡିଚେରୀ ଆଶ୍ରମର ପୂର୍ଣ୍ଣାଙ୍ଗ ଯୋଗ ? ଏସବୁ ଯେ ଯାହା ଢ଼ଙ୍ଗରେ ଠିକ୍ । କିନ୍ତୁ ବିଦ୍ୟାଳୟରେ ଏ ସମସ୍ତଙ୍କର ପୃଥକ ପନ୍ଥା ପ୍ରଚଳନ କରିବା ଯେତିକି କଷ୍ଟକର, ସମସ୍ତଙ୍କୁ ଏକତ୍ର ସମନ୍ୱିତ କରିବା ମଧ୍ୟ ସେହିପରି ଅସାଧ୍ୟ । ପାଠ୍ୟକ୍ରମ ପ୍ରସ୍ତୁତ କରିବାରେ ଆମ ବିଶ୍ୱବିଦ୍ୟାଳୟ ଏବଂ ବୋର୍ଡ଼ ସ୍ତରରେ ଯାହା ହେଉଛି ତ ତାହା ସର୍ବଜନବିଦିତ । ଏଥିରେ ପୁଣି ବିଭିନ୍ନ ଦୀକ୍ଷା ଏବଂ ଆଶ୍ରମ ଆଶ୍ରିତ 'ଯୋଗାଚାର୍ଯ୍ୟ'ମାନେ ଯଦି ଏକାଠି ହୋଇଯାନ୍ତି ତେବେ କୌଣସି ସମାଧାନ ପାଇଁ ଏ ଶତାବ୍ଦୀ ଅଣ୍ଟିବ ନାହିଁ ।

ଧରାଯାଉ, କୌଣସିମତେ ପଲ୍ଲବଗ୍ରାହୀ ଢ଼ଙ୍ଗରେ ପତଞ୍ଜଳିଙ୍କଠାରୁ ଏ ପର୍ଯ୍ୟନ୍ତ ଏଠୁ ଟିକେ ସେଠୁ ଟିକେ ନେଇ ନିହାତି ଅକାର୍ଯ୍ୟକାରୀ ପାଠ୍ୟକ୍ରମଟିଏ ପ୍ରସ୍ତୁତ ହୋଇଗଲା, ତେଣିକି ତାକୁ ପଢ଼ାଇବ କିଏ ? ଯୋଗ ତ' ପଢ଼ିବା-ବିଦ୍ୟା ନୁହେଁ କିମ୍ବା ମୁଖସ୍ଥ କରି ପରୀକ୍ଷାରେ ପ୍ରଶ୍ନର ଉତ୍ତରଦେବା ଭଳି ବିଷୟ ନୁହେଁ । ତାକୁ ଅଭ୍ୟାସ କରିବାକୁ ହୁଏ । ଏଣୁ ଯେ ଶିକ୍ଷାଗୁରୁ ହେବେ, ସେ ସ୍ୱୟଂ ଯୋଗାଭ୍ୟାସ କରିଥିବେ । ତାଙ୍କର ନିଜର ଅନୁଭବ ଥିବ । ନହେଲେ ସାଧାରଣ ଆସନଟିଏ କରେଇଲାବେଳେ, ହଳାସନରେ ହସିଦେଇ ବିଦ୍ୟାର୍ଥୀଟିଏ ଇହଲୋକ ତ୍ୟାଗ କରିବାର ଆଶଙ୍କା ରହିଛି । ଏ ସମସ୍ତଙ୍କୁ ଭ୍ରୂକ୍ଷେପ ନକରି ବେତନ ପାଇ ବୃତ୍ତି ଖଞ୍ଜିବାକୁ ଗୁଡ଼ିଏ ଅଯୋଗ୍ୟଙ୍କୁ ନେତା-ଉପନେତା, ହାକିମମାନେ 'ଯୋଗମାଷ୍ଟ୍ର' ରୂପେ ନିଯୁକ୍ତି ଦେଇଦେବେ । ସେ ବାବଦରେ ନିୟମିତ ଅର୍ଥବ୍ୟୟ ହେବ ଏବଂ ଅନ୍ୟାନ୍ୟ କ୍ଷେତ୍ର ଅପେକ୍ଷା ଅଧିକ ଅନର୍ଥ ସୃଷ୍ଟି କରିବ । ତା'ପରେ ଶିକ୍ଷା ବିଭାଗୀୟ ପରିଦର୍ଶକ ନିର୍ଦ୍ଦେଶକମାନେ ଚାହିଁବେ, ସେଥିରେ କେତେଘଣ୍ଟା ନିଶ୍ୱାସରୁନ୍ଧା ହେଲା, କେତେଘଣ୍ଟା ଗୋଡ଼ହାତ ମୋଡ଼ା ହେଲା । ସେଥିରେ କେତେଘଣ୍ଟିଆ ପ୍ରଶ୍ନପତ୍ର ହେବ । ପରୀକ୍ଷାରେ ନମ୍ବର ମିଶିଲେ ବିଦ୍ୟାର୍ଥୀ ପ୍ରଥମଶ୍ରେଣୀ ପାଇବ ନା ନାହିଁ । ଯେ ଯାହା କହୁ, ଏ ହେଲା ଛାଞ୍ଚ । ଏଥିରେ ସବୁ ତରଳେଇ ଧାତୁ, ସୁନା ହେଉ ଅଥବା ସୀସା ହେଉ, ରୂପ ପରିଗ୍ରହ କରିବ । ଏକା ବକ୍ରତା, ଏକା ପ୍ରକାର କୋଣ, ଅନୁକୋଣ ବାହାରିବ । ଗୋଟିଏ ଦୁର୍ବଳ ବିନ୍ଦୁରେ ଛିଣ୍ଡିବ । ଏହାକୁ ସାବଧାନ ।

ଯୋଗାଭ୍ୟାସର ମୌଳିକ ତାତ୍ପର୍ଯ୍ୟ ଏବଂ ଆଭିମୁଖ୍ୟ ହେଲା ଆଧ୍ୟାତ୍ମିକ । ଏଣୁ ଏହା କଦାପି ବାଧ୍ୟତାମୂଳକ ନୁହେଁ । ନିଜ ଇଚ୍ଛାରେ କେହି ଶିଖିପାରେ, ନ ଶିଖିପାରେ । ଏଥିରେ ପ୍ରଶ୍ନପତ୍ର ନାହିଁ, ପରୀକ୍ଷା ନାହିଁ, ନମ୍ବର ନାହିଁ । ଏଥିରେ ପ୍ରମାଣପତ୍ର ମଧ୍ୟ ନାହିଁ । ଏଥିରେ ଏଭଳି ଅଭିସନ୍ଧି ଖଞ୍ଜିଦେଲେ ତା'ର କୌଣସି ଅର୍ଥ ରହିବ ନାହିଁ । ସମସ୍ତଙ୍କୁ ଯୋଗଶିକ୍ଷାରେ ଘଷି ମାଜି ଶୁଦ୍ଧ କରିଦେବାର ଲୋଭ ସମ୍ବରଣ କରିବାକୁ ହେବ । କାନୁନ ବଳରେ ଏକଦା ସମସ୍ତଙ୍କୁ ଯୋଦ୍ଧା କରିଦେବା ପାଇଁ ଏନ.ସି.ସି.କୁ ବାଧ୍ୟତାମୂଳକ କରି ଦିଆଗଲା । ସେଥିରେ ଶିକ୍ଷାନୁଷ୍ଠାନର ଏବଂ ଏନ.ସି.ସି.ର ଯାହା କ୍ଷୟକ୍ଷତି ହେଲା ତା'ର ବିଷମୟ ପରିଣାମ ଆମେ ଏ ପର୍ଯ୍ୟନ୍ତ ଭୋଗୁଛୁ । ତଦ୍ଦ୍ୱାରା ସମଗ୍ର ସମର ବାହିନୀର ଭାବମୂର୍ତ୍ତି ଏବଂ ମୂଲ୍ୟବୋଧ ଖଣ୍ଡିତ ହୋଇଗଲା । ବହୁ ଶତାବ୍ଦୀ ଧରି ସମ୍ମାନିତ ଯୋଗଧାରାକୁ ଯଥେଚ୍ଛାଚାରଦ୍ୱାରା ଆମେ ଯାହା କରିସାରିଛୁ ତାହା କେବଳ ସୀମିତକ୍ଷେତ୍ରରେ । ବର୍ତ୍ତମାନ ତା'ର ସମଗ୍ର ମୂଲ୍ୟକୁ ଅବଧାରଣା କରି ତା'ର ପୁନଃପ୍ରତିଷ୍ଠା ପାଇଁ ଅତି ସୁଚିନ୍ତିତ ଯୋଜନା କରିବା ପୂର୍ବରୁ ଯଦି ସାମୟିକ ଆବେଗରେ ତାକୁ ଶସ୍ତା ଏବଂ ଅପହସିତ କରିଦେଉ, ତାହା ଜାତୀୟ ଜୀବନରେ ଅକ୍ଷମଣୀୟ ଅପରାଧ ହେବ, ଏଣୁ ସାଧୁ, ସାବଧାନ !



# ବଳାତ୍କାର ପ୍ରସଙ୍ଗ– ୧

କିଛିଦିନ ତଳେ ଧରିତ୍ରୀ ପତ୍ରିକାର କଟକ ସମ୍ବାଦରେ ପ୍ରକାଶ ପାଇଥିଲା ଯେ କୃଷି ପ୍ରଦର୍ଶନୀ ଉଦଘାଟନ କରି ମୁଖ୍ୟମନ୍ତ୍ରୀ ସଭା ତ୍ୟାଗ କରୁ କରୁ ଲୋକେ କୁଆଡ଼େ ସବୁ ଜିନିଷ ଛିନ୍ନଛତ୍ର ବୋହି ନେଇଗଲେ । କେହି ତାହାକୁ ଆଉ ଉପ୍ରୋଧ ନ ରଖି ଯେ ଯାହା ମୁହଁରେ ପାଇଲା ଘେନି ପଳେଇଲା । କ'ଣ ଭଲା ସେ ପ୍ରଦର୍ଶନୀକୁ ଆସିଥିବ ? – ସୁଦୃଶ୍ୟ ଲାଉଟିଏ, ଅତିକାୟ କାଞ୍ଚିଆ କଖାରୁଟିଏ, ବଡ଼ ବଡ଼ କଳା ମୁକ୍ତକେଶୀ, ପାଳୁଆ ବାଇଗଣ କିଛି, ଜାତିଆ କଦଳୀ କାନ୍ଦିଏ – ଏଇ ସବୁ ତ, ଆସିଥିବ ! ବହୁ ପରିଶ୍ରମ କରି ସଞ୍ଜ ସକାଳେ ପାଣି ତେଣ୍ଡି, ସାର ଦେଇ ପୁଲଟିଏ କଷିଟିଏକୁ ଜଗି ଜଗି, ଚାଷୀବାପୁଡ଼ା ଯା'କୁ ଭୂଇଁରୁ ଉପଜାତ କରିଥିବ । କେଡ଼େ ଆଶାରେ ଏ ପ୍ରଦର୍ଶନୀକୁ ସେ ପଠେଇଥିବ – ସହରିଆ ବାବୁ ଭୂୟାଁମାନେ ଦେଖି ଅବାକ୍ ହୋଇଯିବେ, ତାକୁ ପ୍ରଶଂସା କରିବେ ! ତା' ଶ୍ରମ ସାର୍ଥକ ହେବ । କିନ୍ତୁ କ'ଣ ହେଲା ? ଅପଶାସିତ, ଅପରିମାର୍ଜିତ, ରୁଚି-ଦରିଦ୍ର, ନୀତି-ବର୍ଜିତ ଦୁରାଚାରୀ ତସ୍କରଗୁଡ଼ିଏ ତାକୁ ବେଢ଼ିଗଲେ ଏବଂ ବଳାତ୍କାର କରି ନେଇଗଲେ । ସେମାନେ ଜାଣିଛନ୍ତି ଯେ, ଏ ଅପକର୍ମ ପାଇଁ ସେମାନଙ୍କୁ ଲଜ୍ଜିତ ହେବାକୁ ପଡ଼ିବ ନାହିଁ । ପିଲା ବୁଢ଼ା, ଅଫିସର ଅମଲା, ସ୍ତ୍ରୀ ପୁରୁଷ ସମସ୍ତେ ମିଶି ଦିନ ଦି'ପ୍ରହରେ ବିଚ ବଜାର ଉପରେ ସେ କାର୍ଯ୍ୟ କରିଥିବାରୁ ତାହା ଗଣ ସମର୍ଥନ ଲାଭ କଲା ବୋଲି ସେମାନଙ୍କ ଧାରଣା । ସେଥିପାଇଁ କୌଣସି ଦଣ୍ଡବିଧାନ ମଧ ନାହିଁ ବୋଲି ସେମାନେ ଜାଣନ୍ତି । ସେମାନେ ବରଂ କିଏ କ'ଣ ହରିଲୁଟରୁ ଟେକି ଆଣିପାରିଲା ପରସ୍ପରକୁ କୁହାକୁହି ହୋଇ ବୀରଦର୍ପରେ ଘରକୁ ଫେରିଥିବେ । ରତ୍ନାକରର କର୍ମରେ ନୁହେଁ, ବରଂ କର୍ମଫଳରେ ଆଗ୍ରହୀ ପରିବାର ଖୁସି ହୋଇଯାଇଥିବ । କେଡ଼େ ପାରିଲାପଣ ଦେଖାଇ, ସେ ଲୋକ ଗହଳିରେ, ଭିଡ଼ ଓଟରାକୁ ସମ୍ଭାଳି, ଚାରିଫେଣା କଦଳୀ ସେ ନେଇ ଆସିଛି ତା'ର ଖର୍ଚ୍ଚ ହୋଇଥିବ । କେତେ ଓଳି ପରିବା ଖର୍ଚ୍ଚ ଉଠିଗଲା ବୋଲି ସାମୂହିକ ଉଲ୍ଲାସ ପ୍ରକାଶ ପାଇଥିବ । ଏଭଳି ଘଟଣାଟିଏ ଘଟିଗଲା । ସମସ୍ତେ ତାକୁ ହସି ଉଡ଼େଇ ଦେଲେଣି । ତାଙ୍କୁ ହୁଏତ ଲାଉ, କଖାରୁ ଲୁଟିକରି ନେବା କଉତୁକ ପରି ଲାଗିଲା ! ଯଦି କେହି ଭିନ୍ନ ମୂଲ୍ୟବୋଧର ବ୍ୟକ୍ତି ଏଥିରେ ଅସନ୍ତୁଷ୍ଟ ହୋଇଥିବେ ତାଙ୍କୁ ପୁରୁଣାକାଳିଆ ମଫସଲି କହି ଥଟ୍ଟା ଟାପରା କରି ହୁଏତ ଅପମାନିତ କରାଗଲା ।

ଏ ସମଗ୍ର ବ୍ୟାପାରଟି କିନ୍ତୁ କେବଳ ପରିତାପ ନୁହେଁ ବରଂ ଆତଙ୍କର ବିଷୟ । ଏକଦା ପ୍ରସିଦ୍ଧ ରୁଷ କଥାକାର ଚେକଫ ଚକିତ ହୋଇ କହିଥିଲେ, ''ମଣିଷ କଙ୍କାଳ ଭୟଙ୍କର ନୁହେଁ, ତାକୁ ଦେଖି ଆମେ ଆଦୌ ବିଚଳିତ ନହେବା ହିଁ ଭୟଙ୍କର ।'' ଯେକୌଣସି ମାନଦଣ୍ଡରେ ମାପିଲେ ଆଲୋଚ୍ୟ ଆଚରଣଟି ଅସଭ୍ୟ ଏବଂ ଅଭଦ୍ର । ବଳ ଅଛି ବୋଲି ବଳାତ୍କାର କରିବା ଆରଣ୍ୟକ ଅଭ୍ୟାସ । ଠେଙ୍ଗା ଧରି କେହି ଜଗି ନାହିଁ ବୋଲି ବାଡ଼ିରେ ପଶିଯିବା ଓଲେଇ ଗାଈର ଲକ୍ଷଣ । ନିଜେ ନିଜକୁ ସଂଯତ, ପରିନିଷ୍ଠିତ କରି ନ ପାରିଲେ କାହିଁକି ଦଶହଜାର ବର୍ଷ ଧରି ମାନବ ସଭ୍ୟତା ବୃଥା ପରିଶ୍ରମ କରୁଛି ? ଯେଉଁମାନେ ସେଇଠୁ କଖାରୁ ଲୁଟି ନେଇଗଲେ, ସେଇମାନେ ସକାଳୁ ଆଙ୍କୁଡ଼ି ଧରି ପରବାଡ଼ିରୁ ଫୁଲ ଚୋରି କରନ୍ତି । ତାଙ୍କ ପିଲାଏ ପାଚେରି ଡେଇଁ ମୁନିଙ୍ଗା ଛୁଇଁ, ପିଜୁଳି, ଆମ୍ବ ତୋଳି ଆଣନ୍ତି । ସେମାନେ ଏକ୍‌ସପ୍ରେସ ରେଳରେ ବିନା ଟିକେଟରେ ଗଳି ଯାଆନ୍ତି। ଚେନ ଟାଣି ଓହ୍ଲେଇ ଯାଆନ୍ତି । ଗୋଳମାଳ ଜାଗାରେ ଛୁରୀ ମାରି ଲୁଚିଯାଆନ୍ତି। ବସ୍ ଜାଳିଦେଇ ଖସିଯାଆନ୍ତି । ରାସ୍ତା ଓଗାଳି ବଳାତ୍କାର କରନ୍ତି ।

ଏବଂ ଆମେ ଏ ସମସ୍ତ ଆଚରଣକୁ ଛୋଟ କଥା କହି ଉଡ଼େଇ ଦେଇଥାଉ । ଆମେ ଯାକୁ ଏତେ ଦେହଘଷା କରି ନେଲୁଣି ଯେ, ସେଥିରେ ଜମା ବିଚଳିତ ହେଉ ନାହୁଁ ! ବରଂ ଶସ୍ତାରେ ଠାକୁରପୂଜା କରି ଧନ ଅର୍ଜନ କରୁଥିବା ବାପ ସକାଳୁ ତା'ର ଫୁଲଚୋର ପୁଅକୁ କହିବାର ଶୁଣାଯାଏ, ''ଆରେ ଆଜି ଗୋଲାପ ପୁଞ୍ଜିଏ ଆଣି ପାରିଲୁ ନାହିଁ । ଏଡ଼ିକି ଅଯୋଗ୍ୟଟାଏ ତୁ !'' ଗୋଛାଏ ସଜନାଛୁଇଁ ଆଣି ପୁଅ ବାହାଦୁରି ନେଲାବେଳେ, ମା' କେବେ ପଚାରନ୍ତି ନାହିଁ, କେଉଁଠୁ ସେ ତାକୁ ଆଣିଲା । ବରଂ କହନ୍ତି, ''ଆଉ ଗଣ୍ଡେ ଆଣିଥିଲେ, ମାଉସୀ ଘରକୁ ଦେଇ ନଥାନ୍ତେ ।'' ପିଲାବେଳୁ ବିବେକୀ ମଣିଷପିଲାଟିକୁ ସମ୍ପୂର୍ଣ୍ଣ ଅବହେଳା କରି ତା' ଭିତରେ ମାଙ୍କଡ଼ଟିକୁ ପ୍ରୋତ୍ସାହିତ କରାଯାଏ । ସମସ୍ତେ ସ୍ନେହରେ ଗେଲବସରିଆ ଆଚରଣକୁ, କୃଷ୍ଣଙ୍କ ଲହୁଣୀ ଚୋରି ବୋଲି ଭାବି ଭାବବିହ୍ୱଳ ହୋଇ ଅନେଇ ରହନ୍ତି ।

ଆମେ ଦରିଦ୍ର ଦେଶ ବୋଲି ଜଗତ ବିଖ୍ୟାତ । ସେ ଖ୍ୟାତି ଅବ୍ୟାହତ ରଖିବା ପାଇଁ ଆମର ସବୁପ୍ରକାର ପ୍ରଯତ୍ନ । ଏଠି ଖାଇବାକୁ ମିଳେ ନାହିଁ ଏବଂ ଲୋକେ ଅଭୁକ୍ତ ରହିଥାନ୍ତି ବୋଲି ସମସ୍ତଙ୍କ ଧାରଣା ! ଯଦି ସେଇଭଳି କାରଣରୁ ବୁଭୁକ୍ଷିତଗୁଡ଼ିଏ ସେ ପରିବା ଲୁଟି ନେଇଥାନ୍ତେ, ସେଥିରେ ଦୁଃଖିତ ହେବାର ଯଥେଷ୍ଟ କାରଣ ଥିଲେ ସୁଦ୍ଧା ବିଚଳିତ ହେବାର ପ୍ରୟୋଜନ ନଥିଲା । – ''ବୁଭୁକ୍ଷିତଃ କିଂ ନକରୋତି ପାପମ'' କହି, ଆମେ ତାକୁ ଘୋଡ଼େଇ ଦେଇଥାନ୍ତେ। କିନ୍ତୁ ଏ ତ ତା' ନୁହେଁ। ଏଠି

ପ୍ରମାଣିତ ହେଉଛି ଯେ, ଆମର ଆତ୍ମସମ୍ମାନ ଜ୍ଞାନ ନାହିଁ । ଆମେ ଅସଦାଚରଣ କରି ଲଜ୍ଜିତ ହୋଇ ଜାଣି ନାହୁଁ । ଆମେ ସଭ୍ୟ ସମାଜରେ ଭଦ୍ରଭାବରେ ଚଳିବା ଜାଣି ନାହୁଁ । ଭୁଲ କରି ମଧ୍ୟ ଭୁଲ କରିଛୁ ବୋଲି ବୁଝିପାରୁନାହୁଁ । ଏଣୁ ଆମେ ଯେ ଲଣ୍ଡନ ସହରରେ ମୋଜା ଚୋରି କରିବା ଏବଂ ସାରା ଦେଶକୁ ବେଜ୍ଜିତ କରିବା, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଆମେ ଦୋଷ ଦେଖି ପ୍ରତିକାର କରିବା ଦୂରେ ଥାଉ, ବରଂ ଆଦୌ ବିଳଚିତ ହେଉ ନାହୁଁ ।



# ବଳାତ୍କାର ପ୍ରସଙ୍ଗ – ୨

ବ୍ୟବହାର ଅର୍ଥରେ ବଳାତ୍କାର କହିଲେ ଆମେ ନାରୀଧର୍ଷଣ ହିଁ ବୁଝିଥାଉ । ନାରୀଧର୍ଷଣ ଏକ ଅତି ଗର୍ହିତ ଏବଂ ଦଣ୍ଡନୀୟ ଅପରାଧ । କିନ୍ତୁ ଏବେ ମନେହେଉଛି ତାହା ବୋଧହୁଏ ଆଉ ଦଣ୍ଡନୀୟ ନୁହେଁ । ନହେଲେ ସ୍ପଷ୍ଟ ଦିବାଲୋକରେ (ଅନ୍ଧାରରେ ତ ନିଶ୍ଚୟ) ରାସ୍ତାଘାଟରେ, ଚଳନ୍ତା ଟ୍ରେନରେ, ସ୍କୁଲରେ, ଦପ୍ତରରେ, ପୋଲିସ ସ୍ୱାଗତରେ, ସ୍ଥାନ କାଳ ବୟସ ନିର୍ବିଶେଷରେ ଏପରି ନିଃସଙ୍କୋଚ ଏବଂ ଅବାଧ ଏ ଅପରାଧ ସଙ୍ଘଟିତ ହେଉ ନଥାନ୍ତା । ହତ୍ୟା ଓ ଧର୍ଷଣ କାଳେ ଆମେ ଦେଶରେ ଏବେ ପ୍ରତି ଦୁଇମିନିଟରେ ଥରେ ହୋଇ ଚାଲିଛି । ପ୍ରାୟ ଅବିରାମ ଯେଉଁ ଦେଶରେ ଧର୍ଷଣ ଚାଲେ, ସେଠି କ'ଣ ଆଉ କିଛି ହୁଏ ନା ହେବା ସମ୍ଭବ? କାହିଁକି ଏ ଧର୍ମଭୀରୁ, ନୀତିସଚେତନ ଓ ପରମ୍ପରାପ୍ରଧାନ ଦେଶରେ ଏପରି ଅନାଚାର ବଢ଼ିଚାଲିଛି? ଏହା ସହିତ ଜୀବନର ଅନ୍ୟାନ୍ୟ ବିଭାଗରେ ଶଠତା, ମିଥ୍ୟାଚାର, ଚୋରି, ତୋଷରପାତ, ଉତ୍କୋଚ ଆଦି ଆନୁଷଙ୍ଗିକ ଅପରାଧ ମଧ୍ୟ ବଢ଼ିଚାଲିଛି ? ଭାରତ ପରି ଦେଶର ଗୋଟାଏ ସାମୂହିକ ନୈତିକ ଅଧଃପତନର କ'ଣ କାରଣ ଥାଇପାରେ ? ସମସ୍ତେ ଏମିତି ଲଗାମଛଡ଼ା ଘୋଡ଼ା ଭଳି ଉଚ୍ଛୃଙ୍ଖଳ ଉତ୍ପାତ ହେଉଛନ୍ତି ଅଥଚ ତାଙ୍କୁ ଆୟତ କରିବାକୁ କେହି ସମର୍ଥ ହେଉନାହିଁ । ମଣିଷ ଭିତରର ଜାନୁଆରକୁ ବାନ୍ଧି ରଖିବା ପାଇଁ ଲଗାମ ଆଉ ଏ ଦେଶରେ ନାହିଁ । ଲଗାମ ହୁଏ ତ ଛିଣ୍ଡିଯାଇଛି । ଏଣୁ ନିଶାଚର ଜନ୍ତୁମାନେ ଦିନ ଦି'ପହରେ ସହର ବଜାରରେ ଅବାଧ ବିଚରଣ କରିବେ, ଏଥିରେ ବିଚିତ୍ର କ'ଣ ଅଛି ! – ବଳାତ୍କାର ରୋଧିବ କିଏ ? ବିଧାନସଭାରେ ମୁଥ ମରାମରି ହୋଇ ଯେଉଁମାନେ ପରସ୍ପରର ଦାନ୍ତ ଝାଡ଼ି ଦିଅନ୍ତି, ସେମାନେ ? – ନା, ନିଜର ଗୁପ୍ତ ଅନୁଚର ଗୋଷ୍ଠୀକୁ ରାତିଅଧରେ ଉନ୍ମତ୍ତ ଏବଂ ଉତ୍ତ୍ୟକ୍ତ କରିବାକୁ ମାଲପାଣି ଏବଂ ହତିଆର ଯେଉଁମାନେ ଯୋଗାଇ ଦେଇ ଦିନବେଳେ ନିରପେକ୍ଷ ନେତା ସାଜି ବସନ୍ତି, ସେମାନେ ? – ନା' ରକ୍ଷକର ପୋଷାକ ଭିତରେ ସଜ ଉଣ୍ଡି ଯେଉଁମାନେ ଭକ୍ଷକ ହୁଅନ୍ତି, ସେମାନେ ? – କାହା ପାଖକୁ ଯାଇ ଧର୍ଷିତା ନାରୀଟିଏ ନ୍ୟାୟ ଭିକ୍ଷା କରିବ ? କିଏ ତାକୁ ନିରାପତ୍ତାର ପ୍ରତିଶ୍ରୁତି ଦେଇ ପାରିବ? – ଏବଂ ତାହା ଦେଇ ନ ପାରିବା ପର୍ଯ୍ୟନ୍ତ, ନାରୀଟିଏ ଏକୁଟିଆ ନିଜକୁ ନିରାପଦ ମନେ କରି ଆତ୍ମବିଶ୍ୱାସରେ

ଆମ ରାସ୍ତାରେ ଚାଲି ନପାରିବା ପର୍ଯ୍ୟନ୍ତ, ଆମେ ଗୋଟିଏ ସଭ୍ୟ ଜାତି ବୋଲି ଅଧିକାର ଅର୍ଜନ କରିପାରିବା କି ?

ଏ ଦେଶରେ ପୂର୍ବେ ବଳାତ୍କାର ଥିଲା । କିନ୍ତୁ ଅନ୍ୟ ପ୍ରକାରେ ଥିଲା । ବଳବାନ ଏବଂ ସମର୍ଥ ଯୋଦ୍ଧା ରାଜପୁତ୍ରମାନେ ସ୍ୱୟଂବର ସଭାରୁ ସମସ୍ତଙ୍କ ସପକ୍ଷରେ ବଳାତ୍କାରେ ରାଜକନ୍ୟାଙ୍କୁ ନେଇ ଯାଉଥିଲେ । ତାହା କିନ୍ତୁ ନାରୀକୁ ଧର୍ଷଣ କରିବା କିମ୍ବା ଅପମାନିତ କରିବା ଉଦ୍ଦେଶ୍ୟରେ ନୁହେଁ । ତାହା କେବଳ ନିଜର ଯୋଗ୍ୟତା, ଶ୍ରେଷ୍ଠତା ପ୍ରମାଣ କରିବାକୁ ସେମାନେ କରୁଥିଲେ । ତାହା ଥିଲା ବିବାହ କରିବାର ଏକ ସ୍ୱୀକୃତି ଏବଂ ମାନନୀୟ ପଦ୍ଧତି । ଯେଉଁ ପୁରୁଷ ପୁଙ୍ଗବମାନେ ରୁକ୍ମିଣୀ, ସୁଭଦ୍ରା, ଅମ୍ବିକା ଅମ୍ବାଳିକାଙ୍କୁ ସ୍ୱୟମ୍ବର ସଭାରୁ ବଳାତ୍କାର ଗ୍ରହଣ କରିଥିଲେ ସେମାନେ ସବୁ ଯୁଗର ଆଦର୍ଶ ପୁରୁଷ । ନାରୀକୁ ଜାୟା ଓ ଜନନୀର ମର୍ଯ୍ୟାଦା ଦେବା ସେମାନଙ୍କର ଅଲଙ୍ଘନୀୟ ସ୍ୱଧର୍ମ ଥିଲା । ନାରୀର ଅସମ୍ମାନ କରୁଥିବା ଦୁରାଚାରୀର ଉରୁଭଙ୍ଗ କିମ୍ବା ବକ୍ଷ ବିଦାରଣ କରିବାର ସାମର୍ଥ୍ୟ ତାଙ୍କର ଥିଲା। ଅପଶାସିତ ମଧ୍ୟଯୁଗରେ କିନ୍ତୁ ଲୁଣ୍ଠନସର୍ବସ୍ୱ ରାଜା, ଜମିଦାରମାନେ ଡକାଏତ ଢ଼ଙ୍ଗରେ ଧନ,ମାନ ଅପହରଣ କଲେ। ନାରୀକୁ ସେଇମାନେ ହିଁ ବିଳାସର ସାମଗ୍ରୀ ଭାବି ବଳାତ୍କାର ଧର୍ଷଣ କଲେ । ଦୁଇ ଦଳ ଭିତରେ ସଂଘର୍ଷ ହେଲାବେଳେ, ମାନ ଅପମାନ ନିର୍ଣ୍ଣୟ କରିବାକୁ ନାରୀକୁ ହିଁ ପାଶବିକ ଅତ୍ୟାଚାରର ବଳି ହେବାକୁ ପଡୁଥିଲା । ଜଣେ ଆଉ ଜଣକର ଗାଁ ପୋଡ଼ି ଦେଇ ନାରୀମାନଙ୍କୁ ବଳାତ୍କାର ନେଇଗଲେ, ସେ ପୁଣି ପ୍ରତିଶୋଧ ନେବାକୁ ଅନ୍ୟପକ୍ଷର ପୁଞ୍ଜାଏ ଗାଁ ପୋଡ଼ି ଦେଇ ଆହୁରି ଅଧିକ ନାରୀକୁ ଆଣି ବଳାତ୍କାର କରୁଥିଲା – ଏଇ ଆଚରଣ ଦୃଷ୍ଟିରୁ ସେଇ ତଥାକଥିତ ଅପଶାସିତ ମଧ୍ୟଯୁଗ ଏବଂ ବର୍ତ୍ତମାନର 'ସୁଶାସିତ ସ୍ୱର୍ଣ୍ଣଯୁଗ' ଭିତରେ ବିଶେଷ ପାର୍ଥକ୍ୟ ଥିଲା ପରି ଜଣାପଡୁଛି କି ?

ପ୍ରକୃତିର ଦୁର୍ଲଙ୍ଘ୍ୟ ନିୟମ ଅନୁସାରେ ନାରୀ ଅପେକ୍ଷା ପୁରୁଷର ଶାରୀରିକ ବଳ ଅଧିକ। ଏଣୁ ସେ ହର୍ତ୍ତା ଏବଂ ଭୋକ୍ତା ହେଲେ ମଧ୍ୟ ଭର୍ତ୍ତାର ଦାୟିତ୍ୱ ବହନ କରି ଆସିଛି। ଭୂମିକୁ ଅଧିକାର କଲାପରି ସେ ନାରୀକୁ ଅଧିକାର କରି ଆସିଛି। ନାରୀ ତା'ର ସମ୍ପତ୍ତି, ମାନ, ଇଜ୍ଜତର ପ୍ରତୀକ । ସେ ତାକୁ ଅତି ସ୍ୱାଭାବିକ ଭାବରେ ଆଦର ଏବଂ ସମ୍ମାନ ଦେଇ ଆସିଛି ବୋଲି ପ୍ରତିଶୋଧ କିମ୍ବା ଅସମ୍ମାନ ଦେଲାବେଳେ ସେ ନାରୀର ଅସମ୍ମାନ ଏବଂ ଧର୍ଷଣ କଥା ହିଁ ଚିନ୍ତା କରିଛି । ସାମାଜିକ, ସଭ୍ୟ, ମାର୍ଜିତ ଚେତନା ଯାହାକୁ ମୂଲ୍ୟ ଦିଏ ଏବଂ ପୋଷଣ କରେ, ଅସାମାଜିକ, ଅସଭ୍ୟ, ଜାନ୍ତବ ପ୍ରବୃତ୍ତି ତାକୁ ଲୁଣ୍ଠନ କରେ, ହତ୍ୟା କରେ, ଧର୍ଷଣ କରେ ।

ଆମେ ନାରୀଙ୍କୁ ଅନେକ ସମ୍ମାନ ଦେଇ ଆସିଛୁ ବୋଲି ବଳାତ୍କାର ଜନିତ ଧର୍ଷଣ, ଅପରାଧ ଆମ ପାଇଁ ଏତେ ଅସହ୍ୟ ବୋଧ ହେଉଛି । ଆମର ରକ୍ଷଣଶୀଳତା, ନାରୀପୁରୁଷଙ୍କୁ ଅଲଗା ଅଲଗା ରଖିବାର ସାମାଜିକ ଏବଂ ନୈତିକ ଆଚରଣ ହେତୁରୁ, ଆମ ଦେଶର ତରୁଣମାନଙ୍କର କୁଆଡ଼େ ଅସଂଯତ ଯୌନପ୍ରବୃତ୍ତି ଅଧିକ ମାତ୍ରାରେ ଦେଖାଦିଏ । ଖୋଲାଖୋଲି ଅବାଧ ମିଳିମିଶି ଚଳିଲେ, ନାରୀ କୌଣସି ଆବୃତ ରହସ୍ୟ ନ ରହି ଦେହଘଷା ହୋଇଯିବ । ଏଣୁ ଏପରି ପ୍ରବୃତ୍ତି ଆଉ ଏତେ ମାତ୍ରାରେ ଦେଖାଦେବ ନାହିଁ । ଆମେ ଏ ଦିଗରେ ଆମର ଆଧୁନିକ ସହରୀ ଜୀବନରେ କିଛି କିଛି ପରୀକ୍ଷା କରି ଦେଖିଲୁଣି । ଅପରାଧ ବରଂ ବଢ଼ୁଛି କିନ୍ତୁ କମୁନାହିଁ । ଅବଶ୍ୟ ଗୋଟିଏ ବିଷୟ ଲାଭ ହେଲାପରି ଦିଶୁଛି । ତା' ହେଲା ଯେ ନାରୀମାନେ ଆତ୍ମରକ୍ଷା ପାଇଁ ସାହସ ସଂଚୟ କଲେଣି । 'କରାତ' ଆଦି ଜାପାନୀ ମଲ୍ଲବିଦ୍ୟାରେ ନିପୁଣତା ଅର୍ଜନ କରି, ମୁକାବିଲା କରି ଶିଖିଲେଣି । କାମୁଡ଼ା କୁକୁର ଗୋଡ଼େଇ ଆସିଲେ ଯେଉଁଭଳି ଠେଙ୍ଗାରେ ତା' ଦାନ୍ତ ଝାଡ଼ି ଉଚିତ ଶାସ୍ତି ଦିଆଯାଏ, ସେଭଳି ଉନ୍ମତ୍ତ ଧର୍ଷଣଲୋଭୀ ଯୁବକକୁ ମାଡ଼ ମାରି ଆୟତ୍ତ କରିବାରେ ଯୋଗ୍ୟତା ଅର୍ଜନ କଲେଣି ।

କିନ୍ତୁ ଏଇଆ କ'ଣ ଏଭଳି ବ୍ୟାପକ, ଜାତୀୟ ଏବଂ ନୈତିକ ସ୍ତରର ଭୟାବହ ସମସ୍ୟାର ସମାଧାନ ? ବଳ ଅଛି ବୋଲି ସେମାନେ ବଳାତ୍କାର କରିବେ, ଅଥଚ ତାଙ୍କର ମୁକାବିଲା କରାଯିବ ନାହିଁ । ବଳବାନକୁ ବଳବତ୍ତର ହିଁ ଆୟତ୍ତ କରିପାରେ। ମହିଷାସୁର ଉଭୟ ଶରୀରରେ ଏବଂ ମନରେ ଅସୁର। ତାକୁ ପରାସ୍ତ କରିବାକୁ ହେଲେ ଦେହରେ ଅସୁରର ବଳ, କିନ୍ତୁ ମନରେ ଦେବତାର ସଂଯମ ଆବଶ୍ୟକ। ଏ ଦେଶରେ କ'ଣ ପରାକ୍ରମୀ ଅଥଚ ନୈତିକ ଯୋଦ୍ଧା ଜନ୍ମ ହେବେ ନାହିଁ ? ପଶୁବଳ ହିଁ ଜୀବନର ଏକମାତ୍ର ନିୟାମକ ହୋଇ ରହିଥିବ ?



# ବଳାତ୍କାର ପ୍ରସଙ୍ଗ – ୩

ଦଳବଦ୍ଧ ହୋଇ ଜବରଦସ୍ତି ବିନା ଟିକେଟରେ ରେଳଡ଼ବାରେ ଚଢ଼ିବା ଏବଂ ନିୟମିତ ଯାତ୍ରୀଙ୍କୁ ସ୍ୱାଧିକାରରୁ ବଞ୍ଚିତ କରି ଇଚ୍ଛା ହେଲେ ଗାଳି ମାଡ଼ ଦେବା ଓ ବାରବେଢ଼ିତ କରିବା ପରେ ବାଟଘାଟରେ ଚେନ ଟାଣି ସ୍ୱଚ୍ଛନ୍ଦ ଓହ୍ଲେଇଯିବା, ଆଜିକାଲି ଏକ ସାମାନ୍ୟ ଘଟଣା । ଜାତୀୟ ରାଜପଥ ଉପରେ ଡିମା ପଥର ଥୋଇ ପ୍ରତ୍ୟେକ ଯାତ୍ରୀବାହୀ କିମ୍ବା ମାଲବାହୀ ଗାଡ଼ିରୁ ଚାନ୍ଦା ନାମରେ ଖଣ୍ଡ ଶୁଳ୍କ ଆଦାୟ କରିବା ଏବଂ ଅନାଦୟେ କଣ୍ଡକ୍ଟର, ଡ୍ରାଇଭରକୁ ଭିଡ଼ିଆଣି ମାଡ଼ଦେବା ଓ କଥା ତେଜିଗଲେ ଆନ୍ଦୋଳନ କରି ଗାଡ଼ିଗୁଡ଼ିକୁ ପୋଡ଼ିଦେବା ମଧ୍ୟ ସାମାନ୍ୟ ଘଟଣା । ଯେଉଁମାନେ ଏସବୁ କାର୍ଯ୍ୟ କରନ୍ତି, ସେମାନଙ୍କର ସେଥିପାଇଁ କୌଣସି ଯୁକ୍ତି ନାହିଁ । ଯଦି ସେମାନଙ୍କୁ ପଚରାଯାଏ ''କାହିଁକି ଏପରି କରୁଛନ୍ତି ?'' ସେମାନେ ଉତ୍ତର ଦିଅନ୍ତି, ''ଆମ ଇଚ୍ଛା ! – ସେଥିରେ ତୁମେ କିଏ ପଚାରିବାକୁ ?'' – ''ଏଥିରେ ଅନ୍ୟମାନଙ୍କର ଯାହା କ୍ଷତି ହେଉଛି, ଆପଣ ଚିନ୍ତା କରିପାରୁଛନ୍ତି କି ?'' "ଚିନ୍ତା କରିବା ଆମ କାମ ନୁହେଁ । କାହାର କ୍ଷତି ହୋଇଗଲେ ଆମର କିଛି ଯାଏ-ଆସେ ନାହିଁ।" "ଆପଣ ଏହା କରିପାରିବେ ନାହିଁ, ଏହା ଭୁଲ।" ''ଚୋପ ବେ ! ଆମେ ଅଲବତ କରିବୁ। ଜବରଦସ୍ତ କରିବୁ। ଆମେ ଯାହା କରିବୁ ତାହା ଠିକ।''

ବିଶୃଙ୍ଖଳା, ଉଚ୍ଛୃଙ୍ଖଳତା ଏବଂ ସ୍ୱେଚ୍ଛାଚାର ପଛରେ ଏହି ପ୍ରକାର ବେଖାତିର ସ୍ୱାର୍ଥପ୍ରବଣ ମନୋବୃତ୍ତି କାର୍ଯ୍ୟ କରିଥାଏ । ଏହାହିଁ ବଳାତ୍କାରର ମନୋବୃତ୍ତି । ବଳପ୍ରୟୋଗ କଲେ ସବୁକିଛି ହୋଇପାରିବ ବୋଲି ସେଥିରେ ଗୋଟାଏ ପ୍ରକାର ଦାମ୍ଭିକତା ଥାଏ । ନୀତିନିୟମ ଦୁର୍ବଳଙ୍କ ପାଇଁ, ବଳବାନ ଯାହା ଚାହେଁ ତାହା ହୁଏ । ସେଭଳି ମନୋବୃତ୍ତି ଥିବା ବ୍ୟକ୍ତି ଦଳବାନ୍ଧି, ସମାଜ ଏବଂ ରାଷ୍ଟ୍ରର ମୂଲ୍ୟବୋଧକୁ ଅସ୍ୱୀକାର କରନ୍ତି । ଅଧିକାର ନଥାଇ ଦାବି କରନ୍ତି, ଯୋଗ୍ୟତା ନ ଥାଇ ଚେଷ୍ଟା ଚାହାନ୍ତି । କାହାରି ଧନଜୀବନ କିମ୍ବା ମାନମହତ ପାଇଁ ସେମାନଙ୍କର ଖାତିର ନଥିବାରୁ ସେମାନେ ଲୁଣ୍ଠନ, ଧର୍ଷଣ କିମ୍ବା ହତ୍ୟା କରିବା ଅତି ସ୍ୱାଭାବିକ ଏବଂ ସହଜ ମଣିଥାନ୍ତି । ସବୁଠାରୁ ଆଶ୍ଚର୍ଯ୍ୟ କଥାହେଲା ଯେ ପୁରାତନ ମୂଲ୍ୟଗୁଡ଼ିକୁ ନେଇ ସେମାନେ ନୂତନ ଢ଼ଙ୍ଗରେ ବଳପ୍ରୟୋଗ କରନ୍ତି । ଧର୍ମଘଟ, ସତ୍ୟାଗ୍ରହ, ଆମରଣ ଅନଶନ

ଇତ୍ୟାଦି ଉପାୟମାନ ବର୍ତ୍ତମାନ ସେମାନଙ୍କ ହାତରେ ପଡ଼ି ତାଙ୍କର ଐତିହାସିକ ମାନବୀୟତା ହରାଇ ସାରିଲେଣି । ସଂପୃକ୍ତ ଭାବମୂର୍ତ୍ତି ସବୁ ବିନଷ୍ଟ ହୋଇଗଲାଣି । ଧର୍ମଘଟର ଝଣ୍ଡା ଧରି ମିଛ,ଖଚ, ଉତ୍କୋଚ, ଧମକର ଆଶ୍ରୟ ନେବା ସଂପୂର୍ଣ୍ଣ ନ୍ୟାୟ-ବିରୁଦ୍ଧ, ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ସତ୍ୟାଗ୍ରହ କରିବା ଏବଂ ଅନଶନ ତମ୍ବୁ ଭିତରେ ମଦ୍ୟପାନ ଓ ବ୍ୟଭିଚାର କରିବା ଅତି ଉତ୍କଟ ଧରଣର ନୈତିକ ବଳାତ୍କାର। ଏମାନଙ୍କୁ ଦେଖି ଅନଭିଜ୍ଞ ଏବଂ ସରଳ ଲୋକେ ଭାବିବା ବିଚିତ୍ର ନୁହେଁ ଯେ, ମହାତ୍ମା ଗାନ୍ଧୀ କଣ ଏଇଭଳି ସତ୍ୟାଗ୍ରହ ଏବଂ ଅନଶନ କରୁଥିଲେ ?

ଏମାନେ ସମସ୍ତେ ସମାଜଦ୍ରୋହୀ ଏବଂ ବ୍ୟକ୍ତି ସ୍ୱାଧୀନତାର ବିରୋଧୀ । ଏମାନଙ୍କ ପାଇଁ ଧନଜୀବନ ବିପନ୍ନ , ଦେଶର ଶାନ୍ତି ପ୍ରଗତି ବ୍ୟାହତ । ଏମାନେ କିନ୍ତୁ ଆମ ଦ୍ୱାରା ହିଁ ଉତ୍ସାହିତ ହୁଅନ୍ତି କାରଣ ମୂଳରୁ ଉପଯୁକ୍ତ ଶାସନ ନକରି ଆମେ ସେମାନଙ୍କର ବଳପ୍ରୟୋଗକୁ ସହିଯାଉ । ଥରେ ଯଦି ସେ ଜାଣିଲା ଯେ ବଳପ୍ରୟୋଗ ଅପରାଧ ନୁହେଁ, ଏବଂ ସେ ଯାହା ଚାହୁଁଛି ତାହା ପାଇପାରୁଛି, ସେ କାହିଁକି ଆପଣଙ୍କ ରାସ୍ତାରେ ଅଟକାଇ ଆପଣଙ୍କ ସର୍ବସ୍ୱ ଲୁଟି ନ ନେବ, କିମ୍ୱା ପ୍ଲେନଟାଏ ଅପହରଣ କରିନେଇ ପଣବନ୍ଦୀଙ୍କ ବଦଳରେ ତା'ର ସମସ୍ତ ପ୍ରୟୋଜନ ମେଣ୍ଟାଇ ନ ନେବ ? ସେ ଯଦି ଜାଣିଲା ଯେ ତା'ର ଏଭଳି ସାହସିକତାକୁ ବାହାଦୁରି ବୋଲି ଅନେକ ନେତା ତା'ର ସାହାଯ୍ୟ ଲୋଡୁଛନ୍ତି, ପ୍ରଚୁର ଅର୍ଥ ବିନିମୟରେ ତାକୁ ପୋଷି ରଖିବାକୁ ପ୍ରସ୍ତୁତ ଅଛନ୍ତି, ସେ କାହିଁକି କାହାକୁ ଖାତିର କରିବାକୁ ଯିବ ?

ସେ ଏବଂ ତାହାଭଳି, ଲୋକଙ୍କ ସହାୟତାରେ ମାଫିଆ ଦଳ ଗଢ଼ି ଉଠିଛି। ବିଧିବଦ୍ଧ ଭାବରେ ଜନସାଧାରଣଙ୍କ ଉପରେ ବଳପ୍ରୟୋଗ ହେଉଛି। ଏପରିକି ଗଣତନ୍ତ୍ରର ମୌଳିକ ଅଧିକାର ସ୍ୱରୂପ ନିର୍ବାଚନର ମତପ୍ରଦାନ ବେଳେ ଏଇମାନେ ଭୀତତ୍ରସ୍ତ କରି ଜନମତ ସଂଗ୍ରହ କରୁଛନ୍ତି ଏବଂ ତାହାରି ଉପରେ ଶାସନ ପ୍ରତିଷ୍ଠିତ ହେଉଛି । ଏମାନଙ୍କୁ ଶାସନ କରିବାର ପ୍ରୟୋଜନ ଅଛି ନା ନାହିଁ ? ଯଦି ନାହିଁ, ତେବେ ଆମେ ମଧ୍ୟଯୁଗୀୟ ଗୋଷ୍ଠୀଶାସନ, ଖଣ୍ଡମାନଙ୍କ ସାର୍ବଭୌମତ୍ୱ ଆଡ଼କୁ ଫେରିଯିବା । କୌଣସି ମାନବିକ ମୂଲ୍ୟବୋଧର ସ୍ଥାନ ଜୀବନରେ ଆଉ ରହିବ ନାହିଁ । ଭୟ, ଆତଙ୍କ, ବ୍ୟଭିଚାର, ହତ୍ୟା ହିଁ ହେବ ଦୈନନ୍ଦିନ ଅନୁଭବ। ଅନ୍ୟପକ୍ଷେ ଯଦି ଏମାନଙ୍କୁ ଶାସନ କରିବାକୁ ହେବ, ମୁକାବିଲା କରିବାକୁ ହେବ, ଏ ଉଚ୍ଛୃଙ୍ଖଳ ଜାନ୍ତବତାକୁ, ତେବେ କିଏ ତାହା କରିବ ଏବଂ କିପରି କରିବ ?

ଅବଶ୍ୟ ସମ୍ପୂର୍ଣ୍ଣ ଅରାଜକତା ନ ଆସିବା ଯାଏଁ ଏହା ଏକ ସରକାରୀ ଦାୟିତ୍ୱ – ପ୍ରଶାସନିକ ଏବଂ ନୈତିକ ଦାୟିତ୍ୱ । ସରକାରଙ୍କ ଅଙ୍ଗରୂପେ କାର୍ଯ୍ୟ କରୁଥିବା ପୋଲିସ

ବାହିନୀ ଅବଶ୍ୟ ଶୃଙ୍ଖଳାର ପ୍ରତିଷ୍ଠା ପାଇଁ ଦାୟୀ । ଏ ଅତ୍ୟାଚାରୀ ଅସାମାଜିକ ପ୍ରାଣୀମାନଙ୍କ ଦାଉରେ ଉତ୍ପୀଡ଼ିତ ହୋଇ ଯଦି ସେମାନଙ୍କ ଉପରେ ତଦ୍ରୂପ ଅତ୍ୟାଚାର କରାଯାଏ ତାହା ହେଲେ ସେମାନଙ୍କ ଦୋଷ ଶାସନତନ୍ତ୍ରକୁ କଳୁଷିତ କରିବ । ସେମାନେ ଘର ପୋଡ଼ିବେ, ଲୋକଙ୍କୁ ହତ୍ୟା କରିବେ । ତାଙ୍କ ପାଇଁ ଏହା ସ୍ୱାଭାବିକ । କିନ୍ତୁ ସେଥିପାଇଁ ସେମାନଙ୍କ ଆଖି ଫୁଟାଇଦେବା କିମ୍ବା ଗୋଡ଼ ହାତ ଭାଙ୍ଗି ତାଙ୍କୁ ପଙ୍ଗୁ କରିଦେବା, ସେଇ ନିମ୍ନକୋଟିର ବଳାତ୍କାର ଏବଂ ସେହି କାରଣରୁ ଅମାନୁଷିକ ଅପରାଧ । ଦୁଇଟି ଡକାୟତଦଳ ଭିତରେ ଏହିପରି ଆଖି ଫୁଟାଫୁଟି ହେଲେ ତାହା ବୁଝାଯାଉଛି । କିନ୍ତୁ ଶାସକ ସେଭଳି ଆଚରଣ କଲେ ତାକୁ ସର୍ବାପେକ୍ଷା ବୃହତ୍ତମ ବଳାତ୍କାର କରୁଥିବା ଦଳ ବୋଲି ଅପଖ୍ୟାତି ମିଳିପାରେ ।

ଆମ ଦେଶରେ ଯଦି ଏଭଳି ନିୟମ ଥାଏ ଯେ, ନ୍ୟାୟବିଚାର ହୁଏତ ସମ୍ଭବ ନୁହେଁ କିମ୍ବା ଯଦି ସମ୍ଭବ ତେବେ ୧୦ ବର୍ଷ ପରେ ତେବେ ଏମାନଙ୍କୁ ଶାସନ କରିବା କିପରି ? ଯଦି ଧର୍ଷଣ ବା ଲୁଣ୍ଠନ କରିଥିବା ଅପରାଧୀ, ନିଶରେ ହାତମାରି ବିଚ ରାସ୍ତାରେ ବୁଲିପାରେ, ଆମେ ନ୍ୟାୟ ବିଚାରକୁ ଆଶାକରି ସାମାଜିକ ପ୍ରାଣୀଗୁଡ଼ିଏ ଅସହାୟବୋଧ କରିବା ଅତି ସ୍ୱାଭାବିକ। ଏଥିରେ ଯଦି ଶୃଙ୍ଖଳା ଦାୟିତ୍ୱରେ ଥିବା ବ୍ୟକ୍ତିକୁ କୁହାଯାଏ ବଳାତ୍କାରକୁ ଆୟତ୍ତ କର, ସେ ତା'ର ଗୋଡ଼ଟାଏ ଭାଙ୍ଗିଦେବାକୁ ପ୍ରଲୁବଧ ହେବା ମଧ୍ୟ ସେଇଭଳି ସ୍ୱାଭାବିକ ନୁହେଁ କି ? ଅବଶ୍ୟ ତାହା କରଣୀୟ ନୁହେଁ ଏବଂ ଏ ସମସ୍ୟାର ସମାଧାନ ମଧ୍ୟ ନୁହେଁ । ତେବେ କ'ଣ କରିବା ?



# ବଳାତ୍କାର ପ୍ରସଙ୍ଗ (ଶେଷ ଭାଗ)

ଉଚ୍ଛୃଙ୍ଖଳ ପଶୁଶକ୍ତିକୁ ଦମନ ନ କରି ଆୟତ୍ତ କରିବା ଅସମ୍ଭବ । ମହିଷାସୁରର କେତେବେଳେ ବିବେକର ଉଦୟ ହେବ, ତା'ର ଚେତନା ମାର୍ଜିତ ହେବ ବୋଲି ଆଶାକରି ଅପେକ୍ଷା କରିହେବ ନାହିଁ । ଆଧ୍ୟାତ୍ମିକ ପ୍ରଭାବରେ ଚମ୍ବଲ ଉପତ୍ୟକାର ଦୁର୍ଦ୍ଦାନ୍ତ ଦସ୍ୟୁମାନଙ୍କର ହୃଦୟ ପରିବର୍ତ୍ତନକୁ ସାଧାରଣ ନୀତି ରୂପେ ଗ୍ରହଣ କରାଯାଇ ପାରିବ ନାହିଁ । ଏକମାତ୍ର ପନ୍ଥା ହେଲା ଅସୁରଶକ୍ତିକୁ ଦୃଢ଼ହସ୍ତରେ ଦମନ କରିବା, ଯେଉଁ ସକାଶେ ମହାଶକ୍ତି ଦଶପ୍ରହରଣ ଧାରଣ କରିଥିଲେ । ଯେଉଁ ସକାଶେ ପରମପୁରୁଷଙ୍କୁ ଗୀତା ମାଧ୍ୟମରେ ସ୍ୱୀକାର କରିବାକୁ ପଡ଼ିଥିଲା ବଳବାନଠାରୁ ମୁଁ ବଳବତ୍ତର – ''ବଳଂ ବଳବତାଂ ଚାହଂ'' –

ଏଥିରେ ପ୍ରଥମ ବାଧକ ହେଲା ଆମମାନଙ୍କର ସହନଶୀଳତା । ପ୍ରକୃତରେ କହିବାକୁ ଗଲେ ତାହା ଆମର ଭୀରୁତା, ଦୁର୍ବଳତା ଏବଂ କାପୁରୁଷତାର ଅନ୍ୟ ନାମ । ଆମେ ବହୁକାଳୁ ଦୁଃଶାସିତ, ଅପଶାସିତ ହୋଇ ଆସିଥିବା ଫଳରେ ପ୍ରତିବାଦ କରିବା, ଉତ୍ତ୍ୟକ୍ତ ହେବା, ଯୁଦ୍ଧଘୋଷଣା କରିବା ଅଶାଳୀନ ବୋଲି ଧରି ନେଲୁଣି । ଆତ୍ମମର୍ଯ୍ୟାଦା, ନାଗରିକ ଅଧିକାରବୋଧ, ସମ୍ମାନ ସଚେତନତା ବିଷୟରେ ଆମେ ପ୍ରାୟ ଉଦାସୀନ । ସବୁ କଥାରେ ତୁନିପଡ଼ି ରହିବା, ମାଛିକୁ ମ' ବୋଲି ନ କହିବା ଏ ପର୍ଯ୍ୟନ୍ତ ଭଲ ମଣିଷର ଲକ୍ଷଣ ବୋଲି ଗୃହୀତ ହୋଇ ଚାଲିଛି । ଫଳରେ ଅମେରୁଦଣ୍ଡୀ କେଞ୍ଚୁଆ ପରି ଆମକୁ ଅନ୍ୟମାନେ ପେଶି ଖାଇଗଲାବେଳେ ଆମେ ଛଟପଟ ହେଉ, କିନ୍ତୁ ପ୍ରତିବାଦ କରିପାରୁନାହିଁ । ଜୋଉଟି କାମୁଡ଼ିଦେବା, ଆତ୍ମରକ୍ଷା ପାଇଁ ସୁଦ୍ଧା ଆମ ଆୟତ୍ତରେ ନାହିଁ; ଆମ ସ୍ୱଭାବରେ ନାହିଁ । ଜଣେ ଅଧିକ ବଳୁଆ ହେଲା ବୋଲି ହୁଏତ କାହା ମୁହଁରୁ ଆହାର ଛଡ଼େଇ ନେଇପାରେ, ତା' ବୋଲି ଆରଜଣକ ନ ଲଢ଼ି, ଏମିତି ନିର୍ବିରୋଧ ଦେଇଦେବ; ଗଛ ପରି ଲୁଣ୍ଠିତ ହୋଇଯିବ, ଏହା କି ପ୍ରକାର ଆଚରଣ ? ଦୁର୍ବଳ ହେବା ଦୋଷ ନୁହେଁ, କିନ୍ତୁ ନିର୍ବୀର୍ଯ୍ୟ ନପୁଂସକ ହେବା ନିଶ୍ଚୟ ଏକ ଅଯୋଗ୍ୟତା । ସହନଶୀଳତା ସାତ୍ତ୍ୱିକ ସଦ୍‌ଗୁଣ ନୁହେଁ; ଆମ ପରିସ୍ଥିତିରେ ତାହା ବରଂ ତାମସିକ ନିଷ୍କ୍ରିୟତା । ପ୍ରତ୍ୟେକ ବ୍ୟକ୍ତି ସ୍ତରରେ ଏବଂ ସମବେତ ଭାବରେ ବଳାତ୍କାରର ପ୍ରତିରୋଧ ନହେବା ଯାଏଁ, ତା'ର ଗୁରୁତ୍ୱ ମଧ୍ୟ ଅନୁଭବ ହୋଇପାରୁନାହିଁ । ପ୍ରତିକାର କରିବା ପାଇଁ ସଂକଳ୍ପବଦ୍ଧ ହେବା ତ' ଦୂରର କଥା ।

ଏହାର ଦ୍ୱିତୀୟ ବାଧକ ଆହୁରି ଗୁରୁତ୍ୱପୂର୍ଣ୍ଣ। ଏକଦା ଆଲେକଜାଣ୍ଡାରଙ୍କ ରାଜସଭାରେ ଦଣ୍ଡିତ ହେବାକୁ ଯାଉଥିବା ଜଣେ ଦସ୍ୟୁ ଦଳପତି କହିଥିଲା, "ହେ ସମ୍ରାଟ ବୋଲାଉଥିବା ବୃହତ୍ତମ ଦସ୍ୟୁ। ଆମେ ଦୁହେଁ ସମାନଧର୍ମା ହୋଇଥିବାରୁ ଏବଂ ତୁମେ ମୋ ଅପେକ୍ଷା ଅଧିକ ବଳଶାଳୀ ହୋଇଥିବାରୁ ମୁଁ ତୁମକୁ ସମ୍ମାନ ଜଣାଉଛି। କିନ୍ତୁ କହିପାରିବେ କି କେଉଁ ଅଧିକାରରେ ତୁମେ ମୋତେ ବିଚାର କରିବାକୁ ବସିଛ ? ମୁଁ ଲୁଣ୍ଠନ କରିଛି, ତୁମ ଲୁଣ୍ଠନର ସୀମା ନାହିଁ । ମୁଁ ନରହତ୍ୟା କରିଛି; ତୁମେ ଅକଳନୀୟ ଗଣହତ୍ୟା କରିଛ । କହିପାରିବ କି, ତୁମର ଏବଂ ମୋର ଭିନ୍ନତା କେଉଁଠି, ଯାହା ପାଇଁ ତୁମେ ମୋର ବିଚାରକ ?" ତେଣିକି ଆଲେକଜାଣ୍ଡାର କ'ଣ ଉତ୍ତର ଦେଲେ କିମ୍ବା ସେ ଦସ୍ୟୁ ଦଳପତିର କ'ଣ ହେଲା ଆମ ପାଇଁ ଅବାନ୍ତର ପ୍ରଶ୍ନ । ମୂଳକଥା ହେଲା, ଯଦି ଶାସକ ଏବଂ ବିଚାରକ ଅପରାଧୀଠାରୁ ସ୍ୱୟଂ ଉର୍ଦ୍ଧ୍ୱରେ ନ ରହନ୍ତି, ତେବେ ଶାସନକ୍ରିୟା ଅନଧିକାର ବଳପ୍ରୟୋଗ ପର୍ଯ୍ୟାୟକୁ ଖସିଯିବ। ଯଦି, ଉଚ୍ଛୃଙ୍ଖଳତା ପଛରେ ପ୍ରଚ୍ଛନ୍ନ ରହି ସେମାନେ ନିଜେ ସେଥିରେ ସଂଶ୍ଳିଷ୍ଟ ହୋଇଯାନ୍ତି, ତେବେ ଦମନ ବା ଶାସନର ପ୍ରଶ୍ନ ଉଠୁଛି କାହୁଁ? ସେମାନେ ବରଂ ଚାହିଁବେ ଅଶାନ୍ତି, ଅନାଚାର, ବଳାତ୍କାର ଆହୁରି ପ୍ରବଳ ଆକାର ଧାରଣ କରୁ । ସେଥିରେ ଦଳ, ଗୋଷ୍ଠୀ, ପକ୍ଷବିଭେଦ ବଢ଼ିଯିବା ହେତୁରୁ ନେତାମାନେ ଅପରିହାର୍ଯ୍ୟ ମନେହେବେ । ଅରଣ୍ୟକୁ ପଶୁମାନେ ବାଣ୍ଟିନେଲା ପରି, ସମାଜକୁ ନିଜ ଭିତରେ ବାଣ୍ଟିନେବା ସେମାନଙ୍କ ପକ୍ଷରେ ସହଜ ହୋଇଯିବ । ସେମାନେ ହୁଏତ ଅନୁଭବ କରିବାକୁ ଚାହୁଁନାହାନ୍ତି ଯେ ରାଷ୍ଟ୍ରଶକ୍ତି ପ୍ରବଳତମ ଶକ୍ତି । ସେଥିପାଇଁ ଏ ଦେଶର ପ୍ରତ୍ୟେକ ନାଗରିକ ତା'ର ରକ୍ତଦାନ କରିଛି । ତାକୁ ପ୍ରୟୋଗ କରି ଜାଣିଲେ, ପ୍ରୟୋଗ କରିବାକୁ ଇଚ୍ଛା କଲେ, ଅସାମାଜିକ, ଅନାଚାର ଏବଂ ବଳାତ୍କାର ତତ୍‌କ୍ଷଣାତ୍ ଦମନ କରିଦେଇ ହେବ। ତେବେ ତାହା ହେଉନାହିଁ କାହିଁକି ? – ଆପଣ ଯାହା ଅନୁମାନ କରୁଛନ୍ତି, ତାହା ମିଥ୍ୟା ବୋଲି କହିହେଉ ନାହିଁ ।

ଜାତୀୟ ଅବକ୍ଷୟ ହେଲାବେଳେ ସବୁ ଦିଗରୁ ଅଧଃପତନ ଆରମ୍ଭ ହୁଏ । ଆମେ ଯଦି ଏତେବର୍ଷର ସ୍ୱୟଂଶାସନ ପରେ ସ୍ଥିରକରି ପାରିଲୁ ନାହିଁ, କେମିତି ସୁସଂହତ, ସମ୍ମାନିତ, ଇଜ୍ଜତ୍‌ଦାର୍ ଜାତି ରୂପେ ବଞ୍ଚିବା, ଗଣତନ୍ତ୍ରର ଛଦ୍ମ ତଳେ ଯଦି ଏବେ ମଧ୍ୟ ଶାସକ ଶାସିତର ମଧ୍ୟଯୁଗୀୟ ସମ୍ପର୍କ ଜାରି ରହିଲା, ଯଦି ଏବେ ମଧ୍ୟ ଅଶିକ୍ଷା, କୁଶିକ୍ଷା, ଦାରିଦ୍ର୍ୟ ଦୂର କରିବାକୁ ନିଷ୍ଠାର ସହିତ କୌଣସି ଯୋଜନା କରାଗଲା ନାହିଁ, ସେଇ କ୍ଷେତ୍ରରେ ନୀତିନିୟମ ଏବଂ ନ୍ୟାୟର ମୂଲ୍ୟ ଯେ କିପରି, କାହିଁକି ଏବଂ କାହା ଦ୍ୱାରା ବଜାୟ ରହିବ କିଛି ବୁଝାପଡୁନାହିଁ। ଏ ଦେଶରେ ସତ କହିବାକୁ ଗଲେ,

ନିଷ୍ଠା ଏବଂ ଆନ୍ତରିକତାର ସହିତ କେହି ଚାହୁଁନାହିଁ ବଳାତ୍କାର ଦୂର ହେଉ। ଏପରି କି, ଯେ ବଳାତ୍କାରର ଶିକାର ହୋଇଗଲା ସେ ବି ଚାହୁଁନାହିଁ। କେହି ଚାହୁଁନାହିଁ ଅଶିକ୍ଷା, ଦାରିଦ୍ର୍ୟ ଦୂର ହେଉ । କାରଣ ଗୋଳିପାଣି ନିର୍ମଳ ହୋଇଗଲେ କଙ୍କଡ଼ାସବୁ କ'ଣ କରିବେ ?

ଏକଦା ଇଂରାଜ ରାଜତ୍ୱ ସମୟରେ ବିଦେଶୀ ଶାସକମାନଙ୍କ ମୁଣ୍ଡଗଣତି କଲାପରେ ଜଣେ କହିଥିଲେ ଯେ ଭାରତ ପରି ଏଡ଼େ ବଡ଼ ଦେଶର ପ୍ରତ୍ୟେକ ଲୋକ ଯଦି ଖଣ୍ଡିଏ ଲେଖାଁ ବାଡ଼ି ଧରି ବାହାରି ପଡ଼ିବେ, ଏ ମୁଷ୍ଟିମେୟ ବିଦେଶୀ ବାଟ ପାଇବେ ନାହିଁ ପଳେଇବାକୁ । ପ୍ରତ୍ୟେକ ଲୋକ ଏ ଦେଶରେ, ଥରେ ମାତ୍ର ଇଚ୍ଛା କଲେ, ଏ ଦେଶରୁ ସବୁ କଳୁଷ ଧୋଇହୋଇଯିବ । କିନ୍ତୁ ତାହା ହେଉନାହିଁ। ସେତେବେଳେ ଜଣେ ମହାମାନବ ଆସି ଏ ଦେଶର ଇଚ୍ଛାଶକ୍ତିକୁ ଜାଗ୍ରତ କରିଥିଲେ। ଉଠି ଆସୁଥିବା ଦୁର୍ବାର ଜାତୀୟ ପ୍ରବାହକୁ, ଆମେ ନିଜ ଅଯୋଗ୍ୟତାରୁ ସମ୍ଭାଳି ପାରିଲେ ନାହିଁ । ସେହିପରି ତୋଳି ରଖି ପାରିଲେନାହିଁ । ତାହା ଭାଙ୍ଗିପଡୁଛି। ସମ୍ଭାଳିବାକୁ ପୁଣି ଏକ ପ୍ରବଳ ଆନ୍ଦୋଳନ ଜାଗୃତି ଏବଂ ସେଭଳି ନେତୃତ୍ୱର ପ୍ରୟୋଜନ ନ ହେଲେ ଅସୁର ନିପାତ ହେବେ ନାହିଁ।



# ବିବାହ-ବଣିଜ

ବିଶୁଦ୍ଧ ଦୋକାନଦାରି ବ୍ୟବସାୟ ଏବଂ ବୁଲାବିକାଳିଙ୍କ ମଝିରେ ଆଉ ପ୍ରକାରେ ଠାଉକିଆ ବେପାର ଚାଲେ ଏବଂ ବେଶ୍ ଚାଲେ । ଦୀପାବଳିର ସପ୍ତାହେ ପୂର୍ବରୁ ପ୍ରତି ଛକରେ ଛୋଟ ବଡ଼ ତାଳପତ୍ର ଛାଉଣିରେ ବାଣ ଦୋକାନ ବସିଯାଏ – କୁମ୍ଭି, ଫୁଲଝରି, ଚକ୍ରୀ, ଆକାଶତାରାର ବହୁବିଧ ଉଠାଦୋକାନ । ଲୋକଭିଡ଼, ପିଲାଙ୍କ ଆଗ୍ରହ, ବଡ଼ଙ୍କ ତାଗିଦା ଭିତରେ ବିକାଳି ତା'ର ଚତୁରତା ପ୍ରୟୋଗ କରେ । ଗ୍ରାହକଙ୍କ ବେହେରା ଏବଂ ଯାନବାହନକୁ ଦେଖି ପାଞ୍ଚଶହଠାରୁ ପାଞ୍ଚଟଙ୍କାଯାଏଁ ବାଣ ବିକ୍ରୀ କରିଦିଏ । ଉତ୍ସବ ଭିତରେ ଫସକା ବାଣ ପାଇଁ କେହି ସେ ବେପାରୀକୁ ମନେ ପକାଇ ଗାଳିଦେବାକୁ ପସନ୍ଦ କରନ୍ତି ନାହିଁ । ବେପାରୀ ମଧ୍ୟ ସେତେବେଳକୁ ତମ୍ବୁ ଟେକି ସାରିଥାଏ ।

ସେହିପରି ହୋରିଖେଳ ପୂର୍ବରୁ ହରରଙ୍ଗି ଫଗୁ ବେପାର ଆସେ ଏବଂ ଯାଏ । ସେଥିରେ ଯାହା ଯାଏ, ଧୋଇଆରେ ହିଁ ଯାଏ । ମୁଣ୍ଡଫଟା ରଙ୍ଗ ସାତଥର ଧୋଇବା ପରେ ମଧ୍ୟ ନ ଛାଡ଼ିବାବେଳେ କିଛି ବିରକ୍ତି ପ୍ରକାଶ ପାଏ ନିଶ୍ଚୟ, କିନ୍ତୁ ବେପାରୀ ଉପରେ ନୁହେଁ । ସେ ବଜାତ·ରଙ୍ଗଟା ଉପରେ ସବୁଯାକ ରାଗ । ବେପାରୀ ଅନ୍ତର୍ଦ୍ଧାନ ହୋଇସାରିଥାଏ ବର୍ଷକ ପାଇଁ । ରାକ୍ଷୀ ପୂର୍ଣ୍ଣମା ପୂର୍ବରୁ ସୋଲ, ନାଇଲନ, ଜରିକାମ ଆସି ଜମା ହୋଇଯାଏ । ଯିଶୁ ଜୟନ୍ତୀର କିଛି ପୂର୍ବରୁ ନବବର୍ଷର ଅଭିନନ୍ଦନ କାର୍ଡ଼ରେ ନାନା ବର୍ଣ୍ଣ, ଆକାର ଏବଂ ମୂଲ୍ୟ ନେଇ ଠାଉକିଆ ବେପାର ଚାଲେ । ଏ ସବୁ ପର୍ବ ଆଶ୍ରିତ ସାତଦିନିଆ କାରବାର ଆମ ଆଖିକୁ ନ୍ୟୂନ ଦିଶୁଥାଇପାରେ, କିନ୍ତୁ ତଟକା ଲାଭ ପାଇଁ ଏହା ଅତୁଳନୀୟ । ଦେଶସାରା ହିସାବ କଲେ ଏଥିରେ କୋଟି କୋଟି ଟଙ୍କାର ବଣିଜ ଚାଲେ । ଅଳ୍ପ ପରିଶ୍ରମରେ ଅନେକ ଲାଭ ଦେଖି ପ୍ରତିଷ୍ଠିତ ବ୍ୟବସାୟୀମାନେ ଏଥିରେ ଏବେ ଅର୍ଥ ଖଟେଇବାକୁ କୁଣ୍ଠା କରୁନାହାନ୍ତି । ସେହି କାରଣରୁ ଅନେକ ବେକାର ଯୁବକ ମଧ୍ୟ ଏ ଉଠାବେପାର ପ୍ରତି ଆକୃଷ୍ଟ ହେଉଥିବାର ଦେଖାଗଲାଣି ।

ଏଇ ଚଳନ୍ତି ସପ୍ତାହ ଭିତରେ ସେଇଭଳି ଆଉ ଗୋଟିଏ ବ୍ୟବସାୟ ଚାଲିଛି । ଗୋଟାଏ ଗୋଟାଏ ନିର୍ଦ୍ଦିଷ୍ଟ ଦୋକାନରୁ ଆଲବମ, ଟେବୁଲ ବତି, ପ୍ଲାଷ୍ଟିକ ଡବା,

ଟ୍ରେ, ପାଉଡ଼ର, ଦର୍ପଣ କାଠ, ଶିଙ୍ଗର ଯାବତୀୟ ସୌଖୀନ ଅଥଚ ଶସ୍ତା ଜିନିଷ ଏକାଥରେ ଉଠିଯାଇଛି । କ'ଣ ନା', ବିଭାତିଥି ପଡ଼ିଛି । କୋଡ଼ିଏ ତିରିଶ ଛୋଟ ବଡ଼ ବିଭାଘର । ଅସଂଖ୍ୟ ନିମନ୍ତ୍ରଣ ପତ୍ର । ଅତିଥିମାନେ ବଜାରସାରା ହାଉଯାଉ। ସମସ୍ତେ ସାଧମତେ ଉପହାର କିଣି ଲାଗିଛନ୍ତି । ଆଉ ବେଳେ ବେଳେ ଆଦୌ ବିକ୍ରୀ ହେଉନଥିବା ଜିନିଷଯାକ ଖଲାସ ହୋଇଯାଉଛି । ବେପାରୀ ଏଥିରେ ଖୁସି ହେବାର କଥା । ଯାହା ଏଭଳି ବିକ୍ରି ହୋଇଗଲା ଦୀପାବଳି ବାଣ ପରି, ଦୋଳପୂର୍ଣ୍ଣିମା ଫଗୁ ପରି ଚାଲିଯିବା କଥା । ଦୋକାନୀ ମଧ ତମ୍ବୁ ଟେକି ଉଠିଯିବା କଥା । କିନ୍ତୁ ସେଭଳି କିଛି ହୁଏ ନାହିଁ । ବିଭାତିଥି ପରେ ମଧ ଦୋକାନୀ ବସି ରହେ । ସେ ଆଉ ଧାପେ ଦୋହରା ଲାଭ ପାଇଁ ଛକିଥାଏ । ଦୋକାନ ପୁଣି ଅଦ୍ଭୁତ ଭାବରେ ଭର୍ତି ହୋଇଯାଏ । ଟେବୁଲ ବତି, ଆଲବମ, ଟ୍ରେ, ପାଉଡ଼ର ଆଦି ପଦାର୍ଥମାନ ଯେ ଯାହା ସ୍ଥାନକୁ ଫେରି ଆସନ୍ତି । ବିକ୍ରି କଲାବେଳେ ଯେତିକି ଲାଭ ହୋଇଥିଲା ଅଧେ ଦାମ୍‌ରେ କିଣି ନେଲାବେଳେ ପୁଣି ସେତିକି ବା ତତୋଽଧିକ ଲାଭ ହୁଏ । ଉପହାର ଘୋଡ଼େଇଥିବା କିଛି ରଙ୍ଗ ନେଳିକାଗଜ ଚିରି ଫିଙ୍ଗି ଦିଆହୁଏ । ଏବଂ ସାମଗ୍ରୀଗୁଡ଼ିକୁ ପୋଛାପୋଛି କରି ବେପାରୀ ଅପେକ୍ଷା କରେ ଯା ପର ବିଭାତିଥିକୁ । ଶୁଣାଯାଏ ଜ୍ୟୋତିଷ ଅପେକ୍ଷା ତିଥି ବିଷୟରେ ଅଧିକ ନିର୍ଭରଯୋଗ୍ୟ ପରାମର୍ଶ ଦେଇଥାଏ ଏଇ ବେପାରୀ ।

ଠାଉକିଆ ବେପାର ଦୃଷ୍ଟିରୁ ମଧ ଏ ବେପାରୀଟା ବେଶି ଚୋଠା ଜଣାଯାଉଛି । କିନ୍ତୁ ସେ ବିଚାରାକୁ ଦୋଷ ଦେଇ ଲାଭ ନାହିଁ । ଯେଉଁ ଆଳରେ ସେ ଏ ବ୍ୟବସାୟଟି ଚାଲେ ସେ ସମ୍ପୂର୍ଣ୍ଣ ବିଷୟଟି ଗୋଟିଏ ନିର୍ଦ୍ଦିଷ୍ଟ ଆଖିଠରା ବ୍ୟାପାର ହୋଇସାରିଲାଣି । ବିବାହ ବର୍ତ୍ତମାନ ସେପରି କୌଣସି ଧାର୍ମିକ କିମ୍ବା ଆଧ୍ୟାତ୍ମିକ ଅନୁଷ୍ଠାନ ନୁହେଁ, ତାହା ଆମୂଳଚୂଳ ଗୋଟିଏ ଧନ୍ଦା, ନିଲାମହାଙ୍କ ଭିତରେ ଜୋଇଁ କିଣା ବେପାର । ଏଥିରେ ବ୍ୟବସାୟର ଚତୁରତା, ଶଠତା, ସତର୍କତା ସବୁ ପ୍ରକାର ଛକାପଞ୍ଝା, ଆଡ଼ଣ ପଡ଼ଣ, ଗାଳିଗୁଲଜ, ମାଲିମକଦ୍ଦମା ଆସିଗଲାଣି । ଆମେ ସହରୀ କାଇଦାରେ ତାଲିମ ନେଇ ପାରମ୍ପରିକ ରୀତିନୀତି ଛାଡ଼ି ସାରିଲୁଣି । ହଳଦୀ ପିଠଉରେ ସାତମଙ୍ଗଳାକୁ ଡକରା ହେଉ ନାହିଁ । ପିଢ଼ା ଉପରେ ଗୁଆ ଥୋଇ ବନ୍ଧୁ ନିମନ୍ତ୍ରଣ ହେଉନାହିଁ । ମାଛପୁଡ଼ା, କଦଳୀ କାନ୍ଧି, ଚାଉଳ, ମୁଗ, କଖାରୁ, ବଡ଼ି ଭାର ନେଇ ବନ୍ଧୁ ଆସି ଦୁଆରେ ପହଞ୍ଚିଲାବେଳେ ଶଙ୍ଖ ବାଜୁନାହିଁ କି ହୁଳହୁଳି ବାଜୁନାହିଁ । ପରସ୍ପରକୁ ମର୍ଯ୍ୟାଦା ଦେବା, ସମାଜ ଆଚରଣ, ଧର୍ମ ଧାରଣା, କୌଳିକ ବିଧିବିଧାନକୁ ସମ୍ମାନପୂର୍ବକ ରକ୍ଷା କରିବାର ଦାୟିତ୍ୱ କେହି ନେଉନାହିଁ ।

ନହେଲା ନାହିଁ । ସମାଜର ଢାଞ୍ଚା, ମୂଲ୍ୟବୋଧ, ଆଚରଣ, ବଦଳି ଗଲାଣି । ବନ୍ଧୁ କହିଲେ, ଦେଶ ବିଦେଶରେ ରହୁଥିବା ବ୍ୟକ୍ତିମାନଙ୍କୁ ବୁଝାଇଲାଣି । ରୁଚି ଅନ୍ୟପ୍ରକାର ହୋଇଗଲାଣି । ଆମେ ଆଧୁନିକ ହୋଇଗଲୁଣି । ଠିକ୍ ଅଛି । ତା'ହେଲେ ପରସ୍ପରକୁ ଭଲ ପାଉଥିବା, ପତିପତ୍ନୀ ହୋଇ ରହିବାକୁ ସ୍ଥିର କରିଥିବା ଦୁଇଟି ଯୁବକଯୁବତୀ, ଭଦ୍ରଭାବରେ କାହିଁକି ରେଜିଷ୍ଟ୍ରୀଭୁକ୍ତ ହୋଇ ବିବାହ କରୁନାହାନ୍ତି ? କାହିଁକି ଆଧୁନିକ ବୋଲାଉଥିବା ବାପ ମା' ପାଞ୍ଚଥର ଜାତକମେଳକ କଳାପରେ ପଚିଶଥର ପାଞ୍ଜି ଦେଖି ବିଭାଘର ସ୍ଥିର କରୁଛନ୍ତି ? ଶିକ୍ଷିତ ବୋଲାଉଥିବା ଯୁବକ କାହିଁକି କୌଶଳରେ ଯୌତୁକ ସଂକ୍ରାନ୍ତୀୟ ବ୍ୟବସାୟ ପାଇଁ ସୁବିଧା ଦୃଷ୍ଟିରୁ 'ବାପ ମା' ଯାହା କହିବେ ସେଥିରେ ମୋର ଆପତ୍ତି ନାହିଁ' ବୋଲି କହି ପିତୃ ଆନୁଗତ୍ୟର ଛଳନା କରୁଛନ୍ତି ? କାହିଁକି ବନ୍ଧୁପଣେ ଆସୁଥିବା ଭଦ୍ରବ୍ୟକ୍ତିମାନେ ହୋଟେଲ ଦରରେ ନିଜ ପରିବାର ପାଇଁ ବିଭାଭୋଜିର ହିସାବ କରି ସେଇ ମୂଲ୍ୟର ଉପହାର ପୁଟୁଳାଟିଏ ଧରି ଅଧଘଣ୍ଟାଏ ଆଗରୁ ଆସି ଠିଆ ହେଉଛନ୍ତି ? ଭୋଜି ପାଇଁ ଠିକା ନେଇଥିବା, ତମ୍ବୁ ପାଇଁ ଠିକା ନେଇଥିବା ବେପାରୀମାନଙ୍କ ତତ୍ତ୍ୱାବଧାନରେ ପଞ୍ଚମ କିମ୍ବା ଷଷ୍ଠ କିସ୍ତିରେ କୌଣସି ପ୍ରକାର ଗଣ୍ଡେ ଖାଇଦେଇ କାହିଁକି ଅପମାନିତ ବୋଧ କରୁନାହାନ୍ତି ?

ତା'ର କାରଣ ହେଲା ଯେ, ଏ ସମସ୍ତ ବ୍ୟାପାରଟି ଗୋଟିଏ ନିର୍ଲଜ୍ଜ ହାଟୁଆ କାରବାରରେ ପରିଣତ ହେଲାଣି । ଏଥିରେ ସାମାଜିକ ମର୍ଯ୍ୟାଦା, ବ୍ୟକ୍ତି ସମ୍ମାନ, ବନ୍ଧୁତା, ମୈତ୍ରୀ, ଏପରିକି ବରକନ୍ୟାଗୁଡ଼ିକ ସମସ୍ତ ପଣ୍ୟ ରୂପେ ଶସ୍ତାରେ ଖୋଲାଖୋଲି ବିକ୍ରୀ ହୁଅନ୍ତି । ଆଉ କିଛିଦିନ ଏପରି ଚାଲିଲେ, ସବୁ ଭଡ଼ାସ୍ତରକୁ ଖସି ଆସିବ । ବେଦୀ ସରଞ୍ଜାମ, ତମ୍ବୁ, ଚୌକି, ଆଲୁଅ, ରୋଶଣି ଭଳି ଅଳଙ୍କାର, ପୋଷାକ, ବରବେଶ ଆଦି ଭଡ଼ାରେ ମିଳିବ। କନ୍ୟାପିତା, ବରପିତା, ମାମୁ ଆଦି ଭଡ଼ାରେ ମିଳିବେ। ଅର୍ଥାତ୍ ସେମାନଙ୍କ ଅନୁପସ୍ଥିତିରେ କାମଚଳା ଲୋକ ମିଳିଯିବେ । ତେବେ ଆଉ କ'ଣ ରହିଲା ? – ବ୍ୟବସାୟ ଦୃଷ୍ଟିରୁ ରୋକଡ଼ ହିସାବ ପାଇଁ ବରକନ୍ୟାଙ୍କ ଉପସ୍ଥିତି ମଧ୍ୟ କ'ଣ ପ୍ରୟୋଜନ ।

ସେଥିରେ ଗୋଟିଏ ସୁବିଧା ହେବ, ଏଇ ଉପହାର ଦୋକାନୀର ଠାଉକିଆ ବେପାର ପାଇଁ । ସେ ତିଥିକୁ ନ ଜଗି ବର୍ଷସାରା କାରବାର କରିବ । ଖୋଲାରେ ବିକି ଲୁଚାରେ କିଣିବା ପ୍ରୟୋଜନ ରହିବ ନାହିଁ । ସେ ତେଣିକି ଉପହାର ବନ୍ଧୁ ଅତିଥିମାନଙ୍କ ସନ୍ଧ୍ୟା ପୋଷାକ ଆଦି ଭଡ଼ାରେ ଦେଇପାରିବ ।

ଆପଣଙ୍କର ଏଥିରେ ସମର୍ଥନ ଅଛି ତ ?



# ମହରଗ-ଭତ୍ତା

କୌଣସି ଏକ ସରକାରୀ ଦପ୍ତରରେ କଥାବାର୍ତ୍ତା ହେବାର ଶୁଣାଗଲା । ଜଣେ ଆରଜଣଙ୍କୁ ପଚାରିଲେ, 'କିଓ ଆଉଥରେ କ'ଣ ଭତ୍ତା ବଢୁଛି ବୋଲି କହୁଛନ୍ତି । ଏ କଥା କ'ଣ ସତ ?' ଆରଜଣକ ଅତି ସହଜ ଭଙ୍ଗୀରେ କହିଲେ, 'ଆସୁନ ସେ ଆଳୁ ବେପାରୀଠୁ ବୁଝିନେବା । ସେଇ କହିଦେବ ଏ ବାବୁମାନଙ୍କର କେତେ କ'ଣ ବଢ଼ିଲା । ସେଇ ଅନୁସାରେ ତ ଆଳୁ ଦର ବଢ଼ିସାରିଥିବ ।'

କଥା ସତ । କୌଣସି ମହଙ୍ଗାଭତ୍ତା ବଢ଼ିବା ଆଗରୁ ତାହା ଦୋକାନ ବଜାରରେ ଲୋକେ ଜାଣି ସାରିଥାନ୍ତି । ବ୍ୟବସାୟରେ ଏଭଳି ଆଗତୁରା ଜଗି ନଦେଲେ ହାତରୁ ଲାଭ ଖସିଯାଏ । ଏଣୁ ବିଭିନ୍ନ ସଂଘ ସମିତି ଜରିଆରେ ବହୁତ ପାଟିତୁଣ୍ଡ, ଧ୍ୱନି, ଧାରଣା ପରେ, ଯେଉଁ ତିରିଶ ଟଙ୍କା ମାସ ଶେଷରେ ମିଳିବାର ପ୍ରତିଶ୍ରୁତି ଥାଏ, ତା'ର ଉତ୍ତର ସ୍ୱରୂପ ବଜାରରେ ଆଉ ଅଧିକ ଷାଠିଏ ଟଙ୍କା ଖର୍ଚ୍ଚ ହେଲାଭଳି ଦରବୃଦ୍ଧିର ବ୍ୟବସ୍ଥା ହୋଇସାରିଥାଏ । ଏଣୁ କୌଣସି ଏକ ବିରାଡ଼ି ତା' ଲାଙ୍ଗୁଡ଼ ପଛରେ ଗୋଡ଼ାଇ ଗୋଡ଼ାଇ ତାକୁ ଛୁଇଁ ନ ପାରିଲା ପରି, କର୍ମଚାରୀଟିର ଆର୍ଥିକ ଜୀବନରେ ଏପରି ଅନବସ୍ଥା ଦେଖାଦିଏ । ଭତ୍ତା ଅନୁପାତରେ ମହରଗ ଅନେକ ବେଶି ବଢ଼ି ଚାଲିଥାଏ । ଆନୁପାତିକ ବିଚାରରେ ସେ ତିନିଗୁଣ ଦରମା ପାଇଲେ ମଧ ଛ'ଗୁଣ ଅଭାବଗ୍ରସ୍ତ ହୋଇ ଚାଲିଥାଏ ।

ଭତ୍ତା ଦ୍ୱାରା ମହରଗ ସୃଷ୍ଟି ହୁଏ ଏବଂ ବୃଦ୍ଧିପାଏ । ଯେ ଡାହାଣ ହାତରେ ଭତ୍ତା ଦାନ କରନ୍ତି, ସେ ହିଁ ବାଁହାତରେ ଦରବୃଦ୍ଧି କରି ତାକୁ ନେଇଯା'ନ୍ତି । ଓଡ଼ିଆ ଭଜନରେ କୁହାଯାଇଛି, 'ଦେଲ ଯାହା, ନେଲ ତାହା, ସେଥିକୁ କିପାଇଁ ମହା ଦାତା ପଣେ ପତାକା ଟେକିଛ, ହେ ମହାପ୍ରଭୁ ।' – ଆମର ଲୋକପ୍ରିୟ ସରକାରଙ୍କ ଭୂମିକା ପ୍ରାୟ ସେହିପରି । ଲୋକପ୍ରିୟତା ପାଇଁ, ସେ କାଛୁ କୁଣ୍ଡେଇ ଦିଅନ୍ତି । ଫଳରେ ତା' ମାତିଯାଏ । ତା'ର ଉପଚାର ବିଷୟରେ ସେ ଚିନ୍ତା କରିନାହାନ୍ତି । ତାଙ୍କର ସେଥିପାଇଁ ବେଳ କାହିଁ ? ଇଚ୍ଛା କାହିଁ ? – ସାମର୍ଥ୍ୟ ବା' କାହିଁ ? ଏହାର ବିଷମୟ ପରିଣାମ ହେଉଛି ମୁଦ୍ରାସ୍ଫୀତି । ଟଙ୍କାଟିଏ ଦେଲେ କୋଡ଼ିଏ ବର୍ଷ ତଳେ ପାଞ୍ଚକିଲୋ ଚାଉଳ

ମିଳୁଥିଲା । ଏବେ କିଲୋପ୍ରତି ତିନିଟଙ୍କା । ଏମିତି ଏ ବଢ଼ିଚାଲିଥିବ । ଶେଷରେ ହୁଏତ ବସ୍ତାଏ ନୋଟ ଜାଳି ଚା' ତିଆରି କଲେ, ଜାଳ ଖର୍ଚ୍ଚ ଅପେକ୍ଷା ଶସ୍ତା ପଡ଼ିବ ।

କିନ୍ତୁ ସରକାର ହୁଏତ କହିବେ ଯେ, ଏ ମହର୍ଗ କାଳରେ ଭତ୍ତା ନ ଦେଲେ ଏ କର୍ମଚାରୀମାନେ ବଞ୍ଚିବେ କିପରି ? – କୋଟି କୋଟି କର୍ମଚାରୀ । ସେମାନଙ୍କ ସଂଖ୍ୟା ବଢ଼ିଚାଲିଛି । ବଢ଼ିଚାଲିଛି ଦେଶର ଜନସଂଖ୍ୟା । ଅଭାବ ବଢ଼ିଚାଲିଛି । ତାକୁ ରୋଧିବାକୁ କାଗଜ ନୋଟ ଛପା ଚାଲିଛି । ପ୍ରବଳ ବନ୍ୟା ମୁହଁରେ ସାମାନ୍ୟ ବାଲିବନ୍ଧ ତ' ଭାସିଯାଉଛି; ଅନ୍ୟପକ୍ଷେ, ପାଣି ସାମାନ୍ୟ ବାଧାପାଇ ଫୁଲି ଉଠୁଛି । ଆହୁରି ବିସ୍ତୃତ ଅଞ୍ଚଳକୁ ଗ୍ରାସିଯାଉଛି । ଦେଖାଗଲାଣି, ସବୁ ସରକାରୀ ପ୍ରକଳ୍ପରେ ମୂଳଖର୍ଚ୍ଚ ତାଲିକାରେ ଅର୍ଦ୍ଧାଧିକ ଅର୍ଥ କେବଳ କର୍ମଚାରୀଙ୍କ ଦରମା । ପ୍ରକଳ୍ପର ମୂଳ ଉଦ୍ଦେଶ୍ୟ ଉପରେ କାହାରି ଦୃଷ୍ଟି ନାହିଁ । ପ୍ରଥମ ବିଚାର ହେଉଛି, ସେଥିରେ କେତେ ହଜାର କର୍ମଚାରୀ ନିଯୁକ୍ତି ପାଇବେ। ସତେ ବା ପ୍ରକଳ୍ପଗୁଡ଼ିକ କେବଳ ନିଯୁକ୍ତି କେନ୍ଦ୍ର, ଥରେ ନିଯୁକ୍ତ ହୋଇଗଲା ପରେ, ମହର୍ଗ ଅନୁସାରେ ଭତ୍ତାବୃଦ୍ଧି, ଧର୍ମଘଟ, ତାଲାବନ୍ଦ ପୁଣି ଭତ୍ତାବୃଦ୍ଧି ଖେଳ ଚାଲିଥିବ। ମୃତ ପ୍ରକଳ୍ପର ମଢ଼ଟିକୁ ବେଢ଼ି ରହିଥିବେ ଦେଶସେବକମାନେ ଏବଂ ଚିତ୍କାର କରୁଥିବେ ଭତ୍ତା ପାଇଁ । ନଦୀବନ୍ଧ ଯୋଜନାଟିଏ କିମ୍ବା ଇସ୍ପାତ କାରଖାନାଟିଏ ଆମେରିକା କିମ୍ବା ଜାପାନରେ ଦୁଇ ବର୍ଷ ଲାଗେ ନାହିଁ । ଭାରତରେ ପନ୍ଦରବର୍ଷ ପରେ ମଧ୍ୟ ସରିବାର ଯୋଜନା ନଥାଏ ।

ତା' ହେଲେ ପରିଷ୍କାର କାହିଁକି କହୁନାହାନ୍ତି ଯେ ଆମର ସମଗ୍ର ଯୋଜନା, ପ୍ରକଳ୍ପ, ଅନୁଷ୍ଠାନ, ଶାସନ ସବୁ କର୍ମଚାରୀସର୍ବସ୍ୱ । କେତେଗୁଡ଼ିଏ ଲୋକଙ୍କୁ ଦରମା ଦେଇ ପୋଷିବା ହିଁ ଆମର ଏକମାତ୍ର ଲକ୍ଷ୍ୟ । ସେମାନଙ୍କୁ ପେଟ ନପୂରିଲା ପରି ଆମେ ଦେଉଥିବୁ । ସେମାନେ ଚିତ୍କାର କରୁଥିବେ । ଗୋଟାଏ ଝିଙ୍କା ଓଟରା ଅଭିନୟ ଚାଲିଥିବ । ପୁଣି ଗୋଟାଏ ଭତ୍ତା ଦେଲୁ ବୋଲି ଆମେ ବିଜ୍ଞାପିତ କରୁଥିବୁ । ଚକ୍ରବତ୍ ଏ ଲୀଳା ଚାଲିଥିବ ।

ଚାଲୁ ! ଯଦି ନିହାତି ପୋଷିବେ, ତେବେ ପୋଷିଲା ପରି ପୋଷୁନାହାନ୍ତି ? ଗୋରୁଙ୍କୁ କୁଣ୍ଡାପାଣି ଦେଇ ଖେତରେ ଖଟାଯାଏ । ସେହିପରି ଏ କର୍ମଚାରୀମାନଙ୍କୁ ଭତ୍ତା ନଦେଇ ଭାତିଆ ଦେଉଛନ୍ତି ? ବଡ଼ ବଡ଼ ରାସନ୍ ଦୋକାନମାନଙ୍କରେ ସପ୍ତାହ ଯାକର ଚାଉଳ, ଡାଲି, ତେଲ, ଲୁଣ ଯୋଗେଇ ଦିଅନ୍ତୁ । ଲୁଗା ଯୋଗେଇ ଦିଅନ୍ତୁ ପିନ୍ଧିବା ପାଇଁ । ଘର କରି ଦିଅନ୍ତୁ ରହିବା ସକାଶେ । ପିଲାଏ ପାଠ ପଢ଼ନ୍ତୁ ବିନା

ପଇସାରେ । ଔଷଧ ମିଳୁ ମାହାଳିଆ । ଫଳରେ ମୁଦ୍ରା କାରବାର ଖସିଯିବ ନିମ୍ନତମ ରେଖା ଉପରକୁ । ମହଙ୍ଗାଭତ୍ତାର ପ୍ରଶ୍ନ ଉଠିବ ନାହିଁ । ମଣିଷର ଲୋଭର ସିନା ସୀମା ନାହିଁ । କିନ୍ତୁ ତା'ର ପ୍ରୟୋଜନ ଅତି ନିର୍ଦ୍ଦିଷ୍ଟ ଏବଂ ସୀମିତ । ପାଏ ଚାଉଳର ଭାତ ଯେ ଆଜି ଖାଉଛି, ସେ ଛ'ମାସ ପରେ କିଲେ ଚାଉଳ ମାଗିବ ନାହିଁ । ତା'ର ପ୍ରୟୋଜନ ସେଇ ପାଏ ଚାଉଳ । ଏବେ ଏସବୁ କିଣିବାକୁ ସେ ବାଧ ହେଉଥିବାରୁ ତା'ର ସାମର୍ଥ୍ୟ ଅଣ୍ଟୁ ନାହିଁ । ଏଣୁ ସେ ଭତ୍ତା ପାଇଁ ଦାବି କରି ଚାଲିଛି । ସମସ୍ୟା ସମାଧାନ ନ ହୋଇ ବଢ଼ିଚାଲିଛି ।

ଆପଣ କ'ଣ ସତେ ଚାହାନ୍ତି ଏହାର ସମାଧାନ ହେଉ ?



# ଅଚଳ ବିଜ୍ଞାପନ (ସତ୍ୟକାମ)

କିଛିଦିନ ପୂର୍ବେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ, ବିଶ୍ୱ ସ୍ୱାସ୍ଥ୍ୟ ପରିଷଦର ସାଧାରଣ ଅଧିବେଶନରେ ଉଦ୍‌ବୋଧନ ଦେଇଥିଲେ । ସେଇଠି ସେ କହିଥିଲେ ଯେ, ଔଷଧ ବ୍ୟବସାୟ ଅନ୍ୟାନ୍ୟ ବ୍ୟବସାୟ ଭଳି ନୁହେଁ । ଚତୁର ବ୍ୟବସାୟୀମାନେ ପ୍ରଚାର ମାଧ୍ୟମରେ ଗ୍ରାହକକୁ ଭଲେଇ ଦେଇ ଗୋଟାଏ ଅକାମୀ, ନିକୃଷ୍ଟ ଜିନିଷକୁ ବ୍ୟବସାୟରେ ଚଳେଇ ଦେବା ଅତି ସାଧାରଣ କଥା । ପ୍ରଚାର ନ ଶୁଣି ଜିନିଷଟିକୁ ନିଜେ ପରୀକ୍ଷା କରିବାର ସୁଯୋଗ ପାଇଲେ କୌଣସି ଗ୍ରାହକ ତାକୁ କିଣନ୍ତା ନାହିଁ, ଏହା ନିଶ୍ଚିତ କଥା । କିନ୍ତୁ ଏମିତି ଆଡ଼ମ୍ବରରେ ରୂପ ଓ ରଙ୍ଗର ଖୋଳ ତା' ଉପରେ ମଡ଼େଇ ଦିଆଯାଏ, ଏମିତି ଲୋଭନୀୟ କଥା ତା' ବିଷୟରେ ଆକାଶରୁ ତୋଳି ଆଣି କହିଦିଆଯାଏ ଯେ, ଥୋପ ନ ଗିଳି ଉପାୟ ନାହିଁ । ଏହାକୁ କହନ୍ତି 'ଅଚଳ ବିଜ୍ଞାପନ' । ଇଂରାଜୀରେ 'hard sell'. ଔଷଧ ବ୍ୟବସାୟ କୋଟି କୋଟି ଡଲାରକୁ ପୁଞ୍ଜି କରି ଅତି ବିରାଟ ଆନ୍ତର୍ଜାତିକ ବ୍ୟବସାୟ ହୋଇଥିଲେ ସୁଦ୍ଧା ଏଭଳି ପ୍ରଚାର ଏଥିରେ ଆଦୌ ଗ୍ରହଣୀୟ ନୁହେଁ । ବରଂ ଔଷଧ ବ୍ୟବସାୟରେ 'ଅଚଳ ବିଜ୍ଞାପନ' ଏକ ଅକ୍ଷମଣୀୟ ଅପରାଧ । ପ୍ରଧାନମନ୍ତ୍ରୀଙ୍କର ଏଭଳି ସ୍ପଷ୍ଟ ମତପ୍ରକାଶ ପାଇଁ ଆମେ ସାଧୁବାଦ ଜଣାଉଛୁ ।

ଭାରତ ଭଳି ବିକାଶୋନ୍ମୁଖୀ ଦେଶରେ ପ୍ରୟୋଜନକୁ ଚାହିଁ ଏପର୍ଯ୍ୟନ୍ତ ଔଷଧ ତିଆରି ହୋଇପାରିନାହିଁ । ଔଷଧ କାହିଁକି ଆଉ କିଛି ମଧ ଆମ ଚାହିଦା ଅନୁସାରେ ଆମେ ପାଇପାରିନାହୁଁ । ଏଣୁ ଏଇଠି ସର୍ବଦା ନିଅଣ୍ଟିଆ ଦୁର୍ଯୋଗ ଲାଗି ରହିଛି । ଆମେ ଅଣ୍ଟା ସଳଖି ଉଠିବୁ ଉଠିବୁ ହୋଇ ଉଠିପାରୁନାହୁଁ । କାହିଁକି ପାରୁନାହୁଁ, ଏ ବିଷୟରେ ପଣ୍ଡିତମାନେ ଅନେକ ପ୍ରକାର ମତାମତ ଦେଉଛନ୍ତି । ସେଥିରୁ ଜଣାଯାଉଛି ଯେ ଆମର ଜାତୀୟ ସଂକଟ କୌଣସି ରାଜନୈତିକ ବା ଅର୍ଥନୈତିକ କାରଣ ଉପରେ ନିର୍ଭର କରୁନାହିଁ । ବରଂ ତାହା ଏକ ମୌଳିକ ନୈତିକ ପ୍ରଶ୍ନ । ଏ ଦେଶରେ ସମସ୍ତେ ସମସ୍ତଙ୍କୁ ଠକନ୍ତି । ଭଣ୍ଡିବା ହେଲା ଚାଲାକି । ସେଥିରେ ଆମେ କେମିତି ଆଗେଇବା, କେତେ ବା ଆରେଇବା ? ଯେଉଁଆଡ଼େ ଦେଖିବ କେବଳ ମିଛ । ସେଥିପାଇଁ ପାଣି ପଡୁପଡୁ ଆମର ମିଛ ପୋଲଯାକ ବତୁରି ଯାଆନ୍ତି । ମିଛ କାନ୍ଥ, ମିଛ କୋଠା ସବୁ ଭୁଶୁଡ଼ି ପଡ଼ନ୍ତି । ମିଛ ଡାକ୍ତରଙ୍କ ପରାମର୍ଶରେ ମିଛ ଔଷଧ ଗିଳି ଗିଳି ଆମେ ମରୁ ।

ପୃଥିବୀର ବୋଧହୁଏ ସବୁଠାରୁ ଧର୍ମଭୀରୁ ଜାତି ହେଲୁ ଆମେ । କିନ୍ତୁ ଏଭଳି ଆମ ଦୁର୍ଭାଗ୍ୟ ଯେ ଆମେ ହିଁ ସବୁଠାରୁ ଶଠ, ମିଥ୍ୟାଚାରୀ, ଦୁର୍ନୀତିପରାୟଣ ବୋଲି ଅପଖ୍ୟାତି ଅର୍ଜନ କରିଚାଲିଛୁ । ଆମ ଶଠତାର ମଧ୍ୟ ସୀମା ନାହିଁ । ଅନ୍ୟର ପ୍ରୟୋଜନବେଳେ ଯେକୌଣସି ବ୍ୟବସାୟୀ ସୁଯୋଗ ଉଠାଇବା କଥା । ସେଥିରେ କିଛି ଠକାଠକି ମଧ୍ୟ ଚଳେ । ରୋଗାକ୍ରାନ୍ତ ହୋଇ ଜୀବନ ସଂକଟରେ ପଡ଼ିଥିବା ଲୋକଟିର ପ୍ରୟୋଜନ ସବୁଠାରୁ ଅଧିକ । ସେତେବେଳେ ସେ ଅଗାଧ ବିଶ୍ୱାସରେ ଯାହା ଦେଲେ ତାହା ଖାଇଦେବ । ସେ ଅସହାୟ । ତୁମ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ । ଏତିକିବେଳେ ଡାକ୍ତର ବୋଲାଉଥିବା ଦଲାଲଟିଏ ଔଷଧ ବୋଲାଉଥିବା ଯାଚ୍ଛା ତା' ପଦାର୍ଥକୁ ରୋଗୀକୁ ଗିଳେଇଦେଇ ବ୍ୟବସାୟ କରନ୍ତି । ଔଷଧ ତିଆରି କରୁଥିବା ପୁଞ୍ଜିପତି ଇଞ୍ଜେକସନ କାଚ ଭିତରେ ପାଣି ଭର୍ତ୍ତି କରିବାରେ, କାପସୁଲ ଭିତରେ ହଳଦୀଗୁଣ୍ଡ ପୂରେଇବାରେ କିମ୍ବା ଔଷଧ କାଚ ଭିତରୁ ଔଷଧ ହରଣଚାଳ କରି ରଙ୍ଗ ନେଳିପାଣି ପୂରେଇ ଦେବାରେ ତ' ଆଦୌ କୁଣ୍ଠାପ୍ରକାଶ କରନ୍ତି ନାହିଁ; ବରଂ ଅନେକ ପଇସା ଖର୍ଚ୍ଚ କରି ତାଙ୍କର ଗୋଦାମରନ୍ଧି ଜିନିଷ ବିଷୟରେ ବିବିଧ ଭାରତୀ ବିଜ୍ଞାପନ, ଚିତ୍ରବିଚିତ୍ର ଦାମୀ କାଗଜରେ ପ୍ରଚାର କରି ତା' ପାଇଁ ଜନମତ ସୃଷ୍ଟି କରନ୍ତି । ଏଥିରେ ସାହାଯ୍ୟ ଏବଂ ସହଯୋଗ କରନ୍ତି ଡାକ୍ତରଭାଇ । ଯେଉଁ ରୋଗୀ ଅଟଳ ବିଶ୍ୱାସରେ ଏ ବିଜ୍ଞାପନକୁ ଢୋକି ଦିଏ, ସେ ବଞ୍ଚୁ ଅଥବା ମରୁ, ଉଭୟ କ୍ଷେତ୍ରରେ ତା'ର କ୍ଷତି । ବଞ୍ଚିଲେ 'ଔଷଧ'ର କରାମତି; ମଲେ ତା'ର ଦୁର୍ଭାଗ୍ୟ ।

ଦାମୀ ବେଶପୋଷାକ ପିନ୍ଧି ଯେମିତି ପକେଟମାରୁମାନେ ସନ୍ଦେହ ଏଡ଼ାଇ ପାରି ହୋଇଯାନ୍ତି, ସେମିତି ସୁଦୃଶ୍ୟ ଡବା, ବୋତଲ ଭିତରେ ଅନେକ ଆବର୍ଜନା ବହୁମୂଲ୍ୟ ଔଷଧ ନାମରେ ପାରିହୋଇ ଯାଆନ୍ତି । ଉପର ଆବରଣ ଓ ତା'ର ପ୍ରତିଶ୍ରୁତି ସାଙ୍ଗରେ ଭିତରେ ଥିବା ବିକଟ ସତ୍ୟର କୌଣସି ସମ୍ପର୍କ ନଥାଏ । କାଚ ଉପରେ କାଗଜ ଚିଠା ମାରିଲା ପରି ହରେକ ଜିନିଷ ଉପରେ, ଏପରି କି ହରେକ ବ୍ୟକ୍ତି ଉପରେ ଗୋଟିଏ ଲେଖାଁ ବିଜ୍ଞାପନ ମାରିଦିଆଯାଇଛି । ଏ ଯନ୍ତ୍ରନିଷ୍ଠ ଯୁଗରେ ପ୍ରଚାର ଏବଂ ବିଜ୍ଞାପନର ଗୁରୁତ୍ୱ ଆମେ ସ୍ୱୀକାର କରିବାକୁ ବାଧ୍ୟ । କିନ୍ତୁ ବାହାରେ ଝୁଲୁଥିବା ମନୋରମ ପର୍ଦ୍ଦା ଟେକି ଭିତର ବସ୍ତୁକୁ ପରୀକ୍ଷା କରିବାର ବ୍ୟବସ୍ଥା ନ ରଖିଲେ ଆମର ରକ୍ଷା ନାହିଁ । ଆମେ ଏମିତି ଠକ ହାତରୁ ଯାଇ ଭଣ୍ଡ ହାତରେ ପଡୁଥିବା ।

ଧରାଯାଉ, ହଇଜା ରୋଗ ବ୍ୟାପିଲାବେଳେ ଯେମିତି ଦଳ ଦଳ ହୋଇ ସରକାର ଲୋକ ସବୁ ଦୋକାନରୁ ପଚା, ବାସି, ଅଖାଦ୍ୟ ଆଣି ମାଟିରେ ପୋତିପକାନ୍ତି; ସେହିପରି ପ୍ରତ୍ୟେକ ପ୍ରଦେଶରେ ଥିବା ଔଷଧ ଗୋଦାମର ମୂଳ ଗଦି ଉପରେ ମଝିରେ

ମଝିରେ ଅଚାନକ ଚଢ଼ଉ ହୋଇ ଭେଜାଲ ଜିନିଷ ଧରାଯାନ୍ତା । ଔଷଧ ତିଆରି କରୁଥିବା ସଂସ୍ଥାର ଲାଇସେନସ କାଢ଼ି ନିଆଯାନ୍ତା । ସେ ଔଷଧ କାରବାର କରୁଥିବା ଆସାମୀ ବ୍ୟବସାୟୀଙ୍କୁ ଅନ୍ୟୂନ ଦଶବର୍ଷ ଜେଲଦଣ୍ଡ ଦିଆଯାଆନ୍ତା । ପରୀକ୍ଷା ନକରି ଔଷଧ ଦେଉଥିବା ଡାକ୍ତରଙ୍କୁ ଡିଗ୍ରୀ କାଢ଼ିନେଇ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ଅପରାଧୀ ତାଲିକାଭୁକ୍ତ କରାଯାନ୍ତା !

କିନ୍ତୁ ଏ କାର୍ଯ୍ୟ କରିବ କିଏ ଏ ଶଠ ଦେଶରେ ? ହଇଜାବେଳେ ଦାରୋଗାଙ୍କ ଶଳା ଦେଇଥିବା ମିଠେଇ ଦୋକାନରେ ତିନିଦିନର ବାସି ମାଲ ସେମିତି ଅକ୍ଷୁଣ୍ଣ ଅବସ୍ଥାରେ ରହେ ଏବଂ ଚଢ଼ାଦରରେ ବିକ୍ରୀ ହୁଏ । ସେଇଭଳି ସବୁଠାରୁ ଅଧିକ ଠକ ସଂସ୍ଥାର ଭେଜାଲ ଔଷଧ ରହିବ; ଆହୁରି ଅଧିକ ବିଜ୍ଞାପିତ ହେବ । ମୁନାଫାଖୋର ବ୍ୟବସାୟୀ କୌଶଳରେ ଖସିଯିବେ; ଏବଂ ବେଶି ଲାଭ କରିବେ । ପଇସା ଦେଇ କିଣିଥିବା ଡିଗ୍ରୀ ଦେଖାଇ ଭେଜାଲ ଡାକ୍ତର ଆହୁରି ଅଧିକ ଖ୍ୟାତିଅର୍ଜନ କରିବେ । ଆମେ ଆହୁରି ଅସହାୟ ଭାବରେ ଆହୁରି ଅଧିକ ସଂଖ୍ୟାରେ ମରିବା । କିଏ ଖୋଲିବ ଏ ବିଜ୍ଞାପନର କୁହୁକ ମୁଖା – ଔଷଧ ମୁହଁରୁ, ବ୍ୟବସାୟୀ ମୁହଁରୁ ଏବଂ ଡାକ୍ତର ମୁହଁରୁ ?



# ଏ ପରୀକ୍ଷା କାହାର ?

ଓଡ଼ିଶା ସାରା ସବୁ ସ୍କୁଲ କଲେଜମାନଙ୍କରେ ବର୍ତ୍ତମାନ ଖୁବ୍ ଉତ୍ତେଜନାର ସମୟ ଚାଲିଚି । କାରଣ ପରୀକ୍ଷା ଚାଲିଛି । ମନେହେଉଛି, ସତେବା ସେ ସବୁ ଅଞ୍ଚଳରେ ଅକସ୍ମାତ୍ ଯୁଦ୍ଧକାଳୀନ ପରିସ୍ଥିତି ଉପୁଜିଛି । ସେଥିପାଇଁ ସମସ୍ତେ ଉଦବିଗ୍ନ; ସମସ୍ତେ ଉତ୍ତେଜିତ । ପରୀକ୍ଷାର୍ଥୀ, ପରୀକ୍ଷକ, ନିରୀକ୍ଷକ, ଶିକ୍ଷକ, ସମର୍ଥକ, କର୍ତ୍ତୃପକ୍ଷ ଏବଂ ଜନସାଧାରଣ ଭିତରେ ଗୋଟାଏ ଗୋଳଯୁଦ୍ଧ ଲାଗିଲା ପରି ଜଣାଯାଉଛି । ଧାଁ-ଦଉଡ଼, ଗୋଡ଼ିଆଗୋଡ଼ି, ପାଚେରିଡ଼ିଆଁ, ପାଟିତୁଣ୍ଡ ଗର୍ଜନ ଚାଲିଛି । ତୂରୀ ଫୁଙ୍କା ଚାଲିଛି, ଡାକବାଜି ଯନ୍ତ୍ରରେ କ'ଣ ସବୁ ପ୍ରଶ୍ନ-ଉତ୍ତର କୁହାଚାଲିଛି । ସେ ମେଳାଭିଡ଼ ଭିତରେ ରାଗଚଣା, ଘୁଗୁନି ଏବଂ ଆଇସକ୍ରିମ୍ ମଧ ବିକା ଚାଲିଛି । ଅନତିଦୂରରେ 'ଶାନ୍ତି' ଏବଂ 'ଶୃଙ୍ଖଳା' ନାମକ ଦୁଇଟି ଧଳା ପତାକାକୁ କୌଣସି ନିମ୍ବଗଛରୁ ଓହଳେଇ ଦେଇ ସେଇ ଗଛମୂଳେ ପାଦରୁ ଜୋତା ହୁଗୁଳେଇ ଶାନ୍ତିରକ୍ଷୀ ପୋଲିସ ବାହିନୀ ନିଶ୍ଚିନ୍ତ ତାସ ପିଟୁଛନ୍ତି । ଏ ହଟଗୋଳ ଭିଡ଼ାଓଟରା ଭିତରେ କ'ଣ ଚାଲିଛି ସତେ ? ପରୀକ୍ଷା ପରା ଚାଲିଛି । ମୋ ଦେଶରେ ଶିକ୍ଷା-ପଦ୍ଧତିର ଚୂଡ଼ାନ୍ତ ପର୍ଯ୍ୟାୟ ! ଏହା ପରେ ଦେଶର ଶିକ୍ଷିତ ସଂଖ୍ୟା ଆହୁରି ଷାଠିଏ ଲକ୍ଷ ବଢ଼ିଯିବ । ଦେଶ ଉଦ୍ଧାର ହେବ ।

ଯଦି ଏସବୁ ଦେଖି ଆପଣ ପଚାରିବେ, କାହିଁକି ଏ ପ୍ରହସନ ଚାଲିଛି ? – କାହିଁକି ପରୀକ୍ଷାର୍ଥୀମାନେ ଚୋର ପରି ଆଚରଣ କରୁଛନ୍ତି, ଶିକ୍ଷକମାନେ କାହିଁକି ଛଟିଆ ଚପରାସୀ କାମ କରୁଛନ୍ତି, କାହିଁକି ଆତ୍ମସମ୍ମାନହୀନ, ନୀତିନିୟମବିବର୍ଜିତ, ଏଭଳି ଦୁରାଚାର ଶିକ୍ଷାନୁଷ୍ଠାନମାନଙ୍କରେ ହେଉଛି ? – ଏ ପରୀକ୍ଷାର ଅର୍ଥ କ'ଣ ? ଏହା ଏକ ପ୍ରହସନ ନୁହେଁ କି ? – ଆପଣଙ୍କୁ ଏ ସମସ୍ତ ପ୍ରଶ୍ନର ଅତି ସରଳ ଉତ୍ତରଟିଏ ମିଳିପାରେ – 'ଆଜ୍ଞା, ଏହା ପ୍ରହସନ ନୁହେଁ, ପ୍ରୟୋଜନ ! ଏହାଦ୍ୱାରା 'ଯୋଗ୍ୟତା' ପରୀକ୍ଷା ହେଉଛି । ପରୀକ୍ଷା ନମ୍ବର ଏବଂ ମାନପତ୍ର ହିଁ 'ଯୋଗ୍ୟତା' ! ତେଣିକି 'ଯୋଗ୍ୟ' ଲୋକଙ୍କୁ ଚାକିରି ବାହାନାରେ ଯାବଜ୍ଜୀବନ ପୋଷିବାକୁ ସରକାର ସ୍ଥିର କରିଛନ୍ତି । ଏହା ହିଁ ଜୀବନ-ସଂଗ୍ରାମର ଆଦିପର୍ବ । ଏଠି ହାରିଗଲେ ଚିରକାଳ ପାଇଁ ହାରି ରହିବାକୁ ପଡ଼େ । ସେଥିପାଇଁ ପରୀକ୍ଷାର୍ଥୀ ସେମାନଙ୍କ ସମର୍ଥକ ଏବଂ

ଅଭିଭାବକମାନେ ଏପରି ପ୍ରାଣପଣ କରି 'ଯୋଗ୍ୟତା' ଅର୍ଜନ କରୁଛନ୍ତି । ସେଥିପାଇଁ ନିରୀକ୍ଷକ ଏବଂ ପରୀକ୍ଷକଙ୍କ ଭାଉ ଏତେ ବଢ଼ିଯାଇଛି । ଏଠୁ ଥରେ ଅକ୍ଷୁଣ୍ଣ ଅବସ୍ଥାରେ ଉତ୍ତୀର୍ଣ୍ଣ ହୋଇଗଲେ ସେମାନେ ତେଣିକି ଏକାପ୍ରକାର ଇଟା ଭଳି ଯେ କୌଣସି କୋଠାରେ ବ୍ୟବହୃତ ହୋଇପାରିବେ । ସେଇମାନେ ହେବେ ନଗରପାଳ, ଜିଲ୍ଲାପାଳ, ରାଜ୍ୟପାଳ, ଶାସକ, ପ୍ରଶାସକ-ସଚିବ । କେବଳ ଗୋଟିଏ ସର୍ବୋଚ୍ଚ ପଦବୀ ପାଇଁ ଏହାର ପ୍ରୟୋଜନ ନାହିଁ – ନା' ପରୀକ୍ଷାର, ନା' ଶିକ୍ଷାର – ତାହା ହେଲା ମନ୍ତ୍ରୀତ୍ୱ ! ଜୟ ହେଉ ଅକୁଣ୍ଠିତ ଗଣତନ୍ତ୍ରର !

ଯୁକ୍ତି ମନ୍ଦ ନୁହେଁ । ଏହିପରି ଆଜିକୁ ଶହେବର୍ଷ ଧରି 'ଯୋଗ୍ୟତା' ନିରୂପଣ ହୋଇଆସୁଛି । ବିଦେଶୀ ଶାସନରେ ଯାହା, ସ୍ୱାଧୀନ ଭାରତରେ ମଧ୍ୟ ତାହା । କେବଳ ହାକିମ ବଦଳକୁ ସ୍ୱାଧୀନତା ବୋଲି ବୁଝାଇ ଦିଆହେଉଛି । ଜାତୀୟ ପ୍ରୟୋଜନ, ଜାତୀୟ ସ୍ୱାର୍ଥ କଥା କେହି ଗଭୀର ଭାବରେ ଚିନ୍ତା କିମ୍ବା ଅନୁଭବ କରୁନାହିଁ ! ନହେଲେ ରାଜଭକ୍ତ କିରାଣି ବାଛିବାକୁ ଯେଉଁ ପଦ୍ଧତିର ସୃଷ୍ଟି, ତାକୁ ଏପର୍ଯ୍ୟନ୍ତ ଆମେ କାହିଁକି ମୁଣ୍ଡରେ ବୋହି ବୁଲୁଥାନ୍ତେ ? ସାରା ଦେଶରେ କେବଳ ବି.ଏ. ପଢୁଆ 'ଶିକ୍ଷିତ'କୁ ସୃଷ୍ଟି କରିବାକୁ କାହିଁକି ଆଖିବୁଜା 'ଶିକ୍ଷାଶାଳ'ମାନ ହଜାର ସଂଖ୍ୟାରେ ସ୍ଥାପନ କରୁଥାନ୍ତେ ? ଆମେ ଜାଣୁଛୁ ଯେ ଆମର ଏଇଭଳି ଇଞ୍ଜିନିୟର ପ୍ରୟୋଜନ – କଳକବ୍ଜା, ବିଜୁଳି ତାର କିମ୍ବା ରାସ୍ତାଘାଟ ପାଇଁ ସ୍ୱତନ୍ତ୍ର ଯୋଗ୍ୟତାର ପ୍ରୟୋଜନ । ସେଇଭଳି ଶାନ୍ତିରକ୍ଷା କରିବାକୁ, ଏ ଯୁଗର ଦୁର୍ବୃତ୍ତ, ଅପରାଧୀଙ୍କ ମୁକାବିଲା କରିବାକୁ ଉପଯୁକ୍ତ ତାଲିମପ୍ରାପ୍ତ ପୋଲିସର ପ୍ରୟୋଜନ । ମାଟିକୁ ପରୀକ୍ଷା କରି ତାକୁ ବ୍ୟବହାର କଲାଭଳି, ସାରା ଦେଶର ଅନ୍ନସଙ୍କଟ ଦୂର କଲାଭଳି କୃଷି ବିଶାରଦର ପ୍ରୟୋଜନ । ଶାସନ ଜାରି ରଖିବା ପାଇଁ ସେଇଭଳି ତାଲିମପ୍ରାପ୍ତ ପ୍ରଶାସକ ପ୍ରୟୋଜନ । ବାରବର୍ଷ ଯାଏ ଉଚ୍ଚ ପ୍ରାଥମିକ ଶିକ୍ଷା ପରେ ନିର୍ଦ୍ଦିଷ୍ଟ ଯୋଗ୍ୟତା ପାଇଁ ନିର୍ଦ୍ଦିଷ୍ଟ ଶିକ୍ଷାନୁଷ୍ଠାନରେ ଅନ୍ତତଃ ଦଶବର୍ଷ କିମ୍ବା ପ୍ରକାରଭେଦରେ ପାଞ୍ଚ କିମ୍ବା ସାତ ବର୍ଷ ପରେ ସେମାନେ ଯେ ଯାହା ଭୂମିକାରେ ଦେଶର ସେବା କରନ୍ତେ । ତା' ନକରି ସବୁ ଏକମୁହାଣି କରିଦେବାରୁ ଲକ୍ଷ ଲକ୍ଷ ତରୁଣ ଗୋଟାଏ ଦୋଛକି ପାଖରେ ଧସ୍ତାଧସ୍ତି ହେବାକୁ ବାଧ୍ୟ । 'ଅନେକ ଲୋକ ଯହିଁ ମିଳି, ଅବଶ୍ୟ ଉପୁଜଇ କଳି' । କିଏ ବୁଦ୍ଧିରେ, କିଏ ବଳରେ, ଆଉ କିଏ ପୁଣି ଶଠତା ଏବଂ ଚତୁରତାରେ ଅନ୍ୟ ଜଣକୁ ଟପି ଚାଲିଯିବା ପାଇଁ ଆତୁର ହେବାକୁ ଆମେ ଗଢ଼ିଥିବା ଏ ପରିସ୍ଥିତିରେ ବାଧ୍ୟ । ଏ ପଦ୍ଧତି ଏବଂ ଏ ପରୀକ୍ଷା ଆମ ଶିକ୍ଷା କିମ୍ବା ଯୋଗ୍ୟତାର ଚିହ୍ନ ନୁହେଁ । ବରଂ ଆମ ଅଯୋଗ୍ୟତା ଏବଂ ପରିସ୍ଥିତିକୁ ମୁହାଁମୁହିଁ ମୁକାବିଲା କରିବା ପାଇଁ ଅପାରଗତାର ପରିଣାମ । ଆମେ ସମସ୍ତେ ବିକଳ

ହେଉଛୁ, ଛଟପଟ ହେଉଛୁ, ଗାଁ-ମାଇପିଙ୍କ ପରି ଗାଳିଦେଉଛୁ, କଳି କରୁଛୁ । ସବା ଶେଷକୁ ସମାଧାନ କଣ ନା ଦଶ ଦୁଇ ତିନ । – ହା, ହତୋଽସ୍ମି ।

ଅଳ୍ପ ପରିଶ୍ରମରେ ବେଶି ଲାଭ କରିବାର କୌଶଳ, ମଣିଷ ବୁଦ୍ଧିର ଗୋଟାଏ ଅଙ୍ଗ । ସେଥିପାଇଁ ସେ ଏଠି ବୋତାମ ଟିପିଦେଲେ ବମ୍ବେ ବନ୍ଦରରୁ ୨୦ ହଜାର ଟନ ଜାହାଜଟାଏ ସ୍ଥାନଚ୍ୟୁତ ହୋଇ ସମୁଦ୍ରରେ ପ୍ରବେଶ କରେ । ଗୋଟଏ ଲିଭର ନୁଆଁଇଦେଲେ ରେଳଗାଡ଼ିଟାଏ ଶୂନ୍ୟକୁ ଟେକି ହୋଇଯାଏ । ସେହିପରି ରାତିଏ ପରିଶ୍ରମ କରି ଗୋଟିଏ କବାଟ ଭାଙ୍ଗିପାରିଲେ ଦଶ କୋଡ଼ିଏ ହଜାର ଟଙ୍କାର ସମ୍ପତ୍ତି ମଧ୍ୟ ମିଳିପାରେ । ଏଇ ମୌଳିକ ପ୍ରବୃତ୍ତି ହିଁ ପରୀକ୍ଷାର୍ଥୀକୁ ପ୍ରଲୁବ୍ଧ କରେ; ପାଠ ନ ପଢ଼ି ସହଜ ଉପାୟରେ ପ୍ରଥମ ଶ୍ରେଣୀରେ ପାସ କରିବାକୁ । ସେ ସାରାରାତି ବସି ସରୁ ସରୁ ନଳୀ କାଗଜରେ 'ମାଲ' ତିଆରି କରେ । ତାକୁ ଦେହର ବିଭିନ୍ନ ଅଞ୍ଚଳରେ ଖୋସି କୁଚେଇ ସେ ନେଇଯାଏ । ଯାକୁ ପଚାରି ତାକୁ ପଚାରି ଉତ୍ତର ଲେଖିପକାଏ । ତା'ର ଅଭିଭାବକ ମଧ୍ୟ ପୋଥି ବିଡ଼ାଏ ଧରି ପାଖରେ ନଙ୍ଗର ପଙ୍ଗର ହେଉଥାନ୍ତି ' ଭିତରୁ ପ୍ରଶ୍ନପତ୍ର ହରଣଚାଳ ହୋଇ ବାହାରୁ ଉତ୍ତର ଡାକିଦିଆ ହୁଏ । ଖାତାରେ ଉତ୍ତର ବାହାରୁ ଲେଖାହୋଇ ଚାଲିଆସେ । ପରୀକ୍ଷକକୁ ଏବଂ ତା'ର ସଙ୍କୋଚପଣକୁ ଉପଯୁକ୍ତ ଦାମରେ କିଣି ନମ୍ବର ଚଢ଼େଇ ଦିଆଯାଏ । ପରୀକ୍ଷା ପୂର୍ବରୁ ଯେ ଶିକ୍ଷାଦାନ କରୁଥିଲେ ସେ ଇଷ୍ଟଦେବ ସୁମରଣା କରି ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହୁଅନ୍ତି । ୩ ଘଣ୍ଟା ଧାଁଦଉଡ଼ଠାରୁ ଆରମ୍ଭ କରି ମଲ୍ଲଯୁଦ୍ଧ, ଛୁରି କଟୁରି ପ୍ରୟୋଗ ହୁଏ । ଜଣାପଡ଼େ ନାହିଁ କିଏ ପରୀକ୍ଷା ଦିଏ ? ଅଭିଭାବକ ନା ଛାତ୍ର ? ଶିକ୍ଷକ ନା ପ୍ରଶାସକ ? ଜଣାପଡ଼େ ନାହିଁ ପରୀକ୍ଷା ଭିତରେ ହୁଏ ନା ବାହାରେ ? କି ବିଭ୍ରାନ୍ତିକର ଲଜ୍ଜାକର ସବୁ ପ୍ରକାରେ ଆତ୍ମହାନିକାରକ ଏ ପରୀକ୍ଷା । କାହାର ଏ ପରୀକ୍ଷା ? ଏବଂ କାହିଁକି ?



# ମିଶାଣ-ଫେଡ଼ାଣ (ସତ୍ୟକାମ)

ଛୋଟପିଲାଙ୍କୁ ବେଳେବେଳେ ଗୋଟିଏ ଅଙ୍କ କରିବାକୁ ଦିଆଯାଏ । ସେଥିରେ ଗୋଟିଏ ପାତିମାଙ୍କଡ଼ କୌଣସି ଏକ ଚିକ୍‌କଣ ଖମ୍ବ ଉପରକୁ ଚଢ଼ିବା ସମସ୍ୟା ନିଆଯାଇଥାଏ । ମାଙ୍କଡ଼ଟି ନିଜ ପ୍ରୟାସରେ ଯେତିକି ଚଢ଼େ, ପ୍ରାୟ ସେତିକି ପୁଣି ଖସିଆସେ । ଖମ୍ବଟି ଅତିଶୟ ପିଚ୍ଛିଳ ହୋଇଥିବାରୁ ମାଙ୍କଡ଼ ବିଚରା କେବଳ ଅହରହ ପରିଶ୍ରମ କରି କ୍ଳାନ୍ତ ହେଉଥାଏ । ତା'ର ଊର୍ଦ୍ଧ୍ୱଗତି ସମ୍ଭବ ହୁଏ ନାହିଁ । ସ୍କୁଲ ଛାଡ଼ି' ଚାଲିଆସିବାର ଅନେକ ଦିନ ପରେ ଏ ବିଷୟଟି ଉପରେ ଚିନ୍ତା କଲେ, ଏବଂ ସେ ଦୃଶ୍ୟଟିକୁ କଳ୍ପନା କଲେ ହସମାଡ଼େ । କେଡ଼େ ଓଲୁ ସେ ମାଙ୍କଡ଼ଟି, ସେଭଳି ନିଷ୍ଫଳ କାର୍ଯ୍ୟରେ ସେ କାହିଁକି ସେମିତି ସମୟ ନଷ୍ଟ କରୁଛି ? ତା'ପରେ କିନ୍ତୁ ଆଉ ଟିକିଏ ଚିନ୍ତା କଲେ ଦୁଃଖ ଲାଗେ । ମାଙ୍କଡ଼ ହୋଇ ଜନ୍ମିବା ତ ସେ ବିଚରାର ଆୟତ୍ତରେ ନାହିଁ । ଆହୁରି ବୁଦ୍ଧି କିମ୍ବା ଆହୁରି ବଳ ଖୋଜିଲେ ସେ କାହୁଁ ପାଇବ ? ଭୂଇଁଛାଡ଼ି ଉପରକୁ ଉଠିବା ପାଇଁ ତା'ର ପ୍ରବଳ ଇଚ୍ଛା । କିନ୍ତୁ ସେଥିପାଇଁ ତାକୁ ଯେଉଁ ଅବଲମ୍ବନ ମିଳିଛି, ସେଇ ଖମ୍ବଟି ତା' ଭାଗ୍ୟକୁ ଏମିତି ଘେଙ୍ଗାଳିଆ ଯେ ସେଥିରେ ତା'ର ସବୁ ଚେଷ୍ଟା ବ୍ୟର୍ଥ ହୋଇଯାଉଛି । ଅବସ୍ଥା ବାସ୍ତବିକ ଦୟନୀୟ । ମାଙ୍କଡ଼ଟି ସହିତ ନିଜକୁ କିମ୍ବା ନିଜ ଦେଶକୁ ମିଶେଇ ଭାବିଲେ ଏତେ ବେଶି ସାଦୃଶ୍ୟ ଆଖିରେ ପଡ଼େ ଯେ ଆଉ ସମ୍ଭାଳି ହୁଏ ନାହିଁ । ନିଷ୍ଫଳ କ୍ରୋଧ ଏବଂ ପରିତାପରେ କାନ୍ଦ ମାଡ଼େ ।

ଆମ ଦେଶରେ ଏବର୍ଷ ଯାହା ହୁଏ, ଆରବର୍ଷ ତାକୁ ଲିଭେଇ ଦିଆଯାଏ । ଏଇଠି ଏକଦା ଚିନ୍ତା କରାଗଲା ଯେ ଏକଛତ୍ରବାଦ, ଅନ୍ୟାୟ, ଅତ୍ୟାଚାର, ଦୁର୍ନୀତି ପ୍ରବଳବେଗରେ ବଢ଼ିଚାଲିଛି । ଦୁର୍ମଦ ଅପଶକ୍ତିକୁ ରୋକୋ ! 'ରୋକୋ' 'ରୋକୋ' ଧ୍ୱନି ଚାରିଆଡ଼େ ଶୁଣାଗଲା । ଫଳ ହେଲା ଯେ ସବୁ ରାସ୍ତା ରୋକି ଦିଆଗଲା । ବୁଢ଼ାମାନେ ନିରାପଦ ହେବେ ବୋଲି ପକ୍‌କା ରାସ୍ତା ଉପରେ ଶହ ଶହ ହୁଡ଼ା ଟେକିଦିଆଗଲା । ସମସ୍ତେ ଧୀରେ ଚାଲ, ବେଗ ସମ୍ବରଣ କର । ବୁଢ଼ାଙ୍କୁ ସମ୍ମାନ କର। ବୁଢ଼ାଭଳି ହୁଅ । ଭାରତ ବୁଢ଼ାମାନଙ୍କ ଦେଶ !– ଏଭଳି ଏକ ଜାତୀୟ ଯୋଜନାରେ ସାରାଦେଶ ଧିମେଇଗଲା । ଗାଡ଼ି, ମଟର, ମଣିଷ, ଫ୍ୟାକ୍ଟରୀ ସବୁ ବୁଢ଼େଇ ଗଲେ । ତା'ପରେ ଆସିଲା ବିପରୀତ ଢେ଼ଉ । ଚାରିଆଡ଼େ ଶୁଭିଲା 'ହଟାଓ'

'ହଟାଓ' । ବୁଢ଼ାଙ୍କୁ ହଟାଓ । ହୁଡ଼ାଙ୍କୁ ହଟାଓ । ରାସ୍ତା ସଫା କର । ପଛୁଆ ଜାତି ଆଗୁସାର ହୁଅ । ବେଗ ବଢ଼ାଅ । କାମ ବଢ଼ାଅ । ଉତ୍ସାହ, ସାହସ, ଧୈର୍ଯ୍ୟ ବଢ଼ାଅ । ଏ ସମସ୍ତର ଫଳ ହେଲା ଯେ ହୁଡ଼ାଗୁଡ଼ିକ ରାସ୍ତାରୁ ସ୍ଥାନେ ସ୍ଥାନେ ଘୁଞ୍ଚିଗଲେ । ହୁଡ଼ାର ସବୁ ମାଲ କିନ୍ତୁ ଏବେ ମଧ୍ୟ ରାସ୍ତା କଡ଼ରେ ଅପେକ୍ଷା କରି ରହିଛି । ପୁଣି ବେଳା ପଡ଼ିଲେ ଆସିଯିବେ ହୁଡ଼ାପକାଳି । ରାସ୍ତା ପୁଣି ବନ୍ଧୁର ବେଗ ବିରୋଧୀ ହୋଇଯିବ । ମୂଳ ଲକ୍ଷ୍ୟ ହେଲା ଯେତିକି ମିଶାଣ ହୋଇଛି ସେତିକି ଫେଡ଼ାଣ ନ ହେଲେ ଆମ ଦେଶରେ ଶାନ୍ତି ନାହିଁ । ଫଳ ସବୁବେଳେ ଶୂନ । ଏଠି ଯେଉଁ ଦୁଇଟି ପକ୍ଷ କାର୍ଯ୍ୟ କରନ୍ତି ସେଥିରେ ଯେକୌଣସିଟି ପାତିମାଙ୍କଡ଼ ହେଲେ ଅନ୍ୟଟି ତା'ପାଇଁ ଚିକ୍କଣ ଖମ୍ବ । ସେଥିପାଇଁ ଚଢ଼ିବା ଓହ୍ଲେଇବା ଚାଲିଥାଏ । ଦେଶ ଯେଉଁଠି ଥିଲା ସେଇଠି ।

ଏ ତ ଗଲା ପରସ୍ପର ପ୍ରତି ବିରୋଧ ଅଶ୍ରଦ୍ଧା ଏବଂ ଅସୂୟାର କଥା – ଅନ୍ୟ କ୍ଷେତ୍ରରେ ମଧ୍ୟ ସେଇଆ । ଧରାଯାଉ ବହୁକାଳରୁ କୌଣସି ଅନୁନ୍ନତ ଅଞ୍ଚଳରେ (ସାରା ଦେଶ ତ' ସେଇଆ ।) ନଈରେ ପୋଲଟିଏ ତିଆରି କରିବାକୁ ଲୋକେ ଗୁହାରିକରି ଆସିଛନ୍ତି । କୌଣସି କୁଜିନେତା ଲାଗି ଲାଗି ସରକାରୀ ସ୍ୱୀକୃତି ହାସଲ କରିନେଲେ । ତାଙ୍କ ଚିହ୍ନା ଇଂଜିନିୟର ଏବଂ କଣ୍ଟ୍ରାକ୍ଟର ଲାଗିଗଲେ – ବର୍ଷାଦିନକୁ କଣ୍ଠରଖି କାମ ଚାଲିଲା । ଉଦ୍‌ଘାଟନ ଉତ୍ସବ ପୂର୍ବରୁ ଉପର ମୁଣ୍ଡରେ ବର୍ଷା ହୋଇଯିବାରୁ ନଈରେ ପାଣି ମାଡ଼ିଆସିଲା ରାତିରେ । ସକାଳୁ ଗାଁ ଲୋକେ ଉଠି ଚାହିଁଲାବେଳକୁ ପୋଲର ଚିହ୍ନ ନାହିଁ । ନଈବାଲି ନଈବାଲିରେ ମିଶିଯାଇଛି । ବାକି ଶହେରେ ପାଞ୍ଚ ଭାଗ, ଯେଉଁ ଟିକକ ସିମେଣ୍ଟ, ଇଟା ଇତ୍ୟାଦି ଏଣୁତେଣୁ କିଛି ଲାଗିଥିଲା ସବୁ ଭାସିଯାଇଛି ସମୁଦ୍ର ମୁହାଣକୁ । ଏଥିରେ କିନ୍ତୁ କୁଜିନେତା କିମ୍ବା ତାଙ୍କର ସହଯୋଗୀ ସେବକମାନେ ଆଦୌ ବିଚଳିତ ନୁହନ୍ତି । ବରଂ ଦୁଇଗୁଣ ଉତ୍ସାହରେ ମୂଳରୁ ପୁଣି ଥରେ ଆରମ୍ଭ କରିବାକୁ ଲାଗିଯାଆନ୍ତି । ପୋଲଟିଏ ହେବା ଏବଂ ହେଉ ହେଉ ଭାସିଯିବା, ସେଇ ମିଶାଣ-ଫେଡ଼ାଣର ଶୂନ ଫଳ । ଗାଁ ଏବଂ ଗାଁ ଲୋକେ ଯେଉଁଠି ଥିଲେ ସେଇଠି । ନଈ ଯେମିତି ଥିଲା ସେମିତି ।

କେବଳ ଏଭଳି ଅପାରଗତା ଏବଂ ଶଠତା ପାଇଁ ନୁହେଁ, ଆଉ ପ୍ରକାରେ ମଧ୍ୟ ସେଭଳି ଫଳ ଆମେ ପାଉଛୁ । ଧରାଯାଉ ଅନେକ ଯୁକ୍ତିତର୍କ, ଭିଡ଼ାଓଟରା ଏବଂ ନେତା-ନେତା ଲଢ଼େଇ ପରେ ସ୍ଥିର ହେଲା ଯେ ଅମୁକ ଜାଗାରେ ସମୁକ କାରଖାନା ବସିବ । ତତ୍‌କାଳୀନ ସର୍ବୋଚ୍ଚ କର୍ତ୍ତା ଆସି ମହା ସମାରୋହରେ ଭିତ୍ତିପ୍ରସ୍ତର ସ୍ଥାପନ କରିଦେଲେ । ଫଟୋ ଉଠିଲା । ଖବରକାଗଜରେ ସ୍ୱତନ୍ତ୍ର କ୍ରୋଡ଼ପତ୍ର ବାହାରିଲା ।

ତା'ପରେ... । ତା'ପରେ ଆଉ କ'ଣ ? – କିଛି ନାହିଁ । ଗାଁ ପିଲାଏ ଆସି ଭିତ୍ତିପ୍ରସ୍ତର ଉପରେ ତାଙ୍କ କାମ କରିଗଲେ । ବର୍ଷେ, ଦୁଇବର୍ଷ, ଚାରିବର୍ଷ ପରେ, ସେ ଖଣ୍ଡ ମଧ୍ଯ କୁଆଡ଼େ ଗଲା ଜଣାଗଲା ନାହିଁ । ଏପରି ସେମାନେ କାହିଁକି କହନ୍ତି ? ତାଙ୍କର ଯୁକ୍ତି ହେଲା ଯେ ଆରମ୍ଭ କରିଦିଅ କୌଣସି ପ୍ରକାରେ । ତା'ପରେ କେମିତି ହେଲେ ଚାଲିବ ନାହିଁ କି ? – ବେସରକାରୀ କଲେଜ ତ' ପୁଣି ସେମିତି ମାଡ଼ିଚାଲିଛି । ...ସେ ଲୋକଗୁଡ଼ିକ ଅପାରଗ, ଅଦୂରଦର୍ଶୀ, ଆତ୍ମବିଶ୍ୱାସହୀନ, ଦାୟିତ୍ୱଶୂନ୍ୟ ମଣିଷ ! ତାଙ୍କର ଆନ୍ତରିକତା କିମ୍ବା ନିଷ୍ଠା ନାହିଁ । ନୂଆ କ'ଣ କରି ପକେଇବାର ଆଶା ଅଛି । କିନ୍ତୁ ସାମର୍ଥ୍ୟ ନାହିଁ । ସେମାନଙ୍କ କବଳରେ ପଡ଼ି ମଧ୍ଯ ଆମ ଦଶା ଏଇଆ । ଆମେ ଯେଉଁଠି ସେଇଠି । ଯାହା କରୁ ତାକୁ ପୁଣି ଏମିତି କାଟୁ କାହିଁକି ବୋଲି ପଚାରନ୍ତୁ ନାହିଁ । ଗାତ ଖୋଳି ପୋତିବା, ହୁଡ଼ା ପକାଇ କାଢ଼ିବା ମାଙ୍କଡ଼ର ଚିକ୍‌କଣ ଖମ୍ବ ଚଢ଼ିବା ଭଳି ଏକ ନିଷ୍ଫଳ ପ୍ରୟାସ । ମାଙ୍କଡ଼ ହେବା ଯେଡ଼ିକି ଦୁର୍ଭାଗ୍ୟଜନକ ନୁହେଁ, ଗୋଟାଏ ଚିକ୍‌କଣ ଖମ୍ବ ଉପରେ ଶ୍ରମ କରିବା ବୋଧହୁଏ ଆମ ପାଇଁ ତା'ଠାରୁ ବଳି ଦୁର୍ଯୋଗ ।



# ଯୁଗ-ବ୍ୟାଧି

**ଉପକ୍ରମ :**

ତଦ୍‌ବିଦ୍ ପଣ୍ଡିତମାନେ କହନ୍ତି ଯେ, ଜୀବନର ସ୍ୱାଭାବିକ ଛନ୍ଦଭଙ୍ଗ ହେଲେ ଯେଉଁ ବିଷମତା ସୃଷ୍ଟି ହୁଏ, ତାହା ହିଁ ବ୍ୟାଧି ରୂପରେ ପୀଡ଼ା ଦେଇଥାଏ । ମନ ଏବଂ ଶରୀର ସ୍ତରରେ ଏହି ଛନ୍ଦଭଙ୍ଗ କରିବା ପାଇଁ ଅନେକ ପ୍ରକାର ଶକ୍ତି ପାଣି, ପବନ ଏବଂ ବାତାବରଣରୁ ଆସି ଆକ୍ରମଣ କରିଥାନ୍ତି । ସାଧାରଣ ଦୃଷ୍ଟିରେ ତାହା ସବୁପ୍ରକାର ରୋଗର କାରଣ ବୋଲି ଆମେ ଧରି ନେଇଥାଉ । ଶରୀରଟି ଗୋଟିଏ ଦୁର୍ଗପରି । ତାହାକୁ ଶତ୍ରୁପକ୍ଷୀୟ ଜୀବାଣୁମାନେ ସାମୟିକ ଅଧିକାର କରି ଯେଉଁ ଅପଶାସନ କରନ୍ତି ତାହା ହିଁ ବ୍ୟାଧି । ସେମାନେ ତ' ସବୁବେଳେ ଆମକୁ ଚତୁର୍ଦ୍ଦିଗରୁ ଘେରି ରହିଛନ୍ତି । କିନ୍ତୁ ସବୁବେଳେ ବ୍ୟାଧି ହେଉନାହିଁ କାହିଁକି ? ତା'ର କାରଣ ହେଲା ଯେ ଏ ଦୁର୍ଗକୁ ଜଗି ରହିଛି ଏକ ବିରାଟ ପ୍ରତିରକ୍ଷା ବାହିନୀ । ତାହା ଆମର ଅତି ପ୍ରବଳ ପ୍ରାଣଶକ୍ତି ଅଥବା ଜୀବନୀ ଶକ୍ତି । ଏହି ଶକ୍ତି ଜୀବନର ସ୍ୱାଭାବିକ ଛନ୍ଦକୁ ରକ୍ଷା କରିଥାଏ । ଏହି ଶକ୍ତିର ଅବକ୍ଷୟ କିମ୍ବା ଅପଚୟ ଘଟିଲେ ତତ୍‌କ୍ଷଣାତ୍ ଶତ୍ରୁପକ୍ଷ ଆକ୍ରମଣ କରିଥାନ୍ତି । ଜୀବନର ଛନ୍ଦଭଙ୍ଗ ହୋଇଯାଏ ଏବଂ ଆମେ ରୋଗଗ୍ରସ୍ତ ହୋଇଥାଉ ।

**ମୌଳିକ ବ୍ୟାଧି**

ଆଧୁନିକ ଜୀବନରେ ଆମର ପ୍ରାଣଶକ୍ତି ଦୁର୍ବଳ ହେବାକୁ ବାଧ; କାରଣ ତାକୁ ପୋଷଣ କରିବା ପାଇଁ ଯେଉଁସବୁ ଉପାଦାନର ପ୍ରୟୋଜନ ତାହା ପ୍ରାୟ ବିରଳ ହୋଇଗଲାଣି । ଶରୀର ଏବଂ ମନକୁ ସୁସ୍ଥ ରଖିବା ପାଇଁ ନିର୍ମଳ ଏବଂ ସ୍ୱାଭାବିକ ଖାଦ୍ୟ ଭଳି ନିର୍ମଳ ଏବଂ ସୁଷମ ଚିନ୍ତା ଓ ଆବେଗ ମିଳୁନାହିଁ । ଫଳରେ ଆମର ଶରୀର ବିଷାକ୍ତ, ସ୍ନାୟୁକେନ୍ଦ୍ର ଉତ୍ପୀଡ଼ିତ ଏବଂ ମନ ବିକ୍ଷୁବଧ ରହୁଛି । ପ୍ରତିରକ୍ଷା ଦୁର୍ବଳ ହେବାରୁ ଏ ଯୁଗର ବୈଶିଷ୍ଟ୍ୟ ବହନ କରି କେତେଗୁଡ଼ିଏ ମୌଳିକ ବ୍ୟାଧି ଦେଖାଦେଇଛି । ପ୍ରକୃତ ପକ୍ଷେ ଏଗୁଡ଼ିକ ବ୍ୟାଧି ନୁହନ୍ତି ବରଂ ବ୍ୟାଧିକୁ ଆବାହନ କରୁଥିବା ଅନୁକୂଳ ଅବସ୍ଥା ।

**ଅସ୍ୱାଭାବିକ ଜୀବନ**

ସାଧାରଣ ଦୃଷ୍ଟିରେ ସୁସ୍ଥ ଦେଖାଯାଉଥିବା ଆଧୁନିକ ମଣିଷର ତିନୋଟି ମୌଳିକ ବ୍ୟାଧି । ସର୍ବପ୍ରଥମେ ତାକୁ ଆଉ ସ୍ୱାଭାବିକ କ୍ଷୁଧା ହେଉନାହିଁ । କ୍ଷୁଧା ନ ରହିବା ଅର୍ଥ

ଅଗ୍ନି ଲିଭିଯିବା । ସେ କେବଳ ଅଭ୍ୟାସ ଜାରି ରଖିବା ପାଇଁ ଖାଉଛି, କିମ୍ବା ସମ୍ଭୋଗ କରୁଛି । ବଞ୍ଚିବା ପାଇଁ, ଉପଜାତ କରିବା ପାଇଁ ତା'ର ଆଉ ପ୍ରବଳ ଆଗ୍ରହ ଅଥବା ପ୍ରବୃତ୍ତି ହେଉନାହିଁ । ଅର୍ଥାତ ଯାହା ବାଂଛିତ, ଯାହା କାମ୍ୟ ତାକୁ ସେ ଗ୍ରହଣ କରିପାରୁନାହିଁ । ଅନ୍ୟପକ୍ଷେ ଯାହା ଅବାଂଛିତ, ଏବଂ ଯାହା ତା' ଭିତରେ ରଖିବାକୁ ସେ ଚାହେଁ ନାହିଁ, ତାକୁ ସେ ନିଷ୍କାସିତ କରିପାରୁନାହିଁ । ଏହା ତା'ର ଦ୍ୱିତୀୟ ବ୍ୟାଧି । ତୃତୀୟରେ ତାକୁ ବିଶ୍ରାମ ମିଳୁ ନାହିଁ । ଜୀବନ ସଂଘର୍ଷରୁ ସାମୟିକ ବିରତି ନ ମିଳିବାରୁ ସେ କ୍ରମଶଃ ଦୁର୍ବଳ ହୋଇ ଆଉ କ୍ଷୁବ୍‌ଧକ୍ଷମ ରହିପାରୁନାହିଁ । ବୟସ ଟିକିଏ ବଢ଼ିଗଲେ ଏ ମୌଳିକ ବ୍ୟାଧିଗୁଡ଼ିକ ଅତି ପ୍ରାଞ୍ଜଳ ହୋଇଯାନ୍ତି । ଆଧୁନିକ ସମାଜର ଯେକୌଣସି ପ୍ରୌଢ଼ଙ୍କୁ ପଚାରିଲେ ସେ କହିବେ ଯେ ତାଙ୍କୁ ଭୋକ ହେଉନାହିଁ, ଝାଡ଼ା ହେଉ ନାହିଁ ଏବଂ ନିଦ ହେଉ ନାହିଁ । ଏଗୁଡ଼ିକ ସ୍ୱାଭାବିକ ଜୀବନର ଅତି ସ୍ୱାଭାବିକ ପ୍ରକ୍ରିୟା । କିନ୍ତୁ ଆମର ଅସ୍ୱାଭାବିକ ଜୀବନରେ ଏ ମୌଳିକ ପ୍ରକ୍ରିୟାଗୁଡ଼ିକର ଅଭାବ ହେତୁରୁ ଆମେ ଉଦ୍‌ବିଗ୍ନ, ବିଚଳିତ ଏବଂ ଆତଂକିତ ବୋଧ କରୁଛୁ ! ଏମାନଙ୍କର ପୁନଃପ୍ରତିଷ୍ଠା ନ ହେଲେ ବଞ୍ଚିବାର କିଛି ଅର୍ଥ କିମ୍ବା ସମ୍ଭାବନା ରହୁନାହିଁ !

**ବ୍ୟାଧିଗ୍ରସ୍ତ ଯୁଗ**

ଏ ସମସ୍ତ ବ୍ୟାଧି ଆମର ମନକେନ୍ଦ୍ରରୁ ସୃଷ୍ଟି ହେଉଛି ବୋଲି କେତେକଙ୍କର ମତ । ମନ ଯଦି ଉତ୍ତେଜିତ ଏବଂ ଉତ୍ତପ୍ତ ରହେ, ତେବେ ଏ ମୌଳିକ ବିକ୍ରିୟା ଏବଂ ଛନ୍ଦଭଙ୍ଗ ହେବ ଏବଂ ଅହରହ ଉତ୍ତେଜନା ଭିତରେ ରହି ଆମର ମାନସକ୍ଷେତ୍ର ବିକ୍ଷୁବ୍‌ଧ ହେଉଥିବାରୁ, ଆମର ପ୍ରତିରକ୍ଷା କରୁଥିବା ପ୍ରାଣଶକ୍ତି ଦୁର୍ବଳ ହୋଇଯିବ ! ଏହି ଆଶଙ୍କାରେ ମନଟିକୁ ଆୟତ୍ତ ଏବଂ ସୁସ୍ଥ ରଖିବାକୁ ଯତ୍‌ପରୋନାସ୍ତି ଚେଷ୍ଟା ଚାଲିଛି । ତା' କିନ୍ତୁ ସମ୍ଭବ ହେଉନାହିଁ । ଏହି ମୌଳିକ ବ୍ୟାଧିଗୁଡ଼ିକ ସମଗ୍ର ସାମାଜିକ ବାତାବରଣକୁ ଆକ୍ରାନ୍ତ କରିସାରିଥିବାରୁ ବର୍ତ୍ତମାନ ଯୁଗ ହିଁ ବ୍ୟାଧିଗ୍ରସ୍ତ । ମନେ ହେଉଛି ସତେବା ଏଥିରୁ ଆଉ ନିସ୍ତାର ନାହିଁ । ଆଧୁନିକ ରାଷ୍ଟ୍ରଗୁଡ଼ିକ ସମସ୍ତେ ରୁଗ୍‌ଣ । ସେମାନଙ୍କର ପାରସ୍ପରିକ ସମ୍ପର୍କ ବିଷାକ୍ତ । ଫଳରେ ପ୍ରତିମୁହୂର୍ତ୍ତରେ ଆପନ୍ନ ମନେ କରୁଥିବା, ପରସ୍ପରକୁ ସନ୍ଦେହ କରୁଥିବା, ଉଦ୍‌ବିଗ୍ନ ଦେଶଗୁଡ଼ିକ ପାଇଁ ଆଶ୍ୱସ୍ତି କିମ୍ବା ଶାନ୍ତି ମିଳୁ ନାହିଁ । ଫଳରେ ନିଦ ହେଉନଥିବା ବ୍ୟକ୍ତିଟିଏ ପରି ଉତ୍କଣ୍ଠିତ, ଉତ୍ତେଜିତ ଦେଶଗୁଡ଼ିକ ସ୍ନାୟୁ କେନ୍ଦ୍ରରେ କ୍ରମଶଃ ଦୁର୍ବଳ ବୋଧ କରୁଛନ୍ତି । ଅସ୍ୱସ୍ଥ ଦେଶରେ, ସାଧାରଣ ଦେଶବାସୀଟିଏ ସ୍ୱସ୍ଥ ହୋଇ ବଞ୍ଚିବା କ'ଣ ସମ୍ଭବ ? ଶାସନ କ୍ଷେତ୍ରରେ ସେହି ବ୍ୟାଧି ଦେଶରୁ ସବୁ ସାମର୍ଥ୍ୟ ଅପହରଣକରି ନେଇଗଲାଣି । ଯାହା ବାଂଛିତ, କଲ୍ୟାଣକର ଏବଂ ସର୍ବତୋଭାବେ ଶୁଭଦ, ତାହା ମିଳୁନାହିଁ କିମ୍ବା ସେଥିରେ ବିଶ୍ୱାସ

କରୁଥିବା ଶୁଭଦର୍ଶୀ, ସ୍ୱସ୍ଥ ପ୍ରଶାସକ ମିଳୁନାହାନ୍ତି । ଅନ୍ୟପକ୍ଷେ ଯେଉଁମାନେ ଅସମର୍ଥ, ରୁଗ୍ଣ, ଅବାଂଛିତ ତାଙ୍କୁ ଶାସନକ୍ଷେତ୍ରରୁ ଅପସାରିତ କରିବାର ସମ୍ଭାବନା ନାହିଁ । ବ୍ୟାଧି ମାନବଜାତିକୁ ଆକ୍ରାନ୍ତ କରିବା ଫଳରେ ଯୁଗ ରୋଗଗ୍ରସ୍ତ ମନେ ହେଉଛି ।

**ଅପରାଜେୟ ପ୍ରାଣଶକ୍ତି**

କିନ୍ତୁ ଆମର ଅଣାୟତ୍ତରେ ଜୀବନ ପକ୍ଷ ସ୍ୱୟଂ ଏ ପରିସ୍ଥିତିର ମୁକାବିଲା କରିବାକୁ ପ୍ରସ୍ତୁତ ହୋଇଚାଲିଛି । ସ୍ୱାଭାବିକ ଜୀବନ-ଛନ୍ଦ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହେବା ସମ୍ଭବ ନୁହେଁ । ଯେଉଁମାନେ ପାରମ୍ପରିକ ପ୍ରାକୃତିକ ପରିବେଶରେ ବଞ୍ଚୁଛନ୍ତି, ସେମାନେ ଏବେ ମଧ୍ୟ ଅବିଚଳିତ ଏବଂ ସ୍ୱସ୍ଥ । ସେମାନେ ଏ ଯୁଗ ବ୍ୟାଧିର ଦୂରରେ ଏବେ ମଧ୍ୟ ସଂକ୍ରମିତ ନ ହୋଇ ରହିପାରିଛନ୍ତି । ସହର, ନଗରମାନଙ୍କରୁ ବିକ୍ଷୋଭ ଏବଂ ଅପଶକ୍ତିର ଆକ୍ରମଣ ଚାଲିଛି। ଦିନୁଦିନ ପଲ୍ଲୀ ଜୀବନ ତା'ର ସ୍ୱାଭାବିକ ଛନ୍ଦରୁ ବିଚ୍ୟୁତ ହୋଇଚାଲିଛି। ପୁରାତନ ମୂଲ୍ୟ, ସ୍ୱସ୍ଥ ସମ୍ପର୍କ, ସହଜ ଆବେଗ, ଏବଂ ନିର୍ମଳ ଚିନ୍ତା ବ୍ୟାହତ ହେଉଛି । କିନ୍ତୁ ପ୍ରତିମୁହୂର୍ତ୍ତରେ ଜୀବନର ନୂତନ ଉଚ୍ଛ୍ୱାସ ଆସି ପ୍ରାଣଶକ୍ତିକୁ ଦୃଢ଼କରି ଚାଲିଛି । ବ୍ୟାଧିର ଅପଶକ୍ତି ମୃତ୍ୟୁ ଏବଂ ଅବକ୍ଷୟର ଶକ୍ତି । ଜୀବନକୁ ପାଳନ କରୁଥିବା ଶକ୍ତି ଅମୃତ ଅପରାହତ ପ୍ରାଣଶକ୍ତି । ମଣିଷର ଚେତନାକୁ ସଂରକ୍ଷିତ କରୁଥିବା ଏ ନିତ୍ୟନୂତନ ଶକ୍ତିର ପରାଜୟ ନାହିଁ । ସେଥିପାଇଁ ଯୁଗ ବ୍ୟାଧିଗ୍ରସ୍ତ ହେଲେ ସୁଦ୍ଧା, ତା' ଅବଶ୍ୟ ଦିନେ ରୋଗମୁକ୍ତ ଏବଂ ନିର୍ମଳ ହୋଇଯିବ, ଏଥିରେ ସନ୍ଦେହ ନାହିଁ ।



# ପ୍ରେମ ଓ ମୃତ୍ୟୁ

ମହାଭାରତ-ବର୍ଣ୍ଣିତ ଯକ୍ଷ-ଯୁଧିଷ୍ଠିର ସମ୍ବାଦରେ ଯକ୍ଷର ଅନ୍ୟତମ ପ୍ରଶ୍ନ ଥିଲା ''ଆଶ୍ଚର୍ଯ୍ୟ କ'ଣ ?'' ଗଭୀର ଦୃଷ୍ଟିସମ୍ପନ୍ନ ଯୁଧିଷ୍ଠିର ଉତ୍ତର ଦେଲେ, 'ହେ ଯକ୍ଷ ! ପ୍ରତିଦିନ ପ୍ରାଣୀମାନେ ଯମାଳୟ ଯାଉଛନ୍ତି । ତଥାପି ଅବଶିଷ୍ଟ ରହିଥିବା ପ୍ରାଣୀ ଭାବୁଛନ୍ତି ଯେ ସେମାନେ ମରିବେ ନାହିଁ । ଏହାଠାରୁ ବଳି ଆଉ କଣ ଆଶ୍ଚର୍ଯ୍ୟ ଥାଇପାରେ ?' ସତ କଥା । ବଞ୍ଚିଥିବା ଯାଏଁ କେହି କେବେ ମୃତ୍ୟୁକୁ ସ୍ୱୀକାର କରେ ନାହିଁ । ପ୍ରାଣୀ ମାତ୍ରେ ସତେବା ବଞ୍ଚିବାର ଇଚ୍ଛାଟିଏ, ମୋହଟିଏ, ସ୍ପନ୍ଦନଟିଏ କେବଳ । ସେ ସତେବା ମରିବାକୁ ଜନ୍ମ ହୋଇ ନାହିଁ । ତା' ଭିତରେ ଏପରି କ'ଣ ଉପାଦାନଟିଏ ଅଛି ଯାହା ଶେଷ ପର୍ଯ୍ୟନ୍ତ ମୃତ୍ୟୁକୁ ଅସ୍ୱୀକାର କରୁଥାଏ! ପ୍ରୟାସ ଯେତେ କ୍ଷୀଣ ହେଉ ନା କାହିଁକି, ଯେତେ ଅଳ୍ପ ସମୟ ପାଇଁ ହେଲେ ସୁଦ୍ଧା ପ୍ରାଣୀ ସେଇ ଉପାଦାନ ବଳରେ ମୃତ୍ୟୁ ସହିତ ସଂଗ୍ରାମ କରୁଥାଏ । କେବେହେଲେ ମୃତ୍ୟୁକୁ ଜୟ କରିବାର ଆଶା ପରିତ୍ୟାଗ କରେ ନାହିଁ । ଏ ପର୍ଯ୍ୟନ୍ତ କିନ୍ତୁ ଅପରାହତ ମୃତ୍ୟୁ ଜୀବନକୁ ଗ୍ରାସ କରି ଚାଲିଛି । ଜନ୍ମ ହେଲେ ମୃତ୍ୟୁ ଅବଶ୍ୟମ୍ଭାବୀ । ଜାତସ୍ୟ ହି ଧ୍ରୁବୋ ମୃତ୍ୟୁଃ । ଅନ୍ୟାନ୍ୟ ଇତର ପ୍ରାଣୀମାନଙ୍କ ପରି କାଳ ପ୍ରବାହରେ ମଣିଷ ମଧ୍ୟ ମୃତ୍ୟୁ କବଳିତ ହୋଇ ଚାଲିଛି । ସତେବା ଏ ଲୌହଶୃଙ୍ଖଳରୁ ତା'ର ମୁକ୍ତି ନାହିଁ । ସେ ଯେତେ ଯାହା କରୁନା କାହିଁକି ସେ ମରିବ ହିଁ ମରିବ । ସେଥିରୁ ତା'ର ନିସ୍ତାର ନାହିଁ ।

କିନ୍ତୁ ଅନ୍ୟ ପ୍ରାଣୀମାନଙ୍କ ପରି ମଣିଷ ମଧ୍ୟ ମରେ ବୋଲି କ'ଣ ସେ ମଣିଷ ? ମୃତ୍ୟୁ କ'ଣ ତା'ର ବୈଶିଷ୍ଟ୍ୟ ? ନା' ବରଂ ମୃତ୍ୟୁ ତା'ର ଲାଂଛନା; ତା'ର ପରାଜୟ, ତା'ର ପରିପନ୍ଥୀ । ସେ ବରଂ ପ୍ରାଣକୁ ଧାରଣ କରେ ଏବଂ କିଛିକାଳ ମରେ ନାହିଁ ବୋଲି ସେ ପ୍ରାଣୀ । ଜୀବନରେ ଅପରିମେୟ ରୋଗ, ଯନ୍ତ୍ରଣା, ଦୁଃଖ, ଶୋକ, ଘୃଣା, ଅସୂୟା ସତ୍ତ୍ୱେ ସେ ଏକ ଗଭୀର, ଦୁର୍ବାର ଇଚ୍ଛାନେଇ ବଞ୍ଚିବାକୁ ଚାହେଁ । ତିଳତିଳ ହୋଇ ଶରୀର ଘୋର ଯନ୍ତ୍ରଣାରେ ଝଡ଼ିପଡୁଥିଲେ ସୁଦ୍ଧା ସେ ଇଚ୍ଛାଟିର ମୃତ୍ୟୁ ହୁଏନାହିଁ । ମରିବା ସମୟରେ ଶରୀରର ପତନ ହୋଇଗଲେ, ସେଇ ଇଚ୍ଛାଟି ଆତ୍ମାପୁରୁଷକୁ ଆଶ୍ରୟକରି ଉଦ୍‌ବୃତ୍ତ ରହିଯାଏ । ସେଥିପାଇଁ ହୁଏତ ଆଉଥରେ ଜନ୍ମିବାର ଅଭିଳାଷ ସବୁବେଳେ ରହିଥାଏ । ହଠାତ୍ ଦେଖିଲେ ମନେହେବ ଯେ ଏ

ଇଚ୍ଛା କେବଳ ଶରୀରାଶ୍ରିତ ମୋହଟିଏ । ସେ ଏଇ ଶରୀରଟିକୁ ଭଲପାଏ ବୋଲି ହୁଏତ ମରିବାକୁ ଚାହେଁ ନାହିଁ । ହୋଇପାରେ ତାହା ସତ । କିନ୍ତୁ ସେ କ'ଣ କେବଳ ଏଇ ଶରୀରଟିକୁ ଭଲ ପାଏ ? ସେ କ'ଣ ପତ୍ନୀ ପୁତ୍ର ପରିବାର ସ୍ୱଜନ ବାନ୍ଧବଙ୍କୁ ସେଇ ପରିମାଣରେ ଭଲ ପାଏ ନାହିଁ ? ସେମାନଙ୍କୁ 'ମୋର' ବୋଲି କହି ସେମାନଙ୍କ ପାଇଁ ବଞ୍ଚିବାକୁ ଚାହେଁ ନାହିଁ ? ଚାହେଁ ଏବଂ ଗଭୀର ଭାବରେ ସେମାନଙ୍କୁ ଭଲ ପାଏ । ଏ ଭଲ ପାଇବା ତା'ହେଲେ କେବଳ ମୋହ ନୁହେଁ; ତାହା ମମତା ମଧ୍ୟ । ସେହିପରି ସେ ଭଲପାଏ ମଣିଷ ଜାତିକୁ; ପଶୁ, ପକ୍ଷୀ, କୀଟପତଙ୍ଗ, ତରୁତୃଣ ସମନ୍ୱିତ ପୃଥିବୀକୁ, ଆକାଶକୁ, ସମୁଦ୍ରକୁ, ପବନକୁ ! ଏବଂ ବିଶ୍ୱକବିଙ୍କ ଭାଷାରେ କହେ 'ମରିତେ ଚାଇନା' ଆମି ସୁନ୍ଦର ଭୁବନେ' ! ଏ ସୌନ୍ଦର୍ଯ୍ୟ ହିଁ ଆନନ୍ଦ । ଏଭଳି ଭଲ ପାଇବା ହିଁ ଚେତନାର ବୃହତ୍ତମ ବିସ୍ତାର। ଏହାର ଅନ୍ୟନାମ ପ୍ରେମ ।

ଅତଏବ ଅନନ୍ତକାଳ ଅବଧି ଯେଉଁ ଶକ୍ତି ମୃତ୍ୟୁକୁ ଅସ୍ୱୀକାର କରି ଆସିଛି, ତା'ର ମୁକାବିଲା କରି ଆସିଛି ଏବଂ ଜୀବନକୁ ମୌଳିକ ଉପାଦାନ ଯୋଗେଇ ଆସିଛି ତାହା ପ୍ରେମର ଶକ୍ତି । ପ୍ରେମ ବାନ୍ଧି ରଖେ, ଧାରଣ କରେ, ପୋଷଣ କରେ । ମୃତ୍ୟୁ ହରଣ କରେ, ବିକ୍ଷିପ୍ତ କରେ, ଧ୍ୱଂସ କରେ । ଏଣୁ ଯେଉଁ ଅନନ୍ତ ସଂଗ୍ରାମ ଚାଲିଛି ତାହା ଜୀବନ ଏବଂ ମୃତ୍ୟୁର ସଂଘର୍ଷ ନୁହେଁ, ତାହା ବାସ୍ତବରେ ପ୍ରେମ ଏବଂ ମୃତ୍ୟୁର ସଂଘର୍ଷ ।

ସାବିତ୍ରୀ ମହାକାବ୍ୟରେ ପରମଯୋଗୀ ଶ୍ରୀଅରବିନ୍ଦ ଏହି ସଂଘର୍ଷର ଚୂଡ଼ାନ୍ତ ପରିଣାମ କଥା କହିଛନ୍ତି । ମୃତ୍ୟୁ ଅପରାଜେୟ ମନେ ହେଉଥିଲେ ସୁଦ୍ଧା ପ୍ରେମର ଅନିର୍ବଚନୀୟ ଶକ୍ତି ପାଖରେ ସେ ସର୍ବଦା ପରାଭୂତ । ସାବିତ୍ରୀ ଉପାଖ୍ୟାନରେ ଗତାୟୁ, ସତ୍ୟବାନଙ୍କୁ ଯମରାଜ ଫେରାଇ ଦେବାକୁ ବାଧ୍ୟ ହୋଇଛନ୍ତି । ସାବିତ୍ରୀଙ୍କ ତପସ୍ୟା, ନିଷ୍ଠା ଏବଂ ସଂକଳ୍ପ ଆଗରେ ସ୍ୱୟଂ ଯମରାଜ ପରାଜୟ ସ୍ୱୀକାର କରିଛନ୍ତି । ଏ ଉପାଖ୍ୟାନଟି କିନ୍ତୁ କେବଳ କାହାଣୀ ନୁହେଁ । ଶ୍ରୀଅରବିନ୍ଦଙ୍କ ଦୃଷ୍ଟିରେ ଏହା ଏକ ମହାନ ପ୍ରତୀକ । ଏଥିରେ ମଣିଷର ଭାଗ୍ୟଲିପି, ତା'ର ଅବଶ୍ୟମ୍ଭାବୀ ମରଣଶୀଳତାକୁ ଅତିକ୍ରମ କରିଯିବାର ସମ୍ଭାବନା ନିହିତ ଅଛି । ସତ୍ୟବାନ ସମଗ୍ର ମାନବ ଜାତିର ପ୍ରତୀକ । ତାଙ୍କର ମୃତ୍ୟୁ ନିର୍ଦ୍ଦିଷ୍ଟ ଏବଂ ଅନିବାର୍ଯ୍ୟ । କିନ୍ତୁ ସାବିତ୍ରୀ ହେଉଛନ୍ତି ସତ୍ୟରୂପା, ପ୍ରେମରୂପା ଆଦ୍ୟାଶକ୍ତି । ସେ ହିଁ ତାଙ୍କର ଯୋଗଶକ୍ତି ବଳରେ ସତ୍ୟବାନଙ୍କୁ ମୃତ୍ୟୁର ଅତଳ ବିବରରୁ ଉଦ୍ଧାର କରି ଆଣିପାରନ୍ତି । ମୃତ୍ୟୁ ମଣିଷ ପାଇଁ ଏକ ଦୁର୍ଲଙ୍ଘ୍ୟ ପୁରୁଣା ଅଭ୍ୟାସ; ପ୍ରେମ କିନ୍ତୁ ତା'ର ଅନ୍ତର୍ନିହିତ ଶକ୍ତି, ତା'ର ସ୍ୱଲକ୍ଷଣ । ମୃତ୍ୟୁ ଅନିବାର୍ଯ୍ୟ ନୁହେଁ । ତାକୁ ଅବଶ୍ୟ ଲଙ୍ଘନ କରାଯାଇପାରେ, ଜୟ କରାଯାଇପାରେ । ମୃତ୍ୟୁ

ସହିତ ଆଲୋଚନା କରି ନଚିକେତା ଏହି ରହସ୍ୟ ଉଦ୍‌ଘାଟନ କରିଛନ୍ତି । ପ୍ରମଦ୍‌ବରାଙ୍କୁ ନିଜର ଅର୍ଦ୍ଧେକ ଆୟୁଷ ଦାନ କରି ପ୍ରେମିକ ରୁରୁ ଏହି ସତ୍ୟ ସ୍ଥାପନ କରିଛନ୍ତି । ଓର୍‌ଫିଅସ୍ ତାଙ୍କର ପ୍ରିୟତମା ପତ୍ନୀଙ୍କୁ ମୃତ୍ୟୁରାଜ୍ୟରୁ ଫେରାଇ ଆଣି ପ୍ରତିପାଦନ କରିଛନ୍ତି ଯେ ପ୍ରେମର ମୃତ୍ୟୁ ନାହିଁ; ପ୍ରେମରେ ମୃତ୍ୟୁ ନାହିଁ । ପ୍ରେମ ହିଁ ଅମୃତ; ପ୍ରେମ ହିଁ ଆନନ୍ଦ, ପ୍ରେମ ହିଁ ଜୀବନ ।

ଅଧୁନାତନ ବିଜ୍ଞାନ କୁଆଡ଼େ ଏକ ବିସ୍ମୟକର ତଥ୍ୟ ବର୍ତ୍ତମାନ ବିଚାର କରୁଛି । ଏକ ବିଶିଷ୍ଟ ରୁଷ ବୈଜ୍ଞାନିକଙ୍କ ମତରେ ମଣିଷ ଶରୀର ଭିତରେ ଏପରି କେତେକ ଉପାଦାନ ଅଛି ଯାହା ସୂଚନା ଦେଉଛି ଯେ ଏ ଶରୀର ଚିରକାଳ ରହିପାରେ । ଏଥିରେ ସେ ଅମରତ୍ୱର ସନ୍ଧାନ ପାଇଛନ୍ତି । କିନ୍ତୁ ସେ ଉପାଦାନକୁ ପୋଷଣ କରିବାକୁ ସୂକ୍ଷ୍ମାତିସୂକ୍ଷ୍ମ ସ୍ନାୟବିକ ସାମର୍ଥ୍ୟର ପ୍ରୟୋଜନ। କ୍ରୋଧରେ, ଘୃଣାରେ ଯେଉଁସବୁ ରାସାୟନିକ କ୍ଷରଣ ହୁଏ, ସ୍ନାୟୁରେ, ରକ୍ତ ପ୍ରବାହରେ ଯାହାସବୁ ଆଲୋଡ଼ନ ଘଟେ, ସେଥିରେ ଏ ଉପାଦାନ କାର୍ଯ୍ୟକାରୀ ହୋଇପାରିବ ନାହିଁ । ଏ ସମସ୍ତ ମୃତ୍ୟୁ ପକ୍ଷର ଯୋଦ୍ଧା । ଏମାନେ ହିଁ ବ୍ୟକ୍ତି ଏବଂ ଜାତି ସ୍ତରରେ ମାନବ ଜାତିର ସଂହାର କରି ଆସିଛନ୍ତି । ଏମାନଙ୍କର ପ୍ରତିପକ୍ଷ, ପ୍ରେମ, ମମତା, ଦୟା, କ୍ଷମା, ଶାନ୍ତି । ପ୍ରେମପକ୍ଷ ରକ୍ଷା କରେ, ପାଳନ କରେ । ମଣିଷ ପ୍ରେମପକ୍ଷକୁ ଚିହ୍ନି ସ୍ୱୀକାର କରି ନିଜର ସଂକଳ୍ପରେ ତାକୁ ଗ୍ରହଣ ନ କରିବା ପର୍ଯ୍ୟନ୍ତ ତା'ମନରେ ଅମରତ୍ୱର ଅଭିଳାଷ ହିଁ ଉଦ୍‌ଗମ ହେବ ନାହିଁ । ପ୍ରେମ ବଳରେ ମଣିଷ ମୃତ୍ୟୁକୁ ଜୟ କରିପାରେ କିନ୍ତୁ ଦ୍ୱନ୍ଦ୍ୱ କଳହ, ଦ୍ରୋହ, ରକ୍ତପାତ ଭିତରେ ସନ୍ତୁଳି ହେଉଥିବା ମଣିଷ ଏବେ ମଧ୍ୟ ମରଣାଭିଳାଷୀ । ସେଥିପାଇଁ ମରଣ ତା' ପାଇଁ ଅନିବାର୍ଯ୍ୟ !



# ଗ୍ରହ ସମାଚାର

**ପ୍ରତିପକ୍ଷ**

ଜନ୍ମକୁଣ୍ଡଳି, ଜାତକମେଳନ ଇତ୍ୟାଦି ବହୁକାଳର ଗୁଡ଼ିଏ ଅର୍ଥହୀନ କୁସଂସ୍କାର । ପୃଥିବୀରେ କୋଟି କୋଟି ଲୋକ ଅଛନ୍ତି, ଯେଉଁମାନେ ଏଥିରେ ଆଦୌ ବିଶ୍ୱାସ ନ କରି ମଧ୍ୟ ଖୁବ୍ ଆନନ୍ଦରେ ଅଛନ୍ତି । ବୋଧହୁଏ ବିଶ୍ୱାସ କରୁନଥିବାରୁ ହିଁ ଆନନ୍ଦରେ ଅଛନ୍ତି । ଆମେ କେବଳ ନିଜ ପାଇଁ ନିଜେ ଗୁଡ଼ିଏ ଅଯଥା ସମସ୍ୟା ସୃଷ୍ଟି କରି ହଇରାଣ ହେଉଛୁ । ଏଥିପାଇଁ ଅନେକ ଚମତ୍କାର ବିବାହ ପ୍ରସ୍ତାବ ଭାଙ୍ଗିଯାଉଛି । ଅନେକ ବିଦ୍ୟା-ବୁଦ୍ଧି ଏବଂ ବଳରେ ସମର୍ଥ ଲୋକ ପ୍ରତିଦିନ ଗ୍ରହ ଗଣନାକରି ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ବିଭିନ୍ନ ପ୍ରକାର ପଥରବସା ମୁଦି ପିନ୍ଧି, ଆସ୍ତେ ଆସ୍ତେ ଆତ୍ମବିଶ୍ୱାସ ହରାଇ କ୍ଳୀବ ହୋଇଯାଉଛନ୍ତି । ଏପରିକି ବିଶ୍ୱବିଦ୍ୟାଳୟମାନଙ୍କରେ ପଢୁଥିବା ତରୁଣମାନେ ମଧ୍ୟ ସାପ୍ତାହିକ ରାଶିଫଳ ଦେଖି ସେହି ଅନୁସାରେ ଆଶା-ଆଶଙ୍କାରେ ଦୋଦୁଲ୍ୟମାନ ହେଉଛନ୍ତି । ନେତାମାନେ ତ ବହୁବିଧ ଉପଚାରରେ ଗ୍ରହମାନଙ୍କୁ ପୋଷି ପାଳି ରଖିଥିବା ଏକ ସାଧାରଣ କଥା । ଏ ଜାତିକୁ ଆତ୍ମବିଶ୍ୱାସହୀନ, ପଙ୍ଗୁ, ଉଦ୍ୟମଶୂନ୍ୟ କରିବାରେ ଏହି ଅନ୍ଧବିଶ୍ୱାସ ହିଁ ମୁଖ୍ୟତଃ ଦାୟୀ । ବ୍ୟକ୍ତିଭଳି ଦେଶର ମଧ୍ୟ କୁଆଡ଼େ ଏହି ଗ୍ରହଚକ୍ର ଉପରେ ନିର୍ଭରକରି ମହାମାରୀ, ମଡ଼କ, ବନ୍ୟା, ଯୁଦ୍ଧ କିମ୍ବା ଶାନ୍ତି ଭୋଗ ହୋଇଥାଏ । ଆଶ୍ଚର୍ଯ୍ୟଜନକ ଏ ଦେଶ ଏବଂ ତା'ର ପରମ୍ପରା ! ପ୍ରତ୍ୟକ୍ଷ ଚନ୍ଦ୍ରଭୂମିକୁ ଯାଇ ସେଇଠି ମଣିଷ ଓହ୍ଲେଇ ସାରିଲା ପରେ ତାକୁ କିପରି ଗ୍ରହ ବୋଲି ସ୍ୱୀକାର କରାଯାଉଛି, ତାହା ଏକ ବିସ୍ମୟକର ବ୍ୟାପାର ! ଆହୁରି ବିସ୍ମୟକର ହେଉଛି ଯେ ଦୁଇଟି ମାତ୍ର ଛାଇକୁ ରାହୁ ଏବଂ କେତୁ ନାମରେ ଆଖ୍ୟାତ କରି ସେମାନଙ୍କୁ ମଧ୍ୟ ଗ୍ରହର ମର୍ଯ୍ୟାଦା ଦିଆଯାଉଛି । ଅଥଚ ସୌରମଣ୍ଡଳରେ ଆବିଷ୍କୃତ ନୂତନ ଗ୍ରହମାନଙ୍କୁ ସ୍ୱୀକୃତି ମିଳୁନାହିଁ । ଏ ସମସ୍ତ ବ୍ୟାପାରଟି ଗୋଟିଏ ଅନ୍ତଃସାର-ଶୂନ୍ୟ ଭ୍ରମାତ୍ମକ ଜାଲିଆତି ବ୍ୟବସାୟ । ଏହି କାରଣରୁ ଏହା ଯଥାଶୀଘ୍ର ପରିହର୍ତବ୍ୟ !

**ସ୍ୱପକ୍ଷ**

ଯାହା ନିଜ ବୁଦ୍ଧିରେ ବୁଝିହୁଏ ନାହିଁ ତାକୁ ଭୁଲ୍ ବୋଲି କହି ଉଡ଼ାଇଦେବା ବିଜ୍ଞତାର ପରିଚୟ ନୁହେଁ । ବହୁକାଳରୁ ଭାରତଭୂମିରେ ଜ୍ୟୋତିଷଶାସ୍ତ୍ର ଏକ ମାନନୀୟ

ବିଦ୍ୟା ରୂପେ ସ୍ୱୀକୃତିଲାଭ କରି ଆସିଛି । ଏହା କୁସଂସ୍କାର ନୁହେଁ । ଏହା ଦେଶକାଳର ବନ୍ଧନକୁ ଅତିକ୍ରମ କରୁଥିବା, ଏକ ସୂକ୍ଷ୍ମ ଅନୁଭବ ଭୂମିର ପ୍ରମାଣସାପେକ୍ଷ୍ୟ ବିଜ୍ଞାନ । ଆମେ କୌଣସି ଗ୍ରାମ, ପ୍ରଦେଶ, କିମ୍ୱା ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ସୀମାବଦ୍ଧ ନୋହୁ । କେବଳ ପୃଥିବୀ ସର୍ବସ୍ୱ ନୋହୁ । ଆମେ ଆଉ ଏକ ବିସ୍ତୃତ ପରିବ୍ୟାପ୍ତ ପରିବାରର ଅନ୍ତର୍ଭୁକ୍ତ । ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ, ଶନି, ବୃହସ୍ପତି ଆଦି ଯେ ପରିବାରର ଅତି ବିଶାଳ ବଳିଷ୍ଠ ଶକ୍ତିକେନ୍ଦ୍ର । ସେମାନଙ୍କର ପ୍ରଭାବ ପ୍ରତିମୁହୂର୍ତ୍ତରେ ପୃଥିବୀର ପ୍ରତ୍ୟେକ ବିନ୍ଦୁରେ ପଡୁଛି । ସେମାନଙ୍କର ସ୍ଥାନ ପରିବର୍ତ୍ତନ ହେତୁ ପ୍ରଭାବରେ ମଧ୍ୟ ପରିବର୍ତ୍ତନ ଘଟୁଛି । ସମୁଦ୍ରରେ ବାତ୍ୟା, ଜୁଆର ଜଳଚରମାନଙ୍କୁ ପ୍ରଭାବିତ କଲାପରି; ବର୍ଷା, ନିଦାଘ ଆଦି ଋତୁରେ ଜଳବାୟୁ ଭୂଭାଗରେ ବାସକରୁଥିବା ପ୍ରାଣୀମାନଙ୍କୁ ପ୍ରଭାବିତ କରୁଥିବା ପରି, ମଣିଷଭଳି ଅତି ସୂକ୍ଷ୍ମଚେତା, ମନସ୍ୱ ପ୍ରାଣୀକୁ ଏ ସୌରମଣ୍ଡଳର ଗ୍ରହମାନେ ପ୍ରଭାବିତ କରିବା ଅସଙ୍ଗତ କିମ୍ୱା ଅସ୍ୱାଭାବିକ ନୁହେଁ । ଏ ବିଶ୍ୱରେ ପ୍ରତ୍ୟେକ ବସ୍ତୁରେଣୁ ଅନ୍ୟ ଯେକୌଣସି ବସ୍ତୁରେଣୁ ସହିତ ସମ୍ପୃକ୍ତ । ସେଥିପାଇଁ ସେମାନେ ପରସ୍ପରର ପ୍ରଭାବରୁ ମୁକ୍ତ ନୁହନ୍ତି । ଜ୍ୟୋତିଷଶାସ୍ତ୍ର ଏହି ମୌଳିକ ସମ୍ପର୍କକୁ ସ୍ୱୀକାର କରେ । ଆମେ ଆମର ପଡ଼ୋଶୀର ବିଷଦୃଷ୍ଟି ପାଇଁ ବିବ୍ରତ ହେଉଥିଲାବେଳେ ଜ୍ୟୋତିଷ ଆମକୁ ମହାକାଶକୁ ଟାଣିନେଇ ପୃଥିବୀର ପଡ଼ୋଶୀ ବିଷୟରେ ଆମକୁ ସଚେତନ କରାଇଦିଏ । ଆମର ସୀମିତ ଜୀବନକାଳର ନିଗଡ଼ ଭିତରୁ ଲକ୍ଷ କୋଟି ବର୍ଷ ପ୍ରସାରିତ ମହାକାଳକୁ ନେଇଯାଏ । ଆମ ପାଇଁ ଭବିଷ୍ୟତ ଜ୍ଞାତବ୍ୟ ନୁହେଁ । କିନ୍ତୁ ସେ ଦୃଷ୍ଟିରୁ ଜ୍ୟୋତିଷଶାସ୍ତ୍ର ଏକ ଉଲ୍ଲଙ୍ଘନ; କାଳକୁ ଜୟ କରିବାର ଏକ ପ୍ରୟାସ । ବ୍ୟକ୍ତିର ଅତୀତ ଏବଂ ଭବିଷ୍ୟତ କେବଳ ନୁହେଁ, ଗଭୀର ରହସ୍ୟାବୃତ ପୂର୍ବାପର ଜନ୍ମ ବିଷୟରେ ମଧ୍ୟ ଜାଣିବାକୁ ଏହା ଚେଷ୍ଟା କରେ । ଏଣୁ ଏହାକୁ କୁସଂସ୍କାର ରୂପେ ପରିହାର ନ କରି ବରଂ ଏକ ମୂଲ୍ୟବାନ ପରମ୍ପରାରୂପେ ଏକ ସାହସିକ ସୂକ୍ଷ୍ମ-ବିଜ୍ଞାନରୂପେ ଗ୍ରହଣ କରି ସେଥିରେ ଅଧିକ ଅଧ୍ୟୟନ ଆଲୋଚନା କରିବା ଉଚିତ ହେବ । ଅବଶ୍ୟ କାଳକ୍ରମେ ମୂଳତତ୍ତ୍ୱଟିକୁ ଘେରି, ଯେଉଁସବୁ ଅନାବଶ୍ୟକ ଗୁଳ୍ମ ବଢ଼ିଯାଇଛି, ତାକୁ ପରିଷ୍କାର କରିବାରେ କାହାରି ଆପତ୍ତି ନାହିଁ । ସେଥିପାଇଁ ମାସିକ, ସାପ୍ତାହିକ ରାଶିଫଳ ଆଦି ନିଷ୍ପ୍ରୟୋଜନ ମନେ ହୋଇପାରେ କିନ୍ତୁ ବିବାହ ପ୍ରସଙ୍ଗରେ ଆଉ ଟିକିଏ ଚିନ୍ତା କରିବା କଥା : ରୂପ, ଗୁଣ, କୌଳୀନ୍ୟ ଆଦି ଯାହା ଆଖିକୁ ଦେଖାଯାଏ; ତା' ବାହାରେ, କ'ଣ ଆଉ କିଛି ବିଚାର୍ଯ୍ୟ ନୁହେଁ । ରକ୍ତଦୋଷ କିମ୍ୱା କୌଣସି ସୂକ୍ଷ୍ମରୋଗ ବିଷୟରେ ଆଗରୁ ଜଣାଯିବା ଉଚିତ ନୁହେଁ କି ? ସେହିପରି, ସୂକ୍ଷ୍ମାତିସୂକ୍ଷ୍ମ ଚେତନା ଭୂମିରେ ବ୍ୟକ୍ତିର ସ୍ୱଭାବ ଏବଂ ସ୍ୱଧର୍ମ ନିରୂପଣ କରୁଥିବା

କେତେଗୁଡ଼ିଏ ମୌଳିକ ପ୍ରଭାବ ବିଷୟରେ ଯଦି ଜ୍ୟୋତିଷଶାସ୍ତ୍ର କହୁଥାଏ ଏବଂ ଯଦି ବିବାହ କେବଳ ଦୈହିକ କିମ୍ବା ସାମାଜିକ ସମ୍ପର୍କରୁ ଅତିରିକ୍ତ କିଛି ବୋଲି ବିଶ୍ୱାସ କରାଯାଏ ତେବେ ଅତିସୂକ୍ଷ୍ମ ପର୍ଯ୍ୟାୟର ନିର୍ବିରୋଧ ଆତ୍ମିକ ସମ୍ପର୍କ ପାଇଁ ଗ୍ରହଚକ୍ର ବିଚାର ଅବାନ୍ତର ନ ହୋଇପାରେ ।

**ସାଧାରଣ ପକ୍ଷ**

ଉଭୟ ଯୁକ୍ତି ମନୋଯୋଗ ସହକାରେ ଶୁଣିସାରିଲା ପରେ ବିଚାରବନ୍ତ ବ୍ୟକ୍ତିଟିଏ କ'ଣ କରିପାରନ୍ତି ତା'ର ଦୁଇଟି ମାତ୍ର ଦୃଷ୍ଟାନ୍ତ ଦିଆଯାଉ । ଜ୍ୟୋତିଷ ଶାସ୍ତ୍ରରେ ଅତି ଧୁରୀଣ ପଣ୍ଡିତ ନିଜ ନାତିକୁ ସେହି ବିଦ୍ୟାରେ ପାରଙ୍ଗମ କରି ସାରି ଶେଷରେ ଉପଦେଶ ଦେଲେ, ''ଶାସ୍ତ୍ର ଅଧ୍ୟୟନରୁ ବିଚ୍ୟୁତ ହେବୁନାହିଁ । କିନ୍ତୁ ତୋର କିମ୍ବା ତୋର ପିଲାମାନଙ୍କର ଜନ୍ମକୁଣ୍ଡଳି କରିବୁ ନାହିଁ । ଗ୍ରହମାନେ ବଳଶାଳୀ ନିଶ୍ଚୟ; କିନ୍ତୁ ଯେ ସେମାନଙ୍କୁ କକ୍ଷପଥରେ ଘୂର୍ଣ୍ଣିତ କରୁଛି, ସେ ଅବଶ୍ୟ ବଳବତ୍ତର । ସର୍ବନିୟନ୍ତା ଉପରେ ବିଶ୍ୱାସ ରଖିଥିବୁ । ତୋ ପାଇଁ ଗ୍ରହଗଣନାର ପ୍ରୟୋଜନ ହେବନାହିଁ ।'' ଜଣେ ବିଶିଷ୍ଟ ଅଧ୍ୟାପକ ତାଙ୍କ ପୁଅର ବିବାହ ବେଳେ କହିଲେ 'ଜନ୍ମର ମୁହୂର୍ତ୍ତ ପରି ମୃତ୍ୟୁର ମୁହୂର୍ତ୍ତ ମଧ୍ୟ ନିର୍ଦ୍ଦିଷ୍ଟ ଏବଂ ଅପରିବର୍ତ୍ତନୀୟ । ଦୁଇଟି ଆତ୍ମାର ମିଳନ ମୁହୂର୍ତ୍ତ ଯଦି ସେହିଭଳି ନିର୍ଦ୍ଦିଷ୍ଟ ଏବଂ ତାହା ଗଣନା କରି କୁହାଯାଇପାରେ, ତାକୁ ଗ୍ରହଣ କରିନେଲେ କ୍ଷତି କ'ଣ ?'



# କିଞ୍ଚିତ୍ ଅନାବରଣ

ପ୍ରତିଦିନ ସକାଳୁ ଯାହାକୁ ଅଭିସଂପାତ ନ ଦେଲେ ମୋର ଦିନଚର୍ଯ୍ୟା ଆରମ୍ଭ ହୁଏନାହିଁ, କିମ୍ବା ତା'ର ବାସି ଅଳିଆ ମୋ ଦୁଆରେ ପକେଇ, ମୋତେ ଉତ୍ୟକ୍ତ ନକଲେ ତା'ର ରାତ୍ରିଭୋଜନ ପରିପାକ ହୁଏନାହିଁ, ସେ ମୋର ଅନିବାର୍ଯ୍ୟ ଦୁଷ୍ଟଗ୍ରହ, ମୋର ପଡ଼ୋଶୀ ପାକିସ୍ତାନ୍ । ଆମେ ପରସ୍ପରକୁ ନିପାତ କରିବା ପାଇଁ ଯୋଜନା କରୁ, କିନ୍ତୁ ଏକତ୍ର ଧ୍ୱଂସ ପାଇଯିବାର ଭୟରେ ତାକୁ କାର୍ଯ୍ୟକାରୀ କରୁନା । କିଛି ନକରି ସୁଦ୍ଧା ଭିତରେ ଅହରହ ଜଳୁଥିବା କ୍ରୋଧର ତପ୍ତ ନିଆଁରେ ଏବଂ ଈର୍ଷାରେ ଓ ଘୃଣାରେ ଆମେ ଜଳି ପାଉଁଶ ହୋଇଯିବା କଥା । କିନ୍ତୁ ଏଇ ଉତ୍ତାପ ହିଁ ଆମକୁ ବଞ୍ଚେଇ ରଖେ । କାହିଁକି ବଞ୍ଚିଛ ବୋଲି ପଚାରିଲେ ଆଉ କିଛି ଉତ୍ତର ହୁଏତ ମିଳେ ନାହିଁ; କେବଳ ପରସ୍ପରକୁ, ଯୁଦ୍ଧ ନୁହେଁ; ଏକ ଯୁଦ୍ଧକାଳୀନ ଉତ୍ତେଜନା ଓ ତତ୍ପରତା ଯୋଗାଇ ଦେଉ ବୋଲି ବଞ୍ଚିରହୁ । ଏପରି ଶତ୍ରୁଟିଏ ପାଚେରି ଆରପାଖେ ନଥିଲେ ବିତଣ୍ଡା ବିଗ୍ରହ, ପାଟିତୁଣ୍ଡ କଳି ତକରାଳ କେମିତି ସମ୍ଭବ ହୁଅନ୍ତା ଏବଂ ଖୋଲାଖୋଲି ଗାଳି ଫଜିତ୍ ନକରି କେମିତି ଏ ଭଦ୍ର ସମାଜରେ ବଞ୍ଚି ହୁଅନ୍ତା ?

ଶୁଣିଲି, ବୁଝିଲି । ମୁଁ କିନ୍ତୁ ଆପଣଙ୍କ ୩୨ ନମ୍ବର ପ୍ଲଟ୍‌ରୁ ଅବିଭାଜ୍ୟ ଅଥଚ ଅସହ୍ୟ ୩୩ ନମ୍ବର କଥା କହୁନାହିଁ । ମୁଁ କହୁଛି ୩୨ ଓ ୩୩ ମିଶିପାରିଲେ ୩୪ ନମ୍ବର ଶତ୍ରୁକଥା; ଯଦି ୩୪ ବି ମିଶିଯାଏ ତେବେ ୩୫ କଥା । ମୁଁ କହୁନାହିଁ ୩୩ ସାଙ୍ଗରେ ସବୁ ଭୁଲିଯାଇ ମିତ୍ରପଣ କରନ୍ତୁ । ମୁଁ ବରଂ କହୁଛି, ଅମିତ୍ରପଣକୁ ଧାପେ ଘୁଞ୍ଚେଇ ଦେବାକୁ । ଅମିତ୍ରପଣର ସରହଦ ଘୁଞ୍ଚିଗଲେ, ପାଚେରି ଏପାଖେ ମିତ୍ରପଣ ନହେଲେ ନାହିଁ, ବୈରୀପଣ ନ ରହିବ ନାହିଁ । କାରଣ ସବୁ ଗୋଳାବାରୁଦ ନୂଆ ସୀମାନ୍ତକୁ ଘୁଞ୍ଚିଯିବାକୁ ବାଧ୍ୟ । ଘୁଞ୍ଚିବା ପ୍ରକ୍ରିୟା ଦେଶ ମହାଦେଶ ମଧ୍ୟ ପାରି ହୋଇଯିବାର ସମ୍ଭାବନା ଅଛି । ସୀମାରେଖା ଥାଏ ମାନଚିତ୍ରରେ, ମାନଚିତ୍ର ଥାଏ ମନରେ । ମନକୁ ରେଖା ଲିଭିଗଲେ ମାନଚିତ୍ର ଲିଭିଯାଏ । ମାନଚିତ୍ରରୁ ଲିଭିଗଲେ ବର୍ଲିନ୍ ପ୍ରାଚୀର ପରି ଭୂଇଁ ଉପରୁ ଲିଭିଯାଏ। ବର୍ତ୍ତୁଳା ପୃଥିବୀ ଉପରେ ସୀମାରେଖା ନାହିଁ । ଅଥଚ ଯେକୌଣସି ଗ୍ରୀନ୍‌ୱିଚ୍ ସହର ଉପରେ ମେରୁରୁ ମେରୁକୁ ଲମ୍ବିଥିବା ଶୂନ୍ୟ ଦ୍ରାଘିମାଟିଏ ଆରୋପ କରାଯାଇପାରେ। ସେହିପରି ଆରୋପ କରାଯାଇପାରେ

ଶୂନ୍ୟ ଅକ୍ଷାଂଶଟିଏ ବା ବିଷୁବ ରେଖାଟିଏ । ଶହେଅଶୀ ଅକ୍ଷାଂଶ ଓ ତିନିଶହ ଷାଠିଏ ଦ୍ରାଘିମାରେ ପୃଥିବୀଟିକୁ ବିଭାଜିତ ନକଲେ ଆମେ ତା'ର ବର୍ତ୍ତୁଳ ବିସ୍ତାରକୁ ବୁଝିପାରୁନା । ସୀମାରେଖାଗୁଡ଼ିକ ମନୋଭୂମିରୁ ଲିଭିଗଲେ ଆମକୁ ଅସ୍ୱସ୍ତି ଲାଗେ, ଅସହାୟ, ଅସହଜ ଲାଗେ, ଏକ ପ୍ରକାର ଅସୁରକ୍ଷିତ ମହାଶୂନ୍ୟରେ ହଜିଗଲା ପରି ଲାଗେ । ଭାଗ୍ୟକୁ ଅକ୍ଷାଂଶ ଦ୍ରାଘିମାର କଳ୍ପିତ ଜାଲ ଭିତରେ ପୃଥିବୀ ଧରାପଡ଼ିଛି; ନିର୍ଦ୍ଦିଷ୍ଟ କକ୍ଷରେଖାରେ ଗତି କରୁଛି; ଦିନରାତି ବାରି ହୋଇପାରୁଛି; ମହାଦେଶ ମହାସମୁଦ୍ରମାନଙ୍କୁ ମାନଚିତ୍ରରେ ସ୍ଥିର ଆକୃତି ଭିତରେ ସୀମିତ ରଖାଯାଇ ପାରୁଛି । ଦେଶ ପ୍ରଦେଶର ସୀମା ଭୂମିରେ ନଥିଲେ ସୁଦ୍ଧା, ମାନଚିତ୍ରରେ ଓ ମନରେ ଅତ୍ୟନ୍ତ ସ୍ପଷ୍ଟ ରହିପାରୁଛି । ଆପଣଙ୍କ ୩୨ ନମ୍ବର ପ୍ଲଟ୍ ସୀମାରେ ୩୩ ନମ୍ବର ପ୍ଲଟ୍‌ର ଅଧିବାସୀ ଅଶୁଭଦର୍ଶନ ପଡ଼ୋଶୀଟି ତା'ର ଚିରାଚରିତ ଭୂମିକା ନିଷ୍ଠାର ସହିତ ନିର୍ବାହ କରି ଚାଲିଛି ବୋଲି ଯେତେ ଉତ୍ତେଜିତ ଓ ଅପ୍ରୀତିକର ହେଉପଛେ ଆପଣ ସ୍ଥିର ଭୂମିରେ ଆପଣଙ୍କ ପରିସ୍ଥିତିକୁ ସ୍ୱାଭାବିକ ମନେକରି ପାରୁଛନ୍ତି । 'ସ୍ୱାଭାବିକ'ର ଅର୍ଥ ହେଲା, ଆଉ ସହସ୍ରେ ସାମାଜିକ ପ୍ରା଼ ଭଳି ଅପରିହାର୍ଯ୍ୟ ପଡ଼ୋଶୀର ଆଞ୍ଚୁଡ଼ା ଖାଇ ରକ୍ତାକ୍ତ ହେବା, ତା'ର ଅମିତ୍ର ଦୃଷ୍ଟିରେ ଅହରହ ଭାଜି ହେବା, ଉତ୍ୟକ୍ତ ହୋଇ ବାକ୍ୟରେ, ଆଚରଣରେ ଅସଂଯତ ଅଶାଳୀନ ହେବା, ଉଦ୍‌ବିଗ୍ନ ହୋଇ ନିଷ୍ଫଳ କ୍ରୋଧରେ ପ୍ରତିହିଂସାପରାୟଣ, ଈର୍ଷାପରାୟଣ ଓ ହତ୍ୟାପ୍ରବଣ ହେବା ଆଦି ସମସ୍ତ ପ୍ରକାର ଅସ୍ୱାଭାବିକ ଲକ୍ଷଣଯୁକ୍ତ ଏକ ବିଡ଼ମ୍ବନାପୂର୍ଣ୍ଣ, ହାସ୍ୟାସ୍ପଦ ଓ କରୁଣ ଜୀବନକୁ ଦୁରାରୋଗ୍ୟ ବ୍ୟାଧି ସହିଲା ପରି ସହିଯିବା।

ଟିକିଏ ସ୍ଥିର ମନରେ ଚିନ୍ତା କଲେ ବୁଝିହେବ ଯେ ଆପଣଙ୍କ ପଡ଼ୋଶୀଟି ମଧ୍ୟ ଆପଣଙ୍କ ପରି ପ୍ରତିବୋଶୀ-ପ୍ରପୀଡ଼ିତ ଦୁଃସ୍ଥ ଦୁଖ-ଜର୍ଜର ପ୍ରାଣୀଟିଏ । ସେ ମଧ୍ୟ ପ୍ରତିଦିନ ଆପଣଙ୍କ ପରି ସ୍ନାୟବିକ ଉତ୍ତେଜନା ଭୋଗ କରୁଛି । ମୋଟ ଉପରେ ଆପଣ ଉଭୟେ ସକାଳୁ ଘର ଅଳିଆ ଦାଣ୍ଡକୁ ପକେଇଥାନ୍ତି । କାହିଁକି ଘର ଭିତର ସଫା ରଖିବାକୁ ଆପଣ ଦାଣ୍ଡଟିକୁ ଅସନା କରିବାକୁ ଏକରକମ ବାଧ୍ୟ ହୁଅନ୍ତି ତାହା ମହେଞ୍ଜୋଦାରୋ ଅମଳରୁ ଅଦ୍ୟାବଧି ଆଚରିତ ଏକ ପୁରୁଷାନୁକ୍ରମିକ ଅଭ୍ୟାସର ପରିଣାମ ଅଭ୍ୟାସ । ମଇଳାକୁ ନେଇ କ'ଣ କରିହେବ ଶିଖୁଶିଖୁ ମଣିଷ କ୍ରମଶଃ ସଭ୍ୟ ହେବା ଶିଖିଲା । କିନ୍ତୁ କିଛି କିଛି ଅଳିଆକୁ ସେ ଏମିତି ଆଦିମ ଅଭ୍ୟାସରେ ସାର୍ବଜନୀନ ରାସ୍ତା ଉପରକୁ ଏବେ ବି ପକେଇ ଦିଏ – ଆପଣ, ଆପଣଙ୍କ ପଡ଼ୋଶୀ, ଆଉ ଯେଉଁ ସାହିବାଲା ପ୍ରାୟ ଏ ଅଞ୍ଚଳର ସମସ୍ତେ ସେଇଆ କରନ୍ତି । ଆଣବିକ ମଇଳାକୁ ସାତ ହଜାର ମାଇଲ ଜାହାଜରେ ବୋହି ଆଣି ଆଉ କାହା ଉପକୂଳରେ ଅଜାଡ଼ିଦେବା ବି ସେଇ ପର୍ଯ୍ୟାୟର ଅସଭ୍ୟ ଆଦିମ ଅଭ୍ୟାସ । ଆପଣ ଜାଣିଶୁଣି ଆପଣଙ୍କ ଅଳିଆ

ପଡ଼ୋଶୀ ଦୁଆରେ ପକାନ୍ତି ନାହିଁ, ସେ ମଧ୍ୟ ସେହିପରି ଆପଣଙ୍କ ଦୁଆରେ ପକାନ୍ତି ନାହିଁ । ବେଳେବେଳେ ଲାଖ ଟିକିଏ ବଙ୍କା ହୋଇଯାଏ, କିମ୍ବା ପବନ ଦୁଷ୍ଟାମି କରି ଉଡ଼ାଇ ନିଏ ଆଉ ଆପଣଙ୍କ ସଦା ପ୍ରସ୍ତୁତ ବାରୁଦ ଘରେ ନିଆଁ ଲାଛିଦିଏ । ତେଣିକି ପଡ଼ୋଶୀସୁଲଭ ଅକୃପଣ ଗାଳିଗୁଳି ବର୍ଷା । ସେଇ ବିସ୍ଫୋରକ ବାକ୍ୟୁଦ୍ଧ ବେଳେ ହୁଏତ ଶୁଣିବାକୁ ମିଳେ ଅଳିଆ ତ ମୁଁ ଅଲବତ୍ ଫିଙ୍ଗିବି । ଦାଣ୍ଡରେ ପଡୁ କି ତୋ ମୁଣ୍ଡରେ ପଡୁ । ଆଉ ଶୁଣିବାକୁ ମିଳେ ଅଳିଆ ଫିଙ୍ଗିବୁ ତୁ, ଆଉ ସଫା କରିବି ମୁଁ । ନା ବେ ?

ଏହା ଦୈନନ୍ଦିନ ପାଲାର ଘୋଷା ପଦ ହେଲେ ବି ଦିନେ ହୁଏତ ଭାଗ୍ୟ-ବଶାତ୍ ଜଣକ ତୁଣ୍ଡରୁ ବାହାରି ଯାଏ। ଅଳିଆ ତ ପଡ଼ିବ, ହେଲେ ଦାଣ୍ଡରୁ ଅଳିଆ କାଢ଼ିବା କ'ଣ ଆମ କାମ ?' 'ଆମ' ଶବ୍ଦଟି ଉଚ୍ଚାରିତ ହୋଇଯିବା ମାତ୍ରେ ବିପକ୍ଷ ରେଖା ଘୁଞ୍ଚିଯାଏ । ସବୁ ପ୍ଲଟ୍ ସବୁ ସାହିର ସବୁ ପଡ଼ୋଶୀମାନେ ପ୍ରତିପକ୍ଷ ନହୋଇ ସ୍ୱପକ୍ଷ ହୋଇ ଠିଆ ହୋଇଯାନ୍ତି । 'ନଗରପାଳିକା' ନାମଧେୟ ଏକ ସାର୍ବଜନୀନ ପ୍ରତିପକ୍ଷ ସୀମାରେ ଏମାନଙ୍କର ସମସ୍ତ କମାଣ ସଜ୍ଜିତ ହୋଇଯାଏ । କିଏ କହେ ମୁଁ ସେ ନଗରପାଳକୁ ଜାଣେ, ଆଉ କିଏ କହେ ମୁଁ ଯନ୍ତ୍ରୀକୁ ଜାଣେ, ମନ୍ତ୍ରୀକୁ ଜାଣେ, କାଲି ସବୁ ସାହିର ସବୁ ଅଳିଆ ଉଠିଯିବ । ନ ଉଠିଲେ ମୁକାବିଲା ହେବ, ଆନ୍ଦୋଳନ ହେବ, ସଂଗ୍ରାମ ହେବ, କଚେରି ଅଦାଲତ ହେବ ! ସମସ୍ତଙ୍କ ଯୋଦ୍ଧାପଣ ଏକତ୍ର ହୋଇଗଲେ ସମସ୍ତଙ୍କ ଦାଣ୍ଡରୁ ସବୁ ଅଳିଆ ଅବଶ୍ୟ ଉଠିଯିବ । ସେଇ କ୍ରମରେ ହୁଏତ ସବୁ ରାସ୍ତାର ଖାଲଖଣା ସମତୁଲ ହୋଇଯିବ । ସବୁ ନାଳ ନର୍ଦ୍ଦମା, ସବୁ ଅପରିଚ୍ଛନ୍ନତା ଧୋଇ ହୋଇଯିବ । ସେଇ ପରିମାଣରେ ହୁଏତ ପରିଚ୍ଛନ୍ନ ହୋଇଯିବ ଆଚରଣ, ଉଚ୍ଚାରଣ, ଚଳପ୍ରଚଳ ହେଉଥିବା ଯାନବାହନ ।

'ଆମେ' ଶବ୍ଦଟି ଯଦି ନିରନ୍ଧ୍ର, ଆପଣାପଣରେ ସମର୍ଥ ଏବଂ ଅତୁଟ ସୂକ୍ଷ୍ମ ଭାବତନ୍ତୁରେ ପରିଶିନିତ ହୋଇଯାଏ, ତା'ହେଲେ ବହୁ ବ୍ୟାପକ ଓ ଦୁର୍ଜୟ ଭୂମିରେ ମଧ୍ୟ ଜୟଲାଭ କରାଯାଇପାରେ । ଦାଣ୍ଡରୁ ଆବର୍ଜନା ଘୁଞ୍ଚିଗଲାପରି ଦପ୍ତରମାନଙ୍କରୁ ବହୁ କାଳରୁ ଗଦା ହୋଇଥିବା ଅଳିଆ ବାବୁମାନଙ୍କ ଟେବୁଲ ଉପରୁ, ତଳୁ ନଥିପତ୍ରରୁ, ତାଙ୍କ ମୁଣ୍ଡରୁ, ବୁକୁରୁ, ମନରୁ, ଅନେକ ଅଳନ୍ଧୁ; ପ୍ରଶାସନର ସରଣୀରେ ବହୁ ବର୍ଜ୍ଜନୀୟ ଗଣ୍ଠି, ବାଙ୍କ; ଚକରେ ବହୁ ପୁରୁଣା କଳଙ୍କି; କଥାରେ, କାମରେ ଅସ୍ୱଚ୍ଛତା, ଅସାଧୁତା; ଗୁମୁଟ ଘରେ, କନ୍ଦିମାନଙ୍କରେ, କୋଣମାନଙ୍କରେ ସଂକୀର୍ଣ୍ଣତା ଓ ଅନ୍ଧାର ସହିତ ସାଲିସ୍ କରି କରି ଦୃଷ୍ଟିରେ ଅନ୍ଧାରକଣା ଚୁଗ୍‌ଣତା, ଅପ୍ରସାରଶିଳତା; – ଛନ୍ଦାବନ୍ଧା, କାଇଦା କଟକଣା, ଛକାପଞ୍ଝା ଭିତରେ ରହି ରହି ପରସ୍ପର ପ୍ରତି ଭୟ ସନ୍ଦେହ, ଦ୍ୱେଷ,

ଘୃଣା, ଈର୍ଷାର ପୁରୁଣା ଆଲକାତରା ଭଳି ସ୍ତରସ୍ତର ପ୍ରଲେପ-ସବୁ ଦୂର ହୋଇଯାଇପାରେ ।

ନ୍ୟୂନତମ ଜୀବଧର୍ମରେ ବଞ୍ଚୁଥିବା ମଣିଷ ସ୍ୱାର୍ଥର ଖୋଳ ବୋହି ବିଚରଣ କରୁଥିବା ଗେଣ୍ଡାଟିଏ । ସେତିକିବେଳେ ସେ 'ମୁଁ' ବୋଲି ଗୋଟାଏ ଅନୁଭବକୁ ଯଥେଷ୍ଟ ବୋଲି ମନେକରେ । 'ମୁଁ ଖାଇବି, ମୁଁ ଭୋଗିବି, ମୁଁ ବଞ୍ଚିବି' ଭଳି ପ୍ରବୃତ୍ତିରେ ପରିଚାଳିତ ହୋଇଥାଏ । ସେଇ ଜୀବନଧର୍ମରେ ନିଜର ଅବୟବମାନଙ୍କୁ ସ୍ୱୀକାର କଲା ଭଳି, ନିଜର ପୁତ୍ରକନ୍ୟା ପରିବାର ସ୍ୱଜନମାନଙ୍କୁ ମଧ୍ୟ ନିଜର ଖୋଳ ଭିତରେ ସ୍ୱୀକାର କରେ । ତଥାପି ସେ ଯୌଥ ସ୍ୱାର୍ଥରେ 'ମୁଁ' ମାତ୍ରା ଶହେରେ ଅନେଶତ । ଅଂଶେକ ମାତ୍ର ସେ ବାଣ୍ଟିଥାଏ, ସେଇ 'ମୁଁ'ର ପୁଷ୍ଟି ସାଧନ ପାଇଁ ।

ଆଦିମ ଜୀବଧର୍ମରୁ ବିକଶିତ ହେଲେ ଯେ କ୍ରମଶଃ ଅନ୍ୟକୁ ବୁଝିବା ଶିଖେ । ସେତିକିବେଳେ, ସେ ବୁଝେ ଦୁଃଖ କ'ଣ, ଦାରିଦ୍ର୍ୟ କ'ଣ । ଏଣୁ 'ମୁଁ' କୁ 'ମୁଁ'ରେ ଯୁଝିବାକୁ ନଦେଇ ସେ କହେ, ଚାଲ ସେ ଭୋକିଲା ପିଲାକୁ ଖାଇବାକୁ ଦେବା, ଏଇ ସାମାନ୍ୟ ଆହ୍ୱାନ ଅଭିଯାନରେ ପରିଣତ ହୋଇଯାଇପାରେ । ସହର ତଳିରୁ ମଳିନବସ୍ତ୍ର ଓ ଅପରିଚ୍ଛନ୍ନ ଜୀବନ, ନଗ୍ନତା ଓ ନିରନ୍ନତା ଭୋକ, ଅସହାୟତା ଓ ଅପରାଧ ପୋଛି ହୋଇଯାଇପାରେ । ସବୁ ସହରର ସବୁ ରୁଗ୍‌ଣ ଉପାନ୍ତପରି ସାରା ଦେଶର ଭୟାବହ ଦାରିଦ୍ର୍ୟ-ଦାନବ ପ୍ରତିହତ ଓ ପରାସ୍ତ ହୋଇପାରେ । କିନ୍ତ, ଲଢ଼େଇ ଦିନକର ନୁହେଁ କି ଜଣକର ନୁହେଁ । କେହି ଚାହେଁ ନାହିଁ ଦରିଦ୍ର ହେବାକୁ, କିନ୍ତୁ ଆଉ ଜଣେ ଦରିଦ୍ର ହୋଇଗଲେ ଯେ ବ୍ୟଥିତ ବା ଚିନ୍ତିତ ହୁଏନାହିଁ – ରୋଗ, ଶୋକ, ଜରା ମୃତ୍ୟୁ ଦେଖି କ୍ୱଚିତ୍ ରାଜପୁତ୍ର ଦୁଃଖର ନିରାକରଣ ପାଇଁ ସନ୍ନ୍ୟାସ ବରଣ କରିଥାନ୍ତି । ଅଧିକାଂଶ ଅନ୍ୟକୁ ଦେଖନ୍ତି ନାହିଁ, ଦେଖିଲେ ସୁଦ୍ଧା ସମ୍ବେଦନାରେ ବିଚଳିତ ହୁଅନ୍ତି ନାହିଁ । ବିଚଳିତ ହେଲେ ସୁଦ୍ଧା ତା'ର ଦୁଃଖ ଦୂର କରିବାକୁ ପ୍ରବୃତ୍ତ ହୁଅନ୍ତି ନାହିଁ।

ବରଂ ତାଙ୍କ ଭିତରୁ ଚତୁରମାନେ କହିବା ଶୁଣାଯାଏ, ଏ ଦେଶର ଦୁଃଖ ଦୁର୍ଦ୍ଦଶାରେ ଦେଖନ୍ତୁ କିପରି ମୋ ଆଖିରୁ ଲୁହ ଶୁଖୁନାହିଁ । ଦେଖନ୍ତୁ କିପରି ମୁଁ ଆହାର ନିଦ୍ରା ଛାଡ଼ି ସାରିଛି । ମୁଁ ରାଜରାସ୍ତାରେ ଅନଶନ କରିବି । ସମସ୍ତେ ମୋ ସହିତ ସହଯୋଗ କରନ୍ତୁ । ଭୋକିଲା ପିଲାକୁ ଆହାର ଯୋଗାଇବା ସକାଶେ ସ୍ୱାର୍ଥତ୍ୟାଗ କରନ୍ତୁ, ଧନ୍ୟବାଦ କରନ୍ତୁ । ଶେଠଙ୍କଠୁ ଶଠଙ୍କଠୁ ସରକାରଙ୍କଠୁ ଅନୁଦାନ ଆଣନ୍ତୁ । ତେଣିକି ସବୁ ଦାୟିତ୍ୱ ମୋର । ମୁଁ ବାଣ୍ଟି ଚାଲିଥିବି, ଆପଣ ଯୋଗାଇ ଚାଲିଥିବେ । ଏହା କେତେ କାଳ ଚାଲିବ ମୁଁ କହିପାରୁନାହିଁ । କିନ୍ତୁ ମୋର ବି ଗୋଟାଏ ସୀମା ଅଛି । ମୋର ସବୁ ଘଟଣା ପରିପୂର୍ଣ୍ଣ ହୋଇଗଲେ, ମୁଁ ଦେଶ ସେବାରୁ ସନ୍ନ୍ୟାସ

ନେଇଯାଇପାରେ । ମୁଁ କିନ୍ତୁ ଶପଥ କରି କହୁଛି ଯେ ଦେଶକୁ ଯେଉଁ ଅବସ୍ଥାରେ ମୁଁ ଦେଖିଥିଲି, ଠିକ୍ ସେହି ଅବସ୍ଥାରେ ଆପଣଙ୍କ ପାଇଁ ଛାଡ଼ିଯିବି । ସେଇ ଦୁଃଖ ଦୁର୍ଦ୍ଦଶା, ସେଇ ଦାରିଦ୍ର୍ୟକୁ ମୁଁ ପାଳନ କରି ପରିବର୍ଦ୍ଧିତ କରି ଦେଇଯିବି, ଆପଣଙ୍କ ପାଇଁ ଆହୁରି ଅଧିକ ସେବା କରିବାର ସୁଯୋଗ ସୃଷ୍ଟି କରି ଚାଲିଯିବି । ତେଣିକି ଆପଣଙ୍କ ସହିତ ମୋର ଦେଖା ହେବନାହିଁ, କି ଦାରିଦ୍ର୍ୟ ସହିତ ମଧ୍ୟ ଦେଖା ହେବନାହିଁ ।

ସେହିପରି ଏ ଚତୁର ବ୍ୟକ୍ତିମାନେ ଗୋଷ୍ଠୀମାନଙ୍କୁ ଆୟୁଧ କରି ନିଜ ପାଇଁ ବହୁ ବିସ୍ତୃତ ଭୂମି ଜୟ କରି ଚାଲିଥାନ୍ତି । ହରିଜନ ଗିରିଜନଙ୍କୁ ଉଦ୍ଧରି ଆଣିବାକୁ ବ୍ୟାପକ ଯୋଜନା ଓ ବିପୁଳ ଅର୍ଥର ପ୍ରୟୋଜନ ହୁଏ ଏବଂ ପାଞ୍ଚ ବର୍ଷରେ ଦଶ ବର୍ଷରେ ସେମାନଙ୍କୁ ସେଇଠି ଆବିଷ୍କାର କରାଯାଏ । ଯେଉଁଠି ସେମାନେ ଥିଲେ; ଥାକ ଥାକ ହୋଇ ଚତୁର ମଣିଷମାନେ ସେମାନଙ୍କୁ ଯତ୍ନ ସହକାରେ ପୂର୍ବବତ୍ ସଂରକ୍ଷିତ ରଖି ଚାଲିଯାନ୍ତି । ନିଜକୁ ତଦପେକ୍ଷା ଅଧିକ ଯତ୍ନ ସହଜରେ ସଂରକ୍ଷିତ, ପରିପୁଷ୍ଟ ଓ ସବୁମନ୍ତେ ସମୃଦ୍ଧ କରି ଓହରିଯାନ୍ତି । ପ୍ରାୟ ଜୋକ ଭଳି । ଲାଗିଗଲେ ଭିଡ଼ି ହୁଏ ନାହିଁ, କିନ୍ତୁ ସବୁ ତନ୍ତୁରେ ପରାଙ୍ଗରକ୍ତ ଭରିଗଲେ, ମନକୁ ଝଡ଼ିପଡ଼େ ।

ଯେଉଁ ଯେଉଁ ସୀମାନ୍ତରେ ସେମାନେ ଜଗି ରହନ୍ତି ଯେ ସବୁ ଗୁରୁତ୍ୱପୂର୍ଣ୍ଣ । ଯେଉଁ ଶତ୍ରୁକୁ ଚିହ୍ନଟ କରନ୍ତି ସେ ସବୁ ଜନସମୂହର ଶତ୍ରୁ । ଯୁଦ୍ଧ ପାଇଁ ଡାକରା, ଯୁଦ୍ଧ ପାଇଁ ପ୍ରସ୍ତୁତ ସବୁ ଷୋଳଅଣା ଖାଣ୍ଟି। 'ଆସନ୍ତୁ ଅଶିକ୍ଷା କୁଶିକ୍ଷା ଦୂର କରିବା, ଆସନ୍ତୁ ବାତ୍ୟା ବନ୍ୟା ମରୁଡ଼ି ମୁକାବିଲା କରିବା, ଆସନ୍ତୁ ହତ୍ୟା, ହିଂସା, ଆତଙ୍କ ଲୋପ କରିବା, ମିଥ୍ୟାଚାର, କପଟାଚାର, ଦୁରାଚାର, ଦୁର୍ନୀତି ନିର୍ମଳ କରିବା' – ଶୁଣିଲେ କିଏ ବା ପ୍ରଭାବିତ ନହେବ, କିଏ ସହଯୋଗ ନ କରିବ ? ସେଇଠି କିନ୍ତୁ ଭାଗ ବଣ୍ଟା ହୋଇଯାଏ । ଘିଅ ପାଣିରେ ଘିଅ ଅଜାଡ଼ନ୍ତୁ ଓ ଅଜାଡ଼ି ଚାଲିଥାନ୍ତୁ ଆପଣ ଅର୍ଥାତ୍ ଯେତେ ଦେଶଭକ୍ତ ବ୍ୟକ୍ତି, ଅନୁଷ୍ଠାନ, ସରକାର । ଦୀପ ସାଜିବୁ ଆମେ, ଯେତେସବୁ ବଛା ବଛା ଦେଶ ସେବକ, ମୋହରମରା, ସଚ୍ଚୋଟ, ରୋଟମୋଟ, ସିହାଣ ଆବାଲା ଦୀପରେ ବତି ରହିବ କି ନାହିଁ, ବତିରେ ନିଆଁ ଲାଗିବ କି ନାହିଁ, ଲାଗିଲେ କେତେ ଘିଅ ସରିବ... ହାତରେ କେତେ ଚିକ୍କଣ ଲାଗିବ– ବତି ଜଳିଲେ ଆଲୁଅ ହେବ, ଆଲୁଅ ହେଲେ ପାଖଆଖ ସବୁ ଦିଶିବ; ଦିଶିଲେ ଅସୁବିଧା ହେବ, ଏସବୁ ଜଞ୍ଜାଳ ସମ୍ଭାଳିବାକୁ ଆମେ ଅଛୁ । ଆମେ ଆପଣଙ୍କୁ ନିର୍ଭର ଜବାବ୍ ଦେଇପାରୁ ଯେ ପାଣିକୁ କେବେ ବି ଉଚ୍ଛୁଳିବାକୁ ଦେବୁନାହିଁ । ପାଣି ପାତ୍ରକୁ ଖାଲି ରଖିବା ଦାୟିତ୍ୱ ଆମର। ଘିଅ କେବଳ ଦୀପ ଜାଳିବାରେ ଖର୍ଚ୍ଚ କରିବା ତ ସାଧାରଣ କଥା । ଆଉ କ'ଣ ସବୁ ବିବିଧ ଉପାୟରେ ତାକୁ ବିନିଯୋଗ କରାଯାଇପାରେ ତାକୁ ଆବିଷ୍କାର କରିବା ଅସାଧାରଣ

ବୁଦ୍ଧିର କାର୍ଯ୍ୟ । ଏଣୁ ଆଉ କାହାକୁ ହଇରାଣ ନକରି ଆମେ ନିଜେ ସେ ଦୁରୂହ କାର୍ଯ୍ୟ ସମ୍ପାଦନ କରିବୁ । ଏହାର ପରିଣାମ ସ୍ୱରୂପ ବଡ଼ ଦେଉଳିଆ ମାଟି ଦୀପାଳୀଟିଏ ହୁଏତ ସଜିଲ୍ ହୁଏ – ଫଟଉଠେ, ଭାଷଣ ହୁଏ, କରତାଳିରେ ସମର୍ଥନ ହୁଏ । କିନ୍ତୁ ପାଞ୍ଚବର୍ଷ ଯାଏ ଅହରହ ଘିଅ ପାଣ୍ଠିକୁ ଘିଅ ଯୋଗାଇବା ପରେ ଦୀପ ଜଳେ ନାହିଁ । ଏବଂ ଘିଅ ବଣ୍ଟାର ଦଳାଚକଟା ଭିତରେ ସେ ଦୀପାଳୀଟି ହଜିଯାଏ । ତାକୁ ଖୋଜି ଠାବ କରିବାକୁ ତିନିଜଣିଆ କମିଶନ ବସେଇ ଦେଇ ସେମାନେ ଓହରି ଯାଆନ୍ତି । ଅବିକଳ ସେହି ଢ଼ଙ୍ଗରେ ଅଶିକ୍ଷା, କୁଶିକ୍ଷା ଯେଉଁଠି ଥିଲା ସେଇଠି ରହିଯାଏ । ବନ୍ୟା, ବାତ୍ୟା, ମରୁଡ଼ିର ରୁକ୍ଷ ପାଦଚିହ୍ନ ଅମ୍ଳାନ ରହିଯାଏ, ଦୁରାଚାର, ଦୁର୍ନୀତି, ହିଂସା, ହତ୍ୟା, ଆତଙ୍କ ଆଦି ଶବ୍ଦର ପରିଭାଷା ସ୍ଥିର କରିବାକୁ, ବିଜ୍ଞଜନମାନେ ଷାଠିଏଟି ମାସିକ ଅଧିବେଶନ ପରେ ସବୁ ଅପୂର୍ଣ୍ଣ ଛାଡ଼ି ଦେଇଯାନ୍ତି, ଅଧିକ ଗବେଷଣା ପାଇଁ ।

ଗୋଷ୍ଠୀକୁ ବ୍ୟଷ୍ଟିସ୍ୱାର୍ଥରେ ବ୍ୟବହାର କରି ଜାଣିବା ଏକ ଅସାମାନ୍ୟ କୌଶଳ । ଆଲେକଜାଣ୍ଡରକୁ ଦିଗ୍‌ବିଜୟୀ ସମ୍ରାଟ କରିବା ଓ ତା'ର ଗୌରବରେ ଗର୍ବିତ ହେବା ମାସିଡ଼ନ୍ ଅଧିବାସୀଙ୍କ ପାଇଁ ଯେତିକି ସ୍ୱାଭାବିକ ଥିଲା ଏବଂ ରାଜତନ୍ତ୍ରରେ ବ୍ୟକ୍ତିପ୍ରଧାନ ଯେତେ ଅନିବାର୍ଯ୍ୟ ଥିଲା ତାହା ଏକ ସାଧାରଣତନ୍ତ୍ରରେ ଜନମତଭିତ୍ତିକ ବ୍ୟବସ୍ଥାରେ ଅନ୍ୟରୂପରେ ପ୍ରକାଶିତ ହେଲେ ହେଁ କୌଣସି ଦୃଷ୍ଟିରୁ କମ୍ ସ୍ୱାଭାବିକ ବା କମ୍ ଅନିବାର୍ଯ୍ୟ ନୁହେଁ । ବରଂ ସେହି ବ୍ୟକ୍ତିଟିର ନିର୍ଦ୍ଦିଷ୍ଟ ପରିଚୟ ନଥିବା ହେତୁରୁ ଖୁବ୍ ଗୋଟାଏ କଟକଣା ଦୂର ହୋଇଯାଇଛି । ଗୋଠ ଭିତରୁ ଯେ କେହି ଅନ୍ୟମାନଙ୍କୁ ଠେଲି ଆଗକୁ ଚାଲିଆସିଲା ସେ ହିଁ ଧ୍ୱଜାଧାରୀ । 'ଜୋ ଜିତା ସୋ ସିକନ୍ଦର ।' ସେ ସମସ୍ତଙ୍କୁ ଦଳି ଚକଟି ଆଗକୁ ଉଭାରି ନ ଆସିଲେ ସବୁ ବାଡ଼, ବନ୍ଧ, ମର୍ଯ୍ୟାଦା, ସମ୍ଭ୍ରମ, ଲଂଘନ ନକଲେ ସେ ଗୋଷ୍ଠୀଟିକୁ ମାହୁନ୍ତ ମାର୍ଗେ ଅଂକୁଶ ମାରି ନିଜ ମର୍ଜି ଉପରେ ଚଳେଇ ପାରିବନାହିଁ । ଏଥିପାଇଁ ସାହିତ୍ୟ, ସଂସ୍କୃତି, ଧର୍ମ ଦର୍ଶନ ଆଦି କ୍ଷେତ୍ରରେ କ୍ରମଶଃ ଆଗଧାଡ଼ି ସକାଶେ ପ୍ରବଳ ଭିଡ଼ ବଢ଼ିଚାଲିଛି । ସେଇଠୁ ଉଚ୍ଚସ୍ୱରରେ କେହି ଜଣେ କହିବାର ଶୁଣାଯାଉଛି ଓ ଧିଣ୍ଡୁରା ପିଟିବାର ମଧ୍ୟ ଶୁଣାଯାଉଛି –

ମୁଁ ଜାଣେ ମୋର ପ୍ରିୟ ଦେଶବାସୀ ମୋତେ ଚିହ୍ନିପାରିବେ ନାହିଁ । ସେମାନେ ଭବଭୂତିଙ୍କୁ ଚିହ୍ନିଥିଲେ ନା ଶ୍ରୀକୃଷ୍ଣଙ୍କୁ ତାଙ୍କ ଜୀବଦ୍ଦଶାରେ ଚିହ୍ନିଥିଲେ ? କିନ୍ତୁ ମୁଁ ଜାଣେ ଏ ବିପୁଳା ପୃଥିବୀରେ ମୋର ସମାନଧର୍ମାଙ୍କର ଅଭାବ ନାହିଁ । ସେମାନେ ବୁଝିବେ ମୋର କାଳଜୟୀ କାବ୍ୟକୃତି । ପୃଥିବୀର ତିନିଶହ ସତୁରି ଭାଷାରେ ସେମାନେ ତାକୁ ସମ୍ପାଦି ରଖିବେ । ମୁଁ ଯେତେ ବାରଣ କଲେ ସୁଦ୍ଧା ସେମାନେ ଷ୍ଟକ୍‌ହୋମ୍‌ରେ ମୋତେ ମୁକୁଟ ପିନ୍ଧେଇ ଦେବେ । ମୁଁ ମୋ ପାଇଁ ନୁହେଁ, ମୋର ସାରସ୍ୱତ ପୂର୍ବ

ପୁରୁଷ ଓ ଅଗଣିତ ଉତ୍ତରଦାୟାଦମାନଙ୍କ ତରଫରୁ ସେ ସମ୍ମାନକୁ ସବିନୟ ସ୍ୱୀକାର କରିବି । ତଦ୍ୱାରା ମୋ ସାହିତ୍ୟର ମୁଖ ଉଜ୍ଜ୍ୱଳ ହୋଇ ରହିବ ଆଗାମୀ ପାଞ୍ଚଶହ ବର୍ଷଯାଏ । ମୁଁ କେବଳ ସାଶ୍ରୁନୟନରେ ମୋର ଦେଶବାସୀଙ୍କୁ ପ୍ରଣାମ ଜଣାଇବି । ସେତିକିବେଳେ ସେମାନେ ହୁଏତ ଦେଖିପାରିବେ, ମୋ ସାହିତ୍ୟର ଗୁରୁଭାର ଆଜୀବନ ବୋହି ବୋହି ମୋ କାନ୍ଧରେ କିପରି ବିଣ୍ଡି ପଡ଼ିଯାଇଛି । ସେତିକିବେଳେ ସେମାନେ ଚିହ୍ନିବେ ଜଣେ ଯୁଗନ୍ଧର ପୁରୁଷକୁ ।... ସଂସ୍କୃତି କହିଲେ ଆପଣମାନେ ବୁଝନ୍ତି କ'ଣ ?– ମୋତେ ପଚାରନ୍ତୁ ମୁଁ କିନ୍ତୁ ବୁଝେଇ ଦେଇପାରେ । ଧର୍ମଦର୍ଶନର ଜଟିଳ ତତ୍ତ୍ୱ କିଏ ବା ଆୟତ୍ତ କରିପାରେ ? ... ମୁଁ ଯତ୍‌କିଞ୍ଚିତ୍ ଜାଣିଚି ବୋଲି ଅନ୍ୟମାନେ କହନ୍ତି । ମୁଁ ତାହା ବିନାମୂଲ୍ୟେ ବିତରଣ କରିବାକୁ ଚାହେଁ । କେବଳ ମୋତେ ମଞ୍ଚ ଛାଡ଼ି ଦିଅନ୍ତୁ । ନେତୃତ୍ୱ ଛାଡ଼ି ଦିଅନ୍ତୁ । ମୁଁ ପୃଥିବୀବାସୀଙ୍କୁ ମୋ ଦେଶର ଅତୀତ ଗୌରବ ବିଷୟ କହି ଚମତ୍କୃତ କରି ଦେଇପାରେ – ମୋତେ ପଠାନ୍ତୁ ଆଫ୍ରିକା, ୟୁରୋପ, ଚୀନ୍, ଆମେରିକା । ଦେଖନ୍ତୁ ମୁଁ କ'ଣ କରିପାରେ ।... ଖାଲି କ'ଣ ସେତିକି । ମୁଁ ଏଣିକି ଖାଲି ଚେତନା କଥା କହିବି । ମୁଁ ଯୁବଚେତନା, ଜନଚେତନା, ଗଣଚେତନା, ଶରୀରଚେତନା, ପ୍ରାଣଚେତନା, ଅବଚେତନା, ସବୁକ୍ଷେତ୍ରରେ ଚେତନାକୁ ଜାଗ୍ରତ କରିବାକୁ ନୂତନ ଯୁଗର ବାର୍ତ୍ତାବହ ହେବାକୁ କେହି ଜଣେ ତ ଆଗଭର ହେବା ଦରକାର ।''

ବାଆସ୍ ! ଆଉ ଶୁଣନ୍ତୁ ନାହିଁ । କାରଣ ଆପଣ ମୋଟାମୋଟି ଏଇଆ ହିଁ ଅହରହ ଶୁଣୁଛନ୍ତି । ଆପଣଙ୍କ ଭିତରେ, ବାହାରେ, ଚାରିଆଡ଼େ । ମୋର କେବଳ ଅନୁରୋଧ ରହିଲା, ୩୩ ନମ୍ବର ଫ୍ଲାଟ୍‌ର ପଡ଼ୋଶୀଙ୍କୁ କହନ୍ତୁ ଯଦି ସେ ନଗରପାଳଙ୍କୁ ଜାଣିଥାନ୍ତି, ତାଙ୍କୁ କେବଳ ୩୩ ନମ୍ବର ଘର ଆଗରୁ ଅଳିଆ ନ ଉଠାନ୍ତୁ, କେବଳ ସେଇଠି ବତିଖୁଣ୍ଟ ନ ଯୋଡ଼ନ୍ତୁ । ଆପଣ ବି ତାଙ୍କ ସହିତ ମିଶି ୩୪ ନମ୍ବର ଆଗରେ, ଅଳିଆଠୁଳ ନକରନ୍ତୁ । ସତକୁ ସତ ଯଦି ପରିଚ୍ଛନ୍ନ ହେବାକୁ ଚାହାନ୍ତି, ପୃଥିବୀକୁ ପରିଚ୍ଛନ୍ନ କରିବାକୁ ହାତ ବଢ଼ାନ୍ତୁ । ପରିଚ୍ଛନ୍ନତା ଆପଣଙ୍କ ଦୁଆରୁ ଅବଶ୍ୟ ଆରମ୍ଭ ହେଉ, କିନ୍ତୁ ବିସ୍ତୃତ ହୋଇଯାଉ ଦିଗ୍‌ବଳୟର ସୀମାନ୍ତ ପର୍ଯ୍ୟନ୍ତ ।



# ଅନବଦ୍ୟା ବାରିପଦା

ଦେଖୁ ଦେଖୁ ଗୋଟାଏ ପର୍ବତ ସାଙ୍ଗରେ ମୋର ଭାବଦୋସ୍ତି ହୋଇଗଲା । ପ୍ରତି ସନ୍ଧ୍ୟାରେ ତା' ମଥା ଉପରେ ଈଷତ୍ ପୀତାଭ ସୂର୍ଯ୍ୟ ନଇଁ ଆସିବାର ଦୃଶ୍ୟ ଦେଖି ମୁଁ ବିଭୋର ହେଉଥିଲି । ମୋର ମନେହେଉଥିଲା ଯେ ପ୍ରତିଦିନ ସେତିକିବେଳେ ସେ ବି ମୋତେ ଅପେକ୍ଷା କରି ରହୁଥିଲା । ମୁଁ ନ ଦେଖିଲେ ସତେବା ତା'ର କନକାଭିଷେକ ନିରର୍ଥକ ହୋଇଯିବ । ତା'ର ମଥାନ ଉପରେ ରାଜମୁକୁଟ ପରି ଶୋଭାପାଉଥିବା ସ୍ୱର୍ଣ୍ଣାଭ ମେଘପଟଳ ଅର୍ଥହୀନ ହୋଇଯିବ ।

ଉଞ୍ଚ ଉଞ୍ଚ ଯୁଗଳ-ପାଣିଟାଙ୍କି ପାଖ ଅତଡ଼ା ଦାଢ଼ରେ ବସି ମୁଁ ପ୍ରତି ସନ୍ଧ୍ୟାରେ ମେଘାସନ ସାଙ୍ଗରେ ଭାବଦୋସ୍ତି ଜାରି ରଖୁଥିଲି । ତଳେ ଚିପଟ୍ ନାଳ ତା'ର ସାକ୍ଷୀ । ଉପରେ ସାୟାହ୍ନ ସୂର୍ଯ୍ୟ ସାକ୍ଷୀ । ମେଘାସନ ବି ଭଲପାଇ ଆସିଥିଲା ଏ ସୌମ୍ୟଦର୍ଶନ ବଳିଷ୍ଠ, ତେଜସ୍ୱୀ ଯୁବକକୁ । ବୟସ ତିରିଶ । ସ୍ଥାନ ବାରିପଦା । କାଳ ୧୯୫୯ ।

ଅଗଷ୍ଟ ମାସରେ ଆସି ପହଞ୍ଚିଥାଏ । ବ୍ରହ୍ମପୁରରୁ ରୂପ୍‌ସା ରୋଡ଼୍; ରୂପ୍‌ସା ରୋଡ଼୍‌ରୁ ବାରିପଦା । ଛୁଆ ରେଳଗାଡ଼ିଟି ଖେଳନା ଭଳି କଉତୁକିଆ । ଷ୍ଟେସନଗୁଡ଼ିକ ଛବି ପରି ଛୋଟ ଆଉ ସୁନ୍ଦର । ଗହଳି ନାହିଁ । ପାଟିତୁଣ୍ଡ ନାହିଁ । ମୁଁ ହିଁ ଜଣେ ଉଚ୍ଚଶ୍ରେଣୀର ବିରଳ ଯାତ୍ରୀ । ଅଳସଗମନା ରେଳଗାଡ଼ିଟିର ଗତିବିଧିରେ ମଦାଳସାର ନାରୀ ନାରୀ ଭାବ । ବାଟଯାକ ମୌସୁମୀ ବର୍ଷାରେ ନୂଆ ପତ୍ର ଗୁଞ୍ଜୁରିଥିବା ଜାତି ଜାତି ଗଛ । ଗଛ ଫାଙ୍କରେ ବେଳେବେଳେ ପାହାଡ଼, ବେଳେବେଳେ ଆକାଶ ।

ଅପରାହ୍ନର ବାରିପଦା ବେଶ୍ ଭଦ୍ର- ଶାଳୀନ- ନିରାଡ଼ମ୍ବର ମନେହେଲା, କିନ୍ତୁ କିଛି ମାତ୍ରାରେ ଚୁପ୍‌ଚାପ୍ ଉଦାସ ବିଷଣ୍ଣ– ବିଗତ ମଧ୍ୟାହ୍ନର ସ୍ମୃତିରେ କିଞ୍ଚିତ୍ ଆନମନା । ସେଇଠି ପୁରୁଣା ବାସିଫୁଲ ପରି ମ୍ଳାନ, ନୂଆ ସବୁ ବାସ୍ତୁହରା ଇତସ୍ତତଃ । ପୁରୁଣା ହାଇସ୍କୁଲ ହତା ଭିତରେ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜକୁ ଠାବ କଲି । ପ୍ରିନସିପାଲ ଜଗଦାନନ୍ଦ ମହାନ୍ତିଙ୍କୁ ଠାବ କଲି । ହାବଭାବ କଥାବାର୍ତ୍ତାରେ ସାଇବ ସାଇବ, ଭଦ୍ର ରୁଚିବନ୍ତ, ଶୁଚିବନ୍ତ, ସୁଜନ । ଏ ସମଗ୍ର ଚିତ୍ରରେ କେବଳ ପାନ ପଟା ଦାନ୍ତଗଣ୍ଡାକ ଟିକିଏ ଖାପଛଡ଼ା, ଦେହାତି, ନିହାତି ଓଡ଼ିଆପଣ । ସେ ବି ମୋତେ ଦେଖୁ ଦେଖୁ

ଜାଣିଗଲେ ନା' କ'ଣ । ଦଶମିନିଟ୍‌ର ଆଳାପ ପରେ ଘଣ୍ଟା ବାଜିଲା । ଆଦେଶାନୁସାରେ ହଲ୍‌ରେ ଶହେ ଅଠେଇଶି ପିଲାଙ୍କର ଇଂରାଜୀ କ୍ଲାସଟିଏ ନେବାକୁ ପଡ଼ିଲା । ଚହଳ ପଡ଼ିଗଲା ନୂଆ ସାର୍‌ଙ୍କ ପାଇଁ । ଗୁଣଗ୍ରାହୀ ପ୍ରିନସିପାଲ ତାଙ୍କ ସଫା ନରମ ହାତ ବଢ଼ାଇ କରମର୍ଦ୍ଦନ କଲେ । ସାଙ୍ଗରେ ନେଇଗଲେ ରାଜବାଟୀ ।

ମୟୂରଭଞ୍ଜ ମହାର୍ଜାମାନଙ୍କ ପ୍ରାସାଦ । ପକ୍ଷୀ ଉଡ଼ିଗଲା ପରେ ଖାଲି ପଞ୍ଜୁରି ପରି ରିକ୍ତ ହତଶ୍ରୀ ଦିଶୁଥାଏ । ତେବେ ବି ସେ ବିଶାଳ ଅଗଣା, ସେ ପ୍ରଶସ୍ତ ପାହାଚ, ଆଉ ପାହାଡ଼ ପରି ନିର୍ଜନତାର ଠାଣିରେ ରାଜକୀୟତା ମଡେଇହୋଇ ପଡୁଥିଲା । ମଳି ସରସର ଧୋତି, ପ୍ରୟୋଜନରୁ ଯଥେଷ୍ଟ ବଡ଼ ହାତବାଲା ଗଞ୍ଜି ପିନ୍ଧିଥିବା ଚିଲାଆଖିଆ ବାଙ୍ଗରା ଜଗୁଆଳି ''କୁଶ'' କଞ୍ଚିମାଳ ଧରି ଆଗେ ଆଗେ ଖୋଲିଚାଲିଥିଲା କବାଟ ପରେ କବାଟ । ପ୍ରସ୍ତ ପ୍ରସ୍ତ ଇତିହାସ ଜୀଇଁ ଉଠୁଥିଲା ଆଖିଆଗରେ । ରାଜପୁରୁଷମାନେ ବିଚରଣ କରୁଥିଲେ ପାର୍ସଦମାନଙ୍କ ଗହଣରେ; କୋଉଠି ଦରବାର ବସୁଥିଲା, କୋଉଠି ସ୍ୱଚ୍ଛ ପରିହିତା ସଙ୍ଗିନୀମେଳରେ ସନ୍ତରଣ ହେଉଥିଲା । କୋଉଠି ଗୋପନୀୟ ଭଉଁରୀ ପାହାଚବାଟେ ଶଯ୍ୟାସଙ୍ଗିନୀକୁ ବିଦାୟ ଦେଲା ପରେ ମହାର୍ଘ ଶୟନ କକ୍ଷରେ ମଣିମାଙ୍କର ପହୁଡ଼ ହେଉଥିଲା ।

ଏ ସମସ୍ତ ଇତିହାସ ଉପରେ ଖବରକାଗଜ ଘୋଡ଼େଇ ଦେଇ ନୂଆ ମାଲିକାନା ଜାରି ହେବ । ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟର ହଜାରେ ପୁଅ, ଝିଅ, ଅଧ୍ୟାପକ ଓ ଅଧକ୍ଷ, ଯେ ଯାହା ଢଙ୍ଗରେ ଏହାକୁ ଅଧିକାର କରିବେ । ପହୁଡ଼ ଘରର ମାର୍ବଲ ଚଟାଣ ଅମଙ୍ଗ ହେଉଥିବ ପ୍ରିନ୍‌ସିପାଲଙ୍କ ଚୌକି ଟେବୁଲ ପଡ଼ିଲାବେଳେ, ଦରବାର କକ୍ଷର କାରୁକାର୍ଯ୍ୟମଣ୍ଡିତ କାନ୍ଥ ଓ ଛାତ ପିଲାଙ୍କ କୋଳାହଳକୁ ସ୍ୱୀକାର କରିପାରୁ ନଥିବ, ଜଳକେଳି କ୍ଷେତ୍ରଟି ପୋତା ପଡିଥିଲେ ସୁଦ୍ଧା ତା'ର କାଚମଣ୍ଡିତ ସ୍ତମ୍ଭରାଜି ଗ୍ରନ୍ଥାଗାରର ଗମ୍ଭୀର ନିରବତାକୁ ସହିପାରୁ ନଥିବ । ଅଥଚ ମୟୂରଭଞ୍ଜ ରାଜବାଟୀରେ କଲେଜ ଅବସ୍ଥାପିତ ହେବ । କାୟାକଳ୍ପ ହେବ । କଲେଜର ସ୍ଥାନାନ୍ତର କାର୍ଯ୍ୟ ତଦାରଖ କରିବାକୁ ପ୍ରିନ୍‌ସିପାଳ ମହାଶୟ କାହାକୁ ଜଣକୁ ହୁଏତ' ଖୋଜୁଥିଲେ । ମୋତେ ହଠାତ୍ ପାଇଗଲେ । ଷ୍ଟେସନରେ ପଡ଼ିଥିବା ମୋର ଟେବୁଲ୍, ଚୌକି, ଆଲମାରି, ଖଟ, ରାଜବାଟୀର ଗୋଟିଏ କକ୍ଷରେ ରଖିବାକୁ ଅନୁମତି ମିଳିଗଲା । ଭଡ଼ାରେ ଘରଟିଏ ଖୋଜିବାକୁ ମୋତେ କିଛି ସମୟ ମିଳିଗଲା ।

ସଞ୍ଜବେଳେ ରାଲେ ସାଇକଲ୍‌ଟି ନେଇ ମୁଁ ବାହାରି ପଡୁଥିଲି ଏବଂ ନିରୋଳା ଜାଗା ଖୋଜୁ ଖୋଜୁ ପାଣିଟାଙ୍କି ପାଖ ଉଚ୍ଚ ଅତଡ଼ାଟି ମନକୁ ପାଇଗଲା । ସେଇଠି ଦେଖୁ ଦେଖୁ ଗୋଟାଏ ପର୍ବତ ସାଙ୍ଗରେ ମୋର ଭାବଦୋସ୍ତି ବଢ଼ିଗଲା ।

ମୁଁ ଜାଣି ନଥିଲି ଯେ ଏକାକୀ ସେଇଠି ବସି ମେଘାସନକୁ ଚାହିଁ ରହିଥିଲା ବେଳେ ଆଉ ଜଣେ ମୋ ଉପରେ ନଜର ରଖୁଥିଲେ । ସେ ଥିଲେ ସ୍ୱୟଂ ପ୍ରିନ୍‌ସିପାଲ ଜଗଦାନନ୍ଦ ମହାନ୍ତି । ତାଙ୍କର ହଠାତ୍ ଧାରଣା ହେଲା ଯେ ଜଣେ ଯୁବକ ଏକୁଟିଆ ସେମିତି ସଞ୍ଜବେଳେ ନିରୋଳା ଜାଗାରେ ବସିରହିବା ବିପଥଗାମୀ ହେବାର ପୂର୍ବାଭାସ ହୋଇପାରେ, ସେ ନ ଚାହିଁଲେ ସୁଦ୍ଧା ଆଉ କେହି ତାକୁ ପ୍ରଲୋଭିତ କରି ଅପରିଚ୍ଛନ୍ନ ଅନ୍ଧାର ଭିତରକୁ ଟାଣି ନେଇପାରେ । ଆଉ ବର୍ଷେ ଛ'ମାସ ସେଇଠି ବିତେଇବା ପରେ ଯଦି ମୋ ବିଷୟରେ ସେ ସେପରି ଶଙ୍କା ବା ସନ୍ଦେହ ପ୍ରକାଶ କରିଥାନ୍ତେ ମୁଁ ଅପମାନିତ ବୋଧ କରିଥାନ୍ତି, କିନ୍ତୁ ପ୍ରଥମ ସାକ୍ଷାତ୍‌ରେ ମୋ ପ୍ରତି ସ୍ନେହପ୍ରବଣ ହୋଇଥିବା ସେ ଶୁଭାକାଂକ୍ଷୀ ଗୁରୁଜନଙ୍କର ମୋ ପାଇଁ ସେପରି ଉଦବିଗ୍ନ ହେବା ଦେଖି ମୁଁ ବିହ୍ୱଳ ଓ କୃତଜ୍ଞ ବୋଧ କରିଥିଲି ।

ମୋର ନିଃସଙ୍ଗତା ଦୂର କରିବାକୁ ସେ ମୋତେ ବାରିପଦା କ୍ଲବକୁ ନେଇଗଲେ । ସେଇଠି ଅନେକଙ୍କ ସହିତ ଆଳାପ ପରିଚୟ ହେଲା । ସ୍ନୁକ୍‌ର ଟେବୁଲ ପାଖରେ ଶ୍ରୀନିବାସ ରାଓଙ୍କ ଦେଖା ହେଲା । ସେ ଟେନିସ୍‌କୁ ଟାଣି ନେଲେ । ରାଓ ସାହେବ ଜେଲର, ଚମତ୍କାର ଖେଳାଳି । ଜେଲ ହତା ବାହାରେ ଟେନିସ୍ କୋର୍ଟ । ସି ଜି ସୋମିଆ କଲେକ୍ଟର ଏବଂ ପ୍ରିନସିପାଲ ମହାନ୍ତି ନିୟମିତ ଖେଳାଳି । ମୁଁ ନୂଆ ଶିଖାଳି ନଥିଲି । ଏଣୁ ଜେଲ କୋର୍ଟରେ ଅପରିହାର୍ଯ୍ୟ ହୋଇଗଲି । ମୋ ପାଇଁ ଟେନିସ୍ ଅପରିହାର୍ଯ୍ୟ ହୋଇଗଲା । ଟେନିସ୍‌ରୁ ଫେରି ଚାଲିଯାଉଥିଲି କ୍ଲବ । ସ୍ନୁକ୍‌ର ଖେଳିବା ଶିଖୁଶିଖୁ ଶିଖିଗଲି । କ୍ଲବ୍‌ରେ ଡିନର୍ ହୁଏ, ପିକ୍‌ନିକ୍ ହୁଏ । ରାଜ ପରିବାରର ସୌଜନ୍ୟରେ ଶୋଭାମାନ ଶଙ୍ଖପଛା ଲାଲ୍ ସାହେବ ସମସ୍ତଙ୍କ ଉପରେ ମଥାଟେକି ଠିଆ ହୁଅନ୍ତି । ସବୁ ପରିଚାଳନା କରନ୍ତି । ସେହି ପରିବାରର କଳାକାର 'ମାମୁ'ଙ୍କ କଣ୍ଠରେ ଦେଶିଆ ଝୁମର୍ ଶ୍ରୋତାଙ୍କୁ ମୁଗ୍ଧ କରେ । କିନ୍ତୁ କ୍ଲବର ଭିତରେ ବାହାରେ ଶିଷ୍ଟାଚାର, ଶାଳୀନତା, ଚକ୍‌ଚକ୍ କରୁଥାଏ । ଆଚରଣରେ ଆଭିଜାତ୍ୟ ଚମକୁଥାଏ । ସେଠିକି ରାଜ୍ୟପାଳ ସୁଖ୍‌ଠନ୍‌କର ଆସନ୍ତି, ବାରିପଦାର ମୂର୍ଦ୍ଧନ୍ୟ ନାଗରିକମାନେ ସାଂଧ୍ୟ ପୋଷାକରେ ଆତଯାତ ହୁଅନ୍ତି । ମନୋରମ ଶାସ୍ତ୍ରୀୟ ସଙ୍ଗୀତ ପରିବେଶକୁ ଆହୁରି ରସାଣିତ, ମନ୍ତ୍ରମୁଗ୍ଧ କରେ । ଭଦ୍ର ସୁସଂଯତ, ଶୃଙ୍ଖଳିତ ଆଚରଣର ପରମ୍ପରା ସ୍ପଷ୍ଟ ବାରି ହୋଇପଡୁଥାଏ । କେବଳ ଜଣେ ସଦସ୍ୟ ଭୋଳ ଅବସ୍ଥାରେ ତାଙ୍କ ଖାଇବା ପ୍ଲେଟରେ କେବଳ କୁକୁଡ଼ା ତର୍କାରି ବାଢ଼ି ଚାଲିଥିବାର ଦୃଶ୍ୟ ଅନ୍ୟମାନଙ୍କୁ ଆମୋଦିତ କରିଥିଲା । ପ୍ଲେଟ ଉଛୁଳି ତାଙ୍କ ଜାମାପଟା ରସ ଜୁବୁବୁବୁ ହେବାରେ ସେ

ମାନନୀୟ ବୟସ୍କ ଭଦ୍ରଲୋକ ମିଟିମିଟି ଅନେଇଲେ, ପ୍ଲେଟକୁ, ନିଜକୁ ଓ ଆମ ସମସ୍ତଙ୍କୁ । ତା'ପରେ ସମଗ୍ର ପରିସ୍ଥିତି ଉପରେ ଏକମାତ୍ର ନିରବ ମନ୍ତବ୍ୟ ଥିଲା ତାଙ୍କର ସଲଜ୍ଜ, ହସ ଟିକକ । ତଦ୍ୱାରା ସେ କ୍ଷମା ମାଗୁଥିଲେ କି ସମସ୍ତଙ୍କୁ କ୍ଷମା କରୁଥିଲେ ଜାଣିବା ଦୁଷ୍କରଥିଲା । ପରେ ଶୁଣିଲି ଯେ ଭଦ୍ରଲୋକ ପ୍ରତି ସନ୍ଧ୍ୟାରେ ସେହିପରି ତୁରୀୟ ଅବସ୍ଥାରେ ରହୁଥିଲେ । ରାଜ୍ୟପାଳଙ୍କ ଆସିବା ଯିବା ସହିତ ତାଙ୍କ ନିତ୍ୟନୈମିତ୍ତିକ କର୍ମରେ କୌଣସି ବ୍ୟତିକ୍ରମ ଆଣିବାକୁ ସେ ଆବଶ୍ୟକ ମଣି ନ ଥିଲେ ।

ସେଇ ମହଲରେ ମୁରବିପଣିଆରେ ଅନତିକ୍ରମ୍ୟ ଦିଗବାରେଣୀ ପରି ଠିଆ ହୁଅନ୍ତି କୈଳାସ ପତି, ଶାରୀରିକ ଆକୃତି ଓ ମାନସିକ ଉପାଦାନ ହେତୁ କୌଣସି ପରିସ୍ଥିତିରେ ତାଙ୍କ ମଥା ଆଗକୁ ନଇଁବାର ସମ୍ଭାବନା ନଥିଲା । ସମ୍ମାନ କିମ୍ବା ଶିଷ୍ଟାଚାର ଦୃଷ୍ଟିରୁ ଯଦି ନିହାତି ଅନିବାର୍ଯ୍ୟ ହେଉଥିଲା, ତା' ହେଲେ କୁରାଢ଼ିଆ ନମସ୍କାର ମୁଦ୍ରାରେ ହାତ ଯୋଡ଼ି ଦେଉଥିଲେ। ଖେଳ ପଡ଼ିଆରେ, ଆଲୋଚନାଚକ୍ରରେ, ସଙ୍ଗୀତ ଆସରରେ ଆଗଧାଡ଼ିଆ ମାନ୍ୟତା ତାଙ୍କ ପାଇଁ ସଂରକ୍ଷିତ ରହୁଥିଲା। ତାଙ୍କ ଅଗଣାରେ କୁଟୁମ୍ବୀ କଳାକାର ରୂପେ ସଂଯୁକ୍ତା ପାଣିଗ୍ରାହୀଙ୍କର ନୃତ୍ୟ ପରିବେଷଣ ଏବଂ ନିରାମିଷକୁ ନୀର ଯୁକ୍ତ ଆମିଷ ବୋଲି ଅର୍ଥ କରି ସମସ୍ତଙ୍କୁ ମାଛ ଖାଇବାକୁ ପ୍ରବର୍ତ୍ତାଉଥିବା ରସାମୋଦୀ ପତି ମହାଶୟଙ୍କ ଟହଟହ ହସ ଅବିସ୍ମରଣୀୟ। ମନେ ହେଉଛି ସତେବା ମେଘ ଉହାଡ଼ରୁ ତାଙ୍କର ରଣପା ପାହୁଣ୍ଡ ପକେଇ ଯେକୌଣସି ମୁହୂର୍ତ୍ତରେ ଓହ୍ଲେଇ ଆସିବେ।

ଭାରି ସୌଖୀନ ରସିକ ମଣିଷ ସୁରେଶ ମିଶ୍ର। ସାହିତ୍ୟ, କଳା,ନୃତ୍ୟଗୀତର ରସଜ୍ଞ ସମଝଦାର। ରୁଚି, ବେଶ ପରିପାଟୀରେ ମାର୍ଜିତ ଜାମାଇଁବାବୁ। ଗିଳମରା ଜାମାଯୋଡ଼ରେ ମଞ୍ଚାଭିନେତା ପରି ନିଖୁଣ ସାଜସଜ୍ଜା । ଆକାର ଓ ଅଭିନୟ ଚାତୁରୀ ପାଇଁ ଏକଦା ନାୟିକା ଚରିତ୍ରରେ ସୁଖ୍ୟାତ କଳାକାର । ଟିକିଏ ବଙ୍ଗାଳିଆ ବଙ୍ଗାଳିଆ ଭାବ ସତ୍ତ୍ୱେ ଅତ୍ୟନ୍ତ ସଚେତନ ଖାଣ୍ଟି ସ୍ୱାଭିମାନୀ ଓଡ଼ିଆ ।– ମୟୂରଭଞ୍ଜର ରାଜବଧୂ ଯଦି ବଙ୍ଗଳା, ତେବେ ଅଭିଜାତ ଓଡ଼ିଆ ଘରେ ବଙ୍ଗାଳୁଣୀ ବୋହୂ କାହିଁକି ବା' ନ ହେବେ; ସେ ବ୍ରଜରଥ ହୁଅନ୍ତୁ ବା ସୁରେଶ ମିଶ୍ର ।

ବ୍ରଜରଥ ଘୋଷାଲ ଘରେ ବିଭା ହୋଇଥିବାରୁ ବଙ୍ଗାଳୀ ମାତ୍ରେ ଏବଂ ବିଶେଷ କରି କାଳୀପଦ ଦତ୍ତ ତାଙ୍କ ଶାଳକ ସଦୃଶ ବୋଲି ସେ ଭାବି ନେଇଥାନ୍ତି । ରସିକତା, ପରିହାସପ୍ରିୟତା କିଛି ମନମଉଜୀ ବାରିପଦିଆଙ୍କ ଚାରିତ୍ରିକ ଲକ୍ଷଣ । ଥାନା ସାମ୍ନା

ଗଡ଼ାଣି ଗଳିରେ କାଳୀଦତ୍ତଙ୍କ ଘରେ ସେତେବେଳେ ମୁଁ ଭଡ଼ାଟିଆ । ଚାରିଟି ଧାଡ଼ି-ବନ୍ଧା ଘର । ଦକ୍ଷିଣ ପଟ ଏକ ନମ୍ବର ଘରେ ଥାଆନ୍ତି 'ରାଉତ'କୁ 'ରାଜପୁତ୍ର' ଅର୍ଥ କରୁଥିବା ପଣ୍ଡିତ କବି ଅଧ୍ୟାପକ ବେଣୁଧର ରାଉତ । ଦୁଇ ନମ୍ବର ଘରେ ଘର ମାଲିକ କାଳୀପଦ ଦତ୍ତ– ଫରିକଛା ମରା ଆଣ୍ଠୁତଳ ଯାଏ ଧୋତି, ଧଳା ପଞ୍ଜାବି, ମୁଣ୍ଡରେ ଚାଦରକୁ ପଗଡ଼ି ମାରିଥିବା ପାଣ୍ଡେଇ ପିନ୍ଧା ପାତଳା ଡେଙ୍ଗା କାଳିଆ ଭଦ୍ରଲୋକ ଶହେ ଗଜ ଯାଏ ଡିପେଇ ଡିପେଇ ସାଇକଲ ଚଢ଼ି ଶାଳବଣୀ ଜମି ତଦାରଖ କରି ଫେରି ହାଲିଆ ମାରୁଥିବା ଅବସ୍ଥାରେ ହାବୁଡ଼ି ଯା'ନ୍ତି ବ୍ରଜରଥ । ରଥଙ୍କ ପରିହାସରେ କାଳୀଦତ୍ତ ହସି ହସି ବେଦମ ହେଲେ ବି ସାମାନ୍ୟତମ ଶବ୍ଦ ଶୁଭେ ନାହିଁ । ଶବ୍ଦାୟିତ ହାସ୍ୟରୋଳ କୁଆଡ଼େ ଅଶିଷ୍ଟ ବର୍ବରୋଚିତ । କବାଟ କୋଣରେ ପରିହାସ ଉପଭୋଗ କରୁଥିବା ବନ୍ଧୁପତ୍ନୀ ମଧ୍ୟ ସେହିପରି ନିରବ ହାସ୍ୟରତା । କଥା ଆରମ୍ଭ ହୁଏ ପଖାଳ ପାଣିରୁ । ବ୍ୟାଜ ଅଭିଯୋଗ,– ଆଜିକାଲି ସବୁ ଅଭଦ୍ର ହୋଇଗଲେଣି, କେହି କାହାକୁ ପଚାରୁ ନାହାଁନ୍ତି, ଇତ୍ୟାଦି । କାଳୀଦତ୍ତ ତତ୍‌କ୍ଷଣାତ ରାଜି ହୋଇଯାନ୍ତି, କିନ୍ତୁ ଜାମାଇଁବାବୁ ବରାଦ କରନ୍ତି – ପଖାଳ ସାଙ୍ଗକୁ, କିଛି ବଡ଼ିଚୂରା, ଚୁନାମାଛ ଭଜା, ଶାଗଭାଜି । ବେଶ୍ ତାକୁ ବି ମାନି ନିଅନ୍ତି ଅମାୟିକ ଶାଳକ । କଞ୍ଜୁଷ ଲୋକ ଯଦି ବୋକା ହୁଅନ୍ତି ତାଙ୍କୁ କ'ଣ ବୁଝେଇବ ? ପଖାଳ ଗଣ୍ଡେ ଖୁଆଇବ ବୋଲି କ'ଣ ନିଜ ଇଜ୍ଜତ୍‌କୁ ଜଗିବ ନାହିଁ ? ଅନ୍ତତଃଟିକେ କଷାମାଂସ ବେଶ୍ କଡ଼ା ଭଜା ଗରମ, ତେଲ ଭୁର୍‌ଭୁର୍ ! ଟିକିଏ ଅଧିକ ପଖାଳୁ ଖର୍ଚ୍ଚ ହବ ଯଦି ହଉ । ବ୍ରାହ୍ମଣ ସନ୍ତୁଷ୍ଟ ହେଲେ, ପରିବାରର କେତେ ମଙ୍ଗଳ !..... ବନ୍ଧୁ, ବନ୍ଧୁପତ୍ନୀ ସତକୁ ସତ ପରାମର୍ଶ କଲାବେଳେ ଖୁବ୍ ଘନିଷ୍ଠ ପରିଜନ ଭଙ୍ଗୀରେ କହନ୍ତି ବ୍ରଜରଥେ, ''ଆଛା କାଳିଦା' ଯଦି କଷାମାଂସଟା ନିହାତି କରାଯାଏ ଘରେ ପିଲାମାନେ ତ' ନିଶ୍ଚୟ ଚାହିଁବେ, କେଜିଏ ଆଣିଲେ ଚଳିଯାନ୍ତା ଯେ, ହେଲେ ଇଜ୍ଜତ୍ ମହତ୍ କଥା, ଯଦି ସରିଯାଏ! – ସେଥିପାଇଁ ଦେଢ଼ କେଜି, ନହେଲେ ଧର ଦୁଇକେଜି କରାଯାଉ । ମାଂସ ଯେହେତୁ ଆସୁଛି କାଳିଦା, ଘୋଟାଏ କାବୁଲି ଡାଲ ଫ୍ରାଏ ହେଲେ ଜମିଯାନ୍ତା, ନା କ'ଣ କହୁଛ ! କିନ୍ତୁ ଏଥିରେ ସମସ୍ୟା, ବୋଉଦି ତ ମାଂସଟାକେ ପଛନ୍ଦ କରବେନା । ସେଇ ଜନ୍ୟେ, ଦି' ଚାରିଟା ମାଗୁର ମାଛ ଆଣି ଝୋଳ କରିଦିଆଯାଉ ।'' ହସ ଭିତରେ 'ହ୍ୟାଁ ହ୍ୟାଁ', 'ହେଁ ହେଁ' ଶୁଭେ – ହସ ନୁହେଁ କଥା ! ପୁଣି କିଛି ସମୟ ଚିନ୍ତିତ ହେବାର ଭାନ୍ କରି ପ୍ରସ୍ତାବକ କହନ୍ତି ହସି ହସି, 'କାଳିଦା' ମୁଁ ଦେଖୁଛି ଆମାର ମତ୍‌ନ ବୋକା ମାନୁଷ କୋଥାଓ ନେଇ ।' କାଳି ଦା' ଆଜୀବନ ବାରିପଦାରେ ରହି ପଦଟିଏ ଓଡ଼ିଆ କହିବାର କେହି ଶୁଣିନାହାଁନ୍ତି । ଓଡ଼ିଆ ତୁଣ୍ଡରେ ବଙ୍ଗଳା ଶୁଣିଲେ ସେ ଉଲ୍ଲସିତ ହୋଇ ଯାହା ମାଗିବ

ତାହା ଦେଇଦେବାର ଉଦାରତା ଅର୍ଜନ କରିବାର ମଧ ସମସ୍ତେ ଜାଣିଛନ୍ତି । ଏଣୁ ବଙ୍ଗଳାରେ ଉପୋଦ୍‌ଘାତ କରି ଉପସଂହାର କରାଯାଏ । ଯଦି ମାଛ ମାଂସ ଡାଲି ଭଜା କରିବାକୁ ହୁଏ ତା'ହେଲେ ପଖାଳ ଗଣ୍ଡାକ ବେଖାପିଆ ହୋଇଯାଉନାହିଁ କି ? ଇଜ୍ଜତ୍ ମହତ୍ କଥା । ଅଚ୍ଛ ପଲାଉ କରିଦେଲେ ତ କଥା ଶେଷ । ବଢ଼ିଆ ଜମିଯିବ । ଏତକ ଢ଼ୋକିଦେଲା ପରେ, 'ଆଛା କାଳିଦା' ଏତେ ବଢ଼ିଆ ଜିନିଷ ଏକୁଟିଆ ବସି ଘରେ ଘରେ ନଖାଇ, ଏଇ ଦି' ଚାରିଜଣ ତମରି ଘରେ ରହୁଥିବା ଅଧ୍ୟାପକଙ୍କୁ ନିମନ୍ତ୍ରଣ କରିଆଣିଲେ କ୍ଷତି କ'ଣ ? ତମେ କଷ୍ଟ କରିବା ଦରକାର ନାହିଁ । ମୁଁ ସେ ଦାୟିତ୍ୱ ନେଉଛି । – ପରିଣାମତ ଷାଠିଏ ସତୁରି ଜଣଙ୍କ ପାଇଁ ଗୋଟିଏ ସାନ୍ଧ୍ୟ ଭୋଜିର ଆୟୋଜନ ହୁଏ । ଆମେ ସମସ୍ତେ ଆପ୍ୟାୟିତ ହୋଇ ଭୋଜିର କାରଣ ପଚାରୁ । କାଳୀଦତ୍ତ ଲାଜ ଲାଜ ହୋଇ କିଛି କହନ୍ତି ନାହିଁ । ବ୍ରଜରଥେ ମଝିରେ ପଶି ଆସି ଗମ୍ଭୀର ରସିକତାରେ କହନ୍ତି 'ଆଜି କାଳୀ ଦା'ର ଜନ୍ମଦିନ' । ଆସନ୍ତା ମାସ ବୋଉଦି'ର 'ଜନ୍ମଦିନ ହବେ' । ରାଗରେ ତମତମ ହୋଇ କାଳୀ ଦା' ଉଠି ଚାଲିଯାଆନ୍ତି !– ସେହି ସାନ୍ଧ୍ୟ ଭୋଜିରେ ଦେଖାହୁଏ ଦଇତାରି ବାରିକ୍ ଆଉ ପୂର୍ଣ୍ଣ ବିନ୍ଧାଣୀଙ୍କ ସାଙ୍ଗରେ । ହେଡ୍‌ମାଷ୍ଟର ପୋଖତ ଆଉ ଦୁରୁସ୍ତ ତାଙ୍କ ପଢ଼ା ଆଉ ପ୍ରଶାସନ ବିଷୟରେ । କିନ୍ତୁ ବନ୍ଧୁ ମେଳରେ ଏତେ କୌତୁକ ଆଉ ପରିହାସପ୍ରିୟ ଯେ ସମସ୍ତେ ତାଙ୍କୁ ଦେଖିଲାମାତ୍ରେ ଘେରିଯାନ୍ତି । ତାଙ୍କ ହସମୁଣି ଫିଟିଗଲେ ଶୁଣିବାଲୋକ ହସି ହସି ବେଦମ୍, କିନ୍ତୁ ତାଙ୍କର ଦୁଇଚାରିଟି ବିରଳ ଦାନ୍ତ ସାମାନ୍ୟ ବିକଶିତ ହେବା ବ୍ୟତୀତ ଆଉ କୌଣସି ହାସ୍ୟରସର ପ୍ରଭାବ ତାଙ୍କ ଉପରେ ପଡ଼ିବାର ଦୃଶ୍ୟ ହୁଏ ନାହିଁ ।

ଫରାସୀ ଦାଢ଼ି, ଚିତ୍ରିତ ଜାମା, କହିବା, ଚାଲିବା, ହସିବା ଭଙ୍ଗୀରେ ପୂର୍ଣ୍ଣ ବିନ୍ଧାଣୀ ଏକ ସୁଦର୍ଶନ କଳାକାର । ଗୋସେଇଁ ବାପାଙ୍କ କାରିଗରୀରେ ନିର୍ମିତ ଜଗନ୍ନାଥ ମନ୍ଦିର ସହିତ ଜଡ଼ିତ ବହୁ କଥା କିମ୍ବଦନ୍ତୀକୁ ନେଇ ସେ ଚଟୁଳ ବାକ୍‌ବିଳାସ କରନ୍ତି । ବୃତ୍ତିରେ ଫଟୋଗ୍ରାଫର, ପତ୍ରକାର, କ'ଣ ଟାଏ ହେବାର ସ୍ୱପ୍ନ ଓ ତା' ହୋଇ ନପାରିବାର ବାସ୍ତବତାରେ ଚିତ୍ତ ବିଭାଜିତ, ବିଡ଼ମ୍ବିତ କଳାକରପୂର୍ଣ୍ଣ ଆଉଠାଏ, ଆଉ ଏକ କେନ୍ଦ୍ରରେ କିନ୍ତୁ ମୋର ଆତ୍ମା ପଲ୍ଲବିତ ହେଉଥାଏ । କାଳି ଦତ୍ତଙ୍କ ଘରୁ ମୁଁ ଉଠିଆସିଥାଏ ବିପିନ୍ ମହାନ୍ତି ଘରକୁ; ଜୁବ୍‌ଲି ଲାଇବ୍ରେରୀ ସାମ୍ନା, ବାଣ୍ଡିଆ ଜଗନ୍ନାଥ ମନ୍ଦିର ସନ୍ନିହିତ ତ୍ରିଛକି ଉପରେ । ସେ ଚାରି ବଖୁରିଆ କୁହୁକପୁରୀରେ ପଶିବା ଦିନଠାରୁ ମୁଁ ଜାଣି ଦି' ଫାଳ ହୋଇଗଲି । ଫାଳେ ପରିବାର, ପଡ଼ୋଶୀ, ସମାଜ ସଂସାରକୁ ଆବୋରି ରହିଲା । ସେଇଠି କ୍ଲବ୍, ସେଇଠି ଟେନିସ୍, ସେଇଠି ଅଧ୍ୟାପନା,

ଡାଲିଚାଉଳ, ପରିବା, ଲୁଗା, ସେଲୁନ, ଔଷଧ ଦୋକାନ । ସେଇଠି ଅମୁ ତ୍ରିପାଠୀଙ୍କ ପ୍ରବର୍ତ୍ତାଣରେ ଲୁଲୁଙ୍ଗ୍ ଡାକବଙ୍ଗଳାରୁ ନାଳ ପାରିହୋଇ ପାହାଡ଼ ଉପରେ ନିଘଞ୍ଚ ଅରଣ୍ୟରେ ବାଘ ଗୁମ୍ଫା ସାମ୍ନାରୁ ବିଜୟ ମହାପାତ୍ର ସମେତ ଆଉ ପାଞ୍ଚଜଣ ପ୍ରାଣ ବିକଳରେ ଅତଡ଼ା ବାଟେ ନାଳକୁ ଖସିବାର ମହାର୍ଘ ବହୁଦର୍ଶିତା, ହଳଦିଆ ଘାଇ ମୁଣ୍ଡରେ ବଣଭୋଜି, ପ୍ରବଳ ଭିଡ଼, ତୁମୁଳ ଘୋଘୋ', ଘଣ୍ଟ ମାଦଳ ଆଉ ନିରାମିଷ ଡାହୁକ ଗୀତକୁ ନେଇ ରାଜଦାଣ୍ଡରେ ରଥଯାତରା ! ବହିରଙ୍ଗର ବହୁରଙ୍ଗ, ବହୁ ସ୍ୱାଦ, ବିବିଧ ବିଚିତ୍ରତା ପ୍ରବଳ ମାଦକତା । ରାତି ଅଧରେ ଧୁମ୍‌ସା ଆଉ ରଙ୍ଗବାଜାରେ ଚମକୁଥିବା ଛଉନାଚର ବାଘ, ଘନ ନୀରବତାକୁ ସୋରା ସୋରା ଚିରି ପକାଉଥିବା, ପାହାଡ଼ଟାକୁ ବିଳମ୍ବିତ ଛନ୍ଦରେ ଦୋଳାୟିତ କରିପାରୁଥିବା, ମନପ୍ରାଣକୁ ଉଚ୍ଚାଟିତ କରୁଥିବା ମହୁରିଆଙ୍କ ଐକ୍ୟତାନ, ପ୍ରଚଣ୍ଡ ପୌରୁଷ ଓ ସୁକୁମାର ଲାଳିତ୍ୟ ସମନ୍ୱୟରେ ସେ ବିରଳ ନୃତ୍ୟଛନ୍ଦରେ ବିଭୋର ହୋଇ ରାତି ବିତେଇ ଦେଲାପରି, ବହିରଙ୍ଗର ବର୍ଣ୍ଣବିଭାରେ ନିମଗ୍ନ ରହି ଜୀବନ ବିତେଇଦେବା ଖୁବ୍ ସମ୍ଭବ ଓ ସ୍ୱାଭାବିକ । କିନ୍ତୁ ତା'ର ଆଢୁଆଳରେ ଆଉଠାଏ ଚନ୍ଦ୍ରୋଦୟ ହେବା, ଆଉ ଏକ ପୃଥିବୀର ବାସିନ୍ଦାମାନେ ବିପିନ ମହାନ୍ତିଙ୍କ ସେ ବସାଘରଟିକୁ ଅଧିକାର କରିନେବା, କେଉଁ କାଉଁରୀ କାଠିର ସ୍ପର୍ଶରେ ମୋର ଆଉ ହଳେ ଆଖି ଫିଟିଯିବା; ଏବଂ ସେ ଚାରିବଖୁରିଆ ଘରେ 'ଯନ୍ତାରୂଢ଼' ଉପନ୍ୟାସର ମଞ୍ଚ, ଚରିତ୍ର ଓ ଘଟନା ପ୍ରବାହ ଉଜ୍ଜୀବିତ ହୋଇଉଠିବା ଏକ ବିସ୍ମୟ ।

ସେଇ ବିସ୍ମୟ ହେଉଛି ମୋ ସତ୍ତାର ଆର ଫାଳକ, ମୋର ଅନ୍ତରଙ୍ଗ ପ୍ରକୋଷ୍ଠ, ମୋର ସୁରଭିତ ଉଦ୍ୟାନ, ମୋ ଆତ୍ମାର ଉଲ୍ଲାସ ଭୂମି । କେମିତି ଓ କାହିଁକି ଗ୍ରୀଷ୍ମଛୁଟିର ସେ ନିରବ ଦି' ପ୍ରହରଟାରେ ସନାତନ ଦାସ ଆସି ମୋ ସାମ୍ନାରେ ଉଭା ହେଲେ ଓ ଅନାୟାସରେ ମୋ ଚେତନାର ଚୌହଦ୍ଦିକୁ ଆଚ୍ଛନ୍ନ କଲେ ମୁଁ କହିପାରିବି ନାହିଁ । ଆଶ୍ଚର୍ଯ୍ୟବତ୍ ସବୁ କିଛି କେଉଁ ଏକ ଇନ୍ଦ୍ରଜାଲ ବଳରେ ରୂପାନ୍ତରିତ ହୋଇଗଲା । ବାଣ୍ଠିଆ ଜଗନ୍ନାଥ ମନ୍ଦିର, ଲକ୍ଷ୍ମୀନାରାୟଣ ମନ୍ଦିର ହୋଇଗଲା । ଦି' ପ୍ରହରଟାରେ ମୋତେ ସନ୍ଧ୍ୟା ଦେଖାଗଲା ଓ ମନ୍ଦିର ପୂଜକ ସନାତନ ଦାସ ରୂପ ପରିଗ୍ରହ କରି ଏକ ଅଜଣା ବାଟରେ ଆସି ସେଇ ଘରେ ପହଞ୍ଚିଲେ ଯେଉଁଠି ବାଟବଖରାରେ ସଅପ ଉପରେ ପଡ଼ି ମୁଁ ସେ ଦୃଶ୍ୟ ଦେଖୁଥିଲି । ତେଣିକି ବିପିନ୍ ମହାନ୍ତିଙ୍କ ସେ ବସାଘର ସନାତନ ଦାସ ଓ ତାଙ୍କ ପରିବାର ଅଧିକାର କରିନେଲେ। ସେ ସମସ୍ତେ ମୋତେ ହିଁ କେବଳ ଦେଖାଯାଉଥିଲେ, ଆଉ ସମସ୍ତଙ୍କୁ ଅଦୃଶ୍ୟ । ଆଉ ଆମେ ସମସ୍ତେ ବାରିପଦାର

ବାସ୍ତବ ଦେଶକାଳ ସନାତନ ଦାସଙ୍କୁ ଅଦୃଶ୍ୟ । ଦୁଇଟି ପୃଥିବୀର ମଧ୍ୟରେଖାରେ ରହି ମୁଁ ଉଭୟର ଦୃଶ୍ୟ ଦେଖୁଥିଲି । ଏକୋଇଶି ଦିନ କାଳ ମୁଁ ସେମିତି ସମ୍ମୋହିତ ଅବସ୍ଥାରେ ଦି'ପ୍ରହରର ଆଚ୍ଛନ୍ନ ଚେତନାରେ ଏକୋଇଶିଟି ପରିଚ୍ଛେଦ ଲେଖିଗଲି। ଦୃଶ୍ୟପଟ୍ଟ ଦିଶୁଥିଲା : ଘଟନା ଚରିତ୍ର ଅନୁଭବ ଆବେଗ ସବୁ କାହାର ଅନୁକମ୍ପାରେ ପରିସ୍ଫୁଟ ହୋଇଯାଉଥିଲା । ମୁଁ କେବଳ ଯନ୍ତ୍ରବତ୍ ସେସବୁ ଲିପିବଦ୍ଧ କରୁଥିବା ଲିଖନକାର । ସେ ଚାରିବଖୁରିଆ ବସାଘର, ଆଗକୁ ରାସ୍ତାପଟେ ଦି' ବଖରା ମଝିରେ ଅଗଣା । ଅଗଣା ଆରପଟେ ଆଉ ଦି'ବଖରା । ଏ କୁହୁକପୁରୀରେ ମୁଁ ନିଜେ ମୋ ପରିବାର ନେଇ ରହୁଥିଲି । କିନ୍ତୁ ଏବେବି ତା'ର ଅନ୍ଧିସନ୍ଧି କେବଳ ସନାତନ ଦାସଙ୍କ ସ୍ମୃତିରେ ଭରପୂର। ବିପିନ୍ ମହାନ୍ତିଙ୍କ ବସାଘର 'ଯନ୍ତାରୂଢ଼' ଉପନ୍ୟାସର ଜନ୍ମଭୂମି । ମୋ ଲେଖକ ସତ୍ତାର ପ୍ରକଟ ଭୂମି ।

ମୋ ପାଖରେ ମୋ ନିଜ ସଜ୍ଞା ବଦଳିଯିବାର ବିଚିତ୍ର ଅନୁଭବକୁ ନେଇ ମୁଁ ଦୁଇଟି ସ୍ୱତନ୍ତ୍ର ଜଗତରେ ବଞ୍ଚୁଥାଏ। କଲେଜ ଲାଇବ୍ରେରୀର ଏକ ନିକାଞ୍ଚନ ଖୋପ ଭିତରେ ମୁଁ ନିମଗ୍ନ ବସିଥାଏ, ସେଇଠି ମୋ ରଚନା-ସାହିତ୍ୟର ଆରମ୍ଭ । 'ତ୍ରିଶଙ୍କୁର ସ୍ୱର୍ଗ', 'ସ୍ରଷ୍ଟାର ସ୍ୱୀକାର', 'ଶ'ଙ୍କ ନରକ' ଆଦି ଲଳିତ ନିବନ୍ଧ ସେଇଠି ଲେଖା ହେଉଥାଏ । ଝଙ୍କାରରେ ପ୍ରକାଶିତ ହୋଇ ବହୁ ସୁଧୀ ପାଠକଙ୍କ ଦୃଷ୍ଟି ଆକର୍ଷଣ କରୁଥାଏ । ଲାଇବ୍ରେରୀରୁ ଭିତର ପାହାଚ ବାଟେ ଉଠିଆସିଲେ ଅଧ୍ୟାପକ କକ୍ଷ । ଏ ରୂପାନ୍ତର ପୂର୍ବରୁ 'ସୁଇମିଙ୍ଗ ପୁଲ୍'ରୁ ଉଠିଆସିଲେ ରାଜାସାହେବଙ୍କ 'ପ୍ୟାଣ୍ଟ୍ରି' । ଉଭୟ କ୍ଷେତ୍ରରେ ତଳୁ ଉଠିଆସୁଥିବାବେଳେ ସେ ଜଣକ ଓଦା ସରସର ଦିଶୁଥିବ। ମୁଁ ତାଙ୍କୁ ସେପରି ଦେଖାଗଲି କି ସେ ମୋତେ ସେପରି ଦେଖାଗଲେ, କହିବା କଠିନ । କିନ୍ତୁ ବାହୁ ପ୍ରସାରି ଉଭୟେ ପରସ୍ପରକୁ ଗ୍ରହଣ କରିବା ଏକ ଅସାଧାରଣ ଘଟଣା । ତା' ପୂର୍ବରୁ, ବା ଠିକ୍ କହିଲେ ସେଇ ମୁହୂର୍ତ୍ତ ପର୍ଯ୍ୟନ୍ତ ଆମେ ପରସ୍ପର ପାଖରେ ସମ୍ପୂର୍ଣ୍ଣ ଅପରିଚିତ । ଜୀବନରେ ତାହାହିଁ ସର୍ବପ୍ରଥମ ସାକ୍ଷାତ । କିନ୍ତୁ ସେଭଳି ଆଚରଣରୁ ମନେହେଲା ସତେବା ଆମେ ବହୁକାଳରୁ ପରିଚିତ ଘନିଷ୍ଠ ବନ୍ଧୁ । ତାହାହିଁ ବୋଧହୁଏ ସତ୍ୟ, କିନ୍ତୁ ତା' ପାଇଁ କୌଣସି ପ୍ରମାଣ ନାହିଁ । ଆମେ କ୍ରମଶଃ ସଚେତନ ହୋଇ ପରସ୍ପରକୁ ଅପ୍ରତିଭ, ବିସ୍ମିତ ହୋଇ ଚାହିଁଲୁ । ଆସ୍ତେ ଘୁଞ୍ଚିଗଲୁ ଦୁଇଟି ପାଖାପାଖି ଚୌକିକୁ । ଗୋଟିଏ ନୀରବ ଲାଜକୁଳା ପ୍ରଶ୍ନ ମୁହଁ ଦେଖେଇ ଲୁଚିଯାଉଥାଏ । ପ୍ରଶ୍ନଟି ହେଲା– 'ଆପଣ କିଏ' ? କିଛି ସମୟ ପରେ ବାହ୍ୟ ପରିଚୟ ତ ହୋଇଗଲା । କିନ୍ତୁ ଗଭୀର ଅନୁଭବରେ ରହିଗଲା, ଯେ ଆମେ ଦୁହେଁ ସୋଦର ଆତ୍ମା । କାହିଁ କେଉଁ

·ଅନନ୍ତ କାଳର ଘନିଷ୍ଠତା ! ନହେଲେ କ'ଣ ଦୁଇଜଣ ପାଗଳ, ଜ୍ଞାନବୃଦ୍ଧିରେ ବିକଶିତ, ଆତ୍ମସଚେତନ ଅଧ୍ୟାପକ, କିଛି ନ ବୁଝି ନସୁଝି ପରସ୍ପରକୁ କୁଣ୍ଢାଇ ଧରିଥାନ୍ତୁ !– ସେ ଜଣକ ଦର୍ଶନ ଅଧ୍ୟାପକ, ସେହି ମାତ୍ର କାମରେ ଯୋଗଦେଇ ବସିଥାନ୍ତି । ସେ ହେଲେ ହୃଦାନନ୍ଦ ରାୟ । ମୋ ପାଇଁ ପରମ ଆତ୍ମୀୟ । ଆମ ପାଇଁ ପ୍ରଥମ ପରିଚୟର ଔପଚାରିକତା ଅଳୀକ ଓ ଅନାବଶ୍ୟକ ମନେହେଲା । ତଥାପି ଆମେ ହାତ ଧରାଧରି ହୋଇ କଲେଜରୁ ବାହାରିଲୁ । ବିପିନ୍ ମହାନ୍ତି ଘର ସାମ୍ନା ଅମୃ ତ୍ରିପାଠୀଙ୍କ ଭଡ଼ାଘରେ ସେ ରହିଲେ । ଦିନକୁ ଦିନ ସମ୍ପର୍କ ନିର୍ମଳ, ପରିଚ୍ଛନ୍ନ, ପ୍ରଗାଢ଼ ହେବାର ଅନୁଭବ ହେଲା । କୌଣସି ପ୍ରତ୍ୟାଶା ନାହିଁ, କୌଣସି ଅଭିପ୍ରାୟ, ଅଭିଳାଷ, ଅଭିସନ୍ଧି ନାହିଁ । ସେ ସମ୍ପର୍କ ଏଯାବତ୍ ଦୃଢ଼ ଏବଂ ନିରବଚ୍ଛିନ୍ନ । ଏହା ଏକ ରହସ୍ୟ। ତାକୁ ଭେଦିବା ସମ୍ଭବ ନୁହେଁ । ଏ ପରିଚୟ ବାରିପଦାରେ ହିଁ ହେବାକୁ ଥିଲା। ବୋଧହୁଏ ସେଭଳି ଅଲୌକିକତା ପାଇଁ ବାରିପଦା ହିଁ ଏକମାତ୍ର କ୍ଷେତ୍ର।

ଲାଇବ୍ରେରୀର ନିଭୃତ କକ୍ଷରେ ରଚିତ 'ରମ୍ୟରଚନା' ମୋତେ ବି ଆଚ୍ଛନ୍ନ କରି ରଖିଥାଏ । ସେତେବେଳେ ବାରିପଦାରେ ଲଗାଣ ବର୍ଷା । ଅହରହ ବାରିପାତରେ ପଦାକୁ ବାହାରିବା ଏକରକମ ଅସମ୍ଭବ । ମୁଁ ମୋର ବାଟ ବଖରାଟିରେ ବସିଥାଏ । ଅଗଣାରେ, ବାହାରେ କଚାଡୁଥାଏ ବର୍ଷା । ମନ ଖୁକ୍‌ମୁକ୍ ହେଉଥାଏ ଚିତ୍ର କରନ୍ତି କି, କବିତା ଲେଖନ୍ତି କି ! କ'ଣଟାଏ ସର୍ଜି ଦିଅନ୍ତି କି ! – ଏତିକିବେଳେ ବାହାର ପିଣ୍ଡାରେ କାହାର ପାଦଶବ୍ଦ ଶୁଭିଲା । ତା'ପରେ କବାଟ ବାଡ଼େଇବାର ଶବ୍ଦ । କବାଟ ଫିଟୁ ଫିଟୁ ସୁଁ ସୁଁ ପବନ, ସୁଆତି । ଧୋତି ପଞ୍ଜାବି ପିନ୍ଧି ଛତାଧରି ସେ ଠିଆ ହୋଇଥାନ୍ତି । ଧୋତିର ତଳମୁଣ୍ଡ ଓଦା, ପାଣ୍ଡେଇ ପାଣିରେ ସରବୁଡ୍ । ଛତା କତ କରିଦେବାରୁ ତା'ଦେହରୁ ଦରଦର ପାଣି ନିଗିଡ଼ି ଯାଉଥାଏ । କିନ୍ତୁ ମୋତେ ଦେଖୁ ଦେଖୁ ସେ ଆରମ୍ଭ କରିଦେଲେ, 'ଆପଣ ଯାହା ଲେଖୁଛନ୍ତି ସେଇଟା ପଏଟିକ୍ ପ୍ରୋଜ୍ । ବଙ୍ଗଳାରେ ସମୁକ ମୈତ୍ର ଷାଠିଏ ବର୍ଷ ତଳେ ସେଇଭଳି ପଏଟିକ୍ ପ୍ରୋଜ୍ ଲେଖୁଥିଲେ ।...... ମୁଁ ମୋ ଆଖି କାନକୁ ବିଶ୍ୱାସ କରିପାରୁ ନଥାଏ । ଏତକ କହିବା ପାଇଁ ଏଭଳି ଦୁର୍ଦ୍ଦିନରେ, କାହିଁ କେତେ ବାଟ ଦେଉଳସାହିରୁ ଏ ବୟସରେ ଚାଲି ଚାଲି ଆସିଛନ୍ତି ପରମ ମାନବୀୟ ପରମାନନ୍ଦ ଆଚାର୍ଯ୍ୟ !। ମୁଁ ନିର୍ବାକ୍ ବିହ୍ୱଳ ହୋଇ ଠିଆ ହୋଇଥାଏ; ବୁକୁ ଭରିଯାଉଥାଏ କୋହରେ । ଆଖି ଭରିଯାଉଥାଏ ଲୁହରେ । ନୀରବରେ ତାଙ୍କ ହାତ ଧରି ପାଛୋଟି ଆଣିଲି । ଟାଓ୍ୱେଲ ବଢ଼ାଇ ଦେଲି ପୋଛିହେବା ପାଇଁ । ସେ କିନ୍ତୁ ତା' ଭିତରେ କହି ଚାଲିଥାନ୍ତି, 'ଡାକ୍ତର ମନା କରିଛି ଚାଲବୁଲ କରିବାକୁ। ତାକୁ

ମାନିଲେ ତ କିଛି ହୋଇପାରିବ ନାହିଁ।' ମୁଁ ଆହୁରି କୃତଜ୍ଞ ଏବଂ ଉଦ୍‌ବିଗ୍ନ ବୋଧ କଲି । ଚା' କପେ ଆଣି ବଢ଼େଇ ଦେବାରୁ ଚା' ଉପରେ ସାରା ଆସାମ ଓ ଦାର୍ଜିଲିଂର ଇତିହାସ ଗଢ଼ିଉଠିଲା । କେତେ ତଥ୍ୟ, କେତେ ତତ୍ତ୍ୱ । ପ୍ରସଙ୍ଗକ୍ରମେ ଖିଚିଂର କୀଚକେଶ୍ୱରୀ ମନ୍ଦିର କଥା ଉଠିଲା । କେମିତି ବର୍ଷ ବର୍ଷ ଧରି ପ୍ରତ୍ୟେକ ଶିଳାଖଣ୍ଡକୁ କ୍ରମିକ ସଂଖ୍ୟା ଦେଇ ପୁଣି ନିର୍ମିତ ହେଲା ସେ ଭବ୍ୟ ମନ୍ଦିର, ତା'ର ମନୋରମ ବିବରଣୀ ମୁଁ ଶୁଣୁଥାଏ । ପ୍ରାମାଣିକ ତଥ୍ୟ ନଥିଲେ କୌଣସି ମତ ଗ୍ରହଣୀୟ ନୁହେଁ । ପ୍ରତ୍ନତତ୍ତ୍ୱ କିପରି ଏକ ମୂକକୁ ପ୍ରଗଳ୍ଭ କରିବାର ପ୍ରକ୍ରିୟା ଏବଂ କିପରି ଗବେଷଣା କୌଣସି କାର୍ଯ୍ୟ ନୁହେଁ, ତାହା ଏକ ଦୃଷ୍ଟିଭଙ୍ଗୀ ବଖାଣୁ ଥାଆନ୍ତି ମହାଶୟ । ଦେହରେ ଓଦାଲୁଗା ଶୁଖି ଆସିଲା, ବାହାରେ ବର୍ଷା ସାମାନ୍ୟ ଧିମେଇ ଆସିଲା । ମୁଁ ବାହାର ପିଣ୍ଡାରେ ତାଙ୍କୁ ବଳେଇ ଠିଆହୋଇଥାଏ, ଏବଂ ସେ ଛତା ଧରି ଡଗଡଗ ଚାଲିଯାଉଥାନ୍ତି ବାଣିଆ ଜଗନ୍ନାଥ ମନ୍ଦିର ଆଡ଼େ । ମନେମନେ ତାଙ୍କୁ ବାରମ୍ବାର ପ୍ରଣାମ କରି ମୁଁ ଲେଉଟି ଆସିଲି । ଏ ମହାର୍ଘ୍ୟ ଅନୁଭବକୁ ସାଇତି ରଖିଲି ପାଟ କନା ଗୁଡ଼େଇ ଭବିଷ୍ୟତ ପାଇଁ ।

ଅନ୍ତରଙ୍ଗ ଭୂମି ବିସ୍ତୃତ ନୁହେଁ, କିନ୍ତୁ ଗଭୀର, ଘନିଷ୍ଠ ଓ ଉଷ୍ମ । ସେ ଭିତରକୁ ସମସ୍ତଙ୍କର ପ୍ରବେଶାଧିକାର ନାହିଁ । ଯାହାକୁ ଦେଖିଲେ ପ୍ରାଣର ଉଲ୍ଲାସ ହେଉନାହିଁ, ତା' ସହିତ ସଂଯୋଗ ହେଉନାହିଁ, ଏଣୁ ଅନ୍ତରଙ୍ଗତା ଆସିବ କୁଆଡୁ ? ଦିନେ କିନ୍ତୁ ସେ ନିବୃତ୍ତ ଅଞ୍ଚଳରେ ବିସ୍ଫୋରଣ ଘଟିଲା । ଜଣେ ପଦସ୍ଥ ସରକାରୀ ଅଫିସର କଲେଜର ଅଧ୍ୟାପକ କକ୍ଷରେ ପଶି ଆମକୁ ତାଙ୍କ ଘରେ ଅନୁଷ୍ଠିତ ହେଉଥିବା ପାଠଚକ୍ରରେ ଯୋଗଦେବା ପାଇଁ ନିମନ୍ତ୍ରଣ କଲେ । ହୃଦାନନ୍ଦ ରାୟ, ମହାପାତ୍ର ନୀଳମଣି ସାହୁ ଓ ମୁଁ ସାମାନ୍ୟ ଇତସ୍ତତଃ ପରେ ରାଜିହେଲୁ ସନ୍ଧ୍ୟାରେ ସେଇଠି ପହଞ୍ଚିବାକୁ । ପୋଷ୍ଟଅଫିସ ରାସ୍ତା, କଚେରି ରାସ୍ତା, ଆଉ ଫାୟାର ଷ୍ଟେସନ ରାସ୍ତା ଯେଉଁଠି ମିଶି ଜେଲ ଆଡ଼କୁ ମୁହାଁଇ ଯାଇଛନ୍ତି, ସେଇ ଛକ ଉପରେ ସରକାରୀ ଘର ତିନିଟା । ମଝି ଘରଟାରେ ପାଠଚକ୍ର ହେବ । ଡାକିଥାନ୍ତି ବିହାରୀଲାଲ ପଟ୍ଟନାୟକ।

କସ୍ତୁରୀ ଗନ୍ଧର ଧୂପକାଠିଟିଏ ଜଳା ହେଲା । ଦିଲ୍ଲୀପ ରାୟଙ୍କ କଣ୍ଠରେ ଗ୍ରାମଫୋନ ରେକର୍ଡ଼ ବଜାହେଲା । ଫାଳକରେ 'ହେ, କନକୋଜ୍ଜ୍ୱଳ ସବିତାବରଣୀ, କରୁଣାମୟୀ ମା' ତାମସହରଣୀ'। ଆର ଫାଳକରେ 'କନକଜ୍ୟୋତି କଳେବରଧାରୀ' । ଫଟୋ ଦେଖାଇ ଆମକୁ ଚିହ୍ନାଇ ଦିଆଗଲା– ଏ ହେଉଛନ୍ତି ମହାଯୋଗୀ ଶ୍ରୀ ଅରବିନ୍ଦ, ଆଉ ଏ ହେଉଛନ୍ତି ଦିବ୍ୟ ଜନନୀ ଶ୍ରୀମା'! ଏଭଳି ଅପ୍ରତ୍ୟାଶିତ ଆକସ୍ମିକ ଅଦ୍ଭୁତ

ସଂଘାତ ପାଇଁ ଆମେ ବୋଧହୁଏ ପ୍ରସ୍ତୁତ ନଥିଲୁ । ଅନ୍ତତଃ ମୁଁ ନଥିଲି । ଘୋର ପ୍ରତିରୋଧ ହେଲା । ପ୍ରବଳ ଯୁକ୍ତିରେ ଆତ୍ମପ୍ରସାଦ ପାଇଁ ବିଚରା ବିହାରୀଲାଲଟିକୁ ପ୍ରଶ୍ନବାଣରେ ଜର୍ଜରିତ କରାଗଲା । ତାକୁ ଅପରପକ୍ଷ ଭାବି ଧୂଳିସାତ୍ କରାଗଲା । କିନ୍ତୁ ବସ୍ତୁତଃ ଆମେ ହିଁ ଧୂଳିସାତ୍ ହେଲୁ । ଆମ ଭିତରେ ଥିବା ଅହମିକା, ପଣ୍ଡିତମ୍ମନ୍ୟତା, ଦମ୍ଭ, ଦର୍ପ ସବୁ ସମୁଦ୍ର କୂଳରେ ସାତଲହଡ଼ା ଚୂରି ହୋଇଗଲାପରି କ୍ରମଶଃ ପରାସ୍ତ ହୋଇଗଲେ । ଅନ୍ତରଙ୍ଗ ଭୂମିରେ ଏକ ଭାସ୍କରକେନ୍ଦ୍ର ଦେଖାଗଲା । କସ୍ତୁରୀ ଗନ୍ଧରେ ଅନ୍ତର ଧୂପିତ ହୋଇଗଲା, କନକୋଜ୍ଜ୍ୱଳ ହୋଇଉଠିଲା ତିମିରିତ ବନଭୂମି । ସେଇଠି ଆମେ ଏକତ୍ର ହେଲୁ ଆତ୍ମୀୟତାରେ । ମିଶିଲେ ଜୀବନ ପାଣି, ରାଧାକୃଷ୍ଣ ଭଞ୍ଜ । ଆଉ ଏକ ବିସ୍ତୃତ ପରିବାର ଗଢ଼ିଉଠିଲା । ଶ୍ରୀଅରବିନ୍ଦଙ୍କୁ ପରମାଶ୍ରୟ ରୂପେ ପାଇ ଜୀବନ ସାର୍ଥକ ମନେହେଲା । ଅନନ୍ତକାଳରୁ ଅବହେଳିତ ହୋଇପଡ଼ିଥିବା ଏ ସ୍ଥୂଳ ଜଗତ ପାଇଁ ଅମୃତର ବାର୍ତ୍ତାବହ ହୋଇ ଆସିଲେ ଶ୍ରୀଅରବିନ୍ଦ । ରୂପାନ୍ତରିତ ମନପ୍ରାଣ ଶରୀରରେ ଭଗବତ୍ ପ୍ରାପ୍ତି, ଚେତନାର ଉଦ୍‌ବର୍ତ୍ତନ ଶରୀରର ରୂପାତିକ୍ରମଣ ଏ ପୃଥିବୀରେ ଦିବ୍ୟସତ୍ତାର ପ୍ରତିଷ୍ଠା, ଅତିମାନସର ଅବତରଣ– ଋଷି କଣ୍ଠରେ ଉଚ୍ଚାରିତ ହେଲା । ନୀରବ କୃତକୃତ୍ୟତାରେ ମୁଁ ସମର୍ପିତ ହୋଇଗଲି । ଗୁରୁ ସମ୍ମୁଖରେ ନତଜାନୁ ହୋଇ ଦୀକ୍ଷିତ ହୋଇଗଲି । ବାରିପଦା ମୋର ଦୀକ୍ଷାଭୂମି, ଅବିସ୍ମରଣୀୟ ପୁଣ୍ୟଭୂମି । –ତେଣିକି ସବୁ ଅନୁଭବ, ସାନ୍ଦ୍ର, ଆବେଗମୟ ଆଉ ଏକ ସୁଗନ୍ଧରେ ସୁରଭିତ ମନେହେଲା ।

ଜୀବନ ପାଣି– ତାକୁ ଆମେ ଡାକୁଥିଲୁ ନାଗବଚ୍ଛା । ଫଣା ଟେକିଲା ପରି ତା'ର ଠାଣି । ନାଚ, ଗୀତ, ସାହିତ୍ୟରେ ରସାଣିତ, ବାରିପଦାର ସ୍ୱଭାବ ସୁଲଭ ରସିକ ବ୍ୟକ୍ତିତ୍ୱ । ନାରୀ ଘାତକ ଚେହେରା । ମଣିକାଞ୍ଚନ ଯୋଗହୋଇଥିଲା ଯେତେବେଳେ ଜୀବନ ପାଣି ଗୀତିକାର ଓ ରାଧାକୃଷ୍ଣ ଭଞ୍ଜ ଗାୟନକାର । 'ସନ୍ନ୍ୟାସିନୀ ମୁଁ ଚମ୍ପକ କଳି' ହେଉ ଅଥବା 'ମୟୂରୀ ଗୋ ତୁମ ଆକାଶେ ମୁଁ.....' ହେଉ ଶ୍ରୋତା ଭାବବିଭୋର ନହୋଇ ଉପାୟ ନାହିଁ । ମନହେଲେ ଜୀବନ ବଂଶୀ ବଜାଏ, କବିତା ଲେଖେ, ଛଉନାଚ ଉପରେ ସନ୍ଦର୍ଭ ପ୍ରସ୍ତୁତ କରେ । ରାଧାକୃଷ୍ଣର ମନଫୁଲଣା ଥିଲେ ଝୁମର ଶୁଣାଏ, ଉଦାସ ଥିଲେ ଅଭିରାମଙ୍କ ଭଜନ ଗାଏ । ମୋର କିନ୍ତୁ ବାରବାର ଶୁଣିବାକୁ ଇଚ୍ଛା ଭଞ୍ଜକଣ୍ଠରେ ରବୀନ୍ଦ୍ରନାଥ 'ତିମିର ଅବଗୁଣ୍ଠନେ କେ ତୁମି ଦାଁଡ଼ାଲେ ମମ ଅଙ୍ଗନେ ଏକାକୀ.....' ।

ଜୀବନଙ୍କୁ ମିଳିଥାଏ ଧଳାହାତୀ ପରି ୟୁନିସେଫ ତରଫରୁ ଖଣ୍ଡେ ସରକାରୀ ଭ୍ୟାନ୍ । ସେଇଥିରେ ବସି ଆମେ ବାରମ୍ୱାର ଉଭାନ ହୋଇଯାଉ ବାରିପଦାରୁ ।

କେତେଆଡ଼େ ଭ୍ରମିଛୁ ତା'ର ହିସାବ ନାହିଁ। ସଭାସମିତି, ଭାଷଣ, ଶ୍ରୀଅରବିନ୍ଦ ଦର୍ଶନ ଚାଲିଥାଏ, କିନ୍ତୁ ଅନ୍ତରଙ୍ଗତାର ଆଉ ଏକ ମଧୁର ରୂପ ବି ଥାଏ। ସେ ଦିନ ପୂର୍ଣ୍ଣିମା । ଚନ୍ଦ୍ରୋଦୟ ପରେ ପରେ ଆମେ ବାହାରିଲୁ 'ରାଜାବସା, ସେଇଠି ଉଡ଼ାଜାହାଜ ଓହ୍ଲାଇବାର ବ୍ୟବସ୍ଥା ଥିଲା । ହୁଏତ କେବେ କିଏ ଓହ୍ଲେଇଥିବ। କିନ୍ତୁ ସେଦିନ ଆକାଶରୁ ଜହ୍ନ ଝୁଲିରହିଥାଏ ଖସିପଡ଼ିବାକୁ । ଆମକୁ ପାଗଳ କରୁଥାଏ ସେ ନୀରବତା ଓ ସେ ଧବଳ ଜ୍ୟୋସ୍ନା। ରାଜାବସା ଏକ ବିଶାଳ ପଡ଼ିଆ ସତ, କିନ୍ତୁ ସେଇଠି ଖୋଲା ସମୁଦ୍ର ପରି ଦିଗ ବାରି ହୁଏ ନାହିଁ । କଇଁଚ ପିଠିଆ ବିସ୍ତୀର୍ଣ୍ଣ ଭୂମି, ଦିଗ୍‌ବଳୟର କୌଣସି ଚିହ୍ନ ଦିଶେନାହିଁ । ଆମେ ପଡ଼ିଆ ମଝିରେ ଚିତ୍‌ମାତ୍ ପଡ଼ିଗଲୁ । ତା'ପରେ ହଠାତ ଉଠି ଜଣକ ପଛରେ ଜଣେ କାନ୍ଧରେ ହାତ ରଖି ବୃନ୍ଦନୃତ୍ୟ-ଭଙ୍ଗୀରେ ଗୋପୀଭାବରେ ମଜ୍ଜିଗଲୁ । ସ୍ୱତଃ ଜଗନ୍ନାଥ ଦାସଙ୍କ ଗୋପଲୀଳାରୁ କେହି ଜଣେ ବୋଲିଲା 'ହେ, କୁରୁବେଲି ନାଗେଶ୍ୱର । ତୁମ୍ଭେ କି ଦେଖିଛ କିଶୋର' । ପାଗଳାମି କଟିଲା ବେଳକୁ ନିଶାର୍ଦ୍ଧ ।

ଆଉଦିନେ ଆମେ ଯାଇଥାଉ କରଞ୍ଜିଆ । କାମ ସାରି ଜୀବନର ରାଜହଂସ (ତା' ଗାଡ଼ିର ଶ୍ରଦ୍ଧାନାମ) ପାଖରେ ଏକାଠି ହେଲାବେଳକୁ ରାତି ଏଗାରଟା । ମୋ ଛଡ଼ା ବାକି ସମସ୍ତେ ନିଶାଚର । ରାତିରେ ନ ଶୋଇଲେ ତା' ଆରଦିନ ସାରା ମୋ ମୁଣ୍ଡ କାମ କରେ ନାହିଁ । ସେମାନଙ୍କ କଥା ନିଆରା । ରାତି ଯେତେ ଗଭୀର ହୁଏ ସେମାନଙ୍କ ମନପ୍ରାଣ ଶରୀର ସେତିକି ବିକଶିତ ହୁଏ । ଏଣୁ ବେଳେବେଳେ ମୋର ନିଦ୍ରାଳୁ ଉପସ୍ଥିତି ତାଙ୍କର ରସଭଙ୍ଗ କରେ । ସେଥିପାଇଁ କିଛି ମଧୁର ଭର୍ତ୍ସନା ମଧ ଶୁଣିବାକୁ ପଡ଼େ । ମୋର କୁଆଡ଼େ ଶୈଶବ କଟିନାହିଁ ବୋଲି ଆକ୍ଷେପ ହୁଏ, କାରଣ ମୁଁ ଚା' ନ ପିଇ କ୍ଷୀର ପିଏ, ନିରାମିଷ ଖାଏ । ସନ୍ଧ୍ୟା ହେଉ ହେଉ ଶୋଇଯାଏ, ପାହାନ୍ତା ପହରୁ ଉଠିଯାଏ । ଏ ସମସ୍ତ ଶିଶୁଲକ୍ଷଣ ସତ୍ତ୍ୱେ ମୋ ପ୍ରତି ତାଙ୍କର ଆଦର ସମ୍ମାନ ଅକ୍ଷୁଣ୍ଣ ଥାଏ । ପାଞ୍ଚଜଣଙ୍କ ଭିତରେ ମୁଁ ଦ୍ୱିତୀୟ ପାଣ୍ଡବ । ମୁଁ ଟେନିସ୍ ଖେଳେ, ବିଲିଆର୍ଡ୍‌ସ୍, ଟେବୁଲଟେନିସ, ବ୍ୟାଡ୍‌ମିଣ୍ଟନ ଖେଳେ । ସ୍ପୋର୍ଟ୍‌ରେ ଚାମ୍ପିଆନ ହୁଏ । ଚିତ୍ର କରେ । ପଥର କାଟେ । ଇଂରାଜୀ ଓଡ଼ିଆରେ ବକ୍ତୃତା ଦେଇପାରେ । ଗଳ୍ପ ଉପନ୍ୟାସ, ନିବନ୍ଧ ଲେଖିପାରେ। – ମୋର ଦୋଷ ଭିତରେ ମୁଁ ରାତିରେ ଗପି ପାରେ ନାହିଁ, ଗୀତ ଗାଇପାରେ ନାହିଁ । ନାରୀ ସମ୍ପର୍କରେ ନିହାତି ଅନ୍‌ରୋମାଣ୍ଟିକ୍ ।

ସେଦିନ ଗାଡ଼ିରେ ଉଠିଲା ବେଳକୁ ସତକୁ ସତ ମୋତେ ସାମାନ୍ୟ ଢୋଳ ମାଡ଼ି ଆସୁଥିଲା । ଆମେ ଅଳ୍ପ ସମୟ ପରେ ଘନଘୋର ଅନ୍ଧାର ଭିତରେ ପ୍ରବେଶ

କଲୁ । କଥାବାର୍ତ୍ତା ହସଖୁସି, ଗାଡ଼ିର ଇଞ୍ଜିନ୍ ଶବ୍ଦ ମୋ କାନରେ ପଡୁଥାଏ। କେଜାଣି କାହିଁକି ମୋତେ ନିଦ ଘାରୁ ନଥାଏ । ଘାଟି ରାସ୍ତାରେ ଗାଡ଼ି ଓହ୍ଲାଉଥାଏ। ବାଟ କାଟି ଭାଲ୍ସ ପାରି ହେଲା । କିଏ ମନେ ମନେକଲା ଯେ ସେଇଟା ଉଆଁସ ରାତି । ଜଣେ କିଏ କହିଲା ଗାଡ଼ି ବନ୍ଦ କର । ନିରବ ଅନ୍ଧାର ଓ ଅରଣ୍ୟକୁ ଅନୁଭବ କରାଯାଉ । ସମସ୍ତଙ୍କ ମନକୁ ପାଇଗଲା । ଗାଡ଼ି ବନ୍ଦ ହେଲା । ଲାଇଟ୍ ଲିଭିଗଲା । ତା'ପରେ... କେହି କାହାକୁ ଦିଶିଲେ ନାହିଁ । ଅମାପଗହୀର ନିସ୍ତବ୍ଧ ରାତ୍ରି ଘେରିଗଲା ଚାରିଆଡୁ । ମହାଶୂନ୍ୟର ଅନୁଭବ । 'ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ର ତାରକମ୍'ର ଅପରୋକ୍ଷାନୁଭୂତି । କଥା କହିବାକୁ କାହାରି ପ୍ରବୃତ୍ତି ନାହିଁ କି ସାହସ ବି ନାହିଁ । କାଳେ ନିସ୍ତରଙ୍ଗ ଅନ୍ଧାର ଓ ଘନ ନିରବତାର ସମୁଦ୍ର ଚହଲିଯିବ। କେତେକାଳ ସେମିତି ସ୍ତବ୍ଧ ହୋଇ ଆମେ ବସିଥାନ୍ତୁ କେଜାଣି । ଦୂରରୁ ଗାଡ଼ିର ଶବ୍ଦ ଶୁଣାଗଲା । ଆଲୁଅ ଦିଶିଲା। ଆମେ ସଜାଗ ହୋଇଉଠିଲୁ । କେହି ଜଣେ,କି ଆମେ ସମସ୍ତେ ଏକତ୍ର କହିଲୁ 'ଓଃ!' ଅଦ୍ଭୁତ ବିରଳ ସେ ଅନୁଭବ । ଗାଡ଼ି ଚାଲିଲା । ପରିଚିତ ମଣିଷ ସ୍ୱରର କଳରବ ଶୁଣାଗଲା– "ରଥେ, ଚାହିଁଛନ୍ତି ନା' ଶୋଇଗଲେଣି?"..... "ରଥେ ଏବେ ସୁଷୁପ୍ତି ଅବସ୍ଥାରେ ଅଛନ୍ତି, ତୁରୀୟରେ ପହଞ୍ଚିବାକୁ ଆଉ ଦଶପନ୍ଦର ମିନିଟ୍ ଲାଗିପାରେ।" ହାସ୍ୟରୋଳ ଭିତରେ ମୁଁ କହିଲି, " ନିଶାଚରମାନଙ୍କ ମେଳରେ ରାତିସାରା ଜାଗ୍ରତ ଅବସ୍ଥାରେ ହିଁ କଟିବ, ବାକି ଅବସ୍ଥା କଥା ଉଠୁଛି କାହୁଁ?" "ରଥେ ଦେଖ, ଆମକୁ ନିଶାଚର ନକହି ଗୀତାଶାସ୍ତ୍ର ଅନୁସାରେ ସଂଯମୀ କହିବା ତୁମ ପାଇଁ ଉଚିତ ହୁଅନ୍ତା । ଦିନକୁ ରାତି ଓ ରାତିକୁ ଦିନ ମଣିବା ସଂଯମୀ ମୁନିମାନଙ୍କର ଲକ୍ଷଣ । ଏକଥା କ'ଣ ତୁମକୁ ବୁଝେଇବାକୁ ପଡ଼ିବ ?" ଆଲୋଚନାରେ ଅନାଗ୍ରହୀ ରାଧାକୃଷ୍ଣ କ'ଣ ପଦେ ଗୁଣୁଗୁଣୁ ହେବା ଆରମ୍ଭ କରି ଦେଇଥିଲା । ଗୀତର ଆଭାସରେ ଉତ୍ସାହିତ ହୋଇ ମହାପାତ୍ରେ କହିଲେ, "ବୋଲ୍ ବୋଲ୍, ବଢ଼ିଆ ଗୀତ !" –ତା'ପରେ ଝରଝର ଅମୃତ ବର୍ଷା ହୋଇଗଲା ସେ କୋକିଳ କଣ୍ଠରୁ । ଘରଚଟିଆ ପରି ମୋ ଆଖିରୁ ନିଦ ଫୁର୍‌ଫୁର୍ ଉଡ଼ିଗଲା । ମୁଁ ଚେଙ୍ଗା ହୋଇଗଲି । ତା'ପରେ ଆସର ଜମିଲା। ପାଳି ଅନୁସାରେ ସମସ୍ତେ ଯାହାକୁ ଯାହା ଆସିଲା ପଦେ ଲେଖା ବୋଲିଲେ । ମୋ ବେଳକୁ ଉତ୍କଣ୍ଠା, ଉତ୍ସାହ ଅପେକ୍ଷା କୌତୂହଳ ବେଶି । " ଦେଖ ଭାଇ, ମୁଁ ଏ ବିଦ୍ୟା ଜାଣିନାହିଁ । ଯା ଭିତରକୁ ମୋତେ ଘୋଷାରି ହାସ୍ୟାସ୍ପଦ କଲେ ତୁମକୁ କି ଆନନ୍ଦ ମିଳିବ, ଯଦି ମିଳେ ସେଇଟା ସାଡ଼ିଷ୍ଟିକ୍ ପ୍ଲେଜର୍! – ବରଂ ରାଧାକୃଷ୍ଣ ବୋଲନ୍ତୁ, ବୋଲୁଥାନ୍ତୁ ନିଜେ କ୍ଲାନ୍ତ ନହେବା ପର୍ଯ୍ୟନ୍ତ !" – "ନାଇଁ", ସେ କଥା ଚଳିବ ନାଇଁ । ରଥଙ୍କୁ ବୋଲିବାକୁ ହେବ । କିଛି ନହେଲେ ସେ ମଥୁରାମଙ୍ଗଳ

ବୋଲନ୍ତୁ । 'କୃଷ୍ଣ ଦର୍ଶନ ଆଶେ ଉଚ୍ଛନ୍ନ ହୋଇ ଶଫଳା ସୁତ...'।। ''ମୋର, ବିଶେଷ ମନେ ନାହିଁ ।'' ଯାହା ମନେ ପଡୁଚି ବୋଲନ୍ତୁ । ଅଗତ୍ୟା ମୁଁ ନିଶାର୍ଦ୍ଧର ସେ ନିରବତା ଭିତରେ ''କଳା କଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ –'' ଗଳାଛାଡ଼ି, ଗଉଡ଼ିଆ ବାଡ଼ି ଖେଳ ଛନ୍ଦରେ ବୋଲିଗଲି ଆମୂଳଚୂଳ । ମୋର ମନେ ହେଉଥିଲା ମୁଁ ସେ ନିବିଡ଼ ବନଭୂମିକୁ ହିଁ ଶୁଣାଉଥିଲି । ସହଯାତ୍ରୀ କେହିହେଲେ ଟୁଁ ଶବ୍ଦ ନ କରିବାରୁ ଭାବିନେଲି ଯେ ମୋ ରଡ଼ିଘାତରେ ସେମାନେ କୋଉକାଳୁ ମୂର୍ଚ୍ଛିତ ହୋଇପଡ଼ିଛନ୍ତି । ଶେଷରେ ଯେତେବେଳେ ଖୁସିରେ ସେମାନେ ମୋତେ କୁଣ୍ଢେଇ ନାନା ପ୍ରଂଶସା ବାକ୍ୟମାନ ଉଚ୍ଚାରିଲେ, ମୁଁ କହିଲି, 'ମୋତେ ଆଉ ଥଟ୍ଟା କରିବା ପ୍ରୟୋଜନ ନାହିଁ । ମୁଁ ଗାଇ ଜାଣେନାହିଁ । ଏମିତି ଦାୟରେ ପଡ଼ିଲେ ଗର୍ଜିପାରେ ।' ସେମାନେ ମୋତେ ନାନା ପ୍ରକାରେ ବିଶ୍ୱାସ ଦେବାକୁ ଚାହିଁଲେ ଯେ ସେମାନଙ୍କୁ ସତକୁସତ ଭଲ ଲାଗିଲା । ଏ ଘଟଣାର ବହୁଦିନ ପରେ ମୋତେ ପୁଣି 'କଳାକଳେବର' ବୋଲିବାକୁ କୁହାଗଲା । ମୁଁ ଆଉ ସେମିତି ଗାଇପାରିଲି ନାହିଁ । କାରଣ ମୋତେ ଶୁଣିବାକୁ ମୟୂରଭଞ୍ଜର ସେ ନୈଶ ଅରଣ୍ୟ ନଥିଲା।

ଗୀତ ଗାଇବାରେ ମୋଭଳି ଅପାରଗ ଥିଲେ ହୃଦାନନ୍ଦ ରାୟ । ତାଙ୍କର କିନ୍ତୁ ସମ୍ମୋହିନୀ ଶକ୍ତି ଅଲଗା । ମଞ୍ଚ ଉପରେ ଭାଷଣ ଦେଲାବେଳେ ସେ ଦେବପୁରୁଷ ପରି ଦେଖାଯାନ୍ତି । ତାଙ୍କ କଣ୍ଠସ୍ୱର, ବାଗ୍ମିତା, ଅସାମାନ୍ୟ ରସବୋଧ ଓ ପାଣ୍ଡିତ୍ୟ ଶ୍ରୋତାଙ୍କୁ ମନ୍ତ୍ରମୁଗ୍ଧ କରି ରଖିପାରେ ଅନିର୍ଦ୍ଦିଷ୍ଟକାଳ ପର୍ଯ୍ୟନ୍ତ । ତାଙ୍କୁ ଦେଖିଲେ କୋଟିନିଧି ପାଇଲାପରି ଲାଗେ । ଆମେ ସବୁ ତୁନି ପଡ଼ିଯାଉ ତାଙ୍କୁ ଶୁଣିବା ଲୋଭରେ । ତାଙ୍କ ପାଟି ଫିଟିଲେ ଝଟକୁଥିବା ହୀରା କଣିକା ପରି ଶବ୍ଦରାଜି ଝରି ପଡ଼ନ୍ତି । ତାଙ୍କ ଜିହ୍ୱାଗ୍ରେ ସରସ୍ୱତୀ ନର୍ତ୍ତନ କରନ୍ତି । ତାଙ୍କର ପଟାନ୍ତର ନାହିଁ। କିନ୍ତୁ ସେ ଗୀତ ଗାଇପାରନ୍ତି ନାହିଁ । ରାତିରେ ଉନ୍ନିଦ୍ର ରହିପାରନ୍ତି ନାହିଁ, ନାରୀ ସମ୍ପର୍କରେ ସେହିପରି ଅନ୍‌ରୋମାଣ୍ଟିକ୍ । ଆଚରଣ, ଭାବଭଙ୍ଗୀରେ କିଛି ସାମ୍ୟ, କିଛିମାତ୍ରାରେ କୋଉଠି ଟିକିଏ ସାରୂପ୍ୟ ମୋତେ ତାଙ୍କର ସୋଦର ଆତ୍ମା ରୂପେ ପ୍ରତିଭାତ କରାଏ। ନଚେତ୍ ସେ ମୁଁ ବୋଲି ବା ମୁଁ ସେ ବୋଲି କିଛି ଲୋକଙ୍କର ଭ୍ରମ ହେବା ଏତେ ସ୍ୱାଭାବିକ ଭାବରେ ଘଟିନଥାନ୍ତା । ବାରିପଦା ବଜାର ଭିତରୁ ବାହାରି ଆସିଲାବେଳକୁ ଜଣେ ଅପରିଚିତ ମାନନୀୟ ପ୍ରୌଢ଼ ମୋତେ ଦେଖି ପଚାରି ନଥାନ୍ତେ 'କିରେ ନନ୍ଦ, ଭୋଳିବାବୁ ଭଲ ଅଛନ୍ତି ତ ।' ସ୍ୱଜନ କୁଟୁମ୍ବିଙ୍କ ପାଇଁ ତାଙ୍କ ଡାକ ନାଁ 'ନନ୍ଦ' ଏବଂ ଭୋଳିବାବୁ ତାଙ୍କ ପିତୃଦେବ ଭୋଳାନାଥ ରାୟ । ଏହିପରି ଏକାଧିକ ଘଟଣା ଆମ ଉଭୟଙ୍କୁ

ବିସ୍ମିତ କରିଛି । ସତେବା ଆମେ ଯାମଳ ସୋଦର । ମୋର ମନେହୁଏ ଯେ ସବୁଯାକ ସୌଭାଗ୍ୟ ମୋର । ଜୀବନରେ ଏପରି ବନ୍ଧୁ ପାଇଛି, ଧନ୍ୟୋଽସ୍ମି ।

ରାମ କଳାରେ ମର୍ଯ୍ୟାଦାବନ୍ତ ହୃଦାନନ୍ଦ ରାୟ । କୃଷ୍ଣକଳାରେ ରସୋଜ୍ଜ୍ୱଳ ମହାପାତ୍ର ନୀଳମଣି ସାହୁ । ନାମର ସାର୍ଥକତା ରକ୍ଷାକରି ନୀଳମଣି ଏକ ପ୍ରୀତିପ୍ରବଣ, ଆକର୍ଷଣପ୍ରବଣ ଚୁମ୍ବକୀୟ ବ୍ୟକ୍ତିତ୍ୱ । ଅପରିଚିତଙ୍କୁ ପ୍ରଥମ ସାକ୍ଷାତରେ ଆପଣାର କରିନେବାର ଅସାଧାରଣ ସାମର୍ଥ୍ୟ ସେ ଖୁବ୍ ଭଲପାଇ ପାରୁଥିବା ମଣିଷଟିର । ଭାରି ରସିକ ଲୋକ, ରମଣୀୟତା ଲୋଭୀ, ବସ୍ତୁରେ, ବ୍ୟକ୍ତିରେ, ବାକ୍ୟରେ, କଥନରେ, ଭୋଜନରେ, ପରିଧାନରେ । ତାଙ୍କ ସହିତ ମୋର ପ୍ରଥମ ପରିଚୟ ସେହି ବାରିପଦାରେ । ସ୍କୁଲ ହତାରେ କଲେଜ ଚାଲିଥିବା ବେଳକଥା । କ୍ଲାସ ସାରି ମୁଁ ଅଧ୍ୟାପକ କକ୍ଷରେ ପଶିଲାବେଳକୁ ମୋ କାନରେ ପଡ଼ିଲା : କରିତେ, ଯାଇତେ, ଆସିତେ ଆଦି ଅସମାପିକା କ୍ରିୟାପଦ ଏଠି ଉତ୍ତର ଓଡ଼ିଶାରେ ଯାହା ଲୋକବ୍ୟବହାରରେ ଦେଖାଯାଏ, ତାକୁ ବହୁକାଳୁ ଶାସ୍ତ୍ରୀୟ ମାନ୍ୟତା ମିଳିସାରିଛି । ଜଗନ୍ନାଥ ଦାସଙ୍କ ଭାଗବତରେ 'କରିତେ, ଖାଇତେ' ଅଛି । ବକ୍ତା କିଏ, ପ୍ରସଙ୍ଗ କ'ଣ – କିଛି ନବୁଝି ମୁଁ ମୋର ସ୍ୱାଭାବିକ ହୁଣ୍ଡାପଣରେ କହିଦେଲି, 'ନା, ସେଭଳି ପ୍ରୟୋଗ ଭାଗବତରେ ନାହିଁ।' ମୁହଁ ବୁଲେଇ ଚାହିଁଲା ବେଳକୁ ଜଣେ ଅପରିଚିତ ତେଜସ୍ୱୀ ବ୍ୟକ୍ତି ଏ କଥା କହୁଥିବା ଜାଣିଲି । ସେ ମୋ ଭଳି ହୁଣ୍ଡା ନୁହଁନ୍ତି । ଖୁବ୍ ବିଚାରବନ୍ତ ଆତ୍ମସଚେତନ । 'ଆପଣ କେମିତି ଜାଣିଲେ ସେପରି ପ୍ରୟୋଗ ନାହିଁ?' ବୋଧହୁଏ ଇଙ୍ଗିତ ଥିଲା ମୋର ବୃତ୍ତି ଆଡ଼କୁ – ଆପଣ ତ ଇଂରାଜୀ ଅଧ୍ୟାପକ, ଜଗନ୍ନାଥ ଦାସଙ୍କ ଭାଗବତ ଉପରେ ମତାମତ ଦେବାର ଅଧିକାର କୋଉଠୁ ପାଇଲେ? ଏ ନୀରବ ପ୍ରଶ୍ନର ଉତ୍ତରରେ ମୁଁ କହିଲି, 'ଆଠବର୍ଷ ବୟସରୁ କୋଡ଼ିଏ ବର୍ଷ ବୟସରେ ଘରଛାଡ଼ି ଲକ୍ଷ୍ନୌକୁ ପାଠ ପଢ଼ିବାକୁ ଯିବାଯାଏ, ମୁଁ ବାରବର୍ଷ କାଳ ପ୍ରତିଦିନ ସନ୍ଧ୍ୟାରେ ଅଧ୍ୟାୟେ ଭାଗବତ ପଢ଼ିଛି । ଆମୂଳଚୂଳ କେତେଥର ପଢ଼ିଛି କହିପାରିବି ନାହିଁ । ଏଣୁ ମୋର ସେପରି କୌଣସି ପ୍ରୟୋଗ ଥିବାର ମନେ ପଡୁନଥିବାରୁ କହୁଛି ଯେ ଜଗନ୍ନାଥ ଦାସଙ୍କ ମାନକ ଓଡ଼ିଆରେ ଏହା ନାହିଁ । 'ଆପଣଙ୍କର ମନେ ପଡ଼ିବା ତ କୌଣସି ପ୍ରମାଣ ନୁହେଁ, କିନ୍ତୁ ଅଛି ।' 'ଯଦି ଅଛି, ତେବେ ମୋତେ ଆପଣ ଦେଖେଇ ଦିଅନ୍ତୁ, ମୁଁ ମାନିଯିବି ।' ସେ ମୋତେ ଏଯାବତ୍ ଦେଖେଇ ନାହାଁନ୍ତି । ମୁଁ ବି ଆଉ ଜୋର୍ ଦେଇନାହିଁ । କିନ୍ତୁ ଖଣ୍ଡାଖେଳରେ ଦାଢ଼କୁ ଦାଢ଼ ବାଜି ଯେଉଁ ସ୍ଫୁଲିଙ୍ଗ ଜାତ ହେଲା ତାହାହିଁ ଆମର ପ୍ରଥମ ପରିଚୟର ସ୍ମୃତି, ଆମ ଆଜୀବନ ବନ୍ଧୁତାର ଆଦିବିନ୍ଦୁ। ତା'ପରେ ଓଡ଼ିଶାର ମାଟି, ପାଣି, ପବନ, ତା'ର ଭାଷା ସାହିତ୍ୟ, ପରମ୍ପରା, ତା'ର

ମଣିଷ, ପଶୁପକ୍ଷୀ, ଫଳମୂଳ, ନଦୀପର୍ବତକୁ ଏକାନ୍ତ ଭଲପାଉଥିବା ଜୀବନର ବିଭିନ୍ନ ଭୂମି ଓ ଭୂମିକାରେ ବହୁବିଧ ଅନୁଭବର ଅଧିକାରୀ ଏ ସାରସ୍ୱତ ସାଧକ ମୋ ସାହିତ୍ୟିକ ଜୀବନର ପ୍ରବେଶ ଦ୍ୱାରରେ ପ୍ରତ୍ୟେକ ମୋଡ଼ରେ ମୋ ପାଖରେ ଠିଆହୋଇଥିବାର ମୁଁ ଅନୁଭବ କରିଛି । ତାଙ୍କ ବଡ଼ଭାଇପଣକୁ ମୁଁ ସ୍ୱୀକାର କରିଛି । ଆମେ ପରସ୍ପରକୁ 'ସାଙ୍ଗ' ବୋଲି ସମ୍ବୋଧନ କରୁ । ମୁଁ ମୋର ନିଭୃତରେ, କୃତଜ୍ଞତାରେ ମନକୁମନ କହେ, 'ତୋମାର୍ ମତନ ଦୟାଲ ବନ୍ଧୁ ଆର୍ ପାବ ନା ।'

ନ୍ୟୂନତମ ବାସ୍ତବତା ହେଲା ଯେ ଆମେ ସବୁ ପ୍ରବାସୀ ପକ୍ଷୀ ବାରିପଦାରେ ଓହ୍ଲାଇଥିଲୁ । ସହଯାତ୍ରୀକୁ ତାତ୍‌କାଳିକ ସ୍ୱୀକାର କରାଯାଏ । ମୋଡ଼ ଆସିଗଲେ କିଏ କୁଆଡ଼େ ଚାଲିଯା'ନ୍ତି । ସମ୍ପର୍କ ସେଇଠି ସରିଯାଏ, ଛିଡ଼ିଯାଏ । ସେଥିପାଇଁ କିଛି ଅସୁବିଧା ବି ହୁଏ ନାହିଁ । କାରଣ ଯାହା ଯୋଡ଼ି ହୋଇନାହିଁ, ସେ ଛିଡ଼ିବ ବା କେମିତି ? ମୂଳରୁ ସେ ଅଲଗା ହୋଇ ରହିଥାଏ, ଖସିଗଲେ ଜଣାପଡ଼େ ନାହିଁ। ବେଳେବେଳେ କିନ୍ତୁ ଅକସ୍ମାତ୍ ଏକ ଦ୍ରବଣ କୋଉଠୁ କ୍ଷରିତ ହୋଇ ଯୋଡ଼ିଦିଏ। ମନେହୁଏ ବାରିପଦାରେ ସେଭଳି ଏକ ଅଦ୍ଭୁତ ଦ୍ରବଣ ଆମକୁ ଯୋଡ଼ି ଦେଲା । ଫଳରେ ଆମେ ଆଜୀବନ ପରସ୍ପର ସହିତ ଗ୍ରଥିତ ହୋଇ ରହିଗଲୁ । ଆମକୁ ଏକାଠି କରିବାରେ ସତେବା ଆଉ କାହାର ଇଚ୍ଛା ଓ ଯୋଜନା କାର୍ଯ୍ୟକାରୀ ହେଉଥିଲା ।

ତିରିଶରୁ ପଞ୍ଚତିରିଶି । ଜୀବନର ଏଇ ପାଞ୍ଚବର୍ଷ ମୁଁ ସେ କୁହୁକ ରାଜ୍ୟରେ ଥିଲି । ମୋ ବାହାରେ ଯାହା ଘଟିଲା୍, ଯେଉଁମାନଙ୍କ ସହିତ ଆତ୍ମୀୟତା ହେଲା ସେସବୁ ଅଦ୍ଭୁତ । କିନ୍ତୁ ମୋ ଭିତରେ ଯାହା ହେଲା ସେ ବି ବଡ଼ ବିଚିତ୍ର । ମୁଁ ସାହିତ୍ୟ ରଚନା କଲି । ଉପନ୍ୟାସ ଲେଖିଲି । ଗଳ୍ପ ଉପନ୍ୟାସର ଚରିତ୍ର ଗୋଟାପଣେ ବାସ୍ତବ ଜୀବନରେ ନଥାନ୍ତି । ବାସ୍ତବ ଜୀବନର ଉପାଦାନ ନେଇ ମୋ ଭିତରେ ଥିବା ବିଧାତା ପୁରୁଷ ଚରିତ୍ରମାନଙ୍କୁ ସୃଷ୍ଟି କରେ । ସେହିପରି ଦେଶକାଳର ବାସ୍ତବ ଉପାଦାନ ନେଇ କ୍ଷେତ୍ର ପ୍ରସ୍ତୁତ କରେ । ସେଇଟା ହୁଏ ଚରିତ୍ରମାନଙ୍କର ଲୀଳାଭୂମି । ଏ ସୃଷ୍ଟି କ୍ରିୟାଟି ଏକ ରହସ୍ୟ । କାହାକୁ କାହା ସହିତ ସଂଯୋଗ କରି ସେ ଅଦ୍ଭୁତକୁ ଜନ୍ମ ଦିଏ ତାହା ଜାଣି ହୁଏ ନାହିଁ । ଉପନ୍ୟାସର ଚରିତ୍ରଭଳି ଏକ ଘଟଣା ମଞ୍ଚ ମଧ୍ୟ ବାସ୍ତବ ଜୀବନରୁ ଆହରଣ କରାଯାଏ। – 'ଯନ୍ତ୍ରାରୂଢ଼' ଉପନ୍ୟାସର ଲୀଳାଭୂମି ବାରିପଦାର ସେଇ ବିପିନ୍ ମହାନ୍ତି ଘର । ବାଣିଆ ଜଗନ୍ନାଥ ମନ୍ଦିର ଆଉ ସେ ପଚାଶ ଗଜ ରାସ୍ତା ଏତେ ମାତ୍ରାରେ ଅବିମିଶ୍ର ବାସ୍ତବତା ଉପନ୍ୟାସର କଳ୍ପଲୋକକୁ ଆବୋରିରହିବା ଏକ ଅସାଧାରଣ ଅନୁଭବ । ତା' ଅପେକ୍ଷା ଆହୁରି ଅସାଧାରଣ ହେଉଛି ମୋର ଦ୍ୱିତୀୟ ଉପନ୍ୟାସ 'ଅସୂର୍ଯ୍ୟ ଉପନିବେଶ'ର ନିର୍ମାଣ । ବାରିପଦା ଛାଡ଼ିବାର ଦଶବର୍ଷ ପରେ

ମୁଁ ଉପନ୍ୟାସ ରଚନା କଲି । ପ୍ରାୟ ସବୁ ଦୃଷ୍ଟିରୁ 'ଅସୂର୍ଯ ଉପନିବେଶ' ଉପନ୍ୟାସ 'ଯନ୍ତାରୂଢ଼'ର ବିପରୀତ ମେରୁ । କିନ୍ତୁ ବିଚିତ୍ର କଥା ହେଲା ଯେ ତା'ର ଘଟନାମଞ୍ଚ ମଧ୍ୟ ସେଇ ବାରିପଦା । ବିହାରୀଲାଲ ପଟ୍ଟନାୟକଙ୍କ ସରକାରୀ ଘର ଧାଡ଼ିରେ ଟି. ଇ. ଜୟରାମନ୍‌ଙ୍କ ସରକାରୀ ଘର । ଅସୂର୍ଯ ଉପନିବେଶର ଜାତକର୍ମ ସେଇଠି । ସେ ଘର ସାମ୍ନା ଛକ ଏବଂ ସେଇଠୁ କିଛି ଦୂରରେ ବାରିପଦା କ୍ଲବ । ସେଇ ପାଖଆଖ ଅଞ୍ଚଳ ସେ ଉପନ୍ୟାସର ଲୀଳାଭୂମି । ମୋର ତୃତୀୟ ଉପନ୍ୟାସ 'ନବଜାତକ' । କେଜାଣି କେମିତି ତା'ର ପୃଷ୍ଠଭୂମି ମଧ୍ୟ ସେଇ ସହରର ଆଉ ଠାଏ । ଲାଇଟ ଏଣ୍ଡ ସେଡ୍ ସାମ୍ନା ଆଉ ଡାହାଣ ପାଖ ପୋଖରୀ ହୁଡ଼ାତଳ ସାମାନ୍ୟ ଖାଲିଜାଗା ଏ ଉପନ୍ୟାସର ଜଠର । ଲେଖିଲାବେଳେ ଯେଉଁ ଦୃଶ୍ୟ ଦେଖାଯାଏ ତାକୁ ଚିହ୍ନିବା ପାଇଁ ବେଳ ନଥାଏ । ସେଥିରେ ନିମଗ୍ନ ରହି ଲେଖିସାରିବାର ଅନେକ ପରେ ହୁଏତ ତାକୁ ଚିହ୍ନି ବିସ୍ମିତ ହେବାକୁ ପଡ଼େ । ମୋ ଚେତନାକୁ ଏବଂ ସୃଷ୍ଟି କେନ୍ଦ୍ରକୁ କେତେ ମାତ୍ରାରେ ଗୋଟିଏ ସହର ଆଚ୍ଛନ୍ନ କରି ନ ରଖିଲେ ବାରମ୍ବାର ଏପରି ତାହାରି ଉପାଦାନରେ ଉପନ୍ୟାସ ଓ ଗଳ୍ପର କାୟା ନିର୍ମାଣ ହୋଇ ଚାଲିଥିବା ଆଶ୍ଚର୍ଯ୍ୟ । ତାଲିକା ତ' ଖୁବ୍ ଦୀର୍ଘ ହୋଇଯିବ । କିଛି ବିଶେଷ ଗଳ୍ପ ପଛରେ ବାରିପଦା ଛିଡ଼ା ହୋଇଥିବାର ମୁଁ ସ୍ପଷ୍ଟ ବାରିପାରୁଛି । 'ପହୁଡ଼ ଘର' ନିର୍ଭୁଲ ଭାବରେ ରାଜବାଟୀର କାହାଣୀ । "ସନ୍ଧିକାଳ" ପଶୁ ଡାକ୍ତରଖାନା ପଛପାଖ, ପେଟ୍ରୋଲ ଟାଙ୍କି, ସେଇଠୁ ମାର୍କେଟ୍‌ର କୋଣ... ରାଜବାଟୀ ବିମଳା ମନ୍ଦିର– ଯାରି ଭିତରେ ସଂଘଟିତ ଅଦ୍ଭୁତ ନାଟକ । ଗଳ୍ପର ତାଲିକା ଧରି ପ୍ରତି ଗଳ୍ପକୁ ନିଠେଇ ଚାହିଁଲେ ଜଣାପଡ଼ିବ ତା'ଭିତରୁ କେତେ ଏଇ ଉପାଦାନରେ ତିଆରି ଘଟନାମଞ୍ଚ ଉପରେ ଠିଆ ହୋଇଛନ୍ତି । ବିସ୍ତାର କରି ଲାଭ କ'ଣ ?

ଯୁକ୍ତି ଛଳରେ କୁହାଯାଇପାରେ ଯେ ପରିପୂର୍ଣ୍ଣ ଯୌବନରେ ପାଞ୍ଚବର୍ଷ ଆଉ ଯେକୌଣସି ସ୍ଥାନରେ ବିତେଇଥିଲେ ମଧ୍ୟ ଏହିଭଳି ଘନିଷ୍ଠତା ଓ ଆତ୍ମୀୟତାର ସଂଚାର ହୋଇଥାନ୍ତା । କାରଣ ଜୀବନର ସେଇ ପର୍ଯ୍ୟାୟରେ ଭିତରୁ ଅମୃତ ଝରିଆସି ପରିବେଶକୁ ଅମୃତାୟିତ କରିଦିଏ । ହୁଏତ, ଏହା କିଛି ମାତ୍ରାରେ ସତ, କିନ୍ତୁ ଦେଶକାଳର ତାରତମ୍ୟରେ ତା'ର ମାତ୍ରା ଭେଦ ରହିଛି । ବିପୁଳା ପୃଥିବୀ, ନିରବଧି କାଳ । ତା' ଭିତରେ ଗୋଟାଏ ନିର୍ଦ୍ଦିଷ୍ଟ ବିନ୍ଦୁରେ କାହିଁ କୁଆଡୁ ଆସିଥିବା ପରସ୍ପରକୁ ଜାଣିନଥିବା ବ୍ୟକ୍ତିମାନଙ୍କୁ ଏକାଠିକରି ଦିବ୍ୟାଦିବ୍ୟ ଅନୁଭବରେ ଯୋଡ଼ିବା ଅନନ୍ୟ । ଯାହା ଏଠି ଘଟିଛି, ସେଥିରୁ କାଣିଚାଏ ଯଦି ବଦଳେଇ ଦିଆଯାଏ, ସମ୍ପୂର୍ଣ୍ଣ ସ୍ରୋତ ବଦଳିଯିବ, ସମ୍ପୂର୍ଣ୍ଣ ଚିତ୍ର ବଦଳିଯିବ । ଏଣୁ ସେଇ ପାଞ୍ଚବର୍ଷ ଆଉ କୋଉଠି ଥିଲେ ଆଉ କାହାକୁ

ଭେଟିଥାନ୍ତି । ଆଉ ପ୍ରକାରେ ଘଟନା ଘଟିଥାନ୍ତା । ମୁଁ ହୁଏତ ନିଜେ ଆଉ ପ୍ରକାରେ ହୋଇଯାଇଥାନ୍ତି । ମୁଁ ଅନ୍ତତଃ କଦାପି ଯନ୍ତ୍ରାରୂଢ଼ ଲେଖୁନଥାନ୍ତି । ଶ୍ରୀଅରବିନ୍ଦଙ୍କୁ ପାଇ ନଥାନ୍ତି । ମୁଁ ଆଜି ଆଉ ଗୋଟାଏ କିଏ ହୋଇ ଠିଆ ହୋଇଥାନ୍ତି । ତା' ସାଙ୍ଗରେ ଆମର ସମ୍ପର୍କ କ'ଣ ? – ବାରିପଦା କେନ୍ଦ୍ରିତ ଏ ପାଞ୍ଚବର୍ଷ, ବାରିପଦା-ରସାଣିତ, ବାରିପଦା-ଜର୍ଜର । ବାରିପଦା ମୋ ଭିତରେ ପ୍ରତିଷ୍ଠିତ । ମୁଁ ବାରିପଦାରେ ପ୍ରତିଷ୍ଠିତ । ବାରିପଦାର ବିସ୍ତୃତ ଇତିହାସରେ ଏ ପାଞ୍ଚବର୍ଷ ସାମାନ୍ୟ ବିନ୍ଦୁଟିଏ – ଏ ପାଞ୍ଚ ବର୍ଷ ଭିତରେ ପାଞ୍ଚଲକ୍ଷ ଜୀବନ, ପ୍ରତି ଜୀବନର ଅକଳନୀୟ ଘଟଣା । ସେଥିରେ ଗୋଟିଏ ବ୍ୟକ୍ତିକୁ ଠାବ କରିବା ଏବଂ ତା'ର ଗୁରୁତ୍ୱ ନିର୍ଣ୍ଣୟ କରିବା ଧୃଷ୍ଟତା, କିନ୍ତୁ ଏହା ସତ୍ୟ ଯେ ଗୋଟିଏ ଧୂଳିକଣାକୁ ବାଦ୍‌ଦେଲେ ଏ ପରମ ବିଶ୍ୱ ପରମବିଶ୍ୱ ହୋଇ ରହିବ ନାହିଁ। ତା'ର ପୂର୍ଣ୍ଣତାରୁ ଗୋଟିଏ ଧୂଳିକଣା ଊଣା ପଡ଼ିଯିବ । ଏଣୁ ଯେତେ ନଗଣ୍ୟ ହେଲେ ସୁଦ୍ଧା ସେହି ପାଞ୍ଚବର୍ଷ ତା'ର ରାସ୍ତାଘାଟରେ ଚଳପ୍ରଚଳ ହେଉଥିବା ଏ ବ୍ୟକ୍ତିବିନ୍ଦୁଟିକୁ ବାରିପଦା ସ୍ୱୀକାର ନକରି ଉପାୟ ନାହିଁ । ''ପୃଥିବ୍ୟାଂ ଆକାଶଃ ପ୍ରତିଷ୍ଠିତଃ । ଆକାଶେ ପୃଥିବୀଃ ପ୍ରତିଷ୍ଠିତା ।'' ତୈତ୍ତିରୀୟ ।। ଏହି କାଳଖଣ୍ଡରେ ମୋଠାରେ ବାରିପଦା ପ୍ରତିଷ୍ଠିତ । ମୁଁ ବାରିପଦାରେ ପ୍ରତିଷ୍ଠିତ । କେହି କାହାକୁ ଛାଡ଼ିବାର ସମ୍ଭାବନା ନାହିଁ ।



# ଟୋପି ଆଢୁଆଳରେ ସେ କିଏ ?

ତାଙ୍କର ସେ ହିନ୍ଦୁସ୍ତାନୀ ଟୋପି ପିନ୍ଧି ସେ ମୋ ଆଗରେ ଠିଆହେଲେ ହେଁ ମୋର ସ୍ୱାଭାବିକ ଇଚ୍ଛା ହେଉଥିଲା ତାଙ୍କ ସହିତ ହିନ୍ଦୀରେ କଥା ହେବା ପାଇଁ । ମନେ ହେଉଥିଲା ସତେବା ଓଡ଼ିଆ ବୁଝିପାରିବେ ନାହିଁ, ସତେବା ତାଙ୍କ ସହିତ ଓଡ଼ିଆରେ କଥା ହେବା ଅସମୀଚୀନ। କିନ୍ତୁ ଯେତେବେଳେ ବନମାଳୀ ବାବୁ ହସି ହସି ହାତ ଯୋଡ଼ି ନମସ୍କାର କରୁଥିଲେ ଏବଂ ବିଶୁଦ୍ଧ ଓଡ଼ିଆରେ ସମ୍ଭାଷଣ କରୁଥିଲେ ମୁହୂର୍ତ୍ତକରେ ମୋର ଭ୍ରମ ଦୂର ହୋଇଯାଉଥିଲା । ତଥାପି ଏ ବିଡ଼ମ୍ବନାରୁ ମୁଁ ସମ୍ପୂର୍ଣ୍ଣ ମୁକ୍ତ ହୋଇପାରୁନଥିଲି । ହିନ୍ଦୀ ଅଧ୍ୟାପନା କରୁଥିବା ଆଉ କେହି ତାଙ୍କ ଭଳି ଶହେରେ ଶହେ ହିନ୍ଦୁସ୍ତାନୀ ଦିଶିବା ମୋ ଜ୍ଞାତସାରରେ ନାହିଁ । ତାଙ୍କ ସହିତ ପରିଚୟର ଆଦ୍ୟ ପର୍ବରେ ହିଁ କିଛିଦିନ ମୁଁ ଏପରି ଦ୍ୱିଧାଗ୍ରସ୍ତ ହେଉଥିଲି, ତା'ପରେ ଗଣେଶ ପ୍ରସାଦ ଦାସଙ୍କ ସହିତ ମୋ ପାଖକୁ ସେ ବହୁବାର ଆସିବା ଫଳରେ ଏବଂ ତାଙ୍କ ସହିତ ବିବିଧ ପ୍ରସଙ୍ଗରେ ଦୀର୍ଘ ଆଳାପ ଆଲୋଚନା ହେବା ଫଳରେ ସେ ମୋର ଆତ୍ମୀୟ ପରି ମନେହେଲେ । ବିଭିନ୍ନ ସଭାସମିତିରେ ବକ୍ତାର ଭୂମିକା ନିର୍ବାହ କଲାବେଳେ ସବା ଆଗ ଧାଡ଼ିରେ ବନମାଳୀଙ୍କୁ ମୁଁ ପ୍ରାୟ ସବୁଥର ଶ୍ରୋତାର ଆସନରେ ଆବିଷ୍କାର କରିଛି । ସୁଜାଣ, ସହୃଦୟ ସହଧର୍ମୀ ବନ୍ଧୁ ଯଦି ଶ୍ରୋତା ହୋଇ ବସେ ବକ୍ତା ସ୍ୱତଃ ତା'ର ସମସ୍ତ ସମ୍ପଦ ଅର୍ପଣ କରିଦେବାକୁ ପ୍ରଲୁବ୍ଧ ଓ ଉତ୍ସାହିତ ବୋଧକରେ । ଅନେକ ସଭାରେ, ମୁଁ କେବଳ ବନମାଳୀ ବାବୁଙ୍କୁ ଚାହିଁ ଭାଷଣ ଦେଇଥିବାର ଅନୁଭବ ନେଇଆସିଛି । ଖୁବ୍ ସଫଳ ସାର୍ଥକ ଲାଗିଛି ବକ୍ତୃତା ।

ଆମ ଘରେ ବସି ଦୁଃଖ ସୁଖ ହେବା ଅବକାଶରେ ମୁଁ ତାଙ୍କର ଅସୁସ୍ଥତା ବିଷୟ ଜାଣିବାକୁ ପାଇଲି ଏବଂ ଗଭୀର ବିଶ୍ୱାସ ଓ ଶ୍ରଦ୍ଧା ଜନିତ ଆସ୍ଥା ମୋ ଉପରେ ରଖି ସେ ମୋର ପରାମର୍ଶ ଲୋଡ଼ିଲେ । କିନ୍ତୁ ପରିଶେଷରେ ଦାର୍ଶନିକ, ତାତ୍ତ୍ୱିକ ଆଲୋଚନାରେ ହିଁ ଆଳାପର ଉପସଂହାର ଘଟିଥିଲା । ସେ ସାର୍ ବୋଲି ସମ୍ବୋଧନ କଲାବେଳେ ଘନିଷ୍ଠ ଆପଣାପଣ ସତ୍ତ୍ୱେ ସେ କେବେହେଲେ ସମ୍ଭ୍ରମବୋଧ ଲଂଘନ କରିନାହାନ୍ତି । ଅତ୍ୟନ୍ତ ଭଦ୍ର ନିରାଡ଼ମ୍ବର ସରଳ ମଣିଷ ଏବଂ କର୍ତ୍ତବ୍ୟପରାୟଣ, ନିଷ୍ପାପର ତାଙ୍କ କ୍ଷେତ୍ରରେ ସୁପଣ୍ଡିତ ଅଧ୍ୟାପକ ଥିଲେ ବନମାଳି ବାବୁ । କ'ଣ ମନ

ହେଲା କେଜାଣି ଦିନେ ଏମିତି କଥା ପ୍ରସଙ୍ଗରେ ସେ ମୋର କିଛି ଗଳ୍ପ କିମ୍ବା ଉପନ୍ୟାସ ହିନ୍ଦୀରେ ଅନୁବାଦ କରିବାକୁ ଆଗ୍ରହ ପ୍ରକାଶ କଲେ । ତା'ପରେ ଯେତେଥର ଟେଲିଫୋନରେ କଥା ହେଇଛନ୍ତି ସବୁବେଳେ ଦୁଃଖ ପ୍ରକାଶ କରିଛନ୍ତି ଯେ, ସେ ଅସୁସ୍ଥ ରହି ସେ କାର୍ଯ୍ୟଟି କରିପାରିନାହାନ୍ତି । ମୁଁ ତାଙ୍କୁ ଅଙ୍ଗୀକାର ମୁକ୍ତ କରିପାରିନାହିଁ । ମୋର ଲେଖା ହିନ୍ଦୀରେ ଅନୁବାଦ ହୋଇ ବାହାରିବା ନ ବାହାରିବା ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ ବୋଲି ବାରବାର କହିଲେ ବି ସେ ମାନି ନାହାନ୍ତି । ''ଟିକିଏ ଭଲ ହୋଇଯାଏ ସାର୍ ମୁଁ ନିଶ୍ଚୟ ସେ କାର୍ଯ୍ୟଟି କରିବି'' । ବ୍ୟକ୍ତିକୁ ଭଲ ନ ପାଇଲେ ତା' ପାଇଁ ଏପରି ଆଗ୍ରହ ପ୍ରକାଶ ପାଏନାହିଁ । ସେ କାହିଁକି ଏତେ ଭଲପାଉଥିଲେ ଅନ୍ୟକୁ ? ଭାରି ଦରଦୀ ସଂବେଦନଶୀଳ ବିନ୍ଦୁଟି ତ; ଅତି ସହଜରେ, ସ୍ୱାଭାବିକ ଭାବରେ ସାମାନ୍ୟ କାରଣ ପାଇଁ ସେ ଜଣକୁ ଭଲ ପାଇଯାଉଥିଲେ ।

'' ଆପଣଙ୍କ ଭଲ ପାଇବାର ପ୍ରତିଦାନ ନାହିଁ । ବନମାଳୀବାବୁ ! ଆପଣଙ୍କ ଏତେ ଶ୍ରଦ୍ଧାର ଭାଜନ ବି ମୁଁ ନୁହେଁ । ଆପଣ ଏମିତି ତରବର ହୋଇ ଚାଲିଗଲେ କାହିଁକି ? ଆପଣ ତ କେଡ଼େ ଧୀରସ୍ଥିର ମଣିଷ । ଆଉଥରେ ଆମ ବୈଠକ ଘରେ ବସି ନଥାନ୍ତେ ? ସତ କହୁଛି ବନମାଳୀ ବାବୁ , ଆପଣ ଏତେ ମାତ୍ରାରେ ଘନିଷ୍ଠ ହୋଇଯାଇଥିଲେ ଯେ ଆପଣ ସେ ହିନ୍ଦୁସ୍ଥାନୀ ଟୋପି ପିନ୍ଧି ଆସିଥିଲେ ବି ମୁଁ ବିନା ସଂକୋଚରେ ଆପଣଙ୍କ ସହିତ ଓଡ଼ିଆରେ ହିଁ କଥାବାର୍ତ୍ତା କରିଥାନ୍ତି । ହେଲାନାହିଁ । ଆପଣ ଆସିପାରିଲେ ନାହିଁ । ଠିକ୍ ଅଛି, ଏଥର ମୋର ପାଳି । ଆପଣ ଯୋଉଠି ଅଛନ୍ତି ମୁଁ ଯାଇ ପହଞ୍ଚିବି । କଥା ହେବା ।''



# ସୁରେନ୍ଦ୍ରଙ୍କ ଇନ୍ଦ୍ରଭାଗ

ମୋର ମନେହୁଏ ସୁରେନ୍ଦ୍ର ବାବୁଙ୍କର ସୁରଭାଗ ଅପେକ୍ଷା ଇନ୍ଦ୍ରଭାଗ ହିଁ ଅଧିକ ପ୍ରଭାବଶାଳୀ ଓ ତାଙ୍କ ଚରିତ୍ରର ଜ୍ୟେଷ୍ଠାଂଶ । ଯାହା ସବୁ ସୁକୁମାର, ରୁଚିବନ୍ତ, ଶୁଚିମନ୍ତ, ଦିବ୍ୟ ଏବଂ ସୁନ୍ଦର ଯଦି ସୁରଭାଗ ବା ଦେବଭାଗ ହୁଏ, ତାହା ହୁଏତ ତାଙ୍କ ବ୍ୟକ୍ତିତ୍ୱରେ, ବକ୍ତବ୍ୟରେ, ସୃଷ୍ଟିରେ ଏବଂ ସାଧନରେ ଅତ୍ର ତତ୍ର ଦେଖିବାକୁ ମିଳେ । କିନ୍ତୁ ଯେଉଁ ରାଜକୀୟ ଅଭିଜାତ ଭଙ୍ଗୀ, ସ୍ପର୍ଦ୍ଧା, ଠାଣି, ଐଶ୍ୱର୍ଯ୍ୟ ବଜ୍ରଧାରୀ ସାମର୍ଥ୍ୟ, ଉଦାରପଣ, ସ୍ୱର୍ଗଭୂମିର ଅମୃତ ଓ ଅପ୍‌ସରା ସକାଶେ ସହଜ ସ୍ୱାଧିକାର କହିଲେ ଇନ୍ଦ୍ରପଣ ବୁଝାଏ ତାହା ତାଙ୍କର ବୈଶିଷ୍ଟ୍ୟ, ସମସ୍ତଙ୍କ ଭିତରେ ତାଙ୍କୁ ବାରି ଦେବା ପାଇଁ ନିର୍ଭୁଲ ଚିହ୍ନଟ ।

ସେ ଏତେ ଲେଖିଯାଇଛନ୍ତି, ଏତେ ଭାବରାଜ୍ୟରେ ମନ୍ଥନ କରିଛନ୍ତି, ଯାହା କଳନା କରି ହୁଏନା । ତଥାପି ନିଜେ କହିଛନ୍ତି –''ଯାହା ଲେଖିବାର ଲେଖିପାରିଲି ନାହିଁ ।'' ଠିକ୍ ସେମିତି ମୋର ମନେହେଲା ସୁରେନ୍ଦ୍ର ବାବୁଙ୍କ ସଂସ୍ପର୍ଶରେ ଯେତିକି ଆସିଛି (ବହୁଭାଗ ରାଜନୀତିଜ୍ଞ ଭାବରେ; କିଛି ଅଂଶ ସାହିତ୍ୟ ଆଲୋଚନାରେ) ସେତିକି ଅନ୍ତତଃ ଲେଖିଯିବି । କିନ୍ତୁ ପ୍ରତ୍ୟେକ କଳ୍ପନା, ସ୍ୱପ୍ନଜୀବୀ ଯେପରି, ସୁରେନ୍ଦ୍ର ବାବୁଙ୍କ ଭାଷାରେ, ଅନୁଭବ କରେ 'ସେ ଅତୃପ୍ତ' ଠିକ୍ ସେହିପରି ସୁରେନ୍ଦ୍ରବାବୁଙ୍କ ସମ୍ପର୍କରେ କିଛି ଲେଖିଯିବାର କଳ୍ପନା ମୋର ଅତୃପ୍ତ ରହିଲା, ''ଯାହା ଲେଖିବାର ଲେଖିପାରିଲି ନାହିଁ ।'' ତଥାପି ସାହିତ୍ୟ ଏକାଡ଼େମୀ ପକ୍ଷରୁ ପ୍ରକାଶିତ 'କୋଣାର୍କ'ର ସ୍ୱତନ୍ତ୍ର ସଂଖ୍ୟା ତାଙ୍କ ଆତ୍ମା ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ସ୍ୱରୂପ ନିବେଦିତ ହେଉ, ଏହାହିଁ କାମନା ।

ସୁରେନ୍ଦ୍ର ବାବୁଙ୍କୁ ଦୂରରୁ ହିଁ ସମ୍ମାନ ଜଣାଇ ଆସିଛି । ତାଙ୍କ ପାଖରେ ରାଜସିକତା ଯେତେ, ରାଜକୀୟତା ମଧ୍ୟ ସେତେ ଦେଖି ପାଖରେ ପଶିବାକୁ ସାହସ କରିନାହିଁ । ସେ କିନ୍ତୁ ଖୁବ୍ ସସ୍ନେହ ଆଦର କରିଛନ୍ତି । ଖାତିର୍ କରିଛନ୍ତି ଆଗରେ ପଛରେ । ଦେଶ କାଳରେ ସେ ମୋ ପାଇଁ ଦୂରସ୍ଥ । ମୋଠାରୁ ବୟସରେ ବଡ଼ । ଦୃଷ୍ଟିଭଙ୍ଗୀରେ ମଧ୍ୟ ପାର୍ଥକ୍ୟ ଅନେକ । କିନ୍ତୁ ବେଳେ ବେଳେ ସେ ମୋତେ ଚକିତ କରି ଦେଇଛନ୍ତି ।

ମୋର ମନେ ହେଉଛି ଯେ ମୁଁ ତାଙ୍କୁ ଯେତେ ପଢ଼ିଛି ବା ଜାଣିଛି, ତା' ଅପେକ୍ଷା ଢ଼େର୍ ବେଶି ସେ ମୋତେ ଜାଣିଛନ୍ତି । 'ମରାଳର ମୃତ୍ୟୁ'ରେ ହିଁ ତାଙ୍କ ସହିତ ମୋର ପ୍ରଥମ ପରିଚୟ । ସେ କାଳରୁ 'ଶେଷସ୍ତମ୍ଭ' ପର୍ଯ୍ୟନ୍ତ ମୁଁ ତାଙ୍କୁ ପଢ଼ି ଆସିଛି, ବୁଝି ଆସିଛି, ମତ ଅମେଳ ହେଲେ ନିଜକୁ ହିଁ ଦୋଷ ଦେଇ ଆସିଛି, ତାଙ୍କ ପ୍ରତି ସମ୍ମାନ ଅକ୍ଷୁଣ୍ଣ ରଖି । ତାଙ୍କ ଆଗରେ ନିଜକୁ ଖୁବ୍ ଛୋଟ ବୋଧ କରିଛି । ସ୍ୱୀକାର କରିଛି ଯେ 'କୂଳବୃଦ୍ଧ' କିମ୍ବା 'ଶତାବ୍ଦୀର ସୂର୍ଯ୍ୟ' ମୁଁ କଦାପି ଲେଖିପାରିନଥାନ୍ତି। 'ନୀଳାଦ୍ରି ବିଜୟ' ମଧ୍ୟ ମୋ ସାମର୍ଥ୍ୟର ବାହାରେ । କାରଣ ଏତେ ତଥ୍ୟ ସଂଗ୍ରହ କରିବା ମୋର ସାଧ୍ୟାତୀତ, ଏତେ ଧୈର୍ଯ୍ୟ ଧାରଣ କରିବା ମୋର ସ୍ୱଭାବ-ବିରୁଦ୍ଧ । ତାଙ୍କ ବ୍ୟାପ୍ତି, ତାଙ୍କ ପରିସର ମୋତେ ଅବାକ୍ କରିଛି । ଶେଷ ସ୍ତମ୍ଭରେ ସତେବା ସ୍ରଷ୍ଟା ଜୀବନରେ ଲୁଚି ରହିଥିବା ଅଜସ୍ର କଢ଼ ହଠାତ୍ ଫୁଟିଯାଇଛନ୍ତି। 'ନରୋତ୍ତମ ଚକଡ଼ା'ର ବ୍ୟଙ୍ଗ ବିଦ୍ରୂପ ଓ ସେ ଭାଷା ଭଙ୍ଗୀ ସହିତ ଶେଷସ୍ତମ୍ଭର କାବ୍ୟଧର୍ମୀ ଆବେଗିକ ସୂକ୍ଷ୍ମ ଚିତ୍ର ଏକାଠି କରିବା ସାଧାରଣ ଶିଳ୍ପୀର ସାଧ୍ୟାତୀତ।

ପ୍ରଥମ ସାରଳା ପୁରସ୍କାର ପାଇଲା ପରେ ଇମ୍ପା ସଂସ୍ଥାର ଗୋଟିଏ ଛୋଟ ବୈଠକରେ ଆମେ ବସିଥାଉ । ସୁରେନ୍ଦ୍ର ବାବୁ ସିଗ୍ରେଟ୍ ଟାଣି ସମସ୍ତଙ୍କୁ ଦେଖୁଥାନ୍ତି, ଶୁଣୁଥାନ୍ତି । ଶେଷରେ ପୁରସ୍କାର ଉପରେ ମନ୍ତବ୍ୟ ଦେଲାଭଳି କହିଲେ, ''ସାରଳା ପୁରସ୍କାର ଏକ ସାରସ୍ୱତ ସ୍ୱୀକୃତି, ସେଥିପାଇଁ ଶ୍ଳାଘ୍ୟ – ଦଶ ହଜାର ଟଙ୍କା ତ (ସେତେବେଳେ ଦଶ ହଜାର ଥିଲା) ମୋର ମାସକୁ ପିଇବା ଖର୍ଚ୍ଚ ।'' ପରିହାସରେ ଯେଉଁ ଇଙ୍ଗିତ, ଯେଉଁ ସ୍ୱାଭାବିକ ବଡ଼ପଣ ପ୍ରକାଶ ପାଇଥିଲା ତାହାହିଁ ତ ଇନ୍ଦ୍ରପଣ ।''

ବାଜି ରାଉତର ଐତିହାସିକତାକୁ ଅସ୍ୱୀକାର କରି ଯେଉଁ ରଣହୁଙ୍କାର ଏବଂ ଯୁକ୍ତି ପ୍ରମାଣର ଆଟୋପ ତାହାହିଁ ତ ବଜ୍ରଧାରୀର ସାମର୍ଥ୍ୟ । ହାରିବା ଜିଣିବାର ପ୍ରଶ୍ନ ସେଇଠି ଗୌଣ । କୌଣସି ଗୋଟିଏ ତଥ୍ୟ ଉପରେ ଲଇଁ ନ ଯିବାର ମାନସିକତା – ଯାହାର ପ୍ରମାଣ ପାର୍ଲିଆମେଣ୍ଟର ମଞ୍ଚରୁ ସାମ୍ବାଦିକତା-ରାଜନୀତିରୁ ସାହିତ୍ୟ ଯାଏଁ ବହୁ କ୍ଷେତ୍ରରେ ବାରମ୍ବାର ପ୍ରମାଣିତ ହୋଇଛି ତାହାହିଁ ଇନ୍ଦ୍ରପଣ ।

ସୁରେନ୍ଦ୍ରଙ୍କ ପ୍ରଖର ଯୁକ୍ତିନିଷ୍ଠତାରେ କବିତା ବୋଧହୁଏ ସମ୍ଭବ ନଥିଲା। ଶେଷସ୍ତମ୍ଭ ବେଳକୁ ଯାହା ଆସୁଥିଲା ତାହା ଆଉ ଟିକିଏ ତରଳ ରୂପ ନେଇଥିଲେ। ହୁଏତ କବିତା ହୋଇଯାଇଥାନ୍ତା । –କିନ୍ତୁ ସେତେ ସ୍ୱପ୍ନକୁ ରାତି କାହିଁ ? – ଥାଇ ନଥିଲା ପରି ଯେଉଁ ସୌକୁମାର୍ଯ୍ୟ, ଦେଖି ନଦେଖିଲା ପରି ଆମେ ରହିଥାଉ ତାହା ସୁରେନ୍ଦ୍ରଙ୍କର ସୁରଭାଗ ।

. ସୁରେନ୍ଦ୍ର ବାବୁ କହିବାକୁ ଗଲେ ବୃତ୍ତିରେ ସାମ୍ବାଦିକ, ପେସା ରାଜନୀତି, ନିଶା ସାହିତ୍ୟ – ଖୁବ୍ ନିଦାସ୍ତମ୍ଭ ଭଳି । କିନ୍ତୁ ଉପନିଷଦ୍ କହିଲେ ସେ ଅସୁଖ ପାଆନ୍ତି । ଦର୍ଶନ ତାଙ୍କ ପାଇଁ ବିଶେଷ ମୂଲ୍ୟ ବହନ କରେ ନାହିଁ । ମୁଁ କିନ୍ତୁ ଦର୍ଶନରୁ ମୁକୁଳି ପାରେ ନାହିଁ । ଉପନିଷଦ୍ ମୋର ପ୍ରିୟ ଦର୍ଶନ, ମୋର ଉପଜୀବ୍ୟ । ଓଡ଼ିଆ ସାହିତ୍ୟର ଏ ଉଜ୍ଜ୍ୱଳ ପୁରୁଷଙ୍କୁ ମୁଁ କ୍ଷମା ମାଗୁଛି, ତାଙ୍କ ଭଳି ଜୀବନକୁ ଦେଖି ପାରିନାହିଁ ବୋଲି । କୃତଜ୍ଞତା ଜଣାଉଛି ଯେ ଏ ବୈଷମ୍ୟ ସତ୍ତ୍ୱେ ସେ ମୋତେ ଶ୍ରଦ୍ଧାର ସହିତ ଗ୍ରହଣ କରିଛନ୍ତି । ମୋ ଜାଣିବାରେ ଓଡ଼ିଆ ଭାଷାର ଗୋଟାଏ ସାହିତ୍ୟିକ ଯୁଗକୁ ଟେକି ଧରିବାରେ ସୁରେନ୍ଦ୍ରବାବୁ ହିଁ ସମର୍ଥ ଶେଷସ୍ତମ୍ଭ । ଯାପରେ ସାହିତ୍ୟରେ ଏମିତି ସ୍ତମ୍ଭ ଭଳି କିଏ ଠିଆ ହେବ କି ନାହିଁ କେଜାଣି । – କିନ୍ତୁ କିଛି କାଳ ପର୍ଯ୍ୟନ୍ତ ସୁରେନ୍ଦ୍ର ବାବୁଙ୍କ ଇନ୍ଦ୍ରପଣ ଯେ ଅକ୍ଷୁଣ୍ଣ ରହିବ ଏଥିରେ ସନ୍ଦେହ ନାହିଁ । ଅମ୍ଳାନ ପ୍ରତିଭାକୁ ମୁଁ ପ୍ରଣତି ଜ୍ଞାପନ କରୁଛି ।



# ରମ୍ୟ ରଚନାର ସମ୍ପର୍କରେ

ଗଦ୍ୟ ସାହିତ୍ୟରେ ଏ ଅଭିନବ ଆଗନ୍ତୁକଟିର ଗୋତ୍ର ହେଉଛି ରଚନା ଏବଂ ଚିହ୍ନଟ ହେଉଛି 'ରମ୍ୟତା' । ଏହାର କୌଳୀନ୍ୟ ବିଷୟରେ ବୋଧହୁଏ ପଣ୍ଡିତମାନଙ୍କର କିଛି କହିବାର ନାହିଁ, କିନ୍ତୁ ତା'ର ଚରିତ୍ର ଉପରେ, ଆଚାର ବ୍ୟବହାର ଉପରେ ସମସ୍ତଙ୍କର ଆଖି । ତା'ର ଚେହେରା ଗଦ୍ୟ ପରି କିନ୍ତୁ ତହିଁରେ ଗଦ୍ୟର ଦମ୍ଭିଲାପଣ, ତା'ର ଗାମ୍ଭୀର୍ଯ୍ୟ, ତା'ର କାନ୍ଥ ଭଳି ଦୈର୍ଘ୍ୟପ୍ରସ୍ଥ ଏବଂ ଓଜନ ନାହିଁ । ଭାରି ଚଟୁଳ, ତରଳ ଆବେଗଧର୍ମୀ କବିତାକ୍ରାନ୍ତ ଗଦ୍ୟ ଏ ରଚନାର; ବେଳେ ବେଳେ ହାସପରିହାସରେ ଛଳଛଳ ତ ଆଉ କେତେବେଳେ ଶାଣିତ ବିଦ୍ରୂପରେ ମର୍ମଭେଦୀ । ସେଥିପାଇଁ କୌଣସି ପ୍ରୟାସ ନଥିଲା ପରି, କୌଣସି ଶାସନ ନଥିଲା ପରି ଏହାର ଶବ୍ଦ ଓ ଭାବ ବିନ୍ୟାସ । ଭାରି ସ୍ୱାଦ୍ୟ, ରୋଚକ, ମନୋରଞ୍ଜକ ଶବ୍ଦାବଳୀ ଗିରିଝର ପରି ସ୍ୱଚ୍ଛନ୍ଦ ଗଡ଼ିଯାଏ ଏବଂ ସହୃଦୟ ପାଠକଟିକୁ ଗଡ଼ାଇ ନେଇଯାଏ, ଉଡ଼ି ନେଇଯାଏ ନୂଆ ନୂଆ ଆକାଶକୁ ଓ ପାତାଳକୁ । ଭୂଇଁ ଛାଡ଼ି ଏମିତି ଭ୍ରମିବା ବେଳେ ପାଠକକୁ ଅନେକ ବିସ୍ମୃତ ଅଞ୍ଚଳରେ ବିବିଧ ତଥ୍ୟ ତତ୍ତ୍ୱ, ଶାସ୍ତ୍ର, ଧର୍ମ, ଦର୍ଶନ, ସାହିତ୍ୟ, କଳା, ବିଜ୍ଞାନ, ଅର୍ଥନୀତି, ରାଜନୀତି, ବିଦ୍ୟା, ଅବିଦ୍ୟା, ପ୍ରାଚ୍ୟ, ପାଶ୍ଚାତ୍ୟ, ଅନ୍ଦି, କନ୍ଦି ବୁଲି ଦେଖିବାର ସୁଯୋଗ ମିଳେ। କିନ୍ତୁ ଏ ଭ୍ରମିବା ଭିତରେ ଉଦ୍‌ଭ୍ରାନ୍ତି ନାହିଁ, ବାକ୍‌ବିଳାସ ଭିତରେ ବାବଦୂକତା କିମ୍ବା ବ୍ୟର୍ଥ ପ୍ରଗଲ୍‌ଭତା ନାହିଁ।

ବିଷୟସର୍ବସ୍ୱ ନହୋଇ ତାହା ବିଷୟାନୁସାରୀ ହୋଇଥାଏ । ବିଷୟଟିକୁ ବାଳିବସ୍ତା ପରି ଶଗଡ଼ଦଣ୍ଡାରେ ବୋହିଚାଲିବା ଅପେକ୍ଷା ଏଥିରେ ବିଷୟଟିର ଚାରିପଟେ ବିବିଧଭଙ୍ଗୀରେ ପରିକ୍ରମା କରାଯାଏ । ଫଳରେ ବିଷୟ ଏକ ହେଲେ ସୁଦ୍ଧା ତା'ର ଅନେକ ଦୃଶ୍ୟପଟ୍ଟ ଆବିଷ୍କୃତ ହେଉଥାଏ । ତାକୁ ମୁଣ୍ଡେଇ ବୋହି ବୁଲିବାର ଯାତନା ନଥାଏ ଏବଂ ବୋହି ସୁଦ୍ଧା ତାକୁ ଦେଖି ନ ପାରିବାର ଅଥଚ ତା' ଓଜନରେ ପେଶି ହୋଇ ଯାଉଥିବାର ବିଡ଼ମ୍ବନା ନଥାଏ । ଗଦ୍ୟ ରଚନା ପଢ଼ିବାର ଧୈର୍ଯ୍ୟ ପରୀକ୍ଷା କିମ୍ବା ଅବସାଦ ଏଥିରେ ନାହିଁ, ଅଙ୍କ କଷାକଷି ନାହିଁ । ବାଗାର୍ଥର ସଂପୃକ୍ତିକୁ ଟଣା ଓଟରା କରି ଅଲଗା ଅଲଗା କରିବାର ପ୍ରୟୋଜନ ମଧ୍ୟ ନାହିଁ ।

ନିଛକ ଗଦ୍ୟ ଏକ ଚଷମାପିନ୍ଧା ପ୍ରୌଢ଼ ଯାହାଙ୍କୁ ଦେଖିଲେ ଡରମାଡ଼େ, ଯାହାଙ୍କୁ ପ୍ରଣାମ କରି ଆଡ଼ ହୋଇଯିବାକୁ ଇଚ୍ଛା ହୁଏ, ଯେ ବ୍ରହ୍ମବୈବର୍ତ୍ତ ପୁରାଣ

ନାମଧେୟ ଦୁରୂହ ବିକଟାଳ ଗ୍ରନ୍ଥପରି ଢେକା ମାରି ବସିଥାନ୍ତି, ମଧୁ ରାଓ, ବିପିନ ବିହାରୀ, ଶଶିଭୂଷଣ ପରି ଦେଖାଯାନ୍ତି । ଦାୟରେ ନପଡ଼ିଲେ ତାଙ୍କ ପାଖ ପଶିବାକୁ ଇଚ୍ଛା ହୁଏନାହିଁ ।

କିନ୍ତୁ ଏ ରଚନା ନାନାବର୍ଣ୍ଣର ଜାମା ପିନ୍ଧିଥିବା, ଝଟକୁଥିବା ମୁହଁ, ଆଖି, ଚମକୁଥିବା ଭୂରୁରେ ଶୋଭାପାଉଥିବା, ସଦାଚଞ୍ଚଳ, ପରିହାସପ୍ରିୟ, ବାକ୍‌ପଟୁ, ବୁଦ୍ଧିଦୀପ୍ତ ସୁଦୃଶ୍ୟ ତରୁଣ ଯାହାର ଆକର୍ଷଣ ଅନୁପେକ୍ଷ୍ୟ, ଯାହାର ସାନ୍ନିଧ ପରମ ସୁଖକର ଓ କାମ୍ୟ।

ସେ ପରିହାସ କରେ, କିନ୍ତୁ ଅଶାଳୀନ ନୁହେଁ । ସେ ଜ୍ଞାନୀ, ଅନୁଭବୀ, ସଂବେଦନଶୀଳ କିନ୍ତୁ ପଣ୍ଡିତମ୍ମନ୍ୟ ନୁହେଁ । ବୁଝି ବୁଝେଇବାର କ୍ଷମତା ତା'ର ପ୍ରବଳ। ମନରଞ୍ଜେଇ କହିବାର ଚାତୁରୀ ଅନନ୍ୟ । କାବ୍ୟ ବିଚାରରେ ତାହା ଗୁରୁସମ୍ମତ ନୁହେଁ, ବରଂ ଅଧିକାଂଶ କ୍ଷେତ୍ରରେ ତାହା କାନ୍ତାସମ୍ମତ, ଏ ବେଳେବେଳେ ସଖାସମ୍ମତ ହୋଇପାରେ – ସେ ତରୁଣ ସ୍ଫୂର୍ତ୍ତିଶୀଳ, ଶାଣିତ, କିନ୍ତୁ ଅବ୍ୟବସ୍ଥିତ ନୁହେଁ । ତା'ର ଆଧୁନିକତା ଚମତ୍କାର, କିନ୍ତୁ ସେ ଫାଡ଼ା ଟୋକା ନୁହେଁ; ଫାଜିଲ୍ କିନ୍ତୁ ପାଜି ନୁହେଁ । ତା'ର ପ୍ରାଚୀନ ଯୋଗ୍ୟତା ମଧ୍ୟ ତଦ୍ରୂପ ଚମତ୍କାର, କିନ୍ତୁ ସେ ପ୍ରାଚୀନପନ୍ଥୀ ନୁହେଁ, ପରମ୍ପରା ସର୍ବସ୍ୱ ନୁହେଁ ।

ତା'ର ଚମକୁଥିବା ଆଖିରେ ସେ କଳିଯାଏ ଭୂତ, ଭବିଷ୍ୟ ଓ ବର୍ତ୍ତମାନ; ଏ ପୃଥିବୀ ଓ ଅନେକ ପୃଥିବୀ । ଝଟକୁଥିବା ବୁଦ୍ଧିରେ ସେ ସାହିତ୍ୟ, ଧର୍ମ ଦର୍ଶନ ବିଜ୍ଞାନର ଗ୍ରନ୍ଥି ସବୁ ଫିଟାଇ ପକାଏ । ଅତ୍ୟନ୍ତ ସ୍ପର୍ଶକାତର ହୃଦୟରେ ଅନୁଭବୀ ଯାଏ ବିବିଧ ବ୍ୟଥା, ଯାତନା ଓ ଦୁଃଖ; ସୁଖ-ସଖ୍ୟ ଭୋଗ-ଭୋଗ୍ୟ, ଆନନ୍ଦ-ବିଳାସ ତଥା ଆବେଗ-ସଂବେଗର ଛୋଟ ବଡ଼ ଲହରୀ । ସେ ମନସ୍ୱୀ କିନ୍ତୁ ମନନଧର୍ମୀ ନୁହେଁ । ସେ ବରଂ ପ୍ରାଣବନ୍ତ ରସବନ୍ତ ଆବେଗପ୍ରବଣ ଏକ ସ୍ୱଚ୍ଛସତ୍ତା । ତେଣୁ ଏ ରଚନା ମନ ଅପେକ୍ଷା ପ୍ରାଣକୁ ବେଶୀ ସ୍ପର୍ଶ କରେ ।

ପଢ଼ିଲା ଶୁଣିଲାବେଳେ ମନେହୁଏ ସତେବା ଏ ଗଦ୍ୟ ରଚନାଟି ଆଉ ଟିକିଏ ତରଳିଗଲେ କବିତା ହୋଇଯିବ; ଏହାର ଆଳାପ ଭଙ୍ଗୀରେ ଇଙ୍ଗିତ ଚରିତ୍ର ଆଉ ଟିକିଏ ସ୍ପଷ୍ଟ ହୋଇଗଲେ ନାଟକ ହୋଇଯିବ; କଥନ ବିନ୍ୟାସର ଘଟନା ପରମ୍ପରା ଭିତରେ ଗଳ୍ପ ଆସିଯିବ । ଅଥଚ ଏଥିରେ ପ୍ରବନ୍ଧର ଚିନ୍ତାଦର୍ଶନର ତତ୍ତ୍ୱ ଯଥା ସ୍ଥାନରେ ଯଥା ପରିମାଣରେ ରହିବାରେ କୌଣସି ଆପତ୍ତି ନାହିଁ । ତଥାପି ଏହା କୌଣସି ସାଲିସ ନୁହେଁ ବା ସହାବସ୍ଥାନ ପାଇଁ ଏ ସମସ୍ତଙ୍କର ମିଳାମିଶା ନୁହେଁ । ଏଥିରେ ଏସବୁ

ବିଭାଗର ଆଭାସ ଅଛି ସତ, କିନ୍ତୁ କୌଣସି ଗୋଟିକରେ ଏହା ଆବଦ୍ଧ ନୁହେଁ । ଏହା ଏକ ମୁକ୍ତ ରୂପ ।

ଏ ସ୍ୱଚ୍ଛନ୍ଦ ଆତ୍ମପ୍ରକାଶ କରୁଥିବା ତରୁଣ ତା'ର ବେପରୁଆ ଢ଼ଙ୍ଗରେ ମୁକ୍ତ ବିଚରଣ କରିବାରେ ଆନନ୍ଦ ପାଏ ଓ ଦିଏ । ଚାଲିବା, ଉଡ଼ିବା, ଶୁନ୍‌ଟିଡ୍ ମାରିବାରେ ତା'ର ପ୍ରଚଣ୍ଡ ଶକ୍ତି ବିଷୟରେ ସେ ସଚେତନ ନୁହେଁ, ତା'ର ସାହିତ୍ୟିକ ଚରିତ୍ର ବିଷୟରେ ତ ଆଦୌ ନୁହେଁ । ସେ ଲଘୁକୁ ଗୁରୁ କରିଦିଏ, ଗୁରୁକୁ ମଧ ଲଘୁ କରିଦିଏ ; କିନ୍ତୁ ଏହା ଲଘୁ ନୁହେଁ କି ଗୁରୁ ନୁହେଁ ଅଥଚ ଉଭୟ । ସୀମା ଉଲ୍ଲଂଘନ କଲାବେଳେ ସେ ଜ୍ୟେଷ୍ଠ ବର୍ଗମାନଙ୍କୁ କିଛି କିଛି ଅମାନ୍ୟ କରେ ଯେମିତି ଅଭିଧାକୁ ଓ ଗୁରୁ ଲଘୁ ଶବ୍ଦ ଯୋଜନାରେ ଭାଷା ବନ୍ଧନକୁ ସେ ଅସ୍ୱୀକାର କରେ । କିଛି କିଛି ବିଦ୍ରୋହର ଆଚରଣ ଥିଲେ ସୁଦ୍ଧା ସେ ଜାଣିଶୁଣି ବିଦ୍ରୋହୀ ନୁହେଁ । ମୋଟ ଉପରେ ତା'ର ଚରିତ୍ର ହେଲା ସେ ଏକ ଆତ୍ମବିଭୋର ଲୀଳାପ୍ରବଣ ରାଜପୁତ୍ର । ସାହିତ୍ୟିକ ରୁଢ଼ିରେ ଏହି ଚରିତ୍ର ହିଁ ତା'ର ରମ୍ୟାର୍ଥ, ତା'ର ରଞ୍ଜକତା, ତା'ର ଦୁର୍ବାର ଆକର୍ଷଣ, ତା'ର ପ୍ରଚଣ୍ଡ ଶକ୍ତି, ତା'ର ଚିହ୍ନଟ ।

ଏହାର ସଂଜ୍ଞା ପାଇଁ ଯେଉଁମାନେ ପାଶ୍ଚାତ୍ୟ ସାହିତ୍ୟର ଏସେ, ବେଲ୍‌ଲେଟର (Essay, belles letters) ବା ପ୍ରାଚ୍ୟ ଭୂମିରୁ ପ୍ରବନ୍ଧ, ଲଳିତ ନିବନ୍ଧ, ଲଘୁ ନିବନ୍ଧ ଆଦି ଖୋପମାନ ଧରି ବସିଛନ୍ତି, ସେମାନଙ୍କୁ ନିରାଶ ହେବାକୁ ପଡ଼ିବ । କାରଣ ଏଥିରୁ କୌଣସି ଗୋଟିଏ ଚାଙ୍ଗୁଡ଼ିରେ ଫକୀରମୋହନ, ଗୋପାଳ ପ୍ରହରାଜ, ଗୋବିନ୍ଦ ତ୍ରିପାଠୀ, ବାମାମିତ୍ର, ଗୋପୀନାଥ, ମହାପାତ୍ର ନୀଳମଣି, ଚୌଧୁରୀ ହେମକାନ୍ତ, ଚିତ୍ତରଞ୍ଜନ, ଚନ୍ଦ୍ରଶେଖର ଧରିବେ ନାହିଁ । ଏସେ ବା ବେଲ୍‌ଲେଟର୍ସ ମଧ ଆଧୁନିକ ଇଂରାଜୀ ରଚନାରାଜିକୁ ଧରିପାରୁନାହିଁ ବୋଲି ଗୋଟିଏ ଖୋଲା ପଡ଼ିଆ ପରି Open form ପାଇଁ ଆଲଫ୍ରେଡ୍ କାଜିନ୍ ଯୁକ୍ତି ଦେଇଛନ୍ତି । ଆମ ଭୂମିରେ 'ଜୟଦେବ କବି ପ୍ରବନ୍ଧମ୍' କହି ଗୀତଗୋବିନ୍ଦର ବର୍ଗୀକରଣ କରିଛନ୍ତି । ଯଦୁମଣି 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ନାମଧେୟ ରୀତିଯୁଗୀୟ କାବ୍ୟ ରଚନା କରିଛନ୍ତି । ଅଥଚ ଅନାୟାସରେ ଆମ୍ଭେ 'ଲିସବନ୍ ଭୂମିକମ୍ପ' ଏବଂ 'ଅସୀମର ଆହ୍ୱାନ'କୁ ପ୍ରବନ୍ଧ କହିଗଲୁ । ମନେହୁଏ ପ୍ରବନ୍ଧବର୍ଗର ମୂଳ ଅଧିକାରୀ କାବ୍ୟ ରଚନା ଅଭାବରେ ଆମେ ଗଦ୍ୟପାଇଁ ତାକୁ ଜବରଦଖଲ କରିନେଲୁ – ବେଓ୍ୱାରିସ ଜମିକୁ ଦଳେଇ ମାଡ଼ି ବସିବା ନ୍ୟାୟରେ। ଏଣୁ ଏ ପ୍ରବନ୍ଧ, ନିବନ୍ଧ ବା ଗୁରୁ ଲଘୁ ଆଦି ବିଶେଷଣ ନିଷ୍ପନ୍ନ କୌଣସି ନାମକରଣ ପାଇଁ, ଅଭିନବ ରଚନାରାଜି ନୁହେଁ, କାରଣ ତାକୁ ତାହା ମାନିବ ନାହିଁ । ଏଣୁ 'ରମ୍ୟ ରଚନା' ନାଁଟି ତାକୁ ତାକୁ ଲାଗିଗଲାଣି, ଏହା ମଧ 'ରମ୍ୟ' ଶବ୍ଦ ଉପରେ ପାଦଟୀକା

ନ ଦେଲେ ଚଳୁ  ନାହିଁ । ପୁଅର ଗେହ୍ଲା ନାଁ ବବୁ। ଭଲ ନାଁ ସ୍କୁଲରେ ପଣ୍ଡିତେ ଖାତାରେ ଚଢ଼େଇବେ । ଏଇଭଳି ଗୋଟିଏ ସଂଜ୍ଞା ଏବଂ ସଂଜ୍ଞାବାଚୀ ବାଚକ ନାମଟିଏ ପାଇଁ ଏବେ ମଧ୍ୟ ଅପେକ୍ଷା ଅଛି ।

ରମ୍ୟରଚନା ଗଦ୍ୟ ସାହିତ୍ୟର ନବୀନତମ ଦାୟାଦ । ରାଜପୁତ୍ର ପାଇଁ ଗଦ୍ୟ ସାମ୍ରାଜ୍ୟରେ ସର୍ବତ୍ର ଅବାଧ ପ୍ରବେଶର ଅଧିକାର। ସେ ପ୍ରାୟ ଜାହିର କରି ସାରିଛି "ପିତାର ଧନେ ଆମାର୍ ପୂର୍ଣ୍ଣ ଅଧିକାର" ଭଳି କଥା । ମନେହୁଏ ଏଣୁ ଏଣିକି ସତେବା ଗଦ୍ୟ କହିଲେ ଏହି ବିବର୍ତ୍ତିତ ନବଘଟିତ ରୂପ ରମ୍ୟରଚନା ହିଁ ବୁଝିବାକୁ ହେବ । ପ୍ରବନ୍ଧ ତ ସେହି କ୍ରମରେ ଲଳିତ ନିବନ୍ଧ ହୋଇସାରିଲାଣି । ସମାଲୋଚନା ହୋଇଗଲାଣି ଗ୍ରନ୍ଥବିଳାସ – ଯେମିତି ଗୋପୀନାଥଙ୍କ 'ବାଇଆକକ', ମହାପାତ୍ର ନୀଳମଣିଙ୍କ 'ରେବତୀ', ଚନ୍ଦ୍ରଶେଖରଙ୍କ 'ନର କିନ୍ନର' ବା 'ଛ'ମାଣ ଆଠଗୁଣ୍ଠ'। ଏପରିକି ଭ୍ରମଣ କାହାଣୀଟିଏ ହେଲାଣି ଚିତ୍ତରଞ୍ଜନଙ୍କ 'ଶିଳା ଓ ଶଳଗ୍ରାମ', ମନୋଜ ଦାସଙ୍କ 'ଦୂର ଦୂରାନ୍ତର', ଭୁବନେଶ୍ୱର ବେହେରାଙ୍କ 'ଆଫ୍ରିକାରେ ଓଡ଼ିଆ ଢେଙ୍କି'। ଜୀବନଟିଏ ହେଲାଣି ଶରତ ମହାନ୍ତିଙ୍କ 'ଛତ୍ରପତି ବିବେକାନନ୍ଦ'। ଖବରକାଗଜର ସମ୍ପାଦକୀୟ ହେଲାଣି ସୁରେନ୍ଦ୍ର ମହାନ୍ତିଙ୍କ 'ପ୍ରଥମାଷ୍ଟମୀ' ବା 'କାଗଜ ଡ଼ଙ୍ଗା'। ଫିଚର୍ ହେଲାଣି 'ଶେଷସ୍ତମ୍ଭ', 'ଅଙ୍କା ବଙ୍କା ନଈ', 'ଜୀବନର ଜଳଛବି' ।ଏ ସବୁ ଉପରେ 'ରମ୍ୟ ରଚନା'ର ପୁଟ ମଢ଼େଇ ହୋଇଗଲାଣି । ତା'ର ଦୃଷ୍ଟିଭଙ୍ଗୀ, କାବ୍ୟିକ ଶୈଳୀ, ଆବେଗସଂଚାରୀ ଭାବ, ମନନ ଯୋଗ୍ୟ ଚିନ୍ତା ଏବଂ ସର୍ବୋପରି ତା'ର ସୁଖପାଠ୍ୟତା ଗଦ୍ୟରଚନାର ନୂତନ ଲକ୍ଷଣ ରୂପେ ଅଙ୍ଗୀକୃତ ହୋଇଗଲାଣି ।

ରାଧାନାଥଙ୍କ 'ବିବେକୀ' ଓ ଫକୀର ମୋହନଙ୍କ 'ନନାଙ୍କ ପାଞ୍ଜି' ରମ୍ୟରଚନାର ଅନାୟାସ ଅଥଚ ଅନିଚ୍ଛାକ୍ରମେ ଉଚ୍ଚାରିତ ଆଦିସ୍ୱର । ପ୍ରୌଢ଼ ପ୍ରାବନ୍ଧିକ ରତ୍ନାକର ପତି, ବିପିନ ବିହାରୀ ରାୟ, ମୋହିନୀମୋହନ ସେନାପତି ଓ ଶଶିଭୂଷଣ ରାୟ ପ୍ରମୁଖଙ୍କ ପୌଢ଼ତା ପାଖରେ ରମ୍ୟରଚନାର ଶିଶୁସୁଲଭ ସରଳତା, ଚପଳତା ଓ ସଜୀବତା ଏକ ପ୍ରକାର ବ୍ୟତିକ୍ରମ ଓ ଅପରାଧ । ସେଥିପାଇଁ 'ବାଇମହାନ୍ତି'ଙ୍କ ପାଞ୍ଜି ପ୍ରକରଣ (ଗୋପାଳ ପ୍ରହରାଜ) ଏବଂ ଗୋବିନ୍ଦ ତ୍ରିପାଠୀଙ୍କ 'ବଟୁଆ', 'କଦଳୀ', 'କଖାରୁଫୁଲ' ରୁ ହିଁ ତିଳକୁ ତାଳ କରୁଥିବା ଏହି ଚଟୁଳ ରଚନାର ଅୟମାରମ୍ଭ ସ୍ୱୀକାର କରିବାକୁ ହେବ । ଏ ପର୍ଯ୍ୟାୟରେ ଯୋଗ ଦେଇଛନ୍ତି ଗୋପୀନାଥ (କଳାଶକ୍ତି), କାଳିନ୍ଦୀଚରଣ ('କହି ପୁଚ୍ଛି ଜାଣେ ଯେ', 'ଦୁଃଖ କହିବି ନା ସୁଖ କହିବି'), ନିତ୍ୟାନନ୍ଦ ମହାପାତ୍ର (ପତ୍ର ଓ ପ୍ରତିମା) ଓ ସେହି ପତ୍ର ଆଙ୍ଗିକରେ ଚିତ୍ତରଞ୍ଜନ ଦାସ(ଶିଳା ଓ ଶାଳଗ୍ରାମ), ଅଖିଳ ପଟ୍ଟନାୟକ (ଅନାଗତ ଫାଲ୍‌ଗୁନ), ଚିନ୍ତାମଣି ମିଶ୍ର

(ପଞ୍ଚପତ୍ରୀ), ଗୋଲୋକ ବିହାରୀ ଧଳ (ଲଣ୍ଡନ ଚିଠି) ବାମା ମିତ୍ର (ଏଣ୍ଡୁଷ୍ଟ ତେଣ୍ଡୁଷ୍ଟ), ମନୋଜ ଦାସ, ଗୋବିନ୍ଦ ଦାସ, କୃଷ୍ଣପ୍ରସାଦ, ବସନ୍ତ କୁମାର ଏବଂ ଆହୁରି ଅନେକ, କିନ୍ତୁ ଏଥିରେ ଯେଉଁ କେତେଜଣ ଜଡ଼ିତ ହୋଇଯାଇଛନ୍ତି ସେମାନେ ହେଲେ ମହାପାତ୍ର ନୀଳମଣି, ଚିତ୍ତରଞ୍ଜନ ଦାସ, ଭୁବନେଶ୍ୱର ବେହେରା, ଚନ୍ଦ୍ରଶେଖର ରଥ । ଏଣିକି ଯେଉଁମାନେ ଏଇ ବର୍ଗକୁ ସ୍ୱୀକାର କରିବେ ଏବଂ ଏ ଭୂମିକୁ ଅଧିକାର କରିବେ ତାଙ୍କ ପାଇଁ ସମ୍ଭାବନାର ଅନ୍ତ ନାହିଁ । କିନ୍ତୁ ମନେ ରଖିବାକୁ ହେବ ଯେ ଏହା ଏକ ପ୍ରବଳ ଘୋଟକ ପରି । ଚଢ଼ି ଜାଣିଲେ ଏବଂ ଚଳେଇ ପାରିଲେ ସେ ଆଲେକ୍‌ଜାଣ୍ଡାର କରିଦେବ, ନ ପାରିଲେ ଆଣ୍ଠୁଗଣ୍ଠି ପାଇଁ ଟିକିଏ ଅସୁବିଧା ।



# ସୌକୁମାର୍ଯ୍ୟର କବି ମାନସିଂହ

ବିନୟର ସହିତ ମୁଁ ଆରମ୍ଭରୁ ହିଁ ସୂଚାଇ ଦେବାକୁ ଚାହେଁ ଯେ ମୁଁ କୌଣସି ବିଜ୍ଞ ସମୀକ୍ଷକ ନୁହେଁ, ବା ଜ୍ଞାନୀ ଗବେଷକ ନୁହେଁ । ମୁଁ ଜଣେ ମୁଗ୍ଧ ବିଭୋର ପାଠକ ମାତ୍ର । କେତେ ମାତ୍ରାରେ ସହୃଦୟ, ସଂବେଦନଶୀଳ ଓ ସାମାଜିକ ତା' ମଧ୍ୟ ବିଚାର କରିବାର ପ୍ରୟୋଜନ କେବେହେଲେ ଅନୁଭବ କରି ନାହିଁ । ଏଣୁ ବିନା ଦ୍ୱିଧା ବା ସଂକୋଚରେ ମୁଁ ସ୍ୱୀକାର କରିବାକୁ ଚାହେଁ ଯେ ଯଦି କେହି କାବ୍ୟ ପ୍ରବାହର ବିପୁଳ ପ୍ଲାବନରେ ମୋତେ ଆଲୋଡ଼ିତ, ପ୍ରକମ୍ପିତ, ସ୍ତବ୍ଧ ଚକିତ କରିଥାନ୍ତି ସେ ହେଉଛନ୍ତି ସାରଳା ଦାସ; ଯେ ସ୍ୱଚ୍ଛତା, ଶୁଦ୍ଧତା  ସରଳତା ଓ ଅପ୍ରମେୟ ଗଭୀରତାରେ ମୋତେ ବିହ୍ୱଳ ବିସ୍ମୟ ବିମୂଢ଼ କରିଥାନ୍ତି ସେ ଜଗନ୍ନାଥ ଦାସ, ଯେ କାବ୍ୟ ନୈପୁଣ୍ୟର ହୀରକ ଦ୍ୟୁତିରେ ହତବାକ୍ ଚମତ୍କୃତ ଓ ପରାସ୍ତ କରିଥାନ୍ତି ସେ ଉପେନ୍ଦ୍ର; ଯେ ଲଳିତ ମଧୁର ଭାବସଂପଦ ସଙ୍ଗୀତମୟତାରେ ବିହ୍ୱଳ ବିଭୋର କରିଥାନ୍ତି ସେ କବିସୂର୍ଯ୍ୟ ଏବଂ ଯେ ଗିରିଝର ପରି ଅବାଧ ସ୍ୱଚ୍ଛନ୍ଦ କବିତାର ଭାବମୟତା, ପ୍ରାଣମୟତା, ଅନାବିଳ ତାରୁଣ୍ୟର ଆବେଗମୟତାରେ ପରିଣତ ବୟସରେ ସୁଦ୍ଧା ମୋତେ ଆକୁଳିତ, ଉଚ୍ଚାଟିତ ଓ ତରୁଣାୟିତ କରିଥାନ୍ତି, ସେ ହେଉଛନ୍ତି ପ୍ରଣୟ-ସୁରଭିତ କୋମଳ ସୌକୁମାର୍ଯ୍ୟର କବି ମାୟାଧର ମାନସିଂହ।

ଯେଉଁଠି ଭାବ ଭାଷା ରୂପକଳ୍ପ ବା ବିମ୍ବନିର୍ମାଣରେ କୌଣସି ଜଟିଳତା କଠିନତା ରୁକ୍ଷତା ବା ଗମ୍ଭୀରତା ନ ଥାଏ, ସହଜ ସରଳ ହୃଦ୍ୟତା ଚାରୁତା ରମଣୀୟତା ଥାଏ, ପରିପକ୍ୱତା ଅପେକ୍ଷା ଉଦ୍‌ଗମତା, ଉଦ୍ଦାମତା ଅପେକ୍ଷା ଚପଳତା, ଗଭୀରତା ଅପେକ୍ଷା ପ୍ରବହମାନତା, ପ୍ରାପ୍ତି ଅପେକ୍ଷା ପ୍ରବଣତା ଅଧିକ ଥାଏ, ଯାହା ବିମୂଢ଼ ନକରି ବିମୁଗ୍ଧ କରେ, ପ୍ରଭାବିତ ନ କରି ସଂକ୍ରମିତ କରେ ପ୍ଲାବିତ ନ କରି ଅତିସିକ୍ତ କରେ, ଯାହା ଦ୍ରୁମ ନୁହେଁ ପଲ୍ଲବ; ପଲ୍ଲବ ନୁହେଁ କିଶଳୟ; କିଶଳୟ ନୁହେଁ କୁସୁମ; କୁସୁମ ନୁହେଁ ସୌରଭ, ଯାହା ଆଘାତ ନ କରି ଛୁଇଁ ଦିଏ; ଯାହା ଶୃଙ୍ଗାର ଘନରସରେ ଆପ୍ଲୁତ ଯୌବନ ନୁହେଁ ପ୍ରଣୟଧୂପିତ ଅନଭିଜ୍ଞ ତାରୁଣ୍ୟ, ଯାହା ବୁଦ୍ଧିରେ ବୋଧଗମ୍ୟ ହେବା ପୂର୍ବରୁ ପ୍ରାଣକୁ ସଂଚରିଯାଏ (Communicates before it is understood – T.S. Eliot), ଯାହା ସ୍ଥୂଳ ରୂପରେ ସରଳ, ସୂକ୍ଷ୍ମ ରୂପରେ ତରଳ, ଯାହା ପ୍ରଥମ

ସ୍ପର୍ଶରେ ପୁଲକିତ କରେ, ରୋମାଞ୍ଚିତ ଓ ପରିତୃପ୍ତ କରେ, ତାହା କାବ୍ୟଭାଷାରେ ଛଣା ଅମୃତ ପରି ସୌକୁମାର୍ଯ୍ୟ ।

ଉତ୍ସଙ୍ଗେ ବା ମଳିନବସନେ ସୌମ୍ୟ ନିକ୍ଷିପ୍ୟ ବୀଣାମ୍
ମଦ୍‌ଗୋତ୍ରାଙ୍କାମ୍ ବିରଚିତ ପଦ ଗେୟମୁଦ୍‌ଗାତୁ କାମାମ
ତନ୍ତ୍ରୀମାର୍ଦ୍ରାଂ ନୟନ ସଲିଳୈଃ ସାରୟିତ୍ୱା କଥଞ୍ଚିତ୍
ଭୂୟୋଭୂୟଃ ସ୍ୱରମପିକୃତା ମୂର୍ଚ୍ଛନାଂ ବିସ୍ମରନ୍ତି ।

(ମେଘଦୂତମ – ଉତ୍ତରମେଘ)

ବିରହିଣୀ ଯକ୍ଷିଣୀ ମଳିନବସନା ଆନମନା, ନିଜ କୋଳରେ ବୀଣାଟିକୁ ପକାଇ ଦେଇ ବସିଛି । ବାରମ୍ବାର ବିରଚିତ ପଦକୁ ଗାଇବାକୁ ଉଦ୍ୟମ କରି ଗାଇ ପାରୁ ନାହିଁ । ଲୁହଧାରରେ ବୀଣାର ତନ୍ତ୍ରୀ ଓଦା ହୋଇଯାଇଛି, ସ୍ୱର ବାନ୍ଧିଲା ପରେ ବି ମୂର୍ଚ୍ଛନା ଭୁଲିଯାଉଛି । ଗାଇ ପାରିଥିଲେ ଅନ୍ୟ ରସର ସଂଚାର ହୋଇଥାନ୍ତା । କିନ୍ତୁ ଗାଇ ନ ପାରିବାର କୋହ ଅପ୍ରକଟ ସଙ୍ଗୀତର ସୂକ୍ଷ୍ମ ଆବେଦନ ଅତ୍ୟନ୍ତ ସୁକୁମାର କାବ୍ୟିକ ସ୍ପର୍ଶ ।

ଯଦି ବାରନ କରୋ ତବେ ଗାହିବ ନା
ଯଦି ସରମ ଲାଗେ ମୁଖେ ଚାହିବ ନା
ଯଦି ବିରଲେ ମାଲା ଗାଁଥା ସହସା ପଡ଼େ ବାଧା
ତୋମାର ଫୁଲବନେ ଯାଇବ ନା
ଯଦି ଥମକି ଥେମେଯାଏ ପଥି ମାଝେ
ଆମି ଚମକି ଚଲେଯାବ ଆନ କାଜେ
ଯଦି ତୋମାର ନଦୀକୂଳେ ଭୁଲିଆ ଢେଉ ତୁଲେ
ଆମାର ତରୀଖାନି ବାହିବ ନା
ଯଦି ବାରନ୍ କରୋ ତବେ ଗାହିବ ନା ।

(ରବୀନ୍ଦ୍ରନାଥ)

ଅତ୍ୟନ୍ତ କୋମଳ ପରିବେଶ ଓ ତଦ୍ରୂପ କୋମଳ ଆବେଦନ । ବାରଣ କଲେ ଗାଇବ ନାହିଁ, ଲାଜ ମାଡ଼ିଲେ ମୁହଁକୁ ଚାହିଁବ ନାହିଁ ଏବଂ ନଈ କୂଳରେ ଢେଉ ଉଠିଲେ ଜୀବନ ତରୀଟିକୁ ସୁଦ୍ଧା ବାହିବ ନାହିଁ । – ସୁକୁମାର ଇଙ୍ଗିତ କିନ୍ତୁ ଲଜ୍ଜାବନତ ମୁହଁକୁ ଚାହିଁରହିବା, ଝଂକୃତ ପ୍ରାଣକୁ ମଧୁର ମୂର୍ଚ୍ଛନା ଦେବା, ନିରୋଳା ସମୟରେ

ଫୁଲଗୁଚ୍ଛାବେଳେ ଆସି ଆଗରେ ଠିଆହେବା ଏବଂ ନଈଧାରରେ ନାଆ ବାହି ତରଙ୍ଗ ସୃଷ୍ଟି କରିବା । ପ୍ରକାଶଭଙ୍ଗୀରେ ଚାରୁତା ଓ ଭାବବିମ୍ବ ନିର୍ମାଣରେ ସୂକ୍ଷ୍ମ କୋମଳ ସୌକୁମାର୍ଯ୍ୟ ଲକ୍ଷଣୀୟ ।

ଜଣା ନଥିଲା ମାଜଣା ହେବେ ବୋଲି ଜେମା...
କର କ୍ଷମାରେ।

× × ×

ଭିଡ଼ି ଦଶନେ ବସନାଞ୍ଚଳ
ତଡ଼ିଲ୍ଲତାରୁ ହୋଇ ପ୍ରବଳ
ବଳା ଶିଞ୍ଜିନୀ କରି ଚଞ୍ଚଳ
ପଳାଇଲୁ ଯା ମଣ୍ଡି ମଣ୍ଡପ ସୀମା... କର କ୍ଷମାରେ
ରତି ପ୍ରତିମାରୁ ତନୁ ମଧମାରେ... କରକ୍ଷମା ।
(କବିସୂର୍ଯ୍ୟ)

ମାଜଣା ବେଳେ କବିର ଅପ୍ରତ୍ୟାଶିତ ଆବିର୍ଭାବ; ଏବଂ ଅପସୃୟମାଣା ସଦ୍ୟସ୍ନାତା ରତିପ୍ରତିମା ରାଜଜେମାର ରୂପସମ୍ଭାର ପାଖରେ ଅପରାଧୀ କବିର କ୍ଷମାଯାଚନା ଏକ ରମଣୀୟ ଭାବଦ୍ୟୋତନା । କ୍ଷମା ମିଳୁ ନ ମିଳୁ ଦଣ୍ଡ ଯେତେ କଠୋର ହେଉ ପଛକେ ରାହୁ ଅମୃତ ଭକ୍ଷଣ କଲାପରି ମୁଣ୍ଡ ଛିଡ଼ିଗଲେ ସୁଦ୍ଧା ଏ ଅପରାଧ ବାରମ୍ବାର ଆସ୍ୱାଦନ କରିବାର ଅପ୍ରକାଶିତ ବାସନା ଏକ ସୁକୁମାର ଇଙ୍ଗିତ ।

ମୁଁ ଗୋ ଆସିଅଛି ନବଯୌବନ; ନବଯୌବନ
ମୁଁ ଗୋ ମଧୁ ସହଚର ଆସିଅଛି ଭାସି
ଭରି ଅଛି କରେ କୁସୁମ ରାଶି
ମୁଁ ମଧୁ ତୁଳେ ନିତି ହସଇ
ରସଇ ସ୍ୱପ୍ନେ, ଭାସଇ ସ୍ୱପ୍ନେ ଲସଇ
ସ୍ୱପ୍ନକୁ କରେ ଚୁମ୍ବନ ।
ମୁଁ ଗୋ ଯୌବନ ନବଯୌବନ ।
(ନବଯୌବନ–ବୈକୁଣ୍ଠନାଥ ପଟ୍ଟନାୟକ)

ବସନ୍ତର ସହଚର ଏ ତାରୁଣ୍ୟ। ଏଥିରେ ସ୍ୱପ୍ନ ହିଁ ସ୍ୱପ୍ନ । ସ୍ୱପ୍ନର ମାଦକତା, ସ୍ୱପ୍ନର ମଧୁରତା ତା'ର ଉପଜୀବୀ। ଏ ତାରୁଣ୍ୟ ସ୍ୱୟଂସମ୍ପୂର୍ଣ୍ଣ, ଧରଣୀକୁ ଛୁଇଁ ଦେଇ

ପୁଷ୍ପିତ କରୁଥିବା ଆକାଶ ଓ ପବନରେ ଏକ କୋମଳ ଗନ୍ଧ ପରି ପ୍ରସରିଯାଉଥିବା ସେଥିରେ ଦିଗ୍‌ବିଦିଗ ଚକିତ ସୁରଭିତ ହେଉଥିବା ଏକ ଅମଳିନ ପୁଷ୍ପମାଲ୍ୟ ।

ପ୍ରତ୍ୟେକ ତରୁଣ ଏକ କବି । ପ୍ରତ୍ୟେକ କବି ଏକ ତରୁଣ । ଯେ ଅମୃତ ଦେଖେ, ଚାଖେ ଓ ବିତରଣ କରେ ସେ ତରୁଣ, ସେ କବି । ତାରୁଣ୍ୟ ହିଁ ଅମୃତ । ଅମୃତ ପ୍ରକଟିତ ହୁଏ ପ୍ରଣୟରେ । ପ୍ରଣୟ ଆଦିରସର ଆଦିପର୍ବ । ଆଦ୍ୟ ଯୌବନର ଆଦ୍ୟପ୍ରଣୟ ଏକ ଅଲୌକିକ ବିଭବ । ଏକ ପୁଲକିତ, କୁସୁମାୟିତ, ସୁକୁମାର ଉପଲବ୍ଧି, ଏକ ମାନସିକତା । ମଧୁମାସ ପରି ତାରୁଣ୍ୟ ପୃଥିବୀରେ କେବେହେଲେ ଅନୁପସ୍ଥିତ ନୁହେଁ, ତାହା କେବଳ ଅପସାରିତ ହେଉଥାଏ, ଏକ ମଧୁର ଛନ୍ଦରେ ଦୋଳାୟିତ ହେଉଥାଏ । ଫଗୁଣର ମଳୟକୁ, ଚଇତର ଚଇତାଳିକୁ ବାନ୍ଧିରଖି ହୁଏ ନାହିଁ ସତ, କିନ୍ତୁ ସେଥିରେ ଚିରକାଳ ପାଇଁ ତା'ର ଆତ୍ମାକୁ ଛନ୍ଦି ଦେଇପାରେ କବି । ତେଣିକି ସେ ଯେତେ ନିଦାଘ ବା ବର୍ଷା ଦେଇ ପାରି ହୋଇଗଲେ ସୁଦ୍ଧା ତା' ଅନ୍ତରରୁ ବସନ୍ତ ଓହ୍ଲେଇ ଯାଏ ନାହିଁ, ତା' ଆଖିରୁ ତାରୁଣ୍ୟ ଓହରି ଯାଏ ନାହିଁ । ପ୍ରଥମ ପ୍ରଣୟରେ ଯେଉଁ ତାରୁଣ୍ୟର ଅମାପ ସ୍ୱପ୍ନ ସେ ଦେଖିଛି, ତାହା ସେ ଦେଖିଚାଲିଥାଏ, ଭାଷା ଦେଇ ଚାଲିଥାଏ ଚିରକାଳ ।

ଏତେ ବିରାଟ ସେ ପାଏକି ଭାଷା
ହାୟରେ ତରୁଣ କବିର ଆଶା
ଭାବିଥିଲି ଯିବି ଅସୀମ ପଥେ
ସୁରଭି-ଶୀତଳ ମଳୟ ରଥେ
କୁସୁମ-ଫଗୁଳ ଫଗୁଣ ପୁରେ
ବାହି ଗୋ ଦୂରେ ।

କବିର ଅପରିମେୟ ଆଶା ଓ ସ୍ୱପ୍ନ । ତାରୁଣ୍ୟ ସହିତ ପ୍ରଣୟ ଉଦ୍ଦୀପକ ପରିମଳ, ଜ୍ୟୋସ୍ନା, ଚଇତି ପବନ, କୋକିଳ ସ୍ୱପ୍ନଭୂମି ସୃଷ୍ଟି କରିଛନ୍ତି । କବି ଚାହିଁଛି, ସମଗ୍ର ଜଗତରୁ ଦୂର କରିଦେବ ବ୍ୟଥା, ନିଜେ ହୋଇ ଉଠିବ ଆନନ୍ଦ ବିଭୋର, ମାନସୀ ପ୍ରଣୟିନୀର ପ୍ରଣୟ ପ୍ରତିଦାନରେ । ସେ କଠୋର ବାସ୍ତବତା ଓ ଜଗତର ବିରୋଧ ବିଷୟରେ ସଚେତନ, ନିଜର ଦୈନ୍ୟ ବିଷୟରେ ସଚେତନ କିନ୍ତୁ ଏ ସଚେତନତା ତରୁଣ ସୁଲଭ । ସ୍ୱପ୍ନ ପରି ଅଭିମାନ ଓ ହତାଶା ମଧ୍ୟ ପ୍ରଣୟୀ ସୁଲଭ। କବିର ଆଖିରେ ତାରୁଣ୍ୟର ଅଂଜନ, ହାତରେ ପ୍ରଣୟର ସ୍ପର୍ଶ, ପ୍ରାଣରେ ଆବେଗ, ମନରେ କଳ୍ପନା ସବୁ ଏକ ସୁକୁମାର ଜଗତର ଉପାଦାନ । ଏ ଭାବାବେଗରେ ବ୍ୟକ୍ତି

ନିର୍ଜ୍ଜିତ କିନ୍ତୁ ଏହାର ସ୍ୱପ୍ନସୌରଭ ବ୍ୟକ୍ତି-ସର୍ବସ୍ୱ ନୁହେଁ । ବ୍ୟକ୍ତି ନିରପେକ୍ଷ ଏ ସୂକ୍ଷ୍ମ ଅଥଚ ପରିବ୍ୟାପ୍ତ ଆବେଦନ ।

ମଣିଷ ହୋଇ ତା ଏତେ ବିଚାର
ଧରାରେ ସରଗ ସୃଜନା ତାର !
ଏ କଳପନାକୁ ପାଏ କି ଭାଷା
ହାଇରେ ତରୁଣ କବିର ଆଶା !

ଏପରି ମାନସିଂହ କାବ୍ୟକୃତିରେ ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ଓ ଆବେଦନ ତାଙ୍କର ବିଶିଷ୍ଟ ପରିଚୟ । ସର୍ବତ୍ର ଧୂପର ସୁରଭି, ସର୍ବତ୍ର ତାରୁଣ୍ୟ ଓ ପ୍ରଣୟର ସ୍ପର୍ଶ । ବାରି ଜାଣିଲେ କୋମଳ ସୌକୁମାର୍ଯ୍ୟର ପ୍ରଲେପ ।

ବାରବାଟୀ ଦୁର୍ଗର ଅବଶେଷ । ଆକାଶରେ ଜ୍ୟୋତ୍ସ୍ନା । ମହାନଦୀର ବିପୁଳ ଜଳରାଶି । ପରିବେଶ ସ୍ୱପ୍ନମୟ । "ଐତିହାସିକ ଏ ଦୁର୍ଗ ବାରବାଟୀ। ବୀର ରକ୍ତ ପିଣ୍ଡେ ଗଢ଼ା ଯାର ମାଟି" କିନ୍ତୁ କବିଙ୍କୁ ଦିଶୁନାହିଁ । ଅସ୍ତ୍ରର ଝଣତ୍କାର ଶୁଭୁନାହିଁ ।

ସେଦିନ କାହିଁ ଗୋ ଶିଳା ଏ ଦୁର୍ଗର ଛାୟା
ପଡ଼ି ଏ ତଟିନୀ ଜଳେ ଚକୋରୀ ଚକୋରେ
ଆଣେ ଯେବେ ନିଶା ଭୀତି....

ସ୍ୱପ୍ନାବିଷ୍ଟ କବି ଚକ୍ରବାକକୁ ଚକୋର କହିଦେବା ସେପରି କିଛି ଦୂଷଣୀୟ ନୁହେଁ । ଅଭିଶପ୍ତ ପକ୍ଷୀ ଦମ୍ପତିର ନିଶା କାଳରେ ବିଚ୍ଛେଦ ଘଟିବା ହିଁ କବି ଦୃଷ୍ଟିରେ ମୁଖ୍ୟ ଭାବ। ବାରବାଟୀର ବିଶାଳ ଛାୟାପାତ କରୁଥିବା ଦୁର୍ଗତ୍ୱ ଗୌଣ । କବିଙ୍କ ଆଖିରେ ତାରୁଣ୍ୟର ଅଂଜନ ପ୍ରାଣରେ ପ୍ରଣୟର ସ୍ପର୍ଶ ।

ସେ ଦିନ ଏ ଶିଳା ପରେ ଅବଗାହେ ଆସି
ସୁକୁମାରୀ ରାଜବାଳା ଆଙ୍କିଥିବ ତାର
ଲାକ୍ଷାରକ୍ତ ପଦଛବି କରି ମତ୍ତକାଶୀ
କଠିନ ପାଷାଣ ଦେହେ ଆଚଳ ସଂଚାର ।

ବାରବାଟୀ ଇତିହାସ ବିଗ୍ରହରେ ଶିହରଣ ସଂଚାର କରୁଥିବା ସୁକୁମାରୀ ରାଜବାଳା ପ୍ରଣୟୀ କବିର କଳ୍ପନା । ପ୍ରଣୟ ଓ ତାରୁଣ୍ୟର କିଛି କିଛି ସ୍ଥୂଳ ଓ ଦୃଢ଼ ଅଙ୍ଗ ଅଛି। କିନ୍ତୁ କଞ୍ଚାଡାଳର ଅଗ୍ରଭାଗରେ ଅଙ୍କୁରିଥିବା ନୂତନ କିଶଳୟ ହିଁ ସୌକୁମାର୍ଯ୍ୟ।

ଜୋଛନା ଜୋଛନା ନୁହେଁ – ''ଧବଳ ଉତ୍ତରୀ ସମ ରଜନୀବଧୂର, ଜୋଛନା ବ୍ୟାପିଛି ଦୂର ଦିଗଚକ୍ରଲାଗି ।''

ମହାନଦୀର ବାରିରାଶି କିପରି ତରୁଣାୟିତ ଓ ପ୍ରଣୟସିକ୍ତ ହୋଇପାରେ ତା'ର ଏକ ଦୃଷ୍ଟାନ୍ତ –

ଆକାଶର ଖଣ୍ଡ ସମ ମହାନଦୀ ବାରି
ଚନ୍ଦ୍ରିକା ଚୁମ୍ବନ ପାଇ ଧବଳ ଚପଳ
ତରଳ ମୁକୁର ଅବା ଦେଇଛି କେ ପାରି
ଦେଖିବେ ବଦନ ନଭସୀମନ୍ତିନୀ ଦଳ ।

ଆକାଶକୁ ଭୂମିଭାଗକୁ ଓହ୍ଲେଇ ଆଣିବା କବି ପକ୍ଷରେ କିଛି ନୂଆ କଥା ନୁହେଁ । କିନ୍ତୁ ମହାନଦୀ ବାରିକୁ ଆକାଶଭ୍ରମରେ ରୂପସୀ ଚନ୍ଦ୍ରିକା ଚୁମ୍ବିବା ତରୁଣ ପ୍ରଣୟୀର ସୁକୁମାର ପ୍ରତିବିମ୍ବ । ତାରୁଣ୍ୟାଚ୍ଛନ କବିଦୃଷ୍ଟିରେ ସର୍ବତ୍ର ରାଜବାଳା ରଜନୀବଧୂ ଓ ସୀମନ୍ତିନୀ ଦିଶିବା ହିଁ ସୌକୁମାର୍ଯ୍ୟ ।

କୋଣାର୍କର ଭଗ୍ନସ୍ତୂପ। କୋଣାର୍କ ଏକ ପ୍ରସ୍ତରୀଭୂତ ମହାକାବ୍ୟ। ତା'ର ନାଟ୍ୟଶାଳାରେ ବିଭିନ୍ନ ଭଙ୍ଗୀରେ ନର୍ତ୍ତକୀ ବା ମୃଦଙ୍ଗିନୀ ଶାଳଭଞ୍ଜିକା କିମ୍ବା ପ୍ରଣୟିନୀ ନାୟିକା କବିପ୍ରାଣ ଅସଂଖ୍ୟ ଦର୍ଶକଙ୍କୁ ସଜୀବ ସରଳ ହୋଇ ବିମୁଗ୍ଧ କରିବା ସାଧାରଣ କଥା । କିନ୍ତୁ କୋଣାର୍କକୁ ନାରୀ ରୂପରେ ଦେଖିବା ଏକ ବିଶେଷ ମାନସିକତାର ପରିଣାମ ।

ହେ କୋଣାର୍କ ବିଗତଯୌବନା
ମୌନ-ଦୁଃଖେ ସୈକତ-ଶୟନା ।

× × ×

ଜଗତର ଶିଳ୍ପୀ-କବି ରୂପ-ରାଗ ଦେଖି ତୋହଠାରେ
ଆଶ୍ଳେଷ ଇଚ୍ଛଇ ତୋର ବୃଦ୍ଧ ଦେହେ ଶୋଭା ପିପାସାରେ
ଅଙ୍ଗେ ଅଙ୍ଗେ ଚୁମ୍ବିବାକୁ ନିରବଧି କରଇ ଭାବନା
ତୋହରେ ଗୋ ଗତଯଉବନା ।

ରବୀନ୍ଦ୍ରନାଥ ତାଜମହଲକୁ ଦେଖି ସୁଦ୍ଧା ଶା ଜାହାଁ ଓ ମମତାଜଙ୍କ ଅମର ପ୍ରଣୟରେ ତାକୁ ରୂପସୀ ରୂପେ କଳ୍ପନା କରିନାହାନ୍ତି ।

କାଲେର କପୋଲ ତଲେ ଏକ ବିନ୍ଦୁ ନୟନେର ଜଲ
ଶୁଭ୍ର ସୁନିର୍ମଲ, ହେ ତାଜମହଲ।

ବରଂ ତାଙ୍କ ଆଖିରେ ଉର୍ବଶୀ ଯେପରି ଅନିନ୍ଦ୍ୟସୁନ୍ଦରୀ–

ନହେ ମାତା, ନହେ କନ୍ୟା, ନହେ ବଧୂ ସୁନ୍ଦରୀ ରୂପସୀ
ହେ ନନ୍ଦନବାସିନୀ ଉର୍ବଶୀ

× × ×

ଆଦିମ ବସନ୍ତ ପ୍ରାତେ ଉଠେଛିଲେ ମନ୍ଥିତ ସାଗରେ
ଡାନ୍ ହାତେ ସୁଧାପାତ୍ର ବିଷଭାଣ୍ଡ ଲୟେ ବାମ କରେ

× × ×

କୁନ୍ଦଶୁଭ୍ର ନଗ୍ନକାନ୍ତି ସୁରେନ୍ଦ୍ରବନ୍ଦିତା
ତୁମି ଅନିନ୍ଦିତା

ମାନସିଂହଙ୍କ ରସାଣିତ ଆଖିରେ ନିଷ୍ପ୍ରାଣ କୋଣାର୍କ ସେପରି–

ଅନିନ୍ଦିତେ ହେ ବେଳା ଶୋଭନେ
ଯେବେ ତୁମେ ଉଠିଲ ଗଗନେ
ଭେଦିଣ ସହସା ନଦୀ ନୀଳବେଣୀ ସ୍ୱର୍ଣସଇକତ
କ୍ଷୀରୋଦ ପ୍ରଶାନ୍ତ ଗର୍ଭୁ ବିଶ୍ୱରୂପା ବିଷ୍ଣୁପତ୍ନୀବତ ।

କାନ୍ତାସମ୍ମତ ଚାରୁକାବ୍ୟ ରଚନା ମାନସିଂହଙ୍କ ମୌଳିକ ପରିଚୟ । ସଖାସମ୍ମତ ଏବଂ କ୍ୱଚିତ୍ ଗୁରୁସମ୍ମତ ଉଚ୍ଚାରଣରେ ମଧ୍ୟ ଏ ମୌଳିକତା ସୁଗନ୍ଧର ପ୍ରଲେପ ପରି ବିଦ୍ୟମାନ ।

ପାଗଳ ଘନରାତି - ଆଗୁଳହୀନ ଗୀତି
ପ୍ରାଣେ ମୋ ଉପୁଜାଏ ବିପୁଳ ଗାନ ପ୍ରୀତି
ଜୋଛନା ମୋ ଅଗଣା ଶୋଭନା କରି ଆସେ
ମଲ୍ଲୀ ଫୁଟି ଉଠେ ବକୁଳ ତୁଟେ ବାସେ
ଆକୁଳ ସହକାରେ ଦୁକୂଳ ପରି ଘେରି
ଶୁକଳ କଉମୁଦୀ ମଳୟେ ନାଚେ ଥରି
କାମିନୀ ଛାୟା ନାଚେ ନାଚଇ ମାଧବିକା
ଲାଗଇ ଶୋଭାପୁରେ ପ୍ରମୋଦ କିଣାବିକା

(ବୀଣାଭିକ୍ଷା – ଜୀବନ ଚିତା)

ମଲ୍ଲୀ ମାଧବିକା କୌମୁଦୀ ଓ କାମିନୀଙ୍କୁ ନେଇ ଶୋଭାପୁରବାସୀଙ୍କ ପ୍ରମୋଦ କିଣାବିକାରେ ରୂପର ସ୍ୱଚ୍ଛ ସୌରଭ ଓ ସୌକୁମାର୍ଯ୍ୟ ବାରି ହୋଇଯାଉନାହିଁ କି ?

ସେଇ ସଂକଳନରେ ଅନ୍ୟତ୍ର –

ଅପସରା ଦେହ ଆଶ୍ଲେଷ ଧରି ଦେହେ
ଆସିଥିଲି ପରା ସେଦିନ ଏ ଭବ ଗେହେ
× × ×
ଏ ବପୁ ଘେନି କି ସ୍ୱର୍ଣଦୀ ବନପଥେ
ଗନ୍ଧ ବ୍ୟାକୁଳ, ଚନ୍ଦ୍ରଚକିତ ରାତେ
ତିଳ ତଣ୍ଡୁଳ ଛାୟା-ସଂକୁଳ ଘାସେ
ଅଳସେ ଆଉଜି, ଶମାଇ ଚରଣ ପ୍ରାସେ,
ଚୁମିଥିଲି ମୁଁ ଲାଜନତ ସୁରବାଳା
ଆଲିଙ୍ଗନେ ତା ବାନ୍ଧୁଥିଲା କରବଳା

(ନିଦ୍ରିତ ଭଗବାନ)

ମାନସିଂହଙ୍କ ବିଖ୍ୟାତ ପଂକ୍ତି "ଏଇ ସହକାର ତଳେ, ସେଦିନ ପ୍ରିୟାର କରକଙ୍କଣ ଭିଡ଼ିଥିଲା ମୋର ଗଳେ। ଚାନ୍ଦିନୀରାତି ଉଠିଥିଲା ମାତି ମଳୟ ପରଶ ପାଇ, ବନପକ୍ଷୀ ଦୂରେ କରୁଣ ମଧୁରେ ଯାଉଥିଲା କିନା ଗାଇ। ଜୋହ୍ନା ଓ ଛାୟା ରଚିଥିଲା ମାୟାଚିତ୍ର ଏ ତରୁତଳେ, ସହଚରୀ ମୋର ପ୍ରଣୟବିଭୋର ଭିଡ଼ିଥିଲା ମୋର ଗଳେ, ଏଇ ସହକାର ତଳେ ।" ଆଉ ଥରେ ଅନୁରଣିତ ହେଉନାହିଁ କି? – ମଧୁଝରା ଜ୍ୟୋତ୍ସ୍ନା ମଧୁରପ୍ରଣୟ, ମଧୁସ୍ନାତ ଆକାଶ ଓ ପୃଥ୍ୱୀ । ଏଠି ମନେ ପଡ଼ି ଯାଉନାହିଁ କି ବୈଦିକ ଋଷିର ସାମଗାନ–

ମଧୁବାତା ଋତାୟତେ, ମଧୁକ୍ଷରନ୍ତି ସିନ୍ଧବଃ
ମାଧ୍ୱୀର୍ଣ୍ଣୋ ସନ୍ତ୍ୱୋଷଧିଃ ।

ତାରୁଣ୍ୟ, ପ୍ରଣୟ ଓ ଜୋଛନାରେ ନିମଗ୍ନ ମଧୁସ୍ନାତ ମୁହୂର୍ତ୍ତରେ ବାରି ହେଉନାହିଁକି ଅତୀତ ଓ ବର୍ତ୍ତମାନ, କଳ୍ପନା ଓ ବାସ୍ତବତାର ବ୍ୟବଧାନରୁ ଅତି ସୂକ୍ଷ୍ମ ଶାଣିତ ଅଥଚ ଅତି ପ୍ରିୟ ଓ କାମ୍ୟ ବିରହର ମଧୁର ବେଦନା ? ଏଇ ତ ସେଇ ବେଦନାନନ୍ଦ, ସେଇ ବ୍ରହ୍ମାନନ୍ଦ ସହୋଦର, ମର୍ତ୍ତ୍ୟଭୂମିରେ ସ୍ୱର୍ଗର ଅମୃତ ରସାୟନ, ଯାହାକୁ ଆହା ଆହା କଷ୍ଟ ହୃଦୟରେ ଜଡ଼େଇ ନେବାକୁ ସ୍ୱତଃ ବାହୁ ପ୍ରସାରିତ ହୋଇଯାଏ । କବି ସହିତ ନିଶାଗ୍ରସ୍ତ ହୋଇଯାଏ ରସଗ୍ରାହୀ ପାଠକ । ଏଇ ସେଇ ସୌକୁମାର୍ଯ୍ୟ ଯା'ର ପଟାନ୍ତର ନାହିଁ ।

ପଦ୍ମବନରେ ଜହ୍ନରୀର ପ୍ରବେଶ ନିଷେଧ । ତଥାପି ସେ ତା'ର ମାପଦଣ୍ଡ ଧରି ବାଟଜଗି ଠିଆ ହେଉଛି । ସୌରଭ ବାରିପାରୁନାହିଁ, କୋମଳତା ଚାରୁତା ଜାଣି-ପାରୁନାହିଁ । ସୌକୁମାର୍ଯ୍ୟ ବୁଝିପାରୁନାହିଁ । କହୁଛି, ହେଇ ପଦ୍ମରାଗ ମଣି । ଖଣି ଗହ୍ୱରରେ ସିନା ମଣିର ସନ୍ଧାନ କରନ୍ତା, ଏ ପଦ୍ମପୋଖରୀର ମଧୁର ନିର୍ମଳ ଜଳରାଶିରେ ସେ କ'ଣ ଖୋଜୁଛି ?

କହୁଛି, ଶେଲି, କିଟ୍ସ, ବାଇରନ ଆଦି ମାପଦଣ୍ଡ ପକାଇ ମୁଁ ପରଖି ନେଲି । ମାନସିଂହଙ୍କ ଧୂପାଦି ସୃଷ୍ଟି ସମଗ୍ର କେବଳ ରୋମାଣ୍ଟିକ୍ । ଏଠି ସ୍ୱପ୍ନ ଅଛି, ପ୍ରେମ ବିରହ ଅଛି, ପ୍ରଣୟୀ ପ୍ରଣୟିନୀ ଅଛନ୍ତି, ଅସ୍ପଷ୍ଟ ଦୂରତା ଅଛି, କମନୀୟ କଳ୍ପନା ଅଛି । ବେଦନାଭରା ନାଇଟିଙ୍ଗେଲ୍‌ର ସ୍ୱନ, ହୁହୁ ପଶ୍ଚିମା ପବନ, ଆକାଶରେ ବିଲୀନ ହୋଇଯାଉଥିବା ଲାର୍କ ପକ୍ଷୀର ଛାୟାପାତ ଅଛି । ଆଉ କ'ଣ ପ୍ରମାଣ ପ୍ରୟୋଜନ ? ନିଜେ କବି ସ୍ୱୀକାର କରୁଛନ୍ତି "କାବ୍ୟଯୋଗ୍ୟ ଅନୁଭୂତି ଲେଖକର ଜୀବନରେ ଘଟିଥିଲେ ହେଁ, ଇଂରେଜ କବିମାନଙ୍କ ସଙ୍ଗେ ପରିଚୟ ଘଟିନଥିଲେ ସେ ଅନୁଭୂତି ଏ ପ୍ରକାର ଆତ୍ମପ୍ରକାଶ କରିନଥାନ୍ତା ।" କବିଙ୍କର ସ୍ୱୀକାରୋକ୍ତି ଏବଂ ପଣ୍ଡିତ ସମାଲୋଚକଙ୍କ ତଥ୍ୟ ପ୍ରମାଣରୁ କେବଳ ଏତିକି ହୁଏତ ନିଷ୍କର୍ଷ ମିଳୁଛି ଯେ ନିଜର ବିପୁଳ କାବ୍ୟଯୋଗ୍ୟ ଅନୁଭୂତି, ଆବେଗ, ଶିହରଣ ଓ ଆଲୋଡ଼ନକୁ ଏଇଭଳି ଅର୍ଥାତ୍ ଏଇ ଢ଼ଙ୍ଗରେ ଅର୍ଥାତ୍ ଏପରି ଅବାଧ, ମୁକ୍ତ ଓ ଏକାନ୍ତ ବ୍ୟକ୍ତିଗତ ଅଭିବ୍ୟକ୍ତି ମାଧ୍ୟମରେ କବିତା ରଚନା କରିନଥାନ୍ତେ । କିନ୍ତୁ ସେ ନିଜେ ସୂଚନା ଦେଇଛନ୍ତି ଯେ "ନିଜର ଅଭିଜ୍ଞତାକୁ ନିଜର ସ୍ୱତନ୍ତ୍ର ରୀତିରେ" ସେ ପ୍ରକାଶ କରିଛନ୍ତି । ଅଭିବ୍ୟକ୍ତି ଏକାନ୍ତ ବ୍ୟକ୍ତିଗତ ମନେ ହେଲେ ସୁଦ୍ଧା "ଏ କବିତାରେ ବ୍ୟକ୍ତିର ସମ୍ପର୍କ ନିମିତ୍ତମାତ୍ର "। ତାରୁଣ୍ୟର କବି ଶେଲି । ରୂପସୁଷମାର କବି କିଟ୍ସ । କିନ୍ତୁ କେବଳ ଯାହା ବାହ୍ୟତଃ ଦିଶୁଛି କେବଳ ସେତିକିରେ ଭରା ଦେଇ ମାନସିଂକୁ ଇଂରାଜୀ ମାନଦଣ୍ଡରେ ରୋମାଣ୍ଟିକ କହିବା ଏକ ଅପୂର୍ଣ୍ଣ ଓ ଆଂଶିକ ମନ୍ତବ୍ୟ ହୋଇଯିବ । କାରଣ ଯାହା ଦୃଶ୍ୟ ନୁହେଁ, ଯାହା ରସ ରୂପେ ଆସ୍ୱାଦ୍ୟ, ଯାହା ମୁକ୍ତ ମନପ୍ରାଣରେ ଭାବ ରସଗ୍ରାହୀ ପାଠକ ମାନସିଂହ କବିତା ସମଭାବାପନ୍ନ ହୋଇ ପାଠ କଲାବେଳେ ଲାଭ କରେ ସେଇ ସୂକ୍ଷ୍ମ ସୁକୁମାର ସ୍ପର୍ଶ ଓ ତଜ୍ଜନିତ ଶିହରଣ, ରୋମାଣ୍ଟିକ ସଂଜ୍ଞାର ଚୌହଦି ଭିତରେ ନାହିଁ । ଲୌକିକ ଶୃଙ୍ଗାର ବା ଶୋକ ଯେପରି ଶୃଙ୍ଗାର ବା କରୁଣରସ ନୁହେଁ, ସେପରି ରୋମାଣ୍ଟିକ କବିତାର ପ୍ରଣୟ, ସୌନ୍ଦର୍ଯ୍ୟବୋଧ ବା କଳ୍ପନାବେଗ, ମାନସିଂହ କବିତାର ମନପ୍ରାଣ ଚେତନାକୁ ଆବିଷ୍ଟ କରୁଥିବା ରସାମୋଦ, ରସାସ୍ୱାଦ, ହୃଦୟକୁ ଦ୍ରବୀଭୂତ କରୁଥିବା ଦ୍ରବଣ ନୁହେଁ। ସେ ଏକ ଅଲୌକିକ ଉପାଦାନ।

ଯେପରି ମାନସିଂହ କବିତାର ସୌକୁମାର୍ଯ୍ୟର ଅନୁଭବ ପାଇଁ ଏଫ.ଏଲ. ଲୁକାସ ମାରିଓପାରି ବା ଜେ.ଜି.ରବର୍ଟସନ୍ ଆଦି ରୋମାଣ୍ଟିକ ତତ୍ତ୍ୱର ପ୍ରବକ୍ତାଙ୍କର ଆଶ୍ରିତ ହେବାର ପ୍ରୟୋଜନ ନାହିଁ, ସେପରି ତା'ର ରସାସ୍ୱାଦ ପାଇଁ ବିଶ୍ୱନାଥ କବିରାଜ, ଆନନ୍ଦବର୍ଧନ କିମ୍ବା ପଣ୍ଡିତରାଜ ଜଗନ୍ନାଥଙ୍କ ଶାସ୍ତ୍ର ଅରଣ୍ୟରେ ପ୍ରବେଶ କରିବାର ଅନିବାର୍ଯ୍ୟତା ମଧ ନାହିଁ । କାରଣ ଯେ ସଦ୍ୟ ପ୍ରସ୍ଫୁଟିତ ଗୋଲାପକୁ ଦେଖି ଛୁଇଁ ଆଘ୍ରାଣ କରି ଆସ୍ୱାଦ କରି ଜାଣେ ତା' ପାଇଁ ଉଦ୍ଭିଦ ବିଜ୍ଞାନରେ ବିବିଧ ତତ୍ତ୍ୱ ଅବାନ୍ତର। ରସାନୁଭବ ସ୍ୱୟଂ ହିଁ ଜ୍ଞାନ ଓ ଆନନ୍ଦରୂପ। ତାହା କସ୍ମିନ୍‌କାଳେ ପାଣ୍ଡିତ୍ୟସାପେକ୍ଷ ନୁହେଁ। ରସ ବ୍ୟାଖ୍ୟାରେ ଯଦିବା, କିଛି ନୂତନ ବିଭବ ଆବିଷ୍କୃତ ହୋଇଗଲା, ତାହା ସାମଗ୍ରିକ ଆନନ୍ଦର ସହାୟକ ନ ହୋଇ ବରଂ ବାଧକ ହୁଏ। ନାୟିକାର ରୂପସଂହାରରେ ବିମୁଗ୍ଧ ପ୍ରେମିକ ପାଇଁ ଅଙ୍ଗ ଅଙ୍ଗର ହିସାବ ତାଲିକା ବିରକ୍ତିକର ନୁହେଁ କି ? କିଛି ବରଂ ଅଜ୍ଞାତ ରହିଯିବା ବାଞ୍ଛନୀୟ ଏବଂ ଶୋଭନୀୟ ନୁହେଁ କି ? ଏଣୁ ଶାସ୍ତ୍ର-ବ୍ୟବଚ୍ଛିନ୍ନ ରସବ୍ୟୁତ୍ପତ୍ତି ରସାସ୍ୱାଦର ପରିପନ୍ଥୀ। ରସାସ୍ୱାଦନ ନିରାଲମ୍ବ ପ୍ରତ୍ୟକ୍ଷ ସହଜ ଓ ସ୍ୱାଭାବିକ। ପ୍ରଣୟ ଏକ ଅଗୁରୁ ବିଦ୍ୟା। ଏଣୁ ସହକାର ତଳକୁ ଚାନ୍ଦିନୀ ରାତିରେ ବ୍ୟାଖ୍ୟାକାର, ଭାଷ୍ୟକାର ପଣ୍ଡିତ ଶାସ୍ତ୍ରୀମାନଙ୍କୁ ଆଣିବା ବାଞ୍ଛନୀୟ ହେବ କି ?

ମାନସିଂହଙ୍କ କବିତା ସ୍ୱୟଂସିଦ୍ଧ ରସଧାର । ତାକୁ ଆସ୍ୱାଦ କରିବାର ଯୋଗ୍ୟତା ଓ ଅଧିକାର ଅର୍ଜନ କରିବାକୁ ପଡ଼େ ନାହିଁ । ସେ ଅନବଦ୍ୟ କବିତା ହିଁ ତାହା ପାଠକକୁ ଦାନ କରେ । ତା' ଭିତରେ ବିସ୍ମୃତ ବା ସୁପ୍ତ ତାରୁଣ୍ୟକୁ ଜାଗ୍ରତ କରେ, ଆବେଗକୁ ତରଳ ଚଞ୍ଚଳ କରେ । ଆଖିରେ ତାରୁଣ୍ୟର ଅଂଜନ ଚୋଳିଦିଏ । ଫଳରେ ପ୍ରଣୟ-ପ୍ରବଣ ହୋଇଉଠେ ପ୍ରାଣ । କବି ସହିତ ପାଠକର ଏକାତ୍ମବୋଧ ପ୍ରତିଷ୍ଠିତ ହଏ । ଏବଂ ଯେଉଁ ମହାର୍ଘ ସୁକୁମାର ଅନୁଭବ ଓ ସ୍ୱପ୍ନ ଏକାନ୍ତ ବ୍ୟକ୍ତିଗତ ମନେ ହେଉଥିଲା ତାହା ସାର୍ବଜନୀନ ହୋଇଯାଏ, ବ୍ୟକ୍ତି-ସ୍ୱତନ୍ତ୍ର ହୋଇଯାଏ । ଶରୀରାଶ୍ରୟୀ ଶୃଙ୍ଗାର ପ୍ରାଣପ୍ରଧାନ ଶୃଙ୍ଗାର ରସରେ ପରିଣତ ହୁଏ। ରସର ତାରଲ୍ୟରେ ସିକର ପରି ସୌକୁମାର୍ଯ୍ୟ ରମଣୀୟ ଭାବସମ୍ପଦ, କମନୀୟ ଭାଷା, ଧ୍ୱନି, ଆବେଗସଂଚାରୀ ଛନ୍ଦରେ ପୁଷ୍ପର ସୌରଭ ପରି ଭାସିବୁଲେ । ଭୂତ, ଭବିଷ୍ୟତ ଓ ବର୍ତ୍ତମାନକୁ ଅତିକ୍ରମ କରି ଏବଂ ଏକତ୍ର ଧାରଣ କରି କବିତାର ରସ ମୃତ୍ୟୁକୁ ସୁଦ୍ଧା ପ୍ରେମଜର୍ଜର କରିଦିଏ।

ଶୁଣିବ ଯେବେ ପ୍ରିୟାଗୋ ମୋର ପ୍ରଣୟୀ ତବ ଜଗତେ ନାହିଁ
ଆସିବ ତାର ଭସ୍ମପାଶେ ଦେବଗୋ ତାରେ ଦେହର ଛାଇ
ପାରିବ ଯଦି ଭସ୍ମପରେ ପଦ୍ମପାଦ ଚାଳିବ ଧୀରେ
ଜୀବନ ପୁଣି ଲଭିବି ସଖୀ ନିଶ୍ଚୟ ମୁଁ ମରଣ ତୀରେ।

ଏ ପ୍ରଣୟର କ'ଣ ସାମାଜିକ ବା ନୈତିକ ସଂଜ୍ଞା ଥାଇପାରେ ? ଏହା ତ ମୃତ୍ୟୁଞ୍ଜୟୀ । ଇତର ଜନମାନେ ତାକୁ ଯାହା ମନ ତାହା ବୁଝିଲେ ନବୁଝିଲେ ବା କହିଲେ ନକହିଲେ କ'ଣ ଯାଏଆସେ ?

ଯେ ଯେତେ କରନ୍ତୁ ନିନ୍ଦା କୁବଚନ
ଗଣ୍ଠିଧନ ମୋର କାଳିଆ କାଞ୍ଚନ
ମୁଁ ତ' କିଣା କିଙ୍କରୀ ତାହାର ଲୋ
ମୁଁ ତ' କୁଳରୁ ହେଲି ବାହାର ଲୋ ।

(ବନମାଳୀ)

ମାନସିଂହ କାବ୍ୟକୃତି ଏକ ବିଶାଳ ଦ୍ରୁମ । ସେଥିରେ ମୂଳଠାରୁ ଚୂଳ ଯାଏଁ ଅସଂଖ୍ୟ ଶାଖାପ୍ରଶାଖା ଓ ପଲ୍ଲବ । କେଉଁଠି ହେମ ଶସ୍ୟ ହେମ ପୁଷ୍ପ ମଣ୍ଡିତ ପ୍ରକୃତିର ବିଭବ, କେଉଁଠି ଅକ୍ଷତ ଚନ୍ଦନରେ ଦେଶାତ୍ମବୋଧ ମନ୍ତ୍ରିତ ବାପୁତର୍ପଣ, କେଉଁଠି ମାଟିର ଆକର୍ଷଣ, ମାଟିବାଣୀର ସ୍ୱର କେଉଁଠି ମାନବବାଦ, ଦୁଃଖ, ଦୈନ୍ୟ, ଇନ୍ଧନରେ ପ୍ରଜ୍ୱଳିତ ଜୀବନ ଚିତା, ସିନ୍ଧୁ ଓ ବିନ୍ଦୁର ସୀମା ନିର୍ଦ୍ଦେଶ, କେଉଁଠି ଅଶ୍ଳୀଳ ଗୋପ ପ୍ରୟାଣ ତ' କେଉଁଠି ବିଭୋର ଜୋତ୍ସ୍ନାବିହାର । କିନ୍ତୁ ଦ୍ରୁମର ଆପାଦ ଶୀର୍ଷ, ଏକ ଦିବ୍ୟ କୁସୁମର ଗନ୍ଧ, ସେହି କୋମଳ ସୁକୁମାର ସୌରଭରେ ଧୂପିତ ଏ ସମଗ୍ର ବିରଳ ବନସ୍ପତି । ଏହି କୁଣ୍ଡ ପାଉନଥିବା ବପୁ ଓ ଆଖି ପାଉନଥିବା ଶୀର୍ଷକୁ ପ୍ରଣାମ ।

କବିଙ୍କର ଯେଉଁ କେତେ ପଂକ୍ତି ପଢ଼ିଲେ ଆଖି ଛଳଛଳ ହୋଇଯାଏ, ବୁକୁ କୋହରେ ଭରିଯାଏ, ତାକୁ ଶେଷରେ ଉଦ୍ଧାର କରୁଛି–

ଛୋଟ ଏକ ସମାଧିଟି ଶ୍ୟାମ ଘାସ ପରେ
ଥାଇପାରେ ପଲ୍ଲୀ ବା ନଗରେ
ଏକମାତ୍ର ଚିହ୍ନ ରୂପେ ଦୀନ ଏଇ ପୃଥିବୀବାସୀର
ମୃତ୍ୟୁରାଜ୍ୟେ ଯିବି ଯେବେ ଛାଡ଼ି କୋଳ ମାଆ ଧରିତ୍ରୀର
ବସନ୍ତର ପୁଷ୍ପୋତ୍ସବେ, ଶାରଦ ଜ୍ୟୋତ୍ସ୍ନାରେ
ସ୍ମରି କେବେ ମୋ ଦେଶର ଯୁବକ ଯୁବତୀ
ଆସି ମୋ ସମାଧି ପରେ ପୁଷ୍ପଢାଳି ପ୍ରୀତିଭରେ
କବିରେ ଦେବେ ସେ ଯଦି ଶ୍ରଦ୍ଧାର ଆରତି
ସେହି ସେ ହୋଇବ ମୋର ଶ୍ରେଷ୍ଠ ପୁରସ୍କାର
ସେହି ମୋର ମାନଦଣ୍ଡ ଜୀବନଯାତ୍ରାର ।

କଣ୍ଠ ବାଷ୍ପରୁଦ୍ଧ; କ'ଣ ବା କହିବି ? ଜୀବଦ୍ଦଶାରେ ଦେବଶିଶୁକୁ ଚିହ୍ନି ନପାରି କୁଶବିଦ୍ଧ କରିଥିବା ପରମ୍ପରା ନେଇ ମାନବ ଜାତି ଅମର ପ୍ରଣୟର ଏ ସୁକୁମାର କବିଙ୍କର ଅତୁଳନୀୟ ଐଶ୍ବର୍ଯ୍ୟର ପ୍ରତିଦାନରେ ଆଉ କ'ଣ ବା ଦେଇଥାନ୍ତା ? ନିନ୍ଦା ଅପବାଦ କୁବଚନ ଯାହା ସେ ବୁକୁପାତି ସହିଛନ୍ତି ତାହା ଏ ଜାତିର ଲଲାଟରେ କବିଙ୍କର ଟିକା ହୋଇ ରହିଗଲା। ସେହି କ୍ଷୋଭରେ, ଅବିଶ୍ଵାସ ଓ ସଂକୋଚରେ କବିଙ୍କର ଏ ଶେଷ ଅଭିଳାଷ ଉଚ୍ଚାରିତ ହୋଇଛି। କିନ୍ତୁ ହେ ଅମର କବି, ମଳୟସ୍ପର୍ଶରେ ଇତର ବୃକ୍ଷରାଜି ଚନ୍ଦନାୟିତ ହେଲା ପରି ତୁମ କବିତାର କାଉଁରୀ ସ୍ପର୍ଶରେ କିଏ ବା ତରୁଣାୟିତ ନ ହୋଇଛି ? କିଏ ବା ଚିର ତାରୁଣ୍ୟ ମାଧ୍ୟମରେ ଦେବତ୍ଵ ପ୍ରାପ୍ତ ନ କରିଛି ? ପଲ୍ଲୀ ବା ନଗରରେ ନୁହେଁ, ସମାଧିରେ ନୁହେଁ, ସହସ୍ରେ ଅନ୍ତରରେ ତୁମେ ଅଧିଷ୍ଠିତ। ଅଜସ୍ର ଶ୍ରଦ୍ଧା ଅହରହ ନିବେଦିତ ହେଉଛି ଓ ହୋଇ ଚାଲିଥିବ ତୁମ ଉଦ୍ଦେଶ୍ୟରେ। ତୁମକୁ ଶ୍ରଦ୍ଧା ଅର୍ପଣ କରିବା ଏ ଜାତିର ଯୋଗ୍ୟତା, ତା'ର ଜୀବନଯାତ୍ରାର ମାନଦଣ୍ଡ।



# ଓଡ଼ିଆ ସଂସ୍କୃତିର ଅତୀତ ଓ ବର୍ତ୍ତମାନ

ଦୂରତା ନଥିଲେ ଦୃଶ୍ୟ ପ୍ରାଞ୍ଜଳ ହୁଏ ନାହିଁ । ଏପରିକି ଦର୍ପଣକୁ ମୁହଁ ଉପରେ ମଡେଇ ଧରିଲେ ସେଥିରେ ପ୍ରତିଫଳିତ ହେଉଥିବା କିମ୍ଭୂତ ରୂପକୁ ନିଜର ବୋଲି ସ୍ୱୀକାର କରିବା ସମ୍ଭବ ହୁଏ ନାହିଁ । ଶତାବ୍ଦୀ ଶତାବ୍ଦୀ ଧରି ପ୍ରବାହିତ ହୋଇ ଆସୁଥିବା ପୁରୁଷାନୁକ୍ରମିକ ରକ୍ତ ସ୍ରୋତରେ ଯାହାର ନିରବଚ୍ଛିନ୍ନ ଛାୟାପାତ ଘଟିଛି, ସେହି ଓତପ୍ରୋତ ପ୍ରଭାବରୁ ନିଜକୁ ମୁକ୍ତ କରି ତା'ର ରୂପ, ଗୁଣ ଓ ବିନ୍ୟାସର ନିଷ୍ପକ୍ଷ ଏବଂ ସ୍ପଷ୍ଟ ବିଚାର ପାଇଁ ମାନସିକ, ମନସ୍ତାତ୍ତ୍ୱିକ କିମ୍ବା ଚେତନାଗତ ବ୍ୟବଧାନ ସୃଷ୍ଟି କରିବା ମଧ୍ୟ ସେହିପରି ସମ୍ଭବ ହୁଏ ନାହିଁ। ନଦୀପ୍ରବାହରେ ପ୍ରବେଶ ନ କରି ତଟସ୍ଥ ରହି ପାରିଲେ ତା'ର ବିସ୍ତାର ଏବଂ ପରିସର ବିଷୟରେ ସମ୍ୟକ୍ ଧାରଣା ହୋଇପାରେ, କିନ୍ତୁ ଜଳଧାରାର ଶୀତଳତା, ଗଭୀରତା, ତା'ର ପ୍ରବେଶ ଏବଂ ସ୍ୱାଦର ଅନୁଭବ ସେଥିରେ ଅବଗାହୀ ନ ହେଲେ ମିଳିବ ନାହିଁ। ତଟସ୍ଥ ଏବଂ ଅବଗାହୀ ଦୃଷ୍ଟି ପରସ୍ପରଠାରୁ ପୃଥକ୍। ସେଥିରେ ଦୃଶ୍ୟମାନ ଚିତ୍ର ଆଂଶିକ ଏବଂ ଅପୂର୍ଣ୍ଣ। କିନ୍ତୁ ଉଭୟ ଦୃଷ୍ଟିକୁ ଏକତ୍ର ଧାରଣ କରିବା ସମ୍ଭବ ହେଉ ନ ଥିବାରୁ କିଛି ସଂପୃକ୍ତି ଏବଂ କିଛି ଅସଂପୃକ୍ତି ରକ୍ଷା କରି ବିଷୟ ବିଚାର କରିବାକୁ ଆମେ ଏକପ୍ରକାର ବାଧ୍ୟ। ଓଡ଼ିଆ ସାଂସ୍କୃତିକ ପରମ୍ପରାର ପରିଣାମ ଆମେ ଏବଂ ତା'ର ଭବିଷ୍ୟତ ସମ୍ଭାବନାର ଆଦିବିନ୍ଦୁ ମଧ୍ୟ ଆମେ । ଆମେ ଏ କ୍ରମାନ୍ୱୟତାର ଅବିଚ୍ଛେଦ୍ୟ ଅଙ୍ଗ। ବେଳେ ବେଳେ ଅତୀତାଚ୍ଛନ୍ନ ହୋଇ ଆମେ ବର୍ତ୍ତମାନକୁ ହେୟଜ୍ଞାନ କରୁ ଏବଂ ବିଳାପ କରୁ ''କି ଥିଲା ଏ ରାଜ୍ୟ କି ହେଉଛି ଆଜ।'' କିମ୍ବା ଅତୀତବିମୁଖ ହୋଇ କହିଥାଉ ଯେ ଅନ୍ଧପରମ୍ପରା ଏକ ମୃତପିଣ୍ଡ; ତାକୁ ସ୍ୱୀକାର କରିବା ଅର୍ଥ ଗୋଟାଏ ମୁର୍ଦ୍ଦାର କାନ୍ଧେଇ ବାଟ ଚାଲିବା ପରି ଅସ୍ୱସ୍ତିକର। କିନ୍ତୁ ଆମେ ଯେତେ ଚାହିଁଲେ ସୁଦ୍ଧା ଅତୀତରୁ ମୁକ୍ତ ହୋଇପାରିବା ନାହିଁ, ଅତୀତକୁ ଫେରି ମଧ୍ୟ ପାରିବା ନାହିଁ। କେବଳ ଅତୀତ ବିଷୟରେ ସଚେତନ ରହି ପାରିଲେ ବର୍ତ୍ତମାନର ପରିଚୟ ଏବଂ ସଂଜ୍ଞା ହୁଏତ କିଛି ଗଭୀରତର ଏବଂ ସ୍ପଷ୍ଟତର ହୋଇପାରିବ।

କିନ୍ତୁ କେତେଦୂର ପର୍ଯ୍ୟନ୍ତ ଅତୀତ ବିଷୟରେ ସଚେତନ ହେବା ସମ୍ଭବ ?– ସେ ଅତୀତ ପୁଣି କାହାର ?– ନିଜର ? ପୂର୍ବପୁରୁଷଙ୍କର ? ଜାତିର ? ସମାଜର ? ନା

ସଂସ୍କୃତିର ? – ଅତୀତ କାଳଟି ପ୍ରକୃତରେ ଏକ ଅବିଭକ୍ତ ଏବଂ ଅବିଭାଜ୍ୟ ବିସ୍ତାର । ଏଣୁ ଯେକୌଣସି ଅତୀତର ସନ୍ଧାନରେ ଆମେ ସେହି ଗୋଟିଏ ମାତ୍ର ବିସ୍ତାର ଭିତରେ ପ୍ରବେଶ କରିଥାଉ । ସାଗରକୁ ସାଗରରୁ ପୃଥକ୍ କଲାପରି ସଂସ୍କୃତିକୁ ସମାଜରୁ, ସମାଜକୁ ଧର୍ମରୁ ଅଲଗା କରିବା ଏକ ତାର୍କିକ ବିଚାର । ତଥାପି ସଂସ୍କୃତି କହିଲେ ଅତି ବିସ୍ତୃତ ଭୂମି ଏବଂ ଅତୀତ କହିଲେ ଏକ ଅକଳନୀୟ ବ୍ୟାପ୍ତିକୁ ବୁଝାଇଥାଏ । ଦୂରତା ରକ୍ଷା ନକଲେ ଦୃଶ୍ୟ ପ୍ରାଞ୍ଜଳ ହେବନାହିଁ, ଏହି ଆଶଂକାରେ ଆମେ ସେ ବିଶାଳ ଅଞ୍ଚଳରୁ ଅନେକ ଦୂରରୁ ଦେଖିବାକୁ ମାଧ ହେଉ । ସେଥିରେ ମାନଚିତ୍ର ପରି ଗୋଟିଏ ସାମଗ୍ରିକ ଛବି ଦିଶିପାରେ । କିନ୍ତୁ ମାନଚିତ୍ର ତ ଇଲାକା ନୁହେଁ । The map is not the territory. ପାରମ୍ପରିକ ରୀତିରେ ବିଷୟ ବିଚାର ପୂର୍ବରୁ ଗୋଟିଏ ସଂଜ୍ଞା ପ୍ରସ୍ତୁତ କରିବା ପ୍ରାୟ ଏହିପରି ଏକ କ୍ରିୟା ।

ସଂସ୍କୃତି କ'ଣ ବୋଲି ପଚାରିଲେ ପାଠୁଆ ଲୋକେ ଖୁବ୍ ସହଜ ଏବଂ ସରଳ ଭାବରେ କହିଥାନ୍ତି– "ସଂସ୍କୃତି ମାନେ ପରା Culture!" ତେଣିକି Culture କ'ଣ ବୋଲି ପଶ୍ନ ହେଲେ ସେମାନେ ବୃହତ୍‌ରୁ ବୃହତ୍ତର ଅଭିଧାନର ଆଶ୍ରୟ ନେଇଥାନ୍ତି । ଫରାସୀ ଏବଂ ଲାଟିନ୍ ମୂଳରୂପରୁ କିପରି ଏ ଶବ୍ଦଟି ନିଷ୍ପନ୍ନ ହୋଇଛି ତାହା ହିଁ ବୁଝାଇବା ଛଳରେ ଶବ୍ଦାର୍ଥ ଭିତରେ ସଂଜ୍ଞାଟିକୁ ଲୋଡ଼ି ବସନ୍ତି । ଫଳରେ ବ୍ୟାପାରଟି ସହଜ ନ ହୋଇ ଆହୁରି ଜଟିଳ ଆକାର ଧାରଣ କରେ । ଆଉ କେତେକ ବିଜ୍ଞଜନ ସଂ+କୃ+ତି ବା ସଂ+କୃ+ଅରୁ ଅର୍ଥ ସଂଗ୍ରହ କରନ୍ତି । କହିଥାନ୍ତି ଯେ ଲାଟିନ୍ ବା ଫରାସୀ ଭାଷା ସହିତ ଏହାର ଅର୍ଥସଂପୃକ୍ତି ନାହିଁ । ଏ ସମସ୍ତ ମତଭେଦ ଭିତରେ ଏତିକି ଜଣାପଡ଼େ ଯେ Culture ଅର୍ଥରେ ସଂସ୍କୃତି ଶବ୍ଦର ପ୍ରଯୋଗ ଅତ୍ୟନ୍ତ ଅର୍ବାଚୀନ । ପ୍ରଥମେ କିଛିକାଳ କୃଷ୍ଟି ଶବ୍ଦ ବ୍ୟବହାର କରାହେଉଥିଲା । ବର୍ତ୍ତମାନ 'ସଂସ୍କୃତି' ଶବ୍ଦଟି ସର୍ବଭାରତୀୟ ମାନ୍ୟତା ପ୍ରାପ୍ତ ହୋଇସାରିଲାଣି । ଉଭୟ ଯାବନିକ ଏବଂ ସଂସ୍କୃତ ଶବ୍ଦର ମୌଳିକ ଅର୍ଥସାମ୍ୟ ହେଲା ପରିମାର୍ଜନ, ପରିଶୀଳନ, କର୍ଷଣ। ବ୍ୟକ୍ତି ଭଳି ଗୋଟିଏ ଗୋଷ୍ଠୀ ମଧ୍ୟ ଅନବରତ ନିଷ୍ଠାପର ପ୍ରୟାସ ବଳରେ ଏପରି ଏକ ରୁଚି, ଦୃଷ୍ଟି ଏବଂ ବ୍ୟାପ୍ତିର ଅଧିକାରୀ ହୁଏ, ଯଦ୍ଦ୍ୱାରା କେବଳ ଆଚରଣ, ଚଳଣି କିମ୍ବା ହାବଭାବରେ ସୀମିତ ନ ରହି ଚିନ୍ତା ଚେତନା ଅବବୋଧ, ମନ ଏବଂ ବୁଦ୍ଧିରେ ମଧ୍ୟ ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ସଭାର ଯୋଗ୍ୟ ବ୍ୟକ୍ତିକୁ ସଭ୍ୟ ବୋଲି ବିଚାର କଲେ ତାର ଗୁଣକୁ ସଭ୍ୟତା କୁହାଯାଇପାରେ । ସେଥିରେ ତା'ର ଆଚରଣ, ବେଶପୋଷାକ, ଭାଷା ରୁଚି, ଆର୍ଥିକ, ସାମାଜିକ, ରାଜନୈତିକ ବିକାଶ ସୂଚିତ ହୁଏ । ଏହିଭଳି ଭାବରେ ସେ ଅନେକ କାଳ ସୁସଂଯତ, ସଂହତ, ଶାଳୀନ, ସ୍ୱଚ୍ଛନ୍ଦ ଜୀବନ ଯାପନ

କଳାପରେ ହୁଏତ ତା'ର ସୌନ୍ଦର୍ଯ୍ୟବୋଧ, ତା'ର ଧର୍ମାନୁସନ୍ଧିସା, ତା'ର ଜୀବନଦର୍ଶନ, ସାହିତ୍ୟ, ସଙ୍ଗୀତ ବିକଶିତ ହୁଏ । ପରିବର୍ଦ୍ଧିତ ବୃକ୍ଷର ମଞ୍ଜରୀ ପରି, ଫୁଲର ସୁଗନ୍ଧ ପରି, ଏକ ସୂକ୍ଷ୍ମ ଅତିକ୍ରମଣ ତାକୁ ସଂସ୍କୃତିସଂପନ୍ନ କରିଥାଏ । ଗୋଟିଏ ପରିଣତ ସଭ୍ୟ ଜାତିର ସୂକ୍ଷ୍ମାନୁଭବ ହିଁ ସଂସ୍କୃତି । ସଭ୍ୟତା ତା'ର ଆବରଣ, ସଂସ୍କୃତି ତା'ର ମଞ୍ଜ । ଅସଂଖ୍ୟ ପ୍ରଭାବ ସତ୍ତ୍ୱେ ଏବଂ ବୋଧହୁଏ ସେହି କାରଣରୁ ମଣିଷ ନିଜକୁ ନିଜେ ଉତ୍କ୍ରମଣ କରିବାକୁ ସତତ ପ୍ରୟାସ କରୁଥାଏ । ଏହି ଉତ୍କ୍ରମଣ ବା ଅତିକ୍ରମଣର ଧାରା ଚିରନ୍ତନ । ଏ ଧାରାର ପ୍ରେରଣା ହିଁ ସଂସ୍କୃତି; ତା'ର ପରିଣାମ ମଧ୍ୟ ସଂସ୍କୃତି । ସଂସ୍କୃତି ଏ ମନସ୍କ ପ୍ରାଣୀଟିର ମାନସ-ସମ୍ପଦ, ଏ ଜୀବେତର ପ୍ରାଣୀର ଚେତନା-ସମ୍ପଦ ।

ତଥାପି ଏ ସମସ୍ତ ବାକ୍ୟରେ ସଂସ୍କୃତିର ସଂଜ୍ଞା ନାହିଁ । ଅଛି କେବଳ ତାକୁ ପରିଭାଷିତ କରିବାର ପ୍ରୟାସ । ଏ ସୂକ୍ଷ୍ମରୂପରେ ତାକୁ କେବଳ ଏହିଭଳି ଅନୁମାନ କରାଯାଇପାରେ । କିନ୍ତୁ ସ୍ଥୂଳଭୂମିରେ ସଂସ୍କୃତିର ଲାକ୍ଷଣିକ ପ୍ରମାଣ ଅନେକ, ଯଥା– ସ୍ଥାପତ୍ୟ, ଭାସ୍କର୍ଯ୍ୟ, ଚିତ୍ରକଳା, ସଙ୍ଗୀତ, ସାହିତ୍ୟ, ନୃତ୍ୟ, ଦର୍ଶନ, ଧର୍ମଧାରା, ସାମାଜିକ ଅନୁଷ୍ଠାନ, ପର୍ବପର୍ବାଣି । ମୋଟ ଉପରେ ନିଜକୁ, ଅପରକୁ, ଜୀବନକୁ, ମୃତ୍ୟୁକୁ, ମୃତ୍ୟୁ ପରପାରିକୁ ମଣିଷ କେମିତି ଦେଖି ଶିଖିଛି, କେମିତି ବୁଝିଛି, ତା'ର ସେ ବିଷୟରେ ବିଶ୍ୱାସ, ଜ୍ଞାନ, ଅଭୀପ୍‌ସା– ଏ ସମସ୍ତର ସାମଗ୍ରିକ ପ୍ରମାଣ ହିଁ ସଂସ୍କୃତିର ବହିର୍ଲକ୍ଷଣ । ସଂସ୍କୃତି ଏ ସମସ୍ତ ପ୍ରୟାସର ପଶ୍ଚାତ୍‌ରେ ପ୍ରେରଣାର ଉତ୍ସ । ଅବଶ୍ୟ, ସଂସ୍କୃତିର ଏ ଶୋଭମାନ ତୋରଣକୁ ଧରି ରଖିବା ପାଇଁ ସମାଜ, ଶାସନ ଏବଂ ସଭ୍ୟତାର ଭିତ୍ତିସ୍ତମ୍ଭଗୁଡ଼ିକ ଦାୟୀ । ମଣିଷ କେମିତି ନଗର ନିର୍ମାଣ କରେ, ରାସ୍ତା ଘାଟ ଅଟ୍ଟାଳିକା ନିର୍ମାଣ କରେ, କେମିତି କୃଷି, ଶିଳ୍ପ, ବାଣିଜ୍ୟ ବ୍ୟବସ୍ଥା କରେ, କେତେ ସମର୍ଥ ଭାବରେ ଶାସନ କରେ, ସୁଖସ୍ୱଚ୍ଛନ୍ଦ୍ୟ ବୃଦ୍ଧି କରେ, ଯୁଦ୍ଧ ବିଗ୍ରହ କରେ, ଏବଂ ସନ୍ଧି ସ୍ଥାପନ କରେ, କିଭଳି ଶିକ୍ଷା ଦିଏ, ଯାନ-ଯନ୍ତ୍ର ଉପକରଣ ଗଢ଼େ, ସାମର୍ଥ୍ୟ ସଂଚୟ କରେ ଏବଂ ବିନିଯୋଗ କରେ, ବଂଶପରମ୍ପରା କ୍ରମେ କେତେକାଳ ଏହା ଜାତୀୟ ଆଚରଣ ନିର୍ଣ୍ଣୟ କରେ, ତା' ଉପରେ ନିର୍ଭର କରେ ସଂସ୍କୃତି । ଏଣୁ ସଂସ୍କୃତି ସଭ୍ୟତାର ପରିଣତ ଅବସ୍ଥା, ଏକ ପରିଣାମାତ୍ମକ ଅବସ୍ଥା ଏବଂ ସେହି କାରଣରୁ ଜୀବନର ଉତ୍‌ଥାନ ପତନ ସହିତ ସମତାଳରେ ଗତିଶୀଳ ଓ ପରିବର୍ତ୍ତନଶୀଳ । – ତା'ର ଇତିହାସ ସମପରିମାଣରେ ପତନ – ଅଭ୍ୟୁଦୟର ବନ୍ଧୁର ଇତିହାସ ।

ତେବେ କେଉଁ ଜାତିର ସାଂସ୍କୃତିକ ପରମ୍ପରା ବିଚାରକୁ ନେବା ? ୧୯୩୬ ପରବର୍ତ୍ତୀ ଆଧୁନିକ ଓଡ଼ିଶା କହିଲେ ଭାରତର ପୂର୍ବ ତଟବର୍ତ୍ତୀ ଯେଉଁ ଭୂଖଣ୍ଡକୁ

ବୁଝାଏ, ତା'ର ରାଜନୈତିକ ସୀମାରେଖା କେତେବେଳେ ସ୍ଥିର ନଥିଲା, ଅଥଚ ଏହାର ଭୌଗୋଳିକ ରୂପ ପ୍ରାଗୈତିହାସିକ କାଳରୁ ହିଁ ପ୍ରାୟ ଏହିଭଳି ଥିଲା । ମେଘାସନ, ମହେନ୍ଦ୍ରାଦି ପର୍ବତମାନେ ବର୍ତ୍ତମାନ ଯେଉଁଭଳି ଅଛନ୍ତି ସେଇଭଳି ଥିଲେ, ସୁବର୍ଣ୍ଣରେଖା, ମହାନଦୀ, ଋଷିକୁଲ୍ୟାଦି ନଦୀମାନେ ଏହିଭଳି ପୂର୍ବାଭିମୁଖିନୀ ପ୍ରବାହିତ ହେଉଥିଲେ । ମଣିଷର ନଗର ଜନପଦ, ଯୁଦ୍ଧଭୂମି, ଭୋଗଭୂମି ଶାସନକେନ୍ଦ୍ର କିନ୍ତୁ ଆକାଶର ମେଘଖଣ୍ଡ ପରି ଆବିର୍ଭୂତ ଏବଂ ତିରୋହିତ ହେଉଥିଲେ । ଭିନ୍ନ ଭିନ୍ନ ଜାତି, ଗୋଷ୍ଠୀ, ଧର୍ମର ଉଦୟ ଅସ୍ତ ହେଉଥିଲା । ଇତିହାସର ଏହି ଚିରଚଞ୍ଚଳ ଛାୟାଚିତ୍ରକୁ ଏହି ଭୂଖଣ୍ଡର ସ୍ଥିର ଭୌଗୋଳିକ ପୃଷ୍ଠଭୂମିରେ ନିରୀକ୍ଷଣ କରି, ତା' ଭିତରେ ସଂସ୍କୃତିର କ୍ଷୀଣ ରେଖାଟିକୁ ନିର୍ଣ୍ଣିତ କରିବାକୁ ହେବ । ପୁରାଣ ଇତିହାସରେ 'କଳିଙ୍ଗାଃ' ଶବ୍ଦ ଅନେକ ପ୍ରାଚୀନ । ବହୁବଚନରେ ବ୍ୟବହୃତ ଏ ଶବ୍ଦଟି ଦେଶବାଚକ ନୁହେଁ ବରଂ ଜାତିବାଚକ। ଯୁକ୍ତି କରାଯାଇପାରେ ଯେ କଳିଙ୍ଗ ନାମଧେୟ କୌଣସି ଅଞ୍ଚଳର ଅଧିବାସୀଙ୍କୁ 'କଳିଙ୍ଗାଃ' ବୋଲି ହୁଏତ କୁହାଯାଉଥିଲା । ସେମାନେ କୁଆଡ଼େ ଭାରି ସାହସିକାଃ ମଧ୍ୟ ଥିଲେ । ମହାଭାରତ ଯୁଦ୍ଧରେ କୌରବ ପକ୍ଷରୁ ପରାକ୍ରମ ପ୍ରଦର୍ଶନ କରିଥିଲେ। ସମ୍ରାଟ ଅଶୋକଙ୍କୁ ପ୍ରତିହତ କରିଥିଲେ । ସେମାନଙ୍କ ଅଞ୍ଚଳ ହୁଏତ ମହାନଦୀ ଏବଂ ଗୋଦାବରୀ ମଧ୍ୟବର୍ତ୍ତୀ ସମୁଦ୍ର ତଟବର୍ତ୍ତୀ ଇଲାକାକୁ ବୁଝାଉଥିଲା । ତେବେ ତ୍ରିକଳିଙ୍ଗ କ'ଣ ? କଳିଙ୍ଗ, କୋଙ୍ଗଦ ଏବଂ ଉତ୍କଳର ସମାହାର କି ?– ନା କୋରାପୁଟ, ବସ୍ତର କଳାହାଣ୍ଡି, ବଲାଙ୍ଗିର, ସୋନପୁର, ସମ୍ବଲପୁର ନେଇ ଏକ ସ୍ୱତନ୍ତ୍ର ରାଜ୍ୟ ? ଏ କଳିଙ୍ଗାଃମାନେ କେତେ ପରିମାଣରେ ନିଷାଦ, ଦ୍ରାବିଡ଼ ଅଥବା ଆର୍ଯ୍ୟ ? ଶତାବ୍ଦୀର ଘନ ଆସ୍ତରଣ ଭେଦ କରି ଏ ଚିତ୍ର ସ୍ପଷ୍ଟରୂପ ସ୍ଥିର କରିବା ଏକପ୍ରକାର ଅସମ୍ଭବ ବ୍ୟାପାର । ଦକ୍ଷିଣ କୋଶଳ, ଉତ୍ତର କଳିଙ୍ଗ ବା ଉତ୍କଳିଙ୍ଗ ବା ଉତ୍କଳ ଏବଂ କଳିଙ୍ଗ କ'ଣ ଭିନ୍ନ ଭିନ୍ନ ସମୟରେ ସ୍ୱତନ୍ତ୍ର ଭାବରେ କିମ୍ବା କୌଣସି ଏକ ସମୟରେ ଏକତ୍ର ଓଡ୍ରଦେଶ ବୋଲି ଅଭିହିତ ହେଉଥିଲେ କି ? ଇତିହାସ-ପରାଙ୍ମୁଖ ଏ ଜାତିର ଅତୀତକୁ ଉଦ୍ଧାର କରିବା କାଳଗଙ୍ଗାରେ ପିତୃପୁରୁଷଙ୍କ ହାଡ଼ ଖୋଜି ବାହାର କରିବା ଭଳି ଏକ ବିଡ଼ମ୍ବନା । କେତୋଟି ରାଜ ବଂଶାବଳୀ ଏବଂ ପଥର କିମ୍ବା ତାମ୍ରଫଳକରେ ଉତ୍କୀର୍ଣ୍ଣ ସେଇ ରାଜାମାନଙ୍କର ପ୍ରଶସ୍ତିର ଅତିଶୟୋକ୍ତିରୁ କେଉଁ ଜାତିକୁ ଖୋଜି ବାହାର କରିହେବ ? କେଉଁ ନିର୍ଦ୍ଦିଷ୍ଟ ଦେଶ ବା ଅଞ୍ଚଳ କଥା କହିହେବ ? ଅଦ୍ୟାବଧି ଅରଣ୍ୟରେ ବାଟବଣା ଗୁଡିଏ ବାଳୁତ ପରି ବହୁ ମାନନୀୟ ଗବେଷକ ସେ ଅଜ୍ଞାତ ଭୂମିରେ ବିଚରଣ କରୁଛନ୍ତି। ତୋଷାଳି ଶିଶୁପାଳଗଡ଼ାଦି ସ୍ଥାନର ଭୂଗର୍ଭରେ ସତ୍ୟର ଅନୁସନ୍ଧାନ କରୁଛନ୍ତି। ପ୍ରାଗୈତିହାସିକ ଅତିକାୟ କୌଣସି

ଜୀବର ଖଣ୍ଡିଏ ମାତ୍ର ହାଡ଼ରୁ ତା'ର ରୂପ ଆକାର ଆଚରଣ ଆଦି ଅନୁମାନ କଲାପରି, କିଛି ତାରିଖ, କିଛି ଖପରା ଏବଂ ମାଳିମୁଦି ବା ଧାତୁ ମୁଦ୍ରାକୁ ସମ୍ବଳ କରି କାଳ ଗର୍ଭରେ ନିମଜ୍ଜିତ ଅତୀତର ବିଭିନ୍ନ ସମ୍ଭାବ୍ୟ ଚିତ୍ର ଗଢ଼ୁଛନ୍ତି। ଅନୁମାନ ଆଧାରିତ କୌଣସି ବିକଳ୍ପ କିନ୍ତୁ ସ୍ୱୟଂସଂପୂର୍ଣ୍ଣ ନୁହେଁ। ଇତିହାସ କେବଳ ଆଂଶିକ, ଏକଦେଶଦର୍ଶୀ ଏବଂ କେବଳ ଅଧିକାଂଶ କ୍ଷେତ୍ରରେ ରାଜ ବଂଶାନୁଚରିତ ହୋଇଥିବାରୁ ରାଜେତର ଅସଂଖ୍ୟ ସାଧାରଣ ଲୋକଙ୍କ କଥା, ଗୁଣିମାନୀ ପ୍ରତିଭାଧରଙ୍କ କଥା ସେଥିରେ ଆସିପାରିନାହିଁ । ସଂସ୍କୃତିର ବାହକ, ତା'ର ପ୍ରକାଶମାଧ୍ୟମ ମଣିଷମାନଙ୍କ ବିଷୟରେ ତଥାକଥିତ ଇତିହାସ ସବୁ ନୀରବ।

ଗୋଟିଏ ଜାତିର ଚରିତ୍ରରେ ସେ ବସବାସ କରୁଥିବା ଭୂଖଣ୍ଡର ଚରିତ୍ର ଅତି ସୂକ୍ଷ୍ମ ଏବଂ ଗଭୀର ଭାବରେ ଜଡ଼ିତ ଥାଏ । ଭାରତଭୂମି ଏଡ଼େ ବିଶାଳ ଯେ ତାକୁ ସାମୂହିକ ଭାବରେ ଗ୍ରହଣ ଏବଂ ଧାରଣ କରିବାକୁ କୌଣସି ଜାତି, ଗୋଷ୍ଠୀ ବା ବ୍ୟକ୍ତିର ପରିସର ଯଥେଷ୍ଟ ନୁହେଁ । ଏଣୁ ଏ ସୁବିଶାଳ ବର୍ଷ ଭାରତବର୍ଷରେ ଆଞ୍ଚଳିକତା ଅନିବାର୍ଯ୍ୟ । ତଥାପି ଗୋଟିଏ ଶରୀରର ବିଭିନ୍ନ ଅଙ୍ଗବିନ୍ୟାସ ପରି ଏ ଅଞ୍ଚଳମାନ ଏବଂ ଏ ସମଗ୍ର ଭୂମିକୁ ଖୁବ୍ ଗହୀରରେ ଗୋଟିଏ ଗୋଟିଏ ପ୍ରାଣତରଙ୍ଗ ଭିନ୍ନ ଭିନ୍ନ ସମୟରେ ପ୍ଲାବିତ କରିଛି । ତଦ୍ ବିଦ୍ ପଣ୍ଡିତମାନେ କହୁଛନ୍ତି ଯେ ଆର୍ଯ୍ୟମାନଙ୍କ ପରି ଦ୍ରାବିଡ଼ମାନେ ମଧ୍ୟ ଏ ଦେଶରେ ବହିରାଗତ । ତାଙ୍କ ପୂର୍ବରୁ ଅଷ୍ଟ୍ରିକ୍ ବା ନିଷାଦମାନେ ହୁଏତ ଦେଶର ଆଦିମତମ ଅଧିବାସୀ । ସର୍ବପ୍ରଥମ ମଣିଷ ଜାତି କେଉଁଠି ଉଦ୍‌ଭୂତ ହେଲା ତାହା ଏକ ଅମୀମାଂସିତ ପ୍ରଶ୍ନ । କିନ୍ତୁ ଭୂମଧ୍ୟସାଗର ଉପକଣ୍ଠରୁ କୌଣସି ଏକ ମହାପ୍ରଳୟର ସ୍ମୃତି ବହନ କରି ବିଭିନ୍ନ ଯାଯାବର ପଶୁପାଳକ ଗୋଷ୍ଠୀ ନଦୀ ଗିରିବନ, କାନ୍ତାର ପାରି ହୋଇ ଦେଶ ଦେଶାନ୍ତରରେ ହୁଏତ ପହଞ୍ଚିଥିଲେ। କାହିଁକି ସେମାନେ ଜନ୍ମ ସ୍ଥାନରେ ନ ରହି କେଉଁ ମହାପ୍ରବୃତ୍ତିର ତାଡ଼ନାରେ ଏ ଆଦିମାନବ ଗୋଷ୍ଠୀଗୁଡ଼ିକ ବିଚ୍ଛୁରିତ ହୋଇଗଲେ ତା'ର କୌଣସି ଉତ୍ତର ନାହିଁ । ଯେପରି କିଏ ପ୍ରସରଣଶୀଳ ପରମବିଶ୍ୱର ପ୍ରାରମ୍ଭିକ ବିସ୍ଫୋଟନ(Big Bang)ର ଉତ୍ତର ନାହିଁ, ଏ ଅନନ୍ତ ପ୍ରସରଣରେ ମଧ୍ୟ ଉତ୍ତର ନାହିଁ । ତେବେ ନିଷାଦ, ଦ୍ରାବିଡ଼ ଏବଂ ଆର୍ଯ୍ୟମାନେ ଭାରତଭୂମିରେ କ୍ରମାନ୍ୱୟରେ ପ୍ରବେଶ କରିଥିବା ଏକ ମୌଳିକ ଅନୁମାନ ।

ଏ ତିନୋଟି ସ୍ୱତନ୍ତ୍ର ଜନପ୍ରବାହର ତିନିପ୍ରକାର ଚରିତ୍ର, ତିନିପ୍ରକାର ଦୃଷ୍ଟିଭଙ୍ଗୀ, ତିନିପ୍ରକାର ଚଳଣି । ସହାବସ୍ଥାନରେ ଏମାନେ ପରସ୍ପରକୁ ଗ୍ରହଣ କରିଛନ୍ତି, ପ୍ରତ୍ୟାଖ୍ୟାନ ବି କରିଛନ୍ତି । କିନ୍ତୁ ସେମାନେ ମୋଟାମୋଟି ଭାବରେ ବିନ୍ଧ୍ୟର ଉତ୍ତର ଏବଂ ଦକ୍ଷିଣ ଭାଗରେ ସ୍ଥିର ହୋଇ ରହିଯାଇଛନ୍ତି। ଏବେ ମଧ୍ୟ ଦକ୍ଷିଣ ଭାରତୀୟ ଉତ୍ତର

ଭାରତୀୟଠାରୁ ସ୍ୱତନ୍ତ୍ର ଯେପରି କର୍ଣ୍ଣାଟକୀ ପଦ୍ଧତି ତାନସେନୀ ହିନ୍ଦୁସ୍ତାନୀ ସଙ୍ଗୀତ-ପଦ୍ଧତିଠାରୁ ସ୍ୱତନ୍ତ୍ର । ପରବର୍ତ୍ତୀ କାଳରେ ବହିରାଗତଙ୍କ ସହିତ ସଂଘାତ ଏବଂ ସମନ୍ୱୟ କେବଳ ଉତ୍ତର ଭାରତରେ ହିଁ ବିଶେଷ ଭାବରେ ସଂଘଟିତ ହୋଇଛି । ଅଥଚ ସାଗର ପରିବେଷ୍ଟିତ ଦକ୍ଷିଣ ଭୂମି ଅପେକ୍ଷାକୃତ ନିରପଦ୍ରୁତ ରହିଯାଇଛି ।

ଦୁଇଟି ସମୁଦ୍ରର ମଧ୍ୟରେଖାରେ ଉଭୟ ପ୍ରଭାବକୁ ସନ୍ତୁଳିତ ରଖି ଉଭୟଦ୍ୱାରା ପରିପୁଷ୍ଟ ହେଉଥିବା ଗୋଟିଏ ଅଞ୍ଚଳ ହେଲା ଏଇ ଓଡ୍ରଭୂମି । ନିଷାଦର ମୌଉଳିକତା ଏବଂ ଭୂମିରେ ମାତୃକଳ୍ପନାକୁ ଏବେ ମଧ୍ୟ ରଜ ପର୍ବରେ ବା ଦଶହରାରେ ପାଳନ କରୁଥିବା ଦ୍ରମିଣମାନଙ୍କର ଶିବ ଉପାସନାକୁ ଆର୍ଯ୍ୟଦେବତା ବିଷ୍ଣୁ, ଆଦିତ୍ୟ, ଅଗ୍ନି ଉପାସନା ସହିତ ସମନ୍ୱିତ କରୁଥିବା ଏ ଭୂମିର ଅଧିବାସୀମାନେ ଉଭୟ ଭୂଭାଗର ଭୌଗୋଳିକ ତଥା ସାଂସ୍କୃତିକ ଯୋଜକ । ରାଜନୈତିକ ଶାସନ ବନ୍ଧନରେ ସକଳୋକ୍ରଙ୍କ ଏକତ୍ରିତ ହେବା ଏକ ଐତିହାସିକ ଘଟଣା ନିଶ୍ଚୟ, କିନ୍ତୁ ଏ ମୌଳିକ ଜନପ୍ରବାହମାନେ ଏବେ ମଧ୍ୟ କୌଣସି ଦ୍ରବଣକ୍ରିୟାରେ ସମ୍ପୂର୍ଣ୍ଣ ଏକୀଭୂତ ହୋଇନାହାନ୍ତି, ପରସ୍ପରଠାରୁ ପ୍ରଭାବମୁକ୍ତ ହୋଇନାହାନ୍ତି । ଏବେ ସୁଦ୍ଧା ମିଶ୍ରଣ, ଦ୍ରବଣ, ଏକୀକରଣର ପ୍ରକ୍ରିୟା ଅବ୍ୟାହତ ରହିଛି । ଅବଶ୍ୟ ସେମାନଙ୍କ ଉପରେ ମୋଗଲ, ମରହଟ୍ଟା, ଇଂରେଜ ଶାସକଙ୍କ ପରି ବୌଦ୍ଧ, ଜୈନ, ଶାକ୍ତ, ଶୈବ, ବୈଷ୍ଣବ ଧର୍ମଦର୍ଶନ ମାଡ଼ିଯାଇଛି । ଏ ଭୂମିରେ ଏ ସମସ୍ତ ପ୍ରଭାବ କାଳକ୍ରମେ ବନ୍ୟାର ପଟୁମାଟି ପରି ସ୍ତରୀଭୂତ ହୋଇ ରହିଯାଇଛି । ଜାତୀୟ ଚରିତ୍ର ଏବଂ ସଂସ୍କୃତି ଗଠନ କରିବାରେ ସହାୟକ ଉପାଦାନ ରୂପେ କାର୍ଯ୍ୟ କରିଛି । ଇତିହାସର ଦିଗ୍‌ବଳୟରେ ଦେବାନାଂ ପ୍ରିୟଦର୍ଶୀ ସମ୍ରାଟ ଅଶୋକ ଏବଂ ବଡ଼ରାଜା ଖେମରାଜା ଐର ଖାରବେଳ ଦେଖାଯାଉଛନ୍ତି । ସେମାନଙ୍କ କୀର୍ତ୍ତି-ପ୍ରଶସ୍ତି ଉପଯୋଗୀ ଭାଷାରେ ଶିଳାବକ୍ଷରେ ଉତ୍କୀର୍ଣ୍ଣ ହୋଇ ରହିଛି । କିନ୍ତୁ ତା'ପରେ ପ୍ରାୟ ଦଶଟି ଶତାବ୍ଦୀ ଉପରେ କୁହୁଡ଼ି ମାଡ଼ି ରହିଛି । ଚିହ୍ନଟ କରିବାକୁ ଦେଶ ଦିଶୁନାହିଁ । ସ୍ମରଣ ରଖିବାକୁ କୀର୍ତ୍ତି ଦିଶୁନାହିଁ । ତଥାପି ସେ ଭିତରେ ଆମର ଅଜ୍ଞାତ ପିତୃପୁରୁଷମାନେ ଏଭଳି ଋତୁଚକ୍ରରେ ସ୍ୱଚ୍ଛ ଦିବାଲୋକରେ ନିଜର ଆଶାବିଶ୍ୱାସ ନେଇ, ସମାଜ ସଂସ୍କୃତି ନେଇ ସୁଖ ଦୁଃଖ ଭୋଗ କରିଥିଲେ ଏବଂ ପୁରୁଷାନୁକ୍ରମେ ଗୋଟିଏ ଜାତୀୟ ଚରିତ୍ର ଗଢ଼ିଉଠୁଥିଲା ଏଥିରେ ସନ୍ଦେହ ନାହିଁ । ସେ ଯୁଗର ଅଦ୍ୟାବଧି ଆମେ ଯେ ଏକ ସାଂସ୍କୃତିକ ପରମ୍ପରାର ଦାୟାଦ, ଏଥିରେ ସନ୍ଦେହ ନାହିଁ ।

ସୁସ୍ଥ, ଚେତନଶୀଳ, ସଂସ୍କୃତିସମ୍ପନ୍ନ ମଣିଷ ଜୀବନ ପରିସର ଭିତରେ ତିନୋଟି ବିଚାର ମୁଖ୍ୟତଃ ତା'ର ସଂସ୍କୃତିର ପରିଚାୟକ– ବିବେକ ବିଚାର, ବୁଦ୍ଧି ବିଚାର ଏବଂ କଳ୍ପନା ବିଚାର । ଭଲ ମନ୍ଦ, ଅନୁକୂଳ ପ୍ରତିକୂଳ, ନୀତି ନିୟମ, ଆନୁଷ୍ଠାନିକ

ବିଚାର ପଦ୍ଧତି, ପର୍ବପର୍ବାଣି, ନ୍ୟାୟ, ଆଇନ ଅଦାଲତ, ଅନ୍ତୁଡ଼ିଶାଳରୁ ଅନ୍ତ୍ୟେଷ୍ଟି ଯାଏଁ ଯାବତୀୟ ସଂସ୍କାର, ବିଶ୍ୱାସ ଏ ସମସ୍ତ ବିବେକ ବିଚାରର ଅନ୍ତର୍ଭୁକ୍ତ କରାଯାଇପାରେ । ଆମ ଅବଚେତନାରେ ରକ୍ତକଣିକା ଭିତରେ ଅନେକ ଯୁଗରୁ ସଞ୍ଚିତ ଏ ବିଶ୍ୱାସ ଏବଂ ରୀତି, ପୈତୃକ ପୁରୁଷାନୁକ୍ରମିକ ଧାରଣା ଆମର ବିବେକ ରୂପେ ଦେଖା ଦେଇଥାଏ । କୌଣସି ଉପସ୍ଥିତ ପରିସ୍ଥିତିରେ ସ୍ୱାଭାବିକ ଅବାଧ ଇଚ୍ଛା ବା ମୁକ୍ତ ଆଚରଣକୁ ଏହା ପ୍ରତିହିତ କରେ, ନିୟନ୍ତ୍ରଣ କରେ । ସାମୂହିକ ସ୍ୱୀକୃତିରୁ ଏହା କ୍ରମଶଃ ଶକ୍ତିଶାଳୀ ହୁଏ । ଏକତ୍ର ରହିବାର ସମସ୍ତ କଟକଣା, ସଣ୍ଢୁଣା ଏହାରି ଅନ୍ତର୍ଭୁକ୍ତ । ସାଧାରଣ ମଣିଷ ତାକୁ ଭୟରେ, ସଙ୍କୋଚରେ ଆଶା ଓ ବିଶ୍ୱାସରେ ମାନି ନେବାକୁ ବାଧ ହୁଏ । ତାକୁ ପ୍ରଶ୍ନ କରିପାରେ ନାହିଁ, ଫଳତଃ ଅନେକ କୁସଂସ୍କାର ଗଢ଼ିଉଠେ । ସାହସୀ ସଂସ୍କାରକମାନେ ଆସି ତାକୁ ବାରମ୍ବାର ଭଙ୍ଗାଗଢ଼ା କରି ନୂତନ ଖୋପ ତିଆରି କରିଦିଅନ୍ତି । ଏକ ମନସ୍କ ପ୍ରାଣୀ ଭାବରେ ମଣିଷର ସମସ୍ତ ଉତ୍‌କ୍ରମଣ ମାନସ ଭୂମିରେ । ସେହିଠାରେ ସେ ଅଜ୍ଞାତ ଆକାଶରୁ ଅଗ୍ନି ଆହରଣ କରେ । ଦୁର୍ବାର ଅଭିଯାତ୍ରୀ ଚିରକାଳ ଦିଗ୍‌ବିଜୟ କରି ଚାଲିଥାଏ । ତା'ର ମନସ୍କତା ହିଁ ବୁଦ୍ଧି । ସେ ତର୍କ କରେ, ପ୍ରତିପାଦନ କରେ, ପ୍ରମାଣ କରେ, ନିର୍ଣ୍ଣୟ ନିଷ୍ପନ୍ନ କରେ । ଫଳ ସ୍ୱରୂପ ଦର୍ଶନ ଶାସ୍ତ୍ର, ଅର୍ଥଶାସ୍ତ୍ର, ବିଜ୍ଞାନ, ଗଣିତ, ଜ୍ୟୋତିଷ, ଶିଳ୍ପ, ବାଣିଜ୍ୟ, ସ୍ଥପତି, ନଗର ନିର୍ମାଣ, ଯୁଦ୍ଧବିଦ୍ୟା, ରଣକୌଶଳ ଏ ଅଞ୍ଚଳର ସିଦ୍ଧି । ବିବେକ ବିଚାରରେ ସେ ଶାସିତ ହୁଏ, ବୁଦ୍ଧି ବିଚାରରେ ଶାସନ କରେ । ଏହାର ମୂଳରେ ସାମ୍ରାଜ୍ୟ ପ୍ରତିଷ୍ଠା ହୁଏ, ରକ୍ତପାତ ହୁଏ, ମତ, ଧର୍ମ, ଦର୍ଶନ ପ୍ରତିଷ୍ଠା ହୁଏ ପୁଣି ରକ୍ତପାତ ହୁଏ । ଏଥିରେ କଳହ, ବିଦ୍ୱେଷ, ଧ୍ୱଂସ ହୁଏ, ବୁଦ୍ଧି ବଳ ରୂପେ ପ୍ରଯୁକ୍ତ ହୁଏ । ବୁଦ୍ଧି ସଂଯତ ସୃଷ୍ଟିଶୀଳ ହେଲେ ଦର୍ଶନ ବିଜ୍ଞାନର ଅଭିବୃଦ୍ଧି ହୁଏ । ଅସଂଯତ, ଉଦ୍ୟତ୍‌ଅସ୍ତ୍ର ହେଲେ ହିରୋସିମା ବିଧ୍ୱସ୍ତ ହୁଏ । ଶରୀର ଅପେକ୍ଷା ମନରେ ମଣିଷ ଅଧିକ ବିଭାଜିତ, ଅଧିକ ହିଂସିତ ଏବଂ ଆକ୍ରାନ୍ତ... କଳ୍ପନା ବିଚାର ମଣିଷ ଚେତନାର ସବୁଠାରୁ ସୁକୁମାର ଅଙ୍ଗ । ଏହାଦ୍ୱାରା ସେ ସର୍ଜନା କରେ, କାବ୍ୟକବିତା ରଚନା କରେ, ଚାରୁକଳା ଲେଖେ, ସଙ୍ଗୀତ ଗାନ କରେ । ପଥରକୁ ମାଟିକୁ ରୂପପ୍ରଦାନ କରେ । ଦୃଶ୍ୟମାନରୁ ଅଦୃଶ୍ୟକୁ, ପ୍ରକଟରୁ ଅପ୍ରକଟକୁ, ତର୍କରୁ ବିଶ୍ୱାସକୁ, ହିଂସା, ଭୟ, ହତ୍ୟା ଦଣ୍ଡରୁ ସ୍ନେହ, ପ୍ରୀତି, ଦୟା, କ୍ଷମାକୁ, ଆଦେଶରୁ ପ୍ରାର୍ଥନାକୁ ସଞ୍ଚରିଯାଏ । ସତ୍ୟରେ ଶିବକୁ ଏବଂ ସୁନ୍ଦରକୁ ପ୍ରତିଷ୍ଠା କରେ । ମଣିଷ ସହିତ ମଣିଷର ସମ୍ପର୍କ ଭିତ୍ତି ଉପରେ ମଣିଷ ଏବଂ ଈଶ୍ୱର ସମ୍ପର୍କ ଗଢ଼ି ଠିଆ କରାଏ । ଏ ବିଚାରତ୍ରୟ କିନ୍ତୁ ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ୍ ଏବଂ ଅବିମିଶ୍ର ନୁହଁନ୍ତି । ତ୍ରିଗୁଣ ରଜ୍ଜୁପରି ଏମାନେ ଗୋଟିଏ ମାତ୍ର ବେଣୀବନ୍ଧନରେ ମଣିଷର ସାଧନା ଏବଂ ସିଦ୍ଧିକୁ ନିୟନ୍ତ୍ରିତ କରନ୍ତି ।

ଏକତ୍ର ରହିବାର ପ୍ରଥମ ପରିଣାମ ହେଉଛି ଏକ ପରିବାର। କିନ୍ତୁ ତାହା ମୁଖ୍ୟତଃ ଜୀବଧର୍ମ ହୋଇଥିବାରୁ ମାନବିକ ପ୍ରୟାସ ମାଧ୍ୟମରେ ପ୍ରଥମ ଏକତ୍ରତାର ନିଦର୍ଶନ ଗୋଟିଏ ଗୋଷ୍ଠୀ ବା ସମାଜ। ଭୟ କିମ୍ବା ନିରାପତ୍ତା ଦୃଷ୍ଟିରୁ ଆଦିମ ମଣିଷ ଗୋଷ୍ଠୀ ଗଠନ କରିଥାଇପାରେ, କିନ୍ତୁ ଏ ଜଟିଳମନସ୍କ ପ୍ରାଣୀ ଏକତ୍ର ରହିବା ଦ୍ୱାରା କେତେକ ସାମାଜିକ ଜଟିଳତା ଅନିବାର୍ଯ୍ୟ ଭାବରେ ସର୍ବତ୍ର ଦେଖା ଦେଇଥାଏ। ଭାରତୀୟ ଅନ୍ୟାନ୍ୟ ଅଞ୍ଚଳ ଭଳି ଏ ଭୂମିରେ ମଧ୍ୟ ଆର୍ଯ୍ୟ ଆର୍ଯ୍ୟେତର ଭେଦ ବିଦ୍ୱେଷ ପ୍ରଥମ ଜାତିଭେଦ ରୂପେ ଦେଖାଦେଲା । ରାଜନୈତିକ ଅସ୍ଥିରତା ଭିତରେ ରାଜନ୍ୟବର୍ଗ ଥିଲେ କେବଳ ଦଳପତି, ବ୍ରାହ୍ମଣମାନେ ଥିଲେ କେବଳ ସଂସ୍କାର ରକ୍ଷକ ଏବଂ ରାଜପୋଷକ; ଉଭୟଙ୍କୁ ନିଜ ଶ୍ରମ ଏବଂ ଉପାର୍ଜନରେ ପାଳନ କରୁଥିବା କୃଷକ ଶ୍ରେଣୀ ଥିଲେ ସେମାନଙ୍କର ଶାସିତ ଏବଂ ଉପଜୀବ୍ୟ । ପାଶ୍ଚାତ୍ୟ ଦୃଷ୍ଟିରେ ଊନବିଂଶ ଶତାବ୍ଦୀ ବେଳକୁ ଏ ଜାତିଭେଦ ଏକ କୁତ୍ସିତ କୁସଂସ୍କାର ରୂପେ ସାରା ପୃଥିବୀରେ ଅପହସିତ ଏବଂ ନିନ୍ଦିତ ହେବାକୁ ଲାଗିଲା । ଭାରତୀୟ ସମାଜ କହିଲେ ସେ ଜଡ଼ୀଭୂତ, କୁସଂସ୍କାର ଆରୂଢ଼, ରକ୍ଷଣଶୀଳ ଏବଂ ପରସ୍ପର ଅସହିଷ୍ଣୁ ସମାଜକୁ ବୁଝାଉଥିଲା । ଅସଂଖ୍ୟ ଜାତିଗୋଷ୍ଠୀ ଭିତରେ ଅସହନଶୀଳତାର ଗୋଟିଏ ଉଦାହରଣ ଯଥେଷ୍ଟ । ନିଜକୁ ଶ୍ରେଷ୍ଠ ମଣୁଥିବା ବ୍ରାହ୍ମଣମାନେ ଅମୁକ ବେଦ, ଅମୁକ ଗୋତ୍ର, ସମୁକ ପ୍ରବରକୁ ଆଗ କରି ଶାସନୀ, ଦାନୁଆ, ହଳୁଆ, ସାରୁଆ, ମସ୍ତାନାଦି ଉପଗୋଷ୍ଠୀ ସୃଷ୍ଟି କରି ଏକ ଅବକ୍ଷୟଶୀଳ ବିବାଦରେ ଲିପ୍ତ ଥିଲେ ଏବଂ ଅଛନ୍ତି । ଏପର୍ଯ୍ୟନ୍ତ ସେମାନଙ୍କର ଏ ହାସ୍ୟାସ୍ପଦ ବିବାଦ ତୁଟି ନାହିଁ, ଛୁଆଁ ଅଛୁଆଁ ଲୋପ ପାଇନାହିଁ । ଏବେ ମଧ୍ୟ ଦେବସ୍ଥାନରେ ଏମାନେ ପ୍ରହରୀ ରୂପେ ଦ୍ୱାର ଅବରୋଧ କରି ଠିଆ ହୋଇଛନ୍ତି । ପାଶ୍ଚାତ୍ୟ ପ୍ରଭାବର ପ୍ରବଳ ଚାପ ସତ୍ତ୍ୱେ ଜାତିପିତାଙ୍କର ପଣ ଏବଂ ପ୍ରୟୋଗ ସତ୍ତ୍ୱେ ଏହାର ଚେର ଅନେକ ଗହୀରରୁ ରସଶୋଷଣ କରି, ବିଷବୃକ୍ଷ ଅଦ୍ୟାବଧି ବଞ୍ଚି ରହିଛି । ହରିଜନ, ଗିରିଜନ, ନାରୀଜନଙ୍କ ସମ୍ମାନ ଏବଂ ସମସ୍ୱଚ୍ଛନ୍ଦତା ପାଇଁ ଏବେ ସୁଦ୍ଧା ଆମ ଚେତନାରେ କୌଣସି ଯୁଗାନ୍ତକାରୀ ପରିବର୍ତ୍ତନ ହୋଇନାହିଁ ।

ଜାତିଭେଦ ଅବଶ୍ୟ ନିନ୍ଦନୀୟ, ହିଟରଲୀୟ ନର୍ଡିକ୍ ଜାତିକୁ ନେଇ ଇତର ଭେଦ ପରି ଅଦ୍ୟାବଧି ମାନବ ସଂସ୍କୃତିର ଦୁଷ୍ଟବ୍ରଣ ସଦୃଶ ନାମିବୀୟାର ବର୍ଣ୍ଣବୈଷମ୍ୟ ପରି । ସ୍ଥିର ଦୃଷ୍ଟିରେ ବିଚାର କଲେ ମାନବ ଗୋଷ୍ଠୀରେ ବିଭେଦ ଅବଶ୍ୟମ୍ଭାବୀ, କାରଣ ବ୍ୟକ୍ତି ବ୍ୟକ୍ତିଠାରୁ ଭିନ୍ନ ହେବାକୁ ବାଧ୍ୟ । ଭିନ୍ନତା ବିଭେଦର ପ୍ରଥମ ଉପାଦାନ। କିନ୍ତୁ ଏ ବ୍ୟାଧିରେ ପୀଡ଼ିତ ହୋଇ ଜଣେ ଅନ୍ୟଜଣକୁ ଘୃଣ୍ୟ ପଶୁ ପରି ଛୁଇଁବ ନାହିଁ ବା ତା'ର ଛାୟାପାତ ହେଲେ ସ୍ନାନ କରିବ, ଏହା ଏକ ଅତି ରୁଗ୍ଣ ବିଚାର ବିଭ୍ରାଟ।

ଏହାର ସମର୍ଥନ ପାଇଁ କୌଣସି ଅପଯୁକ୍ତି ସୁଦ୍ଧା ନାହିଁ । ଆଧୁନିକ ସହରୀ ସମାଜରେ କ୍ରମଶଃ ଅସବର୍ଣ୍ଣ ବିବାହ ଗୃହୀତ ହୋଇଆସୁଛି ଏବଂ ବର୍ଣ୍ଣବୈଷମ୍ୟ ହୁଏତ ଦୂର ହୋଇଯିବ । କିନ୍ତୁ ଶୂଦ୍ର, ଶବର ବା ନିଷାଦମାନଙ୍କୁ ସ୍ୱାଭାବିକ ଭାବରେ ସମସ୍କନ୍ଧ ବୋଲି ଗ୍ରହଣ କରିବାକୁ ଉଚ୍ଚବର୍ଣ୍ଣର ପୁରୋଧାମାନେ ଆହୁରି ପୁରୁଷେ ସମୟ ନେଇପାରନ୍ତି । କେରଳ, କର୍ଣ୍ଣାଟକ, ମାଲାବାର ଅଞ୍ଚଳରେ ବର୍ଣ୍ଣବିଷମ୍ୟ ଓଡ଼ିଶା ଅପେକ୍ଷା ଆହୁରି ଉତ୍କଟ ଥିଲା । ନାରାୟଣ ଗୁରୁଙ୍କ ଭଳି ବିଦ୍ୱାନ ସାଧକମାନେ ସମାଜସଂସ୍କାର କରି ତା'ର ପ୍ରାୟ ବିଲୋପସାଧନ କରିପାରିଛନ୍ତି । ଅବଶ୍ୟ ଦେବସ୍ଥାନମାନଙ୍କରେ ଏବେ ମଧ ପୁରାତନର ଦୁଷ୍ଟଛାୟା ସେମାନଙ୍କୁ ଆଚ୍ଛନ୍ନ କରି ରଖିଛି । ସେମାନେ ମୁକ୍ତ ହୋଇପାରିନାହାନ୍ତି । କିନ୍ତୁ ଓଡ଼ିଶାରେ ସେଭଳି ଭାବବିଶ୍ୱାସ ଏବଂ ଧର୍ମଭାବର ଆମୂଳ ବିପ୍ଳବ ହୋଇନାହିଁ ।

ଆଶ୍ଚର୍ଯ୍ୟର କଥା ଯେ ଏ ଭୂମିରେ ଆର୍ଯ୍ୟମାନଙ୍କ ଅନୁପ୍ରବେଶ ସତ୍ତ୍ୱେ ଏ ଭୂମି ବୈଦିକ ଯୁଗରୁ ହିଁ ଉତ୍ତର ପ୍ରାନ୍ତରେ ବ୍ରାତ୍ୟଭୂମି ରୂପେ ପରିଚିତ ଥିଲା । ଏଠାକୁ ଆସିବାକୁ କେବଳ ତୀର୍ଥାଟନ ପାଇଁ ଅନୁମତି ମିଳୁଥିଲା, ଅନ୍ୟଥା ନୁହେଁ । ଏ ଅଞ୍ଚଳର ଅଧିବାସୀଙ୍କୁ ଅଶୁଚିଗ୍ରସ୍ତ ଅନୁନ୍ନତ ଏବଂ ଦରିଦ୍ର ରୂପେ ଜାତକ ଗ୍ରନ୍ଥରେ କଳିଙ୍ଗରେ ଅନାହାର ଏବଂ ଦାରିଦ୍ର୍ୟ ବର୍ଣ୍ଣନା ଛଳରେ ଉଲ୍ଲେଖ କରାଯାଇଛି । ଏଥିରୁ ମନେ ହେଉଛି ସତେଅବା ଏ ଅଞ୍ଚଳ କପିଳେନ୍ଦ୍ର, ଅନଙ୍ଗଭୀମଦେବ, ଯଯାତି, ନରସିଂହ ଦେବ ସତ୍ତ୍ୱେ କୋଣାର୍କ, ଲିଙ୍ଗରାଜ, ଶ୍ରୀମନ୍ଦିର ସତ୍ତ୍ୱେ, ସିଂହଳ ସୁମାତ୍ରାରେ ବାଣିଜ୍ୟ ବସତି ସତ୍ତ୍ୱେ ତା'ର ଅନ୍ତର୍ନିହିତ ଦୁର୍ବଳତା ଓ ଦାରିଦ୍ର୍ୟ ଭୋଗ କରିଆସୁଛି ଅସୁମାରି କାଳ । ନିଜେ ଅନ୍ୟଦ୍ୱାରା ଅସ୍ପୃଶ୍ୟ ଏବଂ ନୀଚ ବୋଲି ପରିଗଣିତ ହେଉଥିବାରୁ ଗୋଟାଏ ପ୍ରକାର ହୀନମନ୍ୟତାରୁ ଆତ୍ମପୀଡନ, ମନସ୍ତାତ୍ତ୍ୱିକ ନିୟମରେ ନିଜ ଭିତରେ ସେହି ଅସ୍ପୃଶ୍ୟତାକୁ ଦୃଢ଼ୀଭୂତ କରିଛି । ଯେମିତି କ୍ରୀତଦାସ ହିଁ ଅନ୍ୟକୁ କ୍ରୀତଦାସ କରିବାର ପ୍ରବୃତ୍ତି ପୋଷଣ କରିଥାଏ ।

ଧରାଯାଉ ଆଧୁନିକତାର ସହସ୍ରମୁଖୀ ଚାପରେ ଜାତିଭେଦ ଦୂର ହୋଇଗଲା । ତଥାପି ସମଗ୍ର ସମାଜକୁ ସୁସ୍ଥ ସଂସ୍କୃତି-ସଂପନ୍ନ ରୁଚିଶୀଳ କରିବାକୁ ଯେତିକି ପରିମାଣରେ ଉନ୍ନତ, ପ୍ରବୁଦ୍ଧ ଉଦାର ଚିନ୍ତାବିନ୍ୟାସର ପ୍ରୟୋଜନ ତାହାପାଇଁ କେତେକାଳ ଅପେକ୍ଷା କରିବାକୁ ହେବ କହିବା କଠିନ । ଏ ଦେଶରେ କୁହାଯାଏ ମନୁଷ୍ୟମାତ୍ରେ ଅମୃତସ୍ୟ ପୁତ୍ରାଃ, ଏଠାରେ ହିଁ ପ୍ରବଚନ ଦିଆଯାଏ 'ନେହନାନାସ୍ତି କିଞ୍ଚନ', 'ସର୍ବଂ ଖଳୁଇଦଂ ବ୍ରହ୍ମ', ଏବଂ ସେଠାରେ ହିଁ ଯାବତୀୟ ବିଭେଦ, ବିଦ୍ୱେଷ ଏବଂ ଅସୂୟା । ଏହା ନିଶ୍ଚୟ ଏକ ବିଡ଼ମ୍ବନା । କିନ୍ତୁ ଏଥିରୁ ମୁକ୍ତ ହେବାର ପ୍ରୟାସରେ ସମ୍ପୂର୍ଣ୍ଣ ଉପଯୁକ୍ତି

ପଡ଼ିବାର ଭୟ ରହିଛି। ଗୋଟିଏ ପୁରାତନ ରୁଗଣ୍ କୁସଂସ୍କାରରୁ ମୁକୁଳି ଆସି ତା'ର ଆଧୁନିକ ନୂତନ ସଂସ୍କରଣରେ ପଡ଼ିଯିବାର ଭୟ ରହିଛି । ଆଧୁନିକ ପାଶ୍ଚାତ୍ୟ ଚେତନା କୁସଂସ୍କାର ମୁକ୍ତ ନୁହେଁ ବରଂ ଅତି ସାଘାଂତିକ ଭାବରେ କୁସଂସ୍କାର ଜଡ଼ିତ । ଯେଉଁମାନେ ପ୍ରତିମୁହୂର୍ତ୍ତରେ ଅଧିକ ଶକ୍ତିଶାଳୀ ହୋଇ ବିତ୍ତଶାଳୀ ନବୀନତମ ମାରଣାସ୍ତ୍ରରେ ନିଜକୁ ସଜ୍ଜିତ କରି ଚାଲିଛନ୍ତି, ପ୍ରତି ମୁହୂର୍ତ୍ତରେ ଯେଉଁମାନେ ପରସ୍ପର ପ୍ରତି ଭୟ, ଘୃଣା, ଜିଘାଂସାରେ ଜର୍ଜରିତ, ଯେଉଁମାନେ ଧର୍ମଦର୍ଶନକୁ ଅଫିମ କହି ବର୍ଜନ କରିଛନ୍ତି ଅଥଚ ମର୍ଫିନ ଏବଂ ହିରୋଇନ୍ ସେବନ କରି ଚାଲିଛନ୍ତି, ମଣିଷର ସତ୍ୟ ଆବିଷ୍କାର କରିବାକୁ ଯାଇ ନଗ୍ନ ଜନ୍ତୁଟିକୁ ଆବିଷ୍କାର କରିଛନ୍ତି, ତା'ର ମୌଳିକ ପ୍ରବୃତ୍ତି ଚରିତାର୍ଥ କରିବାକୁ ସଙ୍ଗୀତ ସାହିତ୍ୟ ଚିରକାଳ ସେଇ ଜାନ୍ତବ ଅଭିରୁଚି ପାଇଁ ନିଯୁକ୍ତ କରୁଛନ୍ତି, ସେମାନେ ଗୁଡିଏ ରୁଚିହୀନ, ସମ୍ପର୍କହୀନ ଅନ୍ୟକାତର ଉତ୍କଟ ସ୍ୱାର୍ଥପର ପ୍ରାଣୀ ହୋଇପାରନ୍ତି । ଏଣୁ ନିଜ ପରମ୍ପରାରୁ ବିଚ୍ୟୁତ ହୋଇ ଏମାନଙ୍କର ଚୋକେଇରେ ପଡ଼ିବା ପୂର୍ବରୁ ଥରେ ନିଷ୍ଠାର ସହିତ ତାକୁ ଚିହ୍ନିବାର ପ୍ରୟାସ କରିବା ଉଚିତ ହେବ ନାହିଁକି ? ସଚେତନ ହେବା ତାକୁ ଅତିକ୍ରମ କରିବାରେ ସହାୟକ ହୋଇପାରେ । ଏଣୁ ସଂସ୍କୃତି-କ୍ଷେତ୍ରରେ ବର୍ତ୍ତମାନ ଯେଉଁ ସଙ୍କଟ ଦେଖାଦେଇଛି, ତାକୁ ସତର୍କତାର ସହିତ ପାରି ହେବାକୁ ପଡ଼ିବ ।

ଏ ପ୍ରଦେଶକୁ ମୋଗଲମାନେ ହିଁ ସର୍ବପ୍ରଥମେ ଓଡ଼ିଶା ବୋଲି ଆଖ୍ୟାତ କରିଥିଲେ, ସମ୍ଭବତଃ ଓଡ଼ିଶା କହିଲେ ସେମାନେ ବୁଝୁଥିଲେ କଟକ ଏବଂ ଉପକୂଳବର୍ତ୍ତୀ ମୋଗଲବନ୍ଦୀ ଅଞ୍ଚଳ । ସେଥିରେ ପଶ୍ଚିମାଞ୍ଚଳ ବା ପୁରାତନ ଦକ୍ଷିଣ କୋଶଳ ମିଶିଲା ଇଂରେଜ ଶାସନ କାଳରେ । ଅନେକ ପରେ ମିଶିଲା ମାନ୍ଦ୍ରାଜ ଅନ୍ତର୍ଭୁକ୍ତ ଗଞ୍ଜାମ ଏବଂ କୋରାପୁଟ ଜିଲ୍ଲା । ଏଇମାତ୍ର ପଚାଶ ବର୍ଷ ହେଲା ଏହାର ଭୌଗୋଳିକ ତଥା ରାଜନୈତିକ ସୀମାରେଖା ଭାଷାଭିତ୍ତିକ ବିଚାରରେ ଟଣାହେଲା । ସମଗ୍ର ଭାରତବର୍ଷର ବିଶାଳ ପୃଷ୍ଠଭୂମିରେ ଆମେ କଳନା କରିବାକୁ ଆରମ୍ଭ କଲୁ ଆମର ସ୍ୱତନ୍ତ୍ର ପରିଚୟ । ସେଥିପାଇଁ ସେ ମହାସଂଗ୍ରାମର ଦିନଗୁଡ଼ିକ ଆମକୁ ସାହାଯ୍ୟ ବି କରିଥିଲା । ଆକୁମାରୀ ହିମାଚଳ ଏବଂ ଆକଛଆସାମ ସେତେବେଳେ ସମତାଳରେ ସ୍ପନ୍ଦିତ ହେଉଥିଲା । ପରମ୍ପରା ସଚେତନ ହୋଇ ଉଠୁଥିଲା। ଭାବପ୍ରବଣତାର ଉନ୍ମାଦନରେ ଯାହାକିଛି ଭାରତୀୟ ତା'ର ସ୍ତୁତିଗାନ କରାଯାଉଥିଲା। ମିଶିଗଲା ଆଧ୍ୟାତ୍ମିକତା, ଧର୍ମ, ଦର୍ଶନ ସମାଜଚେତନା ଏବଂ ଦେଶପ୍ରେମ। ପୁନରୁତ୍‌ଥାନ ହେଲା ଭାରତୀୟ ସଂସ୍କୃତିର। ଏଠି ଆମେ ଖୋଜି ପାଇଲୁ ଜଗନ୍ନାଥଙ୍କୁ । ପୁରୁଷାନୁକ୍ରମେ ଦେଢ଼ ହଜାର ବର୍ଷ ଧରି ଯାହାକୁ ଆମେ ଜାବୁଡ଼ି ଧରି ଆସିଥିଲୁ, ଯାହାକୁ ଆମେ ରଖିପାରିନଥିଲୁ ବିଧର୍ମୀ କବଳରୁ ଏବଂ ଯେ ଆମକୁ ରଖି ପାରିନଥିଲା ଘୋର ଦୁର୍ଦ୍ଦିନ ଏବଂ ବିପର୍ଯ୍ୟୟରୁ, ତାକୁ ପୁଣି

ଆବିଷ୍କାର କଲୁ। ଅନୁଭବ କଲୁ ଯେ ତଥାପି ସେ ଅଛି ଏବଂ ଆମେ ଅଛୁ ଏ ଭୂମିରେ । ଭାରତବାସୀ ଭାରତବର୍ଷକୁ ଆବିଷ୍କାର କଲା । ନେହେରୁ ଯାହା ଆବିଷ୍କାର କଲେ ତାକୁ ଅନ୍ୟ ଦିଗରୁ ଆବିଷ୍କାର କଲେ ତିଳକ, ରବୀନ୍ଦ୍ରନାଥ, ଗାନ୍ଧୀ ଓ ଶ୍ରୀଅରବିନ୍ଦ। ସମଗ୍ର ଭାରତବାସୀ ଆବିଷ୍କାର କଲେ ଦେଶର ବିଶାଳ ପରମ୍ପରାକୁ ନିଜ ନିଜ ଢଙ୍ଗରେ।

ଏ ସମସ୍ତ ଉନ୍ମାଦନା କିନ୍ତୁ ପ୍ରଶମିତ ହୋଇଗଲା ରାଜନୈତିକ ସ୍ୱତନ୍ତ୍ରତା ଲାଭ କରିବାର ପରେ ପରେ । ଆମେ ସଂବିଧାନ ପ୍ରଣୟନ କଲୁ । ଆମର ସଂଗ୍ରାମୀ ନେତାମାନେ ଶାସନଭାର ଗ୍ରହଣ କଲେ । ମନେହେଲା ସତେବା ଆମେ ଲକ୍ଷ୍ୟରେ ପହଞ୍ଚିଗଲୁ ଏବଂ ଏଣିକି ଆଉ ନିଜକୁ ଆବିଷ୍କାର କରିବାର ପ୍ରୟୋଜନ ନାହିଁ । କ୍ଳାନ୍ତି, ଉଦାସୀନତା ଆମକୁ ଗ୍ରାସ କରିଗଲା । ଯେଉଁ ଗୋଟାଏ ରଜ୍ଜୁ ଆମର ସମସ୍ତ ବିଭାଜନ ସତ୍ତ୍ୱେ ଆମକୁ ଏକାଠି ସଂଘବଦ୍ଧ କରିଥିଲା, ସେଇଟା ହଠାତ୍ ଛିଣ୍ଡିଗଲା । ଆମେ ଯେଉଁଭଳି ବିଚ୍ଛିନ୍ନ ଥିଲୁ ପୁଣି ସେଇଭଳି ବିଚ୍ଛିନ୍ନ ହୋଇଗଲୁ, ପୁଣି କଳହ କଲୁ । ଆନ୍ଧ୍ର, ବିହାର, ମଧ୍ୟପ୍ରଦେଶ ସହିତ ଜମି ବିବାଦ ଲାଗିଲା । ଏ ପର୍ଯ୍ୟନ୍ତ ମଧ୍ୟ କଳହ ଲାଗିରହିଛି । 

ତେବେ ଯେଉଁ ସଂସ୍କୃତି ସଚେତନତା ଆମେ ଲାଭ କରିଥିଲୁ, ଆମ ଜାତୀୟ ଏବଂ ସାଂସ୍କୃତିକ କେନ୍ଦ୍ରରେ ଜଗନ୍ନାଥଙ୍କୁ ଆବିଷ୍କାର କରିଥିଲୁ, 'ଏ ଦେଶର ନେତା ନିଜେ ନାରାୟଣ' ବୋଲି ଘୋଷଣା କରିଥିଲୁ, ତାକୁ ସମ୍ପୂର୍ଣ୍ଣ ହରାଇ ଦେଲୁ କି ? କିଛି ମାତ୍ରାରେ ବୋଧହୁଏ ଏ ଆଶଙ୍କା ସତ୍ୟ । ଆମେ ସତେଅବା ସଂଗ୍ରାମ କରିଥିଲାବେଳେ ତାକୁ ନେତୃତ୍ୱ ଦେଇଥିଲୁ । ଆମ ଭିତରେ ସେ ପାଇକ ବେଶରେ ଯୁଦ୍ଧ କଲେ । ଯୁଦ୍ଧ ଜିଣିଗଲା ପରେ ତାକୁ ନେଇ ସେଇ ପୁରୁଣା ପଥର ଘରେ ପଥୁରିଆ ନୀତିନିୟମ ସଂସ୍କାର ଭିତରେ ବନ୍ଦୀ କରି ତାଲା ପକେଇଦେଲୁ । ସେ ବିଷୟରେ ସବୁଠାରୁ ଅଧିକ କୋଳାହଳ ଚାଲିଛି । ଖୁବ୍ କାନେଇଲେ ଦୁଇଟି ସ୍ୱର ହୁଏତ ଶୁଣିବାକୁ ମିଳୁଛି । ଏହା ଦୁଇଟି ସ୍ୱତନ୍ତ୍ର ପକ୍ଷ । ସେମାନେ ହେଲେ ହୃଦୟ ପକ୍ଷ ଏବଂ ମାନସ ପକ୍ଷ । ହୃଦୟ ପକ୍ଷଟି କିଞ୍ଚିତ ପୁରୁଣା, ପରମ୍ପରା ଆଶ୍ରିତ, ଏବଂ ମାନସ ପକ୍ଷଟି ଆଧୁନିକ ଏବଂ ଯୁକ୍ତି ଆଶ୍ରିତ । ଜଗନ୍ନାଥଙ୍କ ସମ୍ପର୍କରେ ଏ ଦୁଇ ପକ୍ଷରେ ବୟାନ ଆମ ସଂସ୍କୃତି ସଚେତନତାର ନିଦର୍ଶନ ରୂପେ ନିଆଯାଇପାରେ ।

ହୃଦୟପକ୍ଷ ଭାବପ୍ରବଣ ପକ୍ଷ । ଏ ମତାନୁସାରେ ଜଗନ୍ନାଥ ହେଉଛନ୍ତି ଓଡ଼ିଆ ଜାତିର ପ୍ରାଣକେନ୍ଦ୍ର । ସବୁ ଧର୍ମ, ସବୁ ଜାତିର ସମନ୍ୱୟ, ସାମ୍ୟମୈତ୍ରୀର ପ୍ରତୀକ । ଠାକୁରଙ୍କ ଚାରିବର୍ଣ୍ଣ – ଅଷ୍ଟ୍ରିକ, ମଙ୍ଗୋଲୀୟ, ଶ୍ୱେତାଙ୍ଗ ଏବଂ ହୋଇପାରେ ଲୋହିତ ଭାରତୀୟମାନଙ୍କୁ ସ୍ୱୀକାର କରାଯାଇଛି । ତାଙ୍କ ବିଗ୍ରହରେ ଯେତିକି ପରିଣାମରେ

ପବିତ୍ର ବୁଦ୍ଧ ସେତିକି ପରିମାଣରେ କୃଷ ମଧ ପ୍ରଚ୍ଛନ୍ନ ଭାବରେ ନିହିତ ରହିଛି । ସେ ଅନନ୍ତ କାଳରୁ ଅଛନ୍ତି ଏବଂ ଅନନ୍ତକାଳ ରହିଥିବେ । ସେ ହିଁ ବେଦର ପୁରୁଷୋତ୍ତମ । ସେ କୃଷବାସୁଦେବ, ସେ କାମଦେବ, ସେ ବିଷ୍ଣୁ, ସେ ଦକ୍ଷିଣକାଳୀ, ଗଣପତି, ଜ୍ଞାନନାଥ । ସେ ଓଡ଼ିଆମାନଙ୍କ ନିଜ ଠାକୁର । ଯାହା ଦେଲେ ଖାଏ, ଯେମିତି ଚାହିଁଲେ ସେମିତି ବେଶ ହୁଏ । ଏ ପକ୍ଷଟି ବିହ୍ୱଳ ପକ୍ଷ । ଏଠି କେବଳ ନିର୍ବିଚାର ବିଶ୍ୱାସ ଏବଂ ଭକ୍ତି । ସବୁଠୁ ବଡ଼, ସବୁଠୁ ଭଲ ଠାକୁରଙ୍କ ସପକ୍ଷରେ ଯାହା ଗଲା ତାହା ଗ୍ରହଣୀୟ ଏବଂ ସତ୍ୟ, ଯାହା ନ ଗଲା ତାହା ଘୋର ମିଥ୍ୟା, ଅକ୍ଷମଣୀୟ ବିଭୁନିନ୍ଦା, ତାହା ଅଶ୍ରାବ୍ୟ ଏବଂ ଗ୍ରହଣଯୋଗ୍ୟ ନୁହେଁ ।

ମାନସପକ୍ଷ ହେଉଛି ଯୁକ୍ତିତର୍କ ଏବଂ ପ୍ରମାଣର ପକ୍ଷ । ଏମାନେ କହନ୍ତି ଯେ ଜଗନ୍ନାଥ ଏକ ଆଞ୍ଚଳିକ ଠାକୁର । ସେ ବୋଧହୁଏ ମୂର୍ତ୍ତିପୂଜକ ନିଷାଦମାନଙ୍କର ଜଗନ୍ନାଲୋ । ଶବରମାନଙ୍କ ଖମ୍ଭେଶ୍ୱରୀ। – ପରବର୍ତ୍ତୀ କାଳରେ ଏକାନଂସା । ସେ କାଠର ଦେବତା । ତାଙ୍କୁ ପାଷାଣ ମନ୍ଦିରରେ ପଣ୍ଡିତମାନେ ପ୍ରତିଷ୍ଠା କରି ରଖିଛନ୍ତି । ସେ ଏକକ ବିଗ୍ରହ ଥିଲେ; ପରେ ଚତୁର୍ଦ୍ଧା ହେଲେ । ଶାସକ, ଅପଶାସକ, ଭକ୍ତ ବିଧର୍ମୀ ଅନୁଗତ ଏବଂ ବିଦ୍ୱେଷୀଙ୍କ ଟଣାଓଟରାରେ ତାଙ୍କୁ ମଧ ଅନେକ ବିପର୍ଯ୍ୟୟ ସହିବାକୁ ପଡ଼ିଲା । କେତେବେଳେ ଚିଲିକା ଖୋପରେ ତ, କେତେବେଳେ ସୋନପୁର ବଟଗଛ ମୂଳେ ଲୁଚିବାକୁ ପଡ଼ିଲା, ଘୋଷରା ଖାଇବାକୁ ପଡ଼ିଲା, ନିଆଁରେ ପୋଡ଼ିବାକୁ ପଡ଼ିଲା । ବେଳ ପଡ଼ିଲେ ସେ ହୀରାମଣ୍ଡିତ ମଧ ହେଲେ, ସୁନାବେଶ ହେଲେ । ଗଜପତି ରାଜାମାନେ ପ୍ରଥମ ସେବକ ରୂପେ ତାଙ୍କୁ ନିଷ୍କର ଜମି ଖଞ୍ଜିଦେଲେ ସେବା ଖଟଣି ପାଇଁ । ଛତିଶା ନିଯୋଗ କଲେ । ନିଜ ବଡ଼ିମା ଆଉ ପତିଆରା ଠାକୁର ମାଧମରେ ପ୍ରକାଶ କଲେ । କିନ୍ତୁ ଦୁର୍ବଳ ସମୟରେ ତାଙ୍କୁ ମନ୍ଦିରରେ ସୁଦ୍ଧା ସମ୍ଭାଳି ପାରିଲେ ନାହିଁ । ଏ ସମସ୍ତ ସତ୍ତ୍ୱେ ଏହାଙ୍କ ପାଇଁ ଏଡେ ମନ୍ଦିର ଗଢ଼ାହେଲା ସେଇ ଉତ୍ସାହରେ ସୂର୍ଯ୍ୟମନ୍ଦିର କୀର୍ତ୍ତିସ୍ଥାପନା ହେଲା । ଓଡ଼ିଶାର ସ୍ଥାପତ୍ୟ ସଙ୍ଗୀତ ସାହିତ୍ୟ ଏବଂ ନୃତ୍ୟକଳା ଏଇ କେନ୍ଦ୍ରଟିର ଚାରିପଟେ ଏ ଦେଶର ଅଧିବାସୀମାନଙ୍କର ସୃଜନଶୀଳତାକୁ ମୁକ୍ତ ଚିନ୍ତା ଓ ଚେତନାକୁ ପ୍ରକାଶିତ କରିଥିଲା । ଏ ପକ୍ଷର ଶାଖା ରୂପେ ଆଉ ଏକ ନିସ୍ପୃହ ଉପପକ୍ଷ ରହିଛି । ତାଙ୍କ ମତ ଅପେକ୍ଷାକୃତ ଅଧିକ ସାହସିକ । ସେମାନେ କହନ୍ତି ଏ ଦେବତା ଗୋଟିଏ କାଠ କଣ୍ଢେଇ, ସେ କେବଳ ଏକ ଆଞ୍ଚଳିକ, ଲୋକ ବିଶ୍ୱାସ ଏବଂ ଯାନିଯାତ୍ରାର ଦେବତା, ଖୁବ୍ ଆଦିମ, ଏବଂ ହୁଏତ ପ୍ରାଚୀନ କାଳରେ ଅନ୍ୟ ଦେବତାଙ୍କ ପରି ହିଂସ୍ର । ଏ ମନ୍ଦିରସ୍ଥ ଗରୁଡ଼ ସ୍ତମ୍ଭଟି ଏକ ଜୀବାଶ୍ମ । ଏହା ବହୁ ଲକ୍ଷ ବର୍ଷ ପୂର୍ବେ ପଥର ପାଲଟିଥିବା ଗୋଟିଏ ଗଛ ଗଣ୍ଡି । ଏହା ହିଁ

ବୋଧହୁଏ ସେଇ ଦାରୁଦେବତା ମୂଳ ଖମ୍ଭେଶ୍ୱରୀ । ଏହାକୁ ହୁଏତ ସମୁଦ୍ରରୁ ପ୍ରଥମେ ଉଦ୍ଧାର କରାଯାଇଥିଲା । ପ୍ରଣବରୂପୀ ପ୍ରତୀକ ବିଗ୍ରହକୁ ପ୍ରତିଷ୍ଠା କଲାପରେ ମୁଖ୍ୟ ଦେବତା ହୁଏତ ଗୌଣସ୍ଥାନ ପ୍ରାପ୍ତ ହୋଇଛନ୍ତି । ପୂଜିତ ବିଗ୍ରହଙ୍କ ଗର୍ଭରେ ରହସ୍ୟାବୃତ ସେ ବ୍ରହ୍ମପଦାର୍ଥ ସହିତ ଏ ଜୀବାତ୍ମ ସ୍ତମ୍ଭର ମୌଳିକ ସମ୍ପର୍କ ହୁଏତ ରହିଛି । ହୁଏତ ତନ୍ତ୍ରକୁ ସ୍ୱୀକାର କଲାପରେ ପୂଜାପଦ୍ଧତିରେ ପରିବର୍ତ୍ତନ କରାଯାଇଛି । ମହାପ୍ରସାଦକୁ ବିମଳା ଅର୍ପଣ ବିଧି ଆରୋପ କରାଯାଇଛି । ହୁଏତ ନିଜର କୌଣସି ମୌଳିକତା ରକ୍ଷାକରି ପାରୁନଥିବା ଏକ ଦେବସ୍ଥାନ ବିଭିନ୍ନ ଧର୍ମଧାରା ପାଖରେ ନିଜକୁ ସମର୍ପଣ କରି ଚାଲିଛି । ଏହା କୌଣସି ସାର୍ବଜନୀନ ବ୍ୟାପକତା ନୁହେଁ ବରଂ ଏକ ଦୁର୍ବଳ ଅସହାୟତାର ସୂଚକ । ଯେ ଆସିଲା, ଯେତେବେଳେ ଆସିଲା, ଯେଉଁଭଳି ଚାହିଁଲା ଏ କ୍ଷେତ୍ରରେ ନିଜକୁ ଜାହିର କରି ଚାଲିଗଲା । ବୁଦ୍ଧି ଏବଂ ବିଶ୍ୱାସ ବିବର୍ଜିତ ଅଧୁନାତନ ଦୁଇଟି ସ୍ୱର ପ୍ରଣିଧାନଯୋଗ୍ୟ । ଗୋଟିଏ କହେ ଯେ ମନ୍ଦିରର ସ୍ତୂପ ଏକ ନିରର୍ଥକ କାଠ କଣ୍ଢେଇ । ଏଥିରେ ପ୍ରତ୍ୟେକ ଅଂଶ ବେଠି ମୂଲିଆଙ୍କ ରକ୍ତରେ ଗଢ଼ା । ଏ ମନ୍ଦିରର ମୂଳଦୁଆ ତଳେ ଗୁପ୍ତ ଭଣ୍ଡାରରେ ଅଶେଷ ରତ୍ନ ଗଚ୍ଛିତ ରହି ଥାଇପାରେ । ଏହାକୁ ବାରୁଦରେ ଉଠାଇ ସେଇ ଅର୍ଥରେ ଗରିବଙ୍କୁ ଅନ୍ନ ଆଚ୍ଛାଦନ ଦିଆଯାଉ । ଆଉ ସ୍ୱରଟି ଅତିଭକ୍ତିର ଭାନ କରି ତଦ୍‌ଗତ ଭକ୍ତର ଭାଷା ଏବଂ ଭଙ୍ଗୀକୁ ଅନୁସରଣ କରି ଯଥେଚ୍ଛ ଆଚରଣ କରିବାକୁ ପ୍ରବୃତ୍ତ କରିଥାଏ । କାଳିଆ, ବଳିଆଦି କୁତ୍ସା ଏବଂ ଅପମାନସୂଚକ ସମ୍ବୋଧନ ଏବଂ ପାଦୁକାଠାରୁ ପାନପାତ୍ର ପର୍ଯ୍ୟନ୍ତ ସର୍ବତ୍ର ଚକାଆଖି ଯୋଡ଼ିକୁ ନିର୍ବିକାର ବ୍ୟବହାର କରିବାର ଦାମ୍ଭିକତା, ଅସଦାଚରଣ, ବାପର ପଞ୍ଜରା ହାଡରେ ପଶାକାଠି କରି ଜୁଆ ଖେଳିବାର କୁକର୍ମଠାରୁ ମଧ ଅଧିକ ଶୋଚନୀୟ ।

କେହି ଜଣେ ବହିରାଗତ ପର୍ଯ୍ୟଟକ ସିନା ଅନାତ୍ମୀୟ ଢ଼ଙ୍ଗରେ ଚାହିଁଲେ ଏଇଠି କାଷ୍ଠ ପାଷାଣ ଦେଖେ ଏବଂ ଭାବେ ଯେ ଏହାକୁ ବେଢ଼ି ରହିଥିବା ଅଧିବାସୀଗୁଡ଼ିକ ହତଭାଗ୍ୟ, ଦରିଦ୍ର, ବିଜ୍ଞାନର କୌଶଳ ଅବଦାନରୁ ବଞ୍ଚିତ ମୂର୍ଖ ଆଦିମ ଏବଂ ସବୁମନ୍ତେ ଏକ କନିଷ୍ଠ ଜାତି, ହ୍ରସ୍ୱ ଖର୍ବ ଜାତି । କିନ୍ତୁ ତାଙ୍କୁ ଅନୁସରଣ କରି ଥୋକେ ଓଡ଼ିଆ ଯଦି ନିଜକୁ ନିଜେ ଏପରି ଘୃଣାଜନିତ ହେୟଦୃଷ୍ଟିରେ ଦେଖନ୍ତି ତାହାଠାରୁ ବଳି ଆଉ ଦୁର୍ଭାଗ୍ୟ କ'ଣ ଥାଇପାରେ ? ଆମେ ଅତୀତରେ ବହୁବାର ନୂତନକୁ ଏଇଭଳି ମାଲିକପଣ ଦେଇଆସିଛୁ । ମୋଗଲ ସୁବାଦାରକୁ ନନ୍ଦିଘୋଷ ଉପରେ ବେଢ଼ା ପକାଇ ବସେଇଛୁ । ଇଂରାଜ ସାହେବକୁ ଠାକୁରଙ୍କ ରକ୍ଷଣାବେକ୍ଷଣ ଭାର ଅର୍ପି ଦେଇଛୁ । ଯେ ଆସିଲା ଶକ୍ତିଶାଳୀ ତା ଆଗରେ ମୁଣ୍ଡପାତି ତାକୁ ମାନିନେଇଛୁ । ଏବେ ମଧ ଆଧୁନିକତାର ତରଙ୍ଗରେ ଆମେ ଭାସମାନ । ନିଜକୁ ନିଜେ ଅପମାନିତ, ନିନ୍ଦିତ କରିବାର ଆତ୍ମଘାତୀ ଯୋଜନା

କରିବା ଆମ ପକ୍ଷେ ଆଦୌ ଅସ୍ୱାଭାବିକ ନୁହେଁ । ଏଭଳି ଘାତ ପ୍ରତିଘାତରେ ଜାତୀୟ ଚେତନା ଧୂମାଚ୍ଛନ୍ନ ଥିଲାବେଳେ ଗୋଟିଏ ଅମୀମାଂସିତ ପ୍ରଶ୍ନ ଦେଖାଦିଏ । ଆମେ ଆଧୁନିକ ହେବା ସକାଶେ ନିଜର ସମଗ୍ର ପରମ୍ପରାକୁ ପ୍ରତ୍ୟାଖ୍ୟାନ କରିବା ଏକାନ୍ତ ଅପରିହାର୍ଯ୍ୟ କି ? ପୃଥିବୀର ପ୍ରଗତି ସହିତ ସମତାଳରେ ଯିବାପାଇଁ କେବଳ ସଂଗ୍ରହାଳୟରେ ଆପଣା ସଂସ୍କୃତିକୁ ତାଲା ପକାଇ ସଂପାଦି ଦେଲା ପରେ ତାଙ୍କ ଭଳି ସ୍ଥାପତ୍ୟହୀନ ଶହେତାଲା କୋଠା, ତାଙ୍କ ଭଳି ପୋଷାକପରିଚ୍ଛଦ, କଥାଭାଷା କରିବାକୁ ଆମେ ବାଧ୍ୟ କି? – ଯାଠାରୁ ଆହୁରି ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା, ତାଙ୍କ ଭଳି ଚିନ୍ତା କରିବା, ବିଶ୍ୱାସ କରିବା, ଲେଖିବା, ଆଙ୍କିବା ଏବଂ ଗାଇବା ଆମ ପାଇଁ ସ୍ୱାଭାବିକ କି ? ଅମୀମାଂସିତ ପ୍ରଶ୍ନହିଁ ଆଧୁନିକ ଓଡ଼ିଆ ପାଇଁ ଏକ ଚେତନାଗତ ସଂକଟ, ସାଂସ୍କୃତିକ ସଂକଟ । ଏହାର ସମାଧାନ ହୁଏତ, ମନୀଷୀ ୟୁଙ୍ଗଙ୍କ ମତରେ ଆଧୁନିକତାର ସଂଜ୍ଞାରେ ନିହିତ ଅଛି । ସେ କହନ୍ତି ଯେ ପ୍ରକୃତ ଆଧୁନିକ ବ୍ୟକ୍ତିଟି ପାହାଡ଼ ଚୂଳରେ ଠିଆ ହୋଇଥିବା ମଣିଷଟାଏ। ତା' ପଛରେ ଥିବା ବିସ୍ତୃତ ଦିଗ୍‌ବଳୟକୁ ସେ ସ୍ୱୀକାର କରେ, ତାକୁ ଧାରଣ କରେ ଏବଂ ବହନ କରେ ଏବଂ ସମ୍ମୁଖରେ ସମପରିମାଣରେ ପ୍ରସାରିତ ଦିଗ୍‌ବଳୟକୁ ସେ ଅତିକ୍ରମଣ କରିବାକୁ ସଂକଳ୍ପ କରେ। ଯେକୌଣସି କାଳବିନ୍ଦୁରେ ସେ ସମଗ୍ର ମଣିଷ ଜାତିର ଅତୀତକୁ ଧାରଣ କରେ ଏବଂ ସମଗ୍ର ମାନବ ଜାତିର ଭବିଷ୍ୟତକୁ ସ୍ୱୀକାର କରି ତା' ସକାଶେ ଆସ୍ପୃହାବନ୍ତ ହୁଏ । ଏଇଭଳି ସୁବିପୁଳ ଚେତନାର ଅଧିକାରୀ ହୋଇ ନ ପାରିଲେ ବର୍ତ୍ତମାନର ସଂକଟରୁ ଆମର ତ୍ରାଣ ନାହିଁ । ଅତୀତରେ ହୁଏତ ମୋଡ ନେଇ ଯାଉଥିଲେ ସୁଦ୍ଧା ସଂସ୍କୃତିର ପ୍ରବହମାନତା ଅବ୍ୟାହତ ରହୁଥିଲା । କିନ୍ତୁ ବର୍ତ୍ତମାନ ସଂସ୍କୃତିରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ଉନ୍ମୂଳ ବୃକ୍ଷପରି ଯୁଗପ୍ରବାହରେ ଭାସିଯିବାର ଆଶଙ୍କା ହେଉଛି ।

ତେଣୁ ସ୍ଥିରଚିତ୍ତରେ ନିଜକୁ ନିଜର ଅତୀତ ପରମ୍ପରାକୁ ସମୀକ୍ଷା କରିବାର ଅବକାଶ ଆସିଛି । ନିଜର ଗୋସେଇଁ ବାପମାନଙ୍କୁ ସବୁଦିଗରୁ ଦେଖିବା ଏବଂ ଚିହ୍ନିବାର ସମୟ ଆସିଛି । ସେମାନେ ବିଚକ୍ଷଣ ଥିଲେ, ବିଦ୍ୱାନ ଥିଲେ; ଅଥଚ ରାଜାନୁଗ୍ରହ ପାଇଁ ପ୍ରଶସ୍ତି ରଚନା କରୁଥିଲେ । ଅଚିନ୍ତ୍ୟ ଭେଦାଭେଦର ବ୍ୟାଖ୍ୟା କରୁଥିଲେ ଅଥଚ ଶୂଦ୍ରର ଛାଇ ପଡ଼ିଲେ ତିନିଥର ସ୍ନାନ କରୁଥିଲେ । ତାଙ୍କର ମହାନତା ଏବଂ କ୍ଷୁଦ୍ରତା ତାଙ୍କର ଧର୍ମନୀତି ଏବଂ କୁସଂସ୍କାର ଏକତ୍ର ଅବସ୍ଥାନ କରୁଥିଲା । ତାଙ୍କୁ ସମ୍ମାନ ଦିଆ ଯାଇପାରେ ତାଙ୍କ ପାଇଁ ଗର୍ବ କରାଯାଇପାରେ ଅଥଚ ତାଙ୍କର ଜଡ଼ତା, ସଂକୀର୍ଣ୍ଣତା, କ୍ଷୁଦ୍ରାଶୟତା ପାଇଁ ଦୁଃଖିତ, ଲଜ୍ଜିତ ହେବାକୁ ପଡ଼ିପାରେ । ଏଭଳି ସାମୂହିକ ପରିଚୟ ପରେ ଯାହା ସୂକ୍ଷ୍ମ, ସୁକୁମାର, ଉଜ୍ଜ୍ୱଳ ଉଦାର ଯାହା ସଂସ୍କୃତିର ମହାର୍ଘ ଉପାଦାନ ସେସବୁ ଶିରୋଧାର୍ଯ୍ୟ ରୂପେ ଗ୍ରହଣ କରିବାର ସୁଯୋଗ ମିଳିପାରେ ।

ଧରାଯାଉ ଓଡ଼ିଶୀ ନୃତ୍ୟ। ମନ୍ଦିର ପ୍ରାଙ୍ଗଣରେ ଦେବତାଙ୍କୁ ସନ୍ତୁଷ୍ଟ କରିବାକୁ ଦେବଦାସୀମାନଙ୍କର ନୃତ୍ୟ ସେବାର ବ୍ୟବସ୍ଥାର ଥିଲା । କେବଳ ଶ୍ରୀ ମନ୍ଦିରରେ ନୁହେଁ, ଅନ୍ୟାନ୍ୟ ଦେବସ୍ଥାନମାନଙ୍କରେ ମଧ୍ୟ ଏ ରାଜକୀୟ ବିଳାସଟିକୁ ରାଜାଙ୍କ ଦ୍ୱାରା ପ୍ରତିପାଳିତ ଦେବ-ବିଗ୍ରହରେ ଆରୋପ କରାଯାଇଥିଲା । ଏହି ଦେବଦାସୀମାନେ ଶୁଣାଯାଏ ପ୍ରତାପରୁଦ୍ରଙ୍କ ସମୟରେ 'ଗୀତଗୋବିନ୍ଦ'ର ଗାନ ସହିତ ଶୃଙ୍ଗାରପ୍ରଧାନ ନୃତ୍ୟ ପ୍ରଦର୍ଶନ କରୁଥିଲେ । ସାମାଜିକ ଏବଂ ନୈତିକ ମୂଲ୍ୟବୋଧରେ ପ୍ରଭାବିତ ବୈଷ୍ଣବଗୁରୁମାନେ ନାରୀ ନୃତ୍ୟକୁ ଅଶ୍ଳୀଳ ଓ ଅନୈତିକ ଜ୍ଞାନ କରି ପୁଅଗୁଡ଼ିକୁ ଝିଅ ବେଶରେ ନଚାଇଲେ ଏବଂ ଓଡ଼ିଶାରେ ଗୋଟିପୁଅ ନୃତ୍ୟ ଆରମ୍ଭ ହୋଇଗଲା । ଦକ୍ଷିଣରେ ଏକ ଗୋପାଳ-ସଂପ୍ରଦାୟର ହଲ୍ଲୀଷକରୁ ରାସକ୍ରୀଡ଼ାର ସୂତ୍ରପାତ ହେଲା ଏବଂ ଓଡ଼ିଶାରେ ସର୍ବତ୍ର ଅଭିନୀତ ହେଲା । ଭରତମୁନିଙ୍କ ନାଟ୍ୟ ଶାସ୍ତ୍ରାନୁସାରେ ମୁଦ୍ରାଭଙ୍ଗୀ ଅଭିନୟର ଏକ ସ୍ୱତନ୍ତ୍ର ବିନ୍ୟାସ ଘଟିଲା ଓଡ଼ିଶାରେ । ଓଡ଼ିଶୀ ନୃତ୍ୟର ଉଦ୍ଭବ ହେଲା । ଓଡ଼ିଶୀକୁ ଭାରତର ଶାସ୍ତ୍ରୀୟ ନୃତ୍ୟକଳାର ମାନ୍ୟତା ମିଳିଲା ପରେ ସମଗ୍ର ପୃଥିବୀରେ ଏହାର ଆଦର ଏକ ଲକ୍ଷଣୀୟ ଘଟଣା । ସେଇ ସୂଅରେ ହୁଏତ ଓଡ଼ିଶାରେ ଅନୁକରଣ ପଟୁ ବୁଦ୍ଧିମାନ ଲୋକେ ଓଡ଼ିଶୀ ପ୍ରତି ଆଦର ପ୍ରଦର୍ଶନ କରୁଛନ୍ତି । କିନ୍ତୁ ଏ ନୃତ୍ୟ ପଦ୍ଧତିକୁ ଜୀବନଧାରାରେ ଗ୍ରହଣ ନକଲେ ତାହା ଅତୀତର ଶୁଖି ଆସୁଥିବା ବୃନ୍ତ ଉପରେ କ୍ରମଶଃ ମଉଳିଯିବ । ଯୁଗଧର୍ମାନୁସାରେ ଯେଉଁ ରାସାଭିନୟର ଶୃଙ୍ଗାରପ୍ରଧାନ ଭାବ ପ୍ରକାଶକୁ ଆମେ ନୃତ୍ୟର ଉପାଦାନ ରୂପେ ଗ୍ରହଣ କରିଥିଲୁ ତାହା ସେ ସମୟର ପ୍ରୟୋଜନ ଥିଲା । ତାହାକୁ ସେଇଭଳି ଅପରିବର୍ତ୍ତିତ ରଖିବାରେ ଆମ ବାହାଦୁରୀ ନେଇ ଜୀବନର ପ୍ରବହମାନ ଧାରାରେ ତାକୁ ଅଧିକ ଜଡ଼ିତ କରିବା ସମୀଚୀନ ହେବ ନାହିଁକି ? କହିବାର ତାତ୍ପର୍ଯ୍ୟ ହେଲା ଯେ ଆମେ ଓଡ଼ିଶୀକୁ ଗ୍ରହଣ କରିଛୁ ସତ କିନ୍ତୁ ଓଡ଼ିଶୀ ଆମକୁ ଗ୍ରହଣ କରୁନାହିଁ । ସାଂସ୍କୃତିକ ମାଧ୍ୟମ ଜୀବନଧାରାରୁ ବିଚ୍ଛିନ୍ନ ହୋଇଯାଉଛି । ଦକ୍ଷିଣ ଭାରତୀୟ ନୃତ୍ୟ ମାଧ୍ୟମରେ ଆଧୁନିକ ଜୀବନର ପ୍ରତିଫଳନ 'କଥାକଳି'ର ଶାସ୍ତ୍ରୀୟତାକୁ ବ୍ୟାହତ କରୁନାହିଁ । ଆମେ ହୁଏତ ଲୋକନୃତ୍ୟ କିମ୍ବା ଲୋକଗୀତରେ, ଦଣ୍ଡ ଯାତ ଏବଂ ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ, ପାଲା, ଦାସକାଠିଆରେ ପ୍ରସଙ୍ଗ କ୍ରମେ ସମସାମୟିକ ସାମାଜିକ ଜୀବନକୁ ରୂପାୟିତ କରିଛୁ । କିନ୍ତୁ ସର୍ବାଧୁନିକ ପର୍ଯ୍ୟାୟରେ ଏ ସମସ୍ତ ମାଧ୍ୟମକୁ ଅବହେଳାରେ କୌଣସି ଗୁରୁତ୍ୱ ନ ଦେଇ ଛାଡ଼ି ଦେଉଛୁ । ଆମ ସାଙ୍ଗରେ ସେମାନଙ୍କୁ ନେଉନାହୁଁ, ନେବାକୁ ଉପଯୁକ୍ତ ଗୌରବାବହ କିମ୍ବା ପ୍ରୟୋଜନ ମଣୁ ନାହୁଁ। ଫଳରେ ଜୀବନ ଏବଂ ସଂସ୍କୃତି ମଧ୍ୟରେ ଏକ ଅସ୍ୱାଭାବିକ ବ୍ୟବଧାନ ବଢ଼ିଚାଲିଛି।

ସେହିପରି ସଙ୍ଗୀତ । ଓଡ଼ିଶାରେ ବିଗତ ପାଞ୍ଚଟି ଶତାବ୍ଦୀ ଭିତରେ ଅନେକ ପ୍ରସିଦ୍ଧ ସଙ୍ଗୀତ ଶାସ୍ତ୍ରର ପ୍ରଣୟନ ସତ୍ତ୍ୱେ ଏ ସଙ୍ଗୀତ ଅଦ୍ୟାବଧି ଶାସ୍ତ୍ରୀୟ ମାନ୍ୟତା ଲାଭ କରିନାହିଁ । ସେଭଳି କୌଣସି ସମର୍ଥ ପ୍ରୟାସରେ ଓଡ଼ିଶୀ ସଙ୍ଗୀତକୁ ଓଡ଼ିଶୀ ନୃତ୍ୟ ସହିତ ସମପ୍ରତିଷ୍ଠିତ କରାଯାଉନାହିଁ । ତେବେ ଏବେ ମଧ୍ୟ ଓଡ଼ିଶାର ରାଗ ରାଗିଣୀ ପାଇଁ ରୀତିଯୁଗୀୟ କବି ଉପେନ୍ଦ୍ର କବିସୂର୍ଯ୍ୟ ଗୋପାଳକୃଷ୍ଣଙ୍କ ରଚନା ଏକମାତ୍ର ଆଶ୍ରୟ ରୂପେ ଗ୍ରହଣ କରାଯାଇଛି । ପ୍ରଶ୍ନ ହେଉଛି, କାହିଁକି ଆଧୁନିକ ଯୁଗର କବି ଓ ରଚୟିତା ଓଡ଼ିଶୀ ରାଗରାଗିଣୀକୁ ନିଜ ରଚନାରେ ପରିପୁଷ୍ଟ କରୁନାହାନ୍ତି। ସେଥିପାଇଁ ସେମାନେ ଅସମର୍ଥ ନା ଅନିଚ୍ଛୁକ ? ଯେତେବେଳେ କୃଷ୍ଣ ସାହିତ୍ୟ ବା ରାମ ସାହିତ୍ୟ ରଚିତ ହେଲା ସଙ୍ଗୀତମୟତା ଥିଲା ତାର ଅଙ୍ଗସଜ୍ଜା । ସାହିତ୍ୟରେ ସଙ୍ଗୀତ ଧ୍ୱନିତ ହେଉଥିଲା ଏବଂ ସଙ୍ଗୀତରେ ପ୍ରତିଫଳିତ ହେଉଥିଲା ବିଶ୍ୱାସ, ଧ୍ୱନିତ ହେଉଥିଲା ଜୀବନ । ଆମର ହୁଏତ ସେଭଳି କୌଣସି ମୌଳିକ ବିଶ୍ୱାସ ଆଉ ନାହିଁ । ଆମେ ଓଡ଼ିଶୀ ସଙ୍ଗୀତର ଛନ୍ଦକୁ ନିଜ ଜୀବନ ଛନ୍ଦରେ ଗ୍ରହଣ କରିପାରୁନାହିଁ । ସେ କେବଳ କେତେଗୁଡ଼ିଏ ବୃତ୍ତି ଆଶ୍ରିତ ପୁରୁଣାକାଳିଆ ପେସାଦାର ଗୀତ ବୋଲାଳିଙ୍କର ଧନ୍ଦା ଏବଂ ଅନ୍ୟମାନଙ୍କର ସାମୟିକ ମନୋରଞ୍ଜନର ସାମଗ୍ରୀ ହୋଇ ରହିଯାଇଛି । ଆନ୍ଧ୍ରମୁଲକରେ, ତାମିଲନାଡୁ, କର୍ଣ୍ଣାଟକରେ ନାରୀ ପୁରୁଷ, ତରୁଣ ବୃଦ୍ଧ ସମସ୍ତଙ୍କ ତୁଣ୍ଡରେ ବେଳ ପଡ଼ିଲେ କର୍ଣ୍ଣାଟକୀ ସ୍ୱରଲହର ଗୁଞ୍ଜରିତ ହେଉଥାଏ । ଉତ୍ତର ଭାରତୀୟ ସମସ୍ତ କବି ସମ୍ମେଳନରେ କବିତା ଏବଂ ସାଙ୍ଗୀତିକତା ସଂପୃକ୍ତ ହୋଇ ଆତ୍ମପ୍ରକାଶ କରନ୍ତି । ଏ କ୍ଷେତ୍ରରେ ମଧ୍ୟ ଆମେ ଦୁର୍ବଳ ମନସ୍କତାର ପ୍ରମାଣ ଦେଇ ଚାଲିଛୁ । ପରମ୍ପରାକୁ ସାଥିରେ ନେଇପାରୁନାହୁଁ । ତାକୁ ଆମର ଉପଯୋଗୀ କରିପାରୁନାହୁଁ । ଆମର ଅନୁକରଣ ପଟୁତା, ସାମାନ୍ୟ ପ୍ରଭାବରେ ବିଚ୍ୟୁତ ଦିଗଭ୍ରଷ୍ଟ ହେବାର ଲଘୁତା ଆଉ ପ୍ରମାଣିତ ହେବାର ଅପେକ୍ଷା ରଖେ ନାହିଁ । ତାହା ଆମର ଚାରିତ୍ରିକ ବିଶେଷତ୍ୱ ।

ବିଶ୍ୱାସର ଅଭାବ ଆହୁରି ବିସ୍ତୃତ କ୍ଷେତ୍ରରେ ଅନୁଭୂତ ହେଉଛି । ବହୁ ଧର୍ମଧାରା ଏବଂ ଦର୍ଶନର ଅଭିଯାନ ହୋଇଛି ଏ ଅଞ୍ଚଳରେ । ରାଜାନୁସାରୀ ଧର୍ମ । ସେଥିପାଇଁ ଏଇଠି ବିଭିନ୍ନ ମଠ, ମତବାଦ ଏବଂ ଗୋଷ୍ଠୀର ସହାବସ୍ଥାନ ସମ୍ଭବ ହୋଇଛି । ଜୈନ, ବୌଦ୍ଧ କାଳକ୍ରମେ ସଂଖ୍ୟାଲଘୁ ହୋଇଗଲେଣି । କିନ୍ତୁ ଏବେ ମଧ୍ୟ ସାଧାରଣ ହିନ୍ଦୁଟିର ପୂଜାଘରେ ଶିବ, ଦୁର୍ଗା, ଗଣେଶ, ଚୈତନ୍ୟ, ଶିବାନନ୍ଦ, ଶ୍ରୀ ଅରବିନ୍ଦ, ସତ୍ୟସାଇଙ୍କ ପ୍ରତିକୃତି ସହିତ ଜଗନ୍ନାଥ ରହି ପୂଜିତ ହେଉଛନ୍ତି । ଗୀତା, ଭାଗବତ, ପୋଥି ପୂଜା ହେଉଛନ୍ତି । ଚନ୍ଦନ ତୁଳସୀ ଲାଗି ହେଉଛନ୍ତି । କ'ଣ ଧର୍ମ ବିଶ୍ୱାସ ଏ ବ୍ୟକ୍ତିଟିର ? ଏହାର ଇଷ୍ଟ କିଏ ? ଗୁରୁ କିଏ ? ପରମ୍ପରା କ'ଣ ? ସାଧ୍ୟ କଣ,

ସାଧନା କ'ଣ ? ଟିକିଏ ଆଧୁନିକତାର ଛାପ ବାଜିଗଲେ ବୈଠକ ଘରେ ଯିଶୁଖ୍ରୀଷ୍ଟ, ବୁଦ୍ଧ, ବିବେକାନନ୍ଦଙ୍କ ଛବି ସହିତ ମୋନାଲିସା ଚିତ୍ର ଟଙ୍ଗା ରହିଥାଏ । ଅତ୍ୟାଧୁନିକ ରୁଚି ହେଲା ଏସବୁ କିଛି ନ ରଖିବା । ଘୋଡ଼ା ଚିତ୍ର ବା ଗହମକ୍ଷେତ୍ରର ତୈଳ ଚିତ୍ରଟିଏ ଯଥେଷ୍ଟ । ଜଣାଯାଉଛି ସତେଅବା ପରମ୍ପରାର ଯୋଗ ତନ୍ତୁ ଛିଣ୍ଡି ଗଲାଣି; ସ୍ଥଗିତ ହୋଇଗଲାଣି ସଂସ୍କୃତିର ଧାରା । କେନ୍ଦ୍ରିକ ବିଶ୍ୱାସର ଅଭାବ ହେଲେ ଚରିତ୍ର ଦୃଢ଼ ହୋଇପାରେନାହିଁ; ଆତ୍ମବିଶ୍ୱାସ ଜାଗ୍ରତ ହୋଇପାରେ ନାହିଁ । ଆତ୍ମବିଶ୍ୱାସହୀନ ବ୍ୟକ୍ତି ବା ଜାତି ଭାସମାନ ମେଘଖଣ୍ଡ ପରି କୌଣସି ନିର୍ଦ୍ଦିଷ୍ଟ ଦିଗରେ ଗତି କରିପାରନ୍ତି ନାହିଁ । ସାମୟିକ ପ୍ରଭାବରେ ଦୋଳାୟିତ ହେଉଥାନ୍ତି ମାତ୍ର । ଓଡ଼ିଶୀ ପଟ୍ଟଚିତ୍ରର ମଧ୍ୟ ଅବସ୍ଥା ମଧ୍ୟ ତଦ୍ରୂପ। ନବୀକରଣ ହୋଇପାରୁନାହିଁ । ତାହା ସର୍ବଭାରତୀୟ ସ୍ତରରେ ଦୃଷ୍ଟି ଆକର୍ଷଣ କରିଛି । କାଙ୍ଗ୍ରା, ରାଜସ୍ଥାନୀ କିମ୍ବା ବେଙ୍ଗଲ ସ୍କୁଲ ଭଳି ଏଠି କୌଣସି ଧାରା ପଦ୍ଧତି ସୃଷ୍ଟି ହୋଇପାରୁନାହିଁ। ସମୟ ଏବଂ ସୁଯୋଗ ଅନୁସାରେ ଏ ଅଞ୍ଚଳର ସୃଷ୍ଟିଶୀଳ ପ୍ରତିଭା ଯାହା କରିଥିଲା ତାହାକୁ ପୁଣି ଆମେ ସଂଗ୍ରହାଳୟର ବସ୍ତୁରେ ପରିଣତ କରି ଦେଇଛୁ । ବର୍ତ୍ତମାନ ତାଳପତ୍ରରେ ଚିତ୍ର କିମ୍ବା ପାଟକନାରେ କୃଷ୍ଣଙ୍କ କାଳୀୟଦଳନ ଆଙ୍କିବା ସମ୍ଭବ ନୁହେଁ, ସମୀଚୀନ ନୁହେଁ । କିନ୍ତୁ ସେ ଶୈଳୀର ଆଧୁନିକ ବିନିଯୋଗ କରି ସଂସ୍କୃତିର ପ୍ରବହମାନତା ରକ୍ଷା କରିପାରିଲେ ସିନା ଆମେ ନିଜେ ସଂସ୍କୃତିସଂପନ୍ନ ହୋଇପାରନ୍ତେ! ସ୍ଥାଣୁ ଏବଂ କାଳସ୍ରୋତରେ ପରିତ୍ୟକ୍ତ ହୋଇଯାଉଛି ପରଂପରା । ତା'ର ଉଦ୍ଧାର କରିବାକୁ ସମର୍ଥ ଏବଂ ସଂସ୍କୃତି ସଚେତନ ବ୍ୟକ୍ତି ନାହାଁନ୍ତି ଏ ଅଞ୍ଚଳରେ।

ମନ୍ଦିରମାଳିନୀ ଓଡ଼ିଶା । ସାରା ଭାରତବର୍ଷର ଅର୍ଦ୍ଧେକ ମନ୍ଦିର ଏ ଭୂଖଣ୍ଡରେ ଅଛି ବୋଲି ମତପ୍ରକାଶ ପାଇଛି । ମନେହେଉଛି ସତେବା ଗୋଟାଏ ଜାତି ଶହ ଶହ ବର୍ଷ ଧରି କେବଳ ମନ୍ଦିର ଗଢ଼ିବାରେ ଆତ୍ମବିଭୋର ରହିଛି । ସେଭଳି ତଲ୍ଲୀନ ଏବଂ ଦୀର୍ଘ ସାଧନା ନଥିଲେ ଅବଶ୍ୟ କୋଣାର୍କ ଭଳି ସ୍ୱପ୍ନ ପଥରରେ ରୂପାୟିତ ହୋଇପାରିନଥାନ୍ତା । ପୃଥିବୀରେ ଅଦ୍ଭୁତ ସ୍ଥାପତ୍ୟ ଏବଂ ମୂର୍ତ୍ତିକଳାର ଦୃଷ୍ଟାନ୍ତ ଏଇ କୋଣାର୍କ, ଅଥଚ ତାହା ଗଢ଼ା ହୋଇସାରିବାର ଅବ୍ୟବହିତ ପରେ ଆମେ କିପରି ଏପରି ମହାର୍ଘ ଐଶ୍ୱର୍ଯ୍ୟର ଅଯୋଗ୍ୟ ପ୍ରମାଣିତ ହେଲୁ ତାହା ସର୍ବଜନ ବିଦିତ । ଅବହେଳିତ ହୋଇ ଧ୍ୱଂସସ୍ତୂପରେ ପରିଣତ ହୋଇଗଲା ଏ ଜାତିର ସ୍ୱପ୍ନ । ସେଥିପ୍ରତି ଆମର କୌଣସି ଅନୁଶୋଚନା ନାହିଁ । ଏବେ ମଧ୍ୟ ତାକୁ ସେପରି କୌଣସି ଗୁରୁତ୍ୱ ଦେଇ ଶିଖିନାହୁଁ । କୌଣସି ଓଡ଼ିଆ କୋଣାର୍କ ପାଇଁ ଚିନ୍ତିତ କିମ୍ବା ସତକୁସତ ଗର୍ବିତ ଥିଲା ପରି ଜଣା ପଡୁନାହିଁ । ସ୍ଥାପତ୍ୟ ରହିଗଲା ମନ୍ଦିରରେ । ସେହି ବିଚକ୍ଷଣ ବିଦ୍ୟାର

ପ୍ରୟୋଗ କରି ନବର ଅଟ୍ଟାଳିକା ଏ ଜାତି ନିର୍ମାଣ କଲାନାହିଁ । ଭାସ୍କର୍ଯ୍ୟ ରହିଗଲା ମନ୍ଦିରରେ । ଏ ଅଦ୍ଭୁତ ମୂର୍ତ୍ତିକଳାକୁ ପୁନର୍ଜୀବିତ କଲାନାହିଁ । ଅନ୍ତତଃ ଗବେଷଣା କରି ସେ ମୂର୍ତ୍ତିଗୁଡ଼ିକର ମହାନତା ବିଷୟରେ ନିବନ୍ଧଟିଏ ବି ଲେଖିଲା ନାହିଁ। ସବୁ ଗବେଷଣା ହେଲା, ଏ ମନ୍ଦିରରେ କେଉଁ ଦେବତା ପୂଜା ପାଉଥିଲେ, କେଉଁ ରାଜା ଏହାକୁ ତୋଳାଇ ଥିଲେ। ସତେବା ଏ ଦୁଇଟି ନାଁ ଜାଣିଦେଲେ ଆମେ ପ୍ରସ୍ତରରେ ବିକଶିତ ଏ କମନୀୟ କବିତାଗୁଡ଼ିକୁ ବୁଝିଯାଇପାରିବା। ଏହା ମଧ୍ୟ ଆମ ଜୀବନଧାରାରୁ ବିଚ୍ଛିନ୍ନ ହୋଇ ରହିଛି ଏବଂ ବ୍ୟବଧାନ ବଢ଼ିଚାଲିଛି। ଆମେ ଯେ କୋଣାର୍କ ଗଢ଼ିଥିଲୁ ତା'ର ଆଧୁନିକ ପ୍ରମାଣ ଦେଲାଭଳି କାରିଗର ନାହାଁନ୍ତି, ପରଂପରା ନାହିଁ। କୋଣାର୍କ ଗଢ଼ିଲାବେଳେ ଯେମିତି ହୋଇଥିଲା ସେଭଳି ଶିଳ୍ପୀ ଛାଉଣି କରି ଏବେ କ'ଣ ତା'ର ପୁନରାବୃତ୍ତି କରାଯାଇପାରନ୍ତା ? ତା'ର କିନ୍ତୁ ସମୀଚୀନତା ନଥିବାରୁ ପ୍ରଶ୍ନର ପ୍ରୟୋଜନ ନାହିଁ କାରଣ ଏବେ ପିରାମିଡ୍ କିମ୍ୱା କଲୋସିଅମ୍ ଗଢ଼ିବା ଭଳି କୋଣାର୍କ ଗଢ଼ିବା ମଧ୍ୟ ଏକ ଅବାନ୍ତର ପ୍ରସ୍ତାବ। କିନ୍ତୁ ହାତଭଙ୍ଗା ଭିନସ୍ ଡ଼ି ମିଲୋ ଭଳି କୋଣାର୍କର କୌଣସି ମୃଦାଙ୍ଗିନୀକୁ ଆମେ ଶ୍ରଦ୍ଧାରେ ଛୋଟ ବଡ଼ ଆକାରରେ ଅନୁକୃତି କରି ଆମ ବୈଠକ ଘରେ ରଖିପାରନ୍ତେ କି ? – ନିଜର ସମ୍ପଦ ପ୍ରତି ବିମୁଖତା, ହୀନମନ୍ୟତା, ନିଶ୍ଚେଷ୍ଟ ପଡ଼ି ରହିବାର ଅସହାୟତା ଆମକୁ ଦରିଦ୍ର କରି ଦେଇଛି, ଧନ, ମାନ ଏବଂ ମର୍ଯ୍ୟାଦାରେ।

ଆତ୍ମପ୍ରକାଶର ନ୍ୟୁନତମ ଏବଂ ବଳିଷ୍ଠତମ ମାଧ୍ୟମ ହେଉଛି ଭାଷା । ବର୍ତ୍ତମାନ ଯାହା ଓଡ଼ିଆ ଭାଷା ରୂପେ ଗୃହୀତ ହେଉଛି, ତା'ର ଉଦ୍ଭବ, କ୍ରମବିକାଶ ଏବଂ ସମ୍ଭାବନା ଅତି ବୈଚିତ୍ର୍ୟମୟ । ''ବର୍ଷାକାଳରେ ଓଳିରୁ ପାଣି ଛିଡୁଛି । ଅଥାର ହାଣ୍ଡିରେ ଏଣ୍ଡୁରି ସିଝୁଛି । ଖାଇଦେଇ ବାହାରିଲେ ହୁଅନ୍ତା ହେଲେ ଆପନା ପାତ୍ର ଦରଖାସ୍ତ ଘେନି କଚିରିକୁ ନ ଗଲେ ଓକିଲକୁ ଫିସ୍ ନ ଦେଲେ ଏଇଲାଗେ ଆଉ ନିସ୍ତାର ନାହିଁ । ସେ ଅପିଲ କରି କରି ନୟାନ୍ତ ହେଲାଣି । ଏଥର ବଡ଼ ହାକିମ ପାଖରେ କଥା ପେଶ୍ ହେବ ।'' ଏ ସହଜବୋଧ ବାକ୍ୟଗୁଡ଼ିକରେ ସଂସ୍କୃତ, ଫାରସୀ, ଉର୍ଦ୍ଦୁ, ତେଲୁଗୁ, ଇଂରାଜୀ ଆଦି ଶବ୍ଦ ପ୍ରକାଶ୍ୟ ବା ପ୍ରଚ୍ଛନ୍ନ ଭାବରେ ବ୍ୟବହୃତ ହୋଇଛନ୍ତି । ଏ ସବୁ ଅନେକ କାଳରୁ ଆସି ଭାଷା ପରିସର ଭିତରେ ଆସନ ଜମେଇ ରହିଛନ୍ତି । ଭାଷା କୌଣସି ସ୍ଥିରଭୂମି ନୁହେଁ । ତାହା ଏକ ସ୍ରୋତ ସେଥିରେ ଉପନଦୀମାନେ ଆସି ଏଭଳି ମିଶିଯାଆନ୍ତି । କଥିତ ଭାଷାର ଏଭଳି ବିସ୍ତାର ତା'ର ଉପାଦାନଗତ । କିନ୍ତୁ ତା'ର ଅନ୍ତର୍ନିହିତ ଶକ୍ତି ଏବଂ ଐଶ୍ୱର୍ଯ୍ୟକୁ କେବଳ କବି ଓ ସାହିତ୍ୟକାର ଉଦ୍‌ଘାଟିତ କରନ୍ତି । ସାହିତ୍ୟ ଭାଷାକୁ ମାଧ୍ୟମ କରି ବ୍ୟବହାର କରେ କିନ୍ତୁ ତାକୁ ମାର୍ଜିତ ସମ୍ଭ୍ରାନ୍ତ ଗଭୀର ଏବଂ ବର୍ଣ୍ଣାଢ଼୍ୟ କରି ତୋଳେ ।

ଆଶ୍ଚର୍ଯ୍ୟର କଥା ଯେ ମୟୂରଭଞ୍ଜ ପ୍ରାନ୍ତରୁ କୋରାପୁଟ ସୀମାଯାଏଁ ଆଧୁନିକ ଓଡ଼ିଆ ବୋଲି ଚିହ୍ନିତ ଭୂଖଣ୍ଡର ଅଧିବାସୀ ଓଡ଼ିଆ କହନ୍ତି ନାହିଁ । ଅର୍ଥାତ୍ ଯାହା ଓଡ଼ିଆ ରୂପେ ସାମ୍ବିଧାନିକ ମାନ୍ୟତା ପ୍ରାପ୍ତ ତାହା ଏ ଅଞ୍ଚଳର ଅଧିକାଂଶ ଲୋକଙ୍କର ବ୍ୟବହୃତ ଭାଷା ନୁହେଁ । କନ୍ଧ କୋହ୍ଲ ସାନ୍ତାଳ ପରଜା ଗଦ୍‌ବା ଆଦୌ ଓଡ଼ିଆ କହନ୍ତି ନାହିଁ କି ବୁଝନ୍ତି ନାହିଁ । ବାକି ଯେ ରହିଲେ କଳାହାଣ୍ଡି, ବଲାଙ୍ଗିର, ସୋନପୁର, ସମ୍ବଲପୁର, ଗଞ୍ଜାମ, କୋରାପୁଟର ଲୋକ ସେମାନେ ତାଙ୍କ ଢ଼ଙ୍ଗରେ ଓଡ଼ିଆ କହନ୍ତି । ଲିଖିତ ଓଡ଼ିଆ ସହିତ ତା'ର ସମ୍ପର୍କ ବେଳେ ବେଳେ ଅତି କ୍ଷୀଣ । ଯଦି ଭାଷାଭିତ୍ତିକ ପ୍ରଦେଶ ଗଠନର ପଚାଶ ବର୍ଷ ପରେ ଅବସ୍ଥା ଏପରି ତେବେ ସୁଦୂର ଅତୀତରେ ଯେତେବେଳେ ନିର୍ଦ୍ଦିଷ୍ଟ ପ୍ରଦେଶଟିଏ ନ ଥିଲା, ବହିରାଗତ ଶାସକମାନେ ଆସି ଏ ଭୂମିକୁ ଭୋଗଦଖଲ କରି ଅଧିକାର କରୁଥିଲେ, ପ୍ରାୟ ଆଚାର୍ଯ୍ୟ ଶଙ୍କରଙ୍କର ବ୍ରାହ୍ମଣ୍ୟଧର୍ମ ପ୍ରତିଷ୍ଠା କରିବା ସମୟକୁ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ବଜ୍ରଯାନୀ ସିଦ୍ଧାଚାର୍ଯ୍ୟମାନେ ତାଙ୍କର ଚର୍ଯ୍ୟାଗୀତି ସହିତ ନେପାଳ କିମ୍ବା ତିବ୍‌ବତକୁ ପଳାୟନ କରିଥିଲେ, ସେତେବେଳେ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଚିହ୍ନିତ ଭାଷାରୂପେ କୌଣସି ଭୂଖଣ୍ଡରେ ବ୍ୟବହୃତ ହେଉଥିଲା ବୋଲି କହିବା ଯୁକ୍ତିସଂଗତ ହେବନାହିଁ । ତେବେ ପୂର୍ବାଞ୍ଚଳୀୟ ମିଶ୍ର ଭାଷାରୁ କିଛି କିଛି ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ଜାହିର କରୁ କରୁ ଅହମିଆ, ବଙ୍ଗଳା ଏବଂ ଓଡ଼ିଆ ଭାଷା ବିବର୍ତ୍ତିତ ହୋଇଥିଲା ବୋଲି ଅନୁମାନ କରାଯାଇପାରେ। ସଂସ୍କୃତ-ପ୍ରଧାନ ସଂସ୍କୃତିରେ ଓଡ଼ିଆ କେବଳ ନିମ୍ନ ବର୍ଗର ଲୋକଙ୍କ ପାଖରେ ରହିଥିଲା, ଅନ୍ତତଃ କପିଳେନ୍ଦ୍ରଙ୍କ ସମୟ ପର୍ଯ୍ୟନ୍ତ । ସେ ପ୍ରଥମେ ଓଡ଼ିଆରେ ଶିଳାଲିପି ଉତ୍କୀର୍ଣ୍ଣ କରିଥିଲେ । ତା'ସହିତ ତେଲୁଗୁ ଏବଂ ସଂସ୍କୃତ ଭାଷାନ୍ତର ମଧ୍ୟ ରହିଥିଲା ।

ଲୋକବ୍ୟବହାରରେ ଭାଷା ଗତିଶୀଳ ଏବଂ ଜୀବନ୍ତ ହୁଏ । ଥରେ କିନ୍ତୁ ସାହିତ୍ୟ ସୃଷ୍ଟି ହୋଇଗଲେ ଭାଷା ବୟଃପ୍ରାପ୍ତ ହୁଏ ଏବଂ ପୁଷ୍ପିତ ହୁଏ । ସମ୍ଭାବନାମୟ ହୋଇ ଉଜ୍ଜ୍ୱଳି ଉଠେ । ତା'ର ଅନ୍ତର୍ନିହିତ ଶକ୍ତି, ତା'ର ଐଶ୍ୱର୍ଯ୍ୟ ଏବଂ ମର୍ଯ୍ୟାଦା ବିକଶିତ ହୁଏ । ଚର୍ଯ୍ୟାପଦଠାରୁ ଅଧୁନାତନ କବିତା ପର୍ଯ୍ୟନ୍ତ ପ୍ରାୟ ବାରଶହ ବର୍ଷର ଗତିଶୀଳ ଇତିହାସ । ଏହାର ପ୍ରାୟ ମଧ୍ୟ ଭାଗରେ ଉଭା ହୋଇଛନ୍ତି ସାରଳା ଦାସ, ଓଡ଼ିଆ ସାହିତ୍ୟର ଆଦିକବି, ତାଙ୍କ ପାଖକୁ ଠିଆ ହୋଇଛନ୍ତି ବଳରାମ ଜଗନ୍ନାଥ ଆଦି ପଞ୍ଚସଖା। ଯେକୌଣସି ଉତ୍‌କ୍ରାନ୍ତି ପାଇଁ ଏକ ବିପ୍ଳବର ପ୍ରୟୋଜନ ହୁଏ ଏବଂ ସେଥିପାଇଁ ପ୍ରୟୋଜନ ହୁଏ ବିଦ୍ରୋହୀ ପ୍ରତିଭା। ଏ ସବୁ କବି, ସେଇ ଅର୍ଥରେ ବିଦ୍ରୋହୀ । ଘୋର ଅହଂକାରୀ ରାଜପୋଷିତ ଭାଟ ପଣ୍ଡିତଙ୍କର ସଂସ୍କୃତ ଭାଷା ଓ ସାହିତ୍ୟ ବିରୁଦ୍ଧରେ ତାଙ୍କର ବିଦ୍ରୋହ । ବହୁକାଳ ସଂସ୍କୃତ ସାହିତ୍ୟର ଗୌରବ ଅର୍ଜନ

କରିସାରିଥିଲା । ସେତେବେଳେ କେବଳ ପ୍ରଚାର ଚାଲିଥିଲା ଯେ ସଂସ୍କୃତ ହିଁ ଦେବଭାଷା କିନ୍ତୁ ତା'ସହିତ ଜନଭାଷାର କୌଣସି ସମ୍ପର୍କ ନଥିଲା । ଏ ପଥର ବୋଝତଳୁ ନିଷ୍କୃତି ଚାହୁଁଥିଲା ଜୀବନ୍ତ ଭାଷା । ଠିକ୍ ଯେଉଁ ଢ଼ଙ୍ଗରେ ଚର୍ଯ୍ୟାସାଧକମାନେ ଲୋକଭାଷାକୁ ସ୍ୱୀକୃତି ଦେଇ ସାହିତ୍ୟ, ଧର୍ମ ଦର୍ଶନକୁ ଜୀବନର ନିକଟତର କରିଥିଲେ ଏବଂ ସଂସ୍କୃତ ପରି ବିଶାଳ ଅଚଳ ଅନୁଷ୍ଠାନକୁ ଅସ୍ୱୀକାର କରିଥିଲେ ସେହିଭଳି ସାହସିକ କାର୍ଯ୍ୟ କଲେ ଏ ଭାଷାର ଆଦିକବି । ''ସଂସ୍କୃତ କୂପଜଳ୍, କବୀରା ଭାଷା ବହତା ନୀର ।'' ଜୀବନଧାରା ଭାଷାସ୍ରୋତକୁ ଓହ୍ଲେଇ ଆସିଲା ସାହିତ୍ୟ । ପ୍ରବହମାନ-ଭାଷା ପ୍ରତିଭାର ସମର୍ଥନ ଲାଭ କରି ଉଜ୍ଜ୍ୱଳ ସାହିତ୍ୟରୂପେ ଠିଆହେଲା । ମହାଭାରତ, ରାମାୟଣ, ଭାଗବତ ରଚିତ ହେଲା ଓଡ଼ିଆରେ, ସର୍ବଭାରତୀୟ ସଂସ୍କୃତିର ମୂଳପିଣ୍ଡ ରୂପେ ଶତାବ୍ଦୀ ଶତାବ୍ଦୀ ଧରି ତାକୁ ରସପୁଷ୍ଟ କରି ରଖିଥିବା ଏ ମହାପୁରାଣମାନେ ପ୍ରସାରିତ ହୋଇ ଏ ଆଞ୍ଚଳିକ ଭାଷାରେ ଜନ-ଜୀବନକୁ ସ୍ପର୍ଶ କଲେ । ଚର୍ଯ୍ୟାପଦଠାରୁ ସାତଶହ ବର୍ଷର କ୍ରମ ପ୍ରସ୍ତୁତି, ବିକାଶ, ଜୀବନ ଉଦ୍ଦୀପନାରେ ସ୍ପନ୍ଦିତ ହେଉଥିବା ଭାଷା ''ରୁଦ୍ର ସୁଧାନିଧି''ରେ ବା 'କଳସା ଚଉତିଶା'ରେ ଯାହା ସାମାନ୍ୟ ସ୍ଫୁରିତ ହୋଇଥିଲା ତାହା ଏହି ତିନି ମହାତେଜସ୍ୱୀ କବିଙ୍କଠାରୁ ସମ୍ମାନ ଓ ସ୍ୱୀକୃତି ଲାଭ କରି ବଳିଷ୍ଠ ସାହିତ୍ୟରେ ପରିଣତ ହେଲା । ସାରଳା ମହାଭାରତ, ଦାଣ୍ଡି ରାମାୟଣ ଏବଂ ଜଗନ୍ନାଥ ଦାସ ଭାଗବତ ଓଡ଼ିଆ ଭାଷାର ପ୍ରସ୍ଥାନ ତ୍ରୟୀ । ଏମାନଙ୍କ ଆବିର୍ଭାବ ଏକ ବିପ୍ଳବ । ଏ ଭାଷାର ପ୍ରଥମ ମୁକ୍ତି ସଂଗ୍ରାମ, ପ୍ରଥମ ଜନ୍ମୋତ୍ସବ ।

ଏହାଦ୍ୱାରା ଭାଷା ସବୁ ବାଡବନ୍ଧ ଭାଙ୍ଗି ଧସେଇ ପଶିଲା ସାହିତ୍ୟରେ । ଜୀବନର ବିପୁଳତା, ତା'ର ସୁଖ ଦୁଃଖ ଆଲୋକ ଅନ୍ଧାର ଏ ପ୍ରାନ୍ତର ବିଶ୍ୱାସ, ବୁଝାମଣା ସବୁ ବିଭିନ୍ନ ଆଖ୍ୟାୟିକା ମାଧମରେ କାବ୍ୟ ଆୟତନକୁ ପ୍ରବେଶ କଲା । ସାରଳା ବା ଜଗନ୍ନାଥ ସଂସ୍କୃତ ଶାସ୍ତ୍ରର ଅନୁବାଦକ ନ ଥିଲେ । ସେମାନେ ଥିଲେ ପ୍ରବଳ ପ୍ରତିଭାଧର ସ୍ରଷ୍ଟା । ସେମାନେ ସାହିତ୍ୟରେ ଜୀବନ ସଂଚାର କଲେ । ସରଳ ସ୍ୱଚ୍ଛନ୍ଦ ଭାବଗ୍ରାହୀ ଆବେଗବାହୀ ଦାଣ୍ଡିବୃତ୍ତ ଯେପରି ଏଠିକା ଜୀବନର ବିପୁଳତା, ଶୁଦ୍ଧ, ସରଳ ନିର୍ମଳ ନବାକ୍ଷରୀ ମଧ ଏ ଜାତିର ଆଭ୍ୟନ୍ତର ଛନ୍ଦ, ତା'ର ଆତ୍ମାର ସଙ୍ଗୀତ ।

ନୂତନ ଅଲକ୍ଷ୍ୟରେ ପ୍ରବେଶ କରୁଥାଏ, ତାକୁ ଦେଖି ନଦେଖିଲା ପରି ପୁରାତନ ସହିଯାଏ । କିନ୍ତୁ ଏମିତି ବିସ୍ଫୋରଣ ଘଟାଇ, ଭୂମି ବିଦାରଣ କରି ପ୍ରବଳ ପ୍ରତିଷ୍ଠା ଜାହିର କରୁଥିବା ନୂତନକୁ ପୁରାତନ ସମ୍ଭାଳି ପାରେ ନାହିଁ । ଏଣୁ ଏ ଆଦି ଉନ୍ମେଷ ପରେ ପ୍ରତିକ୍ରିୟା ଦେଖାଦେଲା । ବିରୋଧ ହେଲା । ପଣ୍ଡିତମାନେ କହିଲେ, 'ଓଡ଼ିଆ ଏକ ଅସଂସ୍କୃତ ବ୍ରାତ୍ୟ ଭାଷା; ଅଶିଷ୍ଟ ଅନୁନ୍ନତ ବର୍ବରୋଚିତ ଭାଷା । ଏଥିରେ ଶାସ୍ତ୍ର

ଲେଖାହେଲେ ସ୍ୱୟଂ ଶାସ୍ତ୍ର ହିଁ ଅଶୁଦ୍ଧ ହୋଇଯିବ । ଏଣୁ ତେଲି ଭାଗବତ ଅପାଠ୍ୟ, ଅଦ୍ଭୁଆ ମହାଭାରତ ଅପାଠ୍ୟ, ସଭା ପଣ୍ଡିତଙ୍କ ଆନ୍ଦୋଳନରେ ଶିଷ୍ଟ ସମାଜ ଯୋଗଦାନ କରି ସ୍ୱଭାଷା ପରାଙ୍‌ମୁଖ ହେଲା । କଥିତ ଜୀବନ୍ତ ଭାଷାକୁ ଜୀବନରୁ ବହିଷ୍କାର କଲା । ତେଣିକି ଉଦ୍ୟମ ହେଲା କେମିତି ବ୍ରାତ୍ୟକବଳରୁ ମୁକ୍ତ ହୋଇ ଏ ଭାଷା 'ଗୀର୍ବାଣ ଭାଷା'ରେ ପରିଣତ ହେବ । ଫଳତଃ ପ୍ରାୟ ତିନି ଶହ ବର୍ଷ ଧରି ଭାରବୀ ଆଦି ରୀତିବାଗୀଶମାନଙ୍କ ଅନୁକରଣ କରି ଏକ ରୀତିପ୍ରଧାନ କାବ୍ୟଯୁଗ ଆରମ୍ଭ ହେଲା । କାବ୍ୟ ପ୍ରତିଭାର ପ୍ରଥମ ଲକ୍ଷଣ ଶବ୍ଦ-ସାମର୍ଥ୍ୟ, ଜୀବନ ହେଲା ଶୃଙ୍ଗାର-ପ୍ରଧାନ, ସୌନ୍ଦର୍ଯ୍ୟ କେବଳ ଅଳଂକାର-ସାପେକ୍ଷ । ଏଯୁଗର ସମ୍ରାଟ ହେଲେ ଉପେନ୍ଦ୍ର । ତାଙ୍କ ସମକକ୍ଷ ହୋଇ ଠିଆ ହେଲେ ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ । ରାମ କଥା ଏବଂ କୃଷ୍ଣ-ସାହିତ୍ୟ ମାଧ୍ୟମରେ ମାନବ ଚେତନାର ଆଦିମତମ ଆଦିରସକୁ ଅତୁଳନୀୟ ସାମର୍ଥ୍ୟରେ କାବ୍ୟରୂପ ପ୍ରଦାନ କରାଗଲା । ବୈଷ୍ଣବ ସାହିତ୍ୟ ହେଉ ବା ଅଭିଜାତ ପ୍ରସାଦ-ସାହିତ୍ୟ ହେଉ ଅପ୍ରାକୃତ ପ୍ରେମମୂର୍ତ୍ତି ହୁଅନ୍ତୁ ଅଥବା ଚନ୍ଦ୍ରଭାନୁ-ସିଂହଳ ଜେମା ହୁଅନ୍ତୁ ଏଥିରେ ଜୀବନର ମୁକ୍ତତା, ତା'ର ଅସୀମ ବିସ୍ତାର ସୁଖଦୁଃଖ ସଂଘାତର ଚିହ୍ନ ସୁଦ୍ଧା ନାହିଁ । ଏଥିରେ ଜୀବନ କହିଲେ ପ୍ରଣୟ, ଦୁଃଖ କହିଲେ ବିରହ ଏବଂ ସୁଖ କହିଲେ ମିଳନକୁ ହିଁ ବୁଝାଏ । ଏ ପର୍ଯ୍ୟାୟଟି ଚେତନାଗତ ବିଚାର ଦୃଷ୍ଟିରୁ ଏକ ପ୍ରତିଲୋମ ପର୍ବ । ଯେଉଁ ସଭା-ସାହିତ୍ୟ ରୂପକ 'ସଂସ୍କୃତ କୂପଜଳ'ରୁ ସାରଳାଦାସ ମୁକ୍ତି ଘୋଷଣା କରିଥିଲେ ଅବିକଳ ସେଇଠାକୁ ପୁଣି ସାହିତ୍ୟକୁ ନେଇଗଲେ ରୀତିଯୁଗୀୟ କବିକୁଳ । ତାଙ୍କ ଶିଳ୍ପ ନୈପୁଣ୍ୟର ପଟାନ୍ତର ନାହିଁ । କିନ୍ତୁ ସେମାନେ ଯାହା ଲେଖୁଥିଲେ ସେଥିରେ ଜନଭାଷା କିମ୍ବା ଜୀବନଭାଷା ନଥିଲା । ବିଷୟବସ୍ତୁ ଜୀବନ ସହିତ ସମବ୍ୟାପ୍ତ ନଥିଲା ।

ସଂସ୍କୃତି କ୍ଷେତ୍ରରେ ତା'ର ପରବର୍ତ୍ତୀ ଯୁଗ ଏକ ସଂଘାତ ଏବଂ ମନ୍ଥନର ଯୁଗ । ଓଡ଼ିଶାରେ ଇଂରାଜ ଶାସନ ସହିତ ଇଂରାଜୀ ଭାଷା ଓ ସାହିତ୍ୟର ଅନୁରାଗ ବଢ଼ିବା ସଙ୍ଗେ ସଙ୍ଗେ ଜୀବନର ଦୃଷ୍ଟିଭଙ୍ଗୀ ଏବଂ ବିଚାର ପରିପକ୍ୱତା ଆସି ଦେଖାଦେଲା । ସମଗ୍ର ଭାରତ ଭୂମିରେ ସେତେବେଳେ ଏକ ନୂତନ ଜାଗୃତିର କଂପନ ଅନୁଭବ ହେଲା । ଶାସକମାନେ ଭାରତୀୟଙ୍କୁ ଘୃଣା କରୁଥିଲେ । ନୀଚ ଜ୍ଞାନ କରି ଦୟା କରୁଥିଲେ । ଭାରତର ସାଂସ୍କୃତିକ ପରମ୍ପରାକୁ ହେୟ ମୂଲ୍ୟହୀନ ମଣୁଥିଲେ । ସଂଜ୍ଞା ହରାଇ ପଡ଼ିଥିବା ବ୍ୟକ୍ତି ଚେତନା ଫେରିପାଇଲେ ଯେପରି ସର୍ବପ୍ରଥମେ ନିଜକୁ ହିଁ ଆବିଷ୍କାର କରେ ସେହିପରି ଭାରତୀୟମାନେ ନିଜେ ନିଜକୁ ପ୍ରଶ୍ନ କଲେ, ନିଜକୁ ଆବିଷ୍କାର କଲେ । ଫଳ ହେଲା ଏକ କ୍ରମବର୍ଦ୍ଧମାନର ଉଗ୍ର ଜାତୀୟତାବାଦ । ନୂଆ

କରି ଗୀତାଶାସ୍ତ୍ର ପଢ଼ାଗଲା । ଦର୍ଶନ ଆଲୋଚନା ହେଲା । ସାହିତ୍ୟର ବିଭବକୁ ସ୍ୱୀକାର କରାଗଲା । ଏହି ସଂଘାତ ଏବଂ ଜାଗୃତିରୁ ହିଁ ଆଧୁନିକ ଯୁଗର ସୂତ୍ରପାତ ହେଲା । ପାଶ୍ଚାତ୍ୟ ଜଗତର ବସ୍ତୁନିଷ୍ଠତା, ବିଜ୍ଞାନ କୌଶଳ, କର୍ମନିପୁଣତା ସାଙ୍ଗକୁ ନୂତନ ତଥ୍ୟମାନ ସମସ୍ତ ମାନବ ଜାତିର ଚେତନାକୁ ଆଲୋକିତ କଲା । ଡାରୱିନ୍‌ଙ୍କ ବିବର୍ତ୍ତନବାଦ, ଫ୍ରଏଡ୍‌ଙ୍କ ମନସ୍ତତ୍ତ୍ୱ ଏବଂ କିଅର୍କଗୋର୍‌ଙ୍କ ଅସ୍ତିତ୍ୱବାଦୀ ଦର୍ଶନ, ଜୀବନର ପରିଭାଷା ବଦଳାଇ ଦେଲା । ଭାରତ ଭୂମିରେ ମଧ୍ୟ ପହଞ୍ଚିଲା ଏ ଚିନ୍ତା ବିପ୍ଲବର ତରଙ୍ଗ । ଭାରତ ଭୂମିରୁ ପୁଣିଥରେ ଉପନିଷଦ ବାଣୀ, ଗଭୀର ଗମ୍ଭୀର ଜୀବନବୋଧ ମହାପୁରୁଷ କଣ୍ଠରେ ଧ୍ୱନିତ ହେଲା, ସାରା ପାଶ୍ଚାତ୍ୟ ଜଗତକୁ ଚମତ୍କୃତ କରି । ସେଠାକାର ପଣ୍ଡିତ ମନୀଷୀଙ୍କ ଚିନ୍ତା କ୍ଷେତ୍ରକୁ ଆଲୋଡ଼ିତ କଲା ପ୍ରଭାବିତ କଲା । ଏଭଳି ଭାବରେ ଆରମ୍ଭ ହେଲା ଏକ ମନ୍ଥନ । କାବ୍ୟଧାରା ବଦଳିଗଲା । ଜୀବନଧାରା ବଦଳିଗଲା ।

ବୁଝାମଣାରେ କିନ୍ତୁ ପାଶ୍ଚାତ୍ୟ ସଂସ୍କୃତି ଯୋଡ଼ି ହୋଇଗଲା ଇଂରେଜମାନଙ୍କ ସାଥିରେ ଏବଂ ରାଜାମାନେ ଯୋଡ଼ି ହୋଇଗଲେ ଶାସନ-ସିଂହାସନ ସାଥିରେ । ଏଣୁ ଚିରାଚରିତ ରୀତରେ ଗୋଟିଏ ଗୋଷ୍ଠୀ ରାଜାନୁଗ୍ରହ ପାଇଁ ସାଇବି ଅନୁକରଣ କରି ପଶ୍ଚିମାଭିମୁଖୀ ହୋଇଗଲେ । ଅନ୍ୟ ଗୋଷ୍ଠୀ ତା'ର ବିରୋଧ କଲେ । ଫଳରେ ସ୍ୱାଧୀନତା ସଂଗ୍ରାମରେ ମାତ୍ର ମୁଷ୍ଟିମେୟ ଇଂରାଜଙ୍କ ପଛରେ ଏକ ଇଂରାଜ ମୁଖାପେକ୍ଷୀ, ଇଂରାଜ-ଅନୁଗତ ଅସଂଖ୍ୟ ଭାରତୀୟ ଅନ୍ୟପକ୍ଷର ନିଛକ ଭାରତୀୟଙ୍କୁ ମୁକାବିଲା କଲେ । ମାନବଜାତି ବିଭାଜିତ ହୋଇ ବିଶ୍ୱଯୁଦ୍ଧ ଲଢ଼ିଲା । ଭାରତୀୟମାନେ ବିଭାଜିତ ହୋଇ ମୁକ୍ତିସଂଗ୍ରାମ ଲଢ଼ିଲେ । ସଂଗ୍ରାମର ପରିଣତି ସ୍ୱରୂପ ସମସ୍ତେ କ୍ଷତବିକ୍ଷତ ହେଲେ ଦେହରେ, ମନରେ, ଚେତନାରେ । ସଂସ୍କୃତିର ପ୍ରବାହ କିଛିକାଳ ଅବରୁଦ୍ଧ ହୋଇଗଲା ।

ଜାତୀୟତାର ଜୁଆର ଉଠି ଆସୁଥିଲାବେଳେ ରାଧାନାଥ, ଗଙ୍ଗାଧର, ଫକୀରମୋହନ ଏବଂ ଭକ୍ତକବି ମଧୁସୂଦନ ସାହିତ୍ୟ ରଚନା କଲେ ଗୋଟାଏ ନୂତନ ଉତ୍ସାହରେ । ପାଶ୍ଚାତ୍ୟ ସାହିତ୍ୟରୁ ଶୈଳୀ, ଛନ୍ଦ, ବିଷୟବସ୍ତୁ ନେବାରେ ତାଙ୍କର ଦ୍ୱିଧା ନଥିଲା । କିନ୍ତୁ ମୂଳତଃ ସେମାନେ ଥିଲେ ଜାତୀୟତାବାଦୀ, ସଂସ୍କୃତି ସଚେତନ କବି । ଏ ସମୟରେ ଆବିର୍ଭୂତ ହେଲେ ଭୀମଭୋଇ । ଚର୍ଯ୍ୟାପଦ, ସାରଳା ପଞ୍ଚସଖା ପରମ୍ପରାର ସେ ଦାୟାଦ । ଜୀବନର ଗଭୀରତମ କେନ୍ଦ୍ରରୁ ନିଃସାରିତ ତାଙ୍କ ରଚନା । ସେଇଭଳି ରୁଦ୍ରସୁଧାନିଧିର ଗଦ୍ୟକୁ ବିକଶିତ କଲେ ଫକୀରମୋହନ । ସେମାନେ ସମସ୍ତେ ଦେଶପ୍ରେମୀ ଥିଲେ । ଆପଣାର ସବୁକିଛି ସେମାନଙ୍କୁ ସୁନ୍ଦର ଦିଶୁଥିଲା । ଏ

ଭୂମିର ନଦୀ ଗିରି ବନ ସବୁ ସୁନ୍ଦର । ଏହା ଏକ ଚେତନାର ଅନୁଭବ । ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ ଅତି ସ୍ପଷ୍ଟ ହେଲେ ସୁଦ୍ଧା ସେମାନେ ଭୂଇଁ ଛାଡ଼ିନଥିଲେ । ଝଡ଼ ବହିଲେ ପ୍ରକାଣ୍ଡ ମହୀରୁହ ନଇଁଯାଏ; ଭିନ୍ନ ପ୍ରକାର ଦିଶେ କିନ୍ତୁ ଉପୁଡ଼େ ନାହିଁ । ମାଟି ଭିତରେ ଚେର ବୁଡ଼ି ରହିଥାଏ । ନିଜର ଅତୀତକୁ ଶ୍ରଦ୍ଧା ଏବଂ ସମ୍ମାନର ସହିତ କବିକୁଳ ସ୍ମରଣ କରୁଥିଲେ ଏବଂ ଉଦ୍‌ବୁଦ୍ଧ ହେଉଥିଲେ । ଅତୀତକୁ ଉଜ୍ଜୀବିତ କରିବାରେ ସିଦ୍ଧହସ୍ତ କବି ମାନସିଂ ନିଜେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଅବଶ୍ୟ ଅତୀତକୁ ଏଭଳି ଉଦ୍‌ବୋଧନ ଦେବା ଅନ୍ୟ ସାହିତ୍ୟରେ ମଧ୍ୟ ଦେଖା ଦେଇଥିଲା । ଏଥିରେ ଅବଶ୍ୟ ଜାତୀୟ ସ୍ମୃତିକୁ ଜାଗ୍ରତ କରାଯାଉଛି । କିନ୍ତୁ ବର୍ତ୍ତମାନ ଉପରେ ଅନାସ୍ଥାଭାବ ସୂଚିତ ହେଉଛି । କି ଥିଲା ଏ ରାଜ୍ୟ କି ହୋଇଛି ଆଜ' । ଭବିଷ୍ୟତ ଆଡ଼କୁ ଦୃଷ୍ଟି ପ୍ରସାରିତ ହୋଇନାହିଁ । ସ୍ମୃତିଚାରଣ ଏକ ବିଳାପ । ସ୍ମୃତିଚାରୀ ସାହିତ୍ୟ ଏକ ରୋଦନ । ତାହା କୌଣସି ବର୍ଦ୍ଧିଷ୍ଣୁ ଜାତି ପାଇଁ ଶୁଭ ସଂକେତ ନୁହେଁ । ସଂସ୍କୃତିର ପ୍ରବହମାନତାରେ ସହାୟକ ନୁହେଁ ।

ପ୍ରତ୍ୟେକ ଯୁଦ୍ଧ ପରେ ଯେଉଁମାନେ ବଞ୍ଚିଯାଆନ୍ତି ସେମାନେ ବୃଦ୍ଧ, ମନରେ ଏବଂ ଶରୀରରେ କାରଣ ଯୁଦ୍ଧରେ ତରୁଣ ରକ୍ତରେ ହିଁ ହୋରିଖେଳ ହୁଏ । ଗୋଟାଏ ଜାତିର ତାରୁଣ୍ୟକୁ ବଳି ଚଢ଼ାଇ ଦିଆହୁଏ । ବାକି ଯେଉଁମାନେ ବଞ୍ଚି ରହନ୍ତି ସେମାନେ କ୍ଲାନ୍ତ ଅବସନ୍ନ ଗୁଡ଼ିଏ ବୃଦ୍ଧ । ଧ୍ୱଂସସ୍ତୂପ ଉପରେ ଠିଆ ହୋଇଥିବାରୁ ସେମାନଙ୍କ ଦୃଷ୍ଟିରେ ମୃତ୍ୟୁ, ହତାଶା, ବ୍ୟର୍ଥତା, ବିଚ୍ଛିନ୍ନତାବୋଧ ଦିଶିବା ସ୍ୱାଭାବିକ । ସେମାନଙ୍କ କବିତା ଏ ଦୀର୍ଘଶ୍ୱାସକୁ ପ୍ରକାଶ କରିବା ସ୍ୱାଭାବିକ । ପୋଡ଼ା ଭୂଇଁର ଧ୍ୱସ୍ତଚିତ୍ର ସେମାନଙ୍କୁ ସ୍ପଷ୍ଟତଃ ଦିଶେ ଏବଂ ସେମାନେ ତାହା ବର୍ଣ୍ଣନା କରନ୍ତି । କିନ୍ତୁ ସ୍ୱାଧୀନତା ନବୋତ୍‌ଥିତ ଗୋଟାଏ ଜାତି ପାଇଁ ଏ ବୃଦ୍ଧ ହତାଶା-ବ୍ୟଞ୍ଜକ ଦୃଷ୍ଟିଭଙ୍ଗୀ କ'ଣ ବାଞ୍ଛନୀୟ ? ଏଠି କ'ଣ ପୁରୋଦୃଷ୍ଟି ଏବଂ ଅଭିନବ ସ୍ୱପ୍ନ, ପ୍ରଚଣ୍ଡ ଜୀବନବୋଧ ଏବଂ ବଳିଷ୍ଠ ଆଶାବାଦ ତା' ଅପେକ୍ଷା ଅଧିକ ସ୍ୱାଭାବିକ ନୁହେଁ କି ? କିନ୍ତୁ କ'ଣ କରାଯାଏ ? ଯୁଦ୍ଧୋତ୍ତର ୟୁରୋପର ବିପର୍ଯ୍ୟୟରେ ବିଡ଼ମ୍ବିତ ମଣିଷମାନଙ୍କର ଯେଉଁ ସ୍ୱପ୍ନଭଙ୍ଗ ହେଲା ତାହା କ୍ରମଶଃ ସଂକ୍ରମିତ କଲା ସାରା ପୃଥିବୀର ଆଧୁନିକ ଚେତନାକୁ । ଭାରତବର୍ଷରେ ମଧ୍ୟ ସେହି ସଂକ୍ରମଣ ଦେଖାଦେଲା । ଅସଂଖ୍ୟ ମୃତ୍ୟୁ ଏବଂ ଅଜସ୍ର ରକ୍ତପାତ ପରେ ୟୁରୋପରେ ସମସ୍ତ ସୁକୁମାର କୋମଳ ଭାବ ବିଲୁପ୍ତ ହୋଇ କବିତା ରୁକ୍ଷ, ରୂଢ଼ ହେବା ଯେତିକି ସ୍ୱାଭାବିକ ଅନ୍ୟତ୍ର ତାହା ନୁହେଁ । ବିଶ୍ୱଯୁଦ୍ଧ ସମଗ୍ର ମାନବ ଜାତିର ଏକ ବିପର୍ଯ୍ୟୟ ସେହି ଦୃଷ୍ଟିରୁ ଦୂରସ୍ଥ ସାହିତ୍ୟ କିଛି ନିଶ୍ଚୟ ପ୍ରଭାବିତ ହେବ। ତା'ର କିନ୍ତୁ ନିଜର ଏକ ଆହ୍ୱାନ ଅଛି । ଭାରତର ଆହ୍ୱାନ ସେତେବେଳେ

ଅନ୍ୟପ୍ରକାର । କିନ୍ତୁ କାହିଁକି ହତାଶା ମାଡ଼ିଗଲା ଏ ଦେଶରେ ? ହୁଏତ ସ୍ୱାଧୀନତା ସଂଗ୍ରାମ ପରେ ଆମେ ମଧ୍ୟ ବୃଦ୍ଧ ହୋଇଗଲୁ; କ୍ଲାନ୍ତ ଏବଂ ଶ୍ରମକାତର ହୋଇଗଲୁ । ଆମ ସଂଗ୍ରାମୀ ନେତାମାନେ ଚାହିଁଲେ ବିଶ୍ରାମ ଏବଂ ନିଦ୍ରା । ଫଳରେ ଦୈନ୍ୟ-ଦୁଃଖ ଦୂର ହେଲାନାହିଁ। ଏ ଦାରିଦ୍ର୍ୟ ପ୍ରପୀଡ଼ିତ ଦେଶ ବୋମା-ବିଧ୍ୱସ୍ତ ପୋଡ଼ା ଭୂଇଁ ତୁଲ୍ୟ ପ୍ରତୀୟମାନ ହେଲା। ତାକୁ ଦେଖି ଆଧୁନିକ କବିକୁଳ ପାଶ୍ଚାତ୍ୟ ସହିତ ସମସ୍ୱରରେ ହତାଶା ଏବଂ ବ୍ୟର୍ଥତାର କବିତା ଲେଖିବାକୁ ସହଜ ମଣିଲେ। କୌଣସି ପ୍ରଗାଢ଼ ବିଶ୍ୱାସରେ ଅନାଗତ ଭବିଷ୍ୟତ ଗର୍ଭରେ ସ୍ୱପ୍ନ-ସନ୍ଧାନ କରି ଜାତିକୁ ଉନ୍ମୁଖ, ଜାଗ୍ରତ, ଅଭୀପ୍ସାବନ୍ତ କରିବାର ଦାୟିତ୍ୱ ସେ ଭୁଲିଗଲେ। ତାକୁ ଭଲ ଲାଗିଲା ଆପଣାର କଳ୍ପିତ କ୍ଷତକୁ ଲେହନ କରି ନିଜକୁ ଦୟା ଓ ଘୃଣାର ପାତ୍ର କରିବାକୁ। ପ୍ରାଣଶକ୍ତି ସ୍ତିମିତ ହୋଇଗଲା ଏକ କୃତ୍ରିମ ଅଭିନୟରେ । ସ୍ୱପ୍ନରେ ଚାଲୁଥିବା ଏବଂ ରୋଦନ କରୁଥିବା ଏ କବିକୁଳକୁ କିଏ ଉଠାଇବ? ଯଦି ଜାତି ବି ସେମିତି ସ୍ୱପ୍ନାବିଷ୍ଟ ହୋଇ ଭାସିଚାଲିଥାଏ, ଉଠିବାର ପ୍ରଶ୍ନ ଆଉ କାହିଁ?

ଯାହା ଭାରତେ ତାହା ଏଇ ଓଡ୍ରଦେଶେ । ଏଠି ସ୍ତରେ ସ୍ତରେ ଭୂଇଁ ଛାଡ଼ି ଯିବାର ଲକ୍ଷଣ । ସହରାଞ୍ଚଳ କ୍ରମଶଃ ଆୟତନରେ ପ୍ରତିପତ୍ତି ଏବଂ ଧନମାନରେ ବଢ଼ି ଲାଗିଛି । ଗ୍ରାମାଞ୍ଚଳ ଚାହୁଁଚି ସହରାୟିତ ହେବାପାଇଁ । ସହରଗୁଡ଼ିକ ସାରା ପୃଥିବୀର ନୂତନ ପ୍ରଭାବ ଆଡ଼କୁ ଉନ୍ମୁକ୍ତ । ଅନୁକରଣ ପଟୁତା ପାଇଁ ଏହା ପ୍ରଶସ୍ତ କ୍ଷେତ୍ର । ଅନୁକରଣ ପଟୁ, ସ୍ୱାଧୀନ ଚିନ୍ତା କରିବାକୁ ଅସମର୍ଥ ଏବଂ ତଜ୍ଜନିତ ଦାୟିତ୍ୱରୁ ସଦାମୁକ୍ତ । କିଏ ପାରେ ନିଜେ ନୂଆ କିଛି କରି ହଟହଟା ହେବାକୁ । ଯାହା ସେଇଠି ହେଇଛି ଏଇଠି କରିଦେଲେ ଯାଏ। ଯଦି ଭଲ ହେଲା ପ୍ରଶଂସା ମିଳିଲା, ଯଦି ବିଗିଡ଼ିଗଲା ଦୋଷ ବିଦେଶର। ଅର୍ଥନୀତି, ଶିକ୍ଷାନୀତି, ସମାଜନୀତି ଆମେ ଏଭଳି ଆମଦାନି କରୁ ଏବଂ ଏ ଭୂଇଁରେ, ସେ ଗଛ ନଉଠିଲେ ଭୂଇଁକୁ ନିନ୍ଦାକରୁ ।

ଅନୁକରଣ ବ୍ୟାଧିରେ ଆକ୍ରାନ୍ତ ହୋଇ ଆମେ ଆମ ସାଂସ୍କୃତିକ ପରମ୍ପରାକୁ ବୋହିବା ଅସ୍ୱସ୍ତିକର ମଣୁଛୁ । ହଁ ଯଦି କିଛି ସଂସ୍କୃତି ଅଛି ତାକୁ ସଂଗ୍ରହାଳୟରେ ଜଗୁଆଳିଙ୍କ ଦାୟିତ୍ୱରେ ଛାଡ଼ି ଦିଆଯାଉ । ସେମାନେ ସତର୍କତାର ସହିତ ତାକୁ ବିକ୍ରୀ କରୁଥାନ୍ତୁ। ଧର୍ମଗୁରୁମାନେ ମିଥ୍ୟା ପ୍ରଚାର କରି ଦରିଦ୍ର ଅନ୍ଧବିଶ୍ୱାସୀଙ୍କୁ ନିର୍ବିରୋଧ ପ୍ରତାରିତ କରନ୍ତୁ । ଯେଉଁମାନେ ଶହ ଶହ ବର୍ଷ ଅପଶାସକଙ୍କ ଦ୍ୱାରା ଉତ୍ପୀଡ଼ିତ ହୋଇ ଆସିଛନ୍ତି ସେମାନେ ଏବେ ମଧ୍ୟ ଲୁଣ୍ଠିତ ଉତ୍ପୀଡ଼ିତ ହେଲେ ନୂଆ କଥା କ'ଣ ହେଲା? ସେମିତି ଚାଲିଥାଉ। କ'ଣଟାଏ ତ ପାଠପଢ଼ା ଚାଲିଛି । ଯୋଗ୍ୟ ହୁଅନ୍ତୁ ଅଯୋଗ୍ୟ ହୁଅନ୍ତୁ, ଗୁଡ଼ାଏ ସେଇଠି ତାଲିମ ପାଇଯାନ୍ତୁ । ପରେ ଫଳାଫଳ ଦେଖିବା । ଏଭଳି

ଉଦାସୀନତା ଏବଂ ବେପରୁଆ ଦାୟିତ୍ୱ-ବିମୁଖତା ପଛରେ ଏକ ସାଘାତିକ ଶଠତା, ନିଜକୁ ଏବଂ ନିଜ ଜାତିକୁ ଠକିବାର ପ୍ରବଣତା, ଏପରିକି ତା' ପ୍ରତି ଏକ ପ୍ରଚ୍ଛନ୍ନ ବୈରଭାବ ଲୁଚି ରହିଛି । ଆମେ ଆଉ ଆମର ହୋଇ ନାହୁଁ । ଆମେ ସତେବା ଅନ୍ୟମାନଙ୍କର କ୍ରୀଡ଼ାର ସାମଗ୍ରୀ। ଯେ ଯେଉଁଭଳି ଚାହିଁଲା ଆମକୁ ଘୋଷାରିଲା, ସେଥିରେ ଆମର ପ୍ରତିବାଦ କରିବାକୁ ସାମର୍ଥ୍ୟ ବା ସଚେତନତା ନାହିଁ।

ଚିରକାଳ ଏଇ ଗୌଣ ଭୂମିକାରେ ଏଇ ଗୌଣତା ଏବଂ ବ୍ରାତ୍ୟତା, ମନଧନ ଏବଂ ମାନରେ ଦାରିଦ୍ର୍ୟ ଭୋଗିବାକୁ ସତେବା ଏ ଉତ୍ର ଦେଶର ଅଧିବାସୀମାନେ ଜନ୍ମିଛନ୍ତି । କୌଣସି କଥାକୁ ଗୁରୁତ୍ୱ ନ ଦେବା, ସମସ୍ତ ପ୍ରକାର ମୂଲ୍ୟହାନି ସହିତ ସାଲିସ୍ କରିଯିବା, ସବୁ କଥାକୁ ପିଠି ପାତି ସହିଯିବା, ସବୁବେଳେ ତଳକୁ ପୋତି ହୋଇ ରହିଥିବା ମୁଣ୍ଡକୁ କେବେ ପଛକୁ ନ ଉଠାଇବାକୁ ଆମେ ଅଭ୍ୟାସରେ ଏବଂ ଜୀବନ ନୀତିରେ ପରିଣତ କରିସାରିଛୁ । ନଈର ସୁଅକାଟି ନିର୍ଦ୍ଦିଷ୍ଟ ଦିଗରେ ଯିବା ସିନା ଜାଗ୍ରତ ଦାୟିତ୍ୱବାନ୍ ସମର୍ଥ ଏବଂ ମର୍ଯ୍ୟାଦାବନ୍ତ ମଣିଷର କାମ । କିନ୍ତୁ ସ୍ରୋତରେ ଭାସିଯିବାର ସହଜ ପ୍ରକ୍ରିୟାକୁ ଆମେ ଆପଣେଇ ନେଇଛୁ ।

ପୃଥିବୀରେ ଅନେକ ସଂସ୍କୃତି ଲୋପ ପାଇଯାଇଛି । ଆମ ସାଂସ୍କୃତିକ ପରମ୍ପରା ଏଇଠି ଯଦି ଛିଣ୍ଡିଯାଏ ସେଥିରେ ସୃଷ୍ଟି ଗୋଡ଼ିମାଟି ହୋଇ ଯିବନାହିଁ । ଜୀବନର ପ୍ରବହମାନତା ଅନିବାର୍ଯ୍ୟ, କାରଣ ତାହା ଆମ ହାତରେ ନାହିଁ । କିନ୍ତୁ  ସଂସ୍କୃତିର ପ୍ରବହମାନତା ପାଇଁ ଆମେ ହିଁ ଦାୟୀ । ପ୍ରବଳ ସୁଅ ମୁହଁରେ ଯଦି ଏବେ ତାକୁ  ଛାଡ଼ି ଭାସିଯିବା, ଆଉ ଦୁଇପୁରୁଷ ପରେ ସଚେତନ ଓଡ଼ିଆ ପୁଅମାନେ ଖୋଜିଲେ ଆଉ ତାକୁ ପାଇବେ ନାହିଁ । ବୈତରଣୀରେ କାର୍ତ୍ତିକ ପୂର୍ଣ୍ଣିମାର କଦଳୀ ବାହୁଙ୍ଗା ଦୀପ ଅନେକ ଦୂରକୁ ଭାସି ଯାଇଥିବ ।



# ପରଲୋକ ସମ୍ପର୍କରେ*

ମୃତ୍ୟୁ କ'ଣ ଏକ ଘଟନା ନା ଏକ ପ୍ରବାହ? ଏକ ଅନୁଭବ। ଅନନୁଭବ୍ୟ ଶୂନ୍ୟତା? ଏକ ଆୟତନ ନା ଏକ ସୀମାରେଖା ? ମୃତ୍ୟୁ କ'ଣ ଜୀବନର ପରିପନ୍ଥୀ ନା ପରିପୂରକ? ମୃତ୍ୟୁ ନ ଥାଇ ଜୀବନ; ଜୀବନ ନ ଥାଇ ମୃତ୍ୟୁ କ'ଣ ସମ୍ଭବ କି ? ମୃତ୍ୟୁ କ'ଣ ଏକ ଆକସ୍ମିକ ଆବିର୍ଭାବ, ନା ଏକ ଅନିବାର୍ଯ୍ୟ ପରିଣାମ? ଏକ ପୂର୍ଣ୍ଣଚ୍ଛେଦ ନା ଏକ ବିରାମ? ମୃତ୍ୟୁ ସତେ କ'ଣ ? କାହିଁକି?

ଏହିଭଳି ଅସଂଖ୍ୟ ପ୍ରଶ୍ନ ମଣିଷ ମନକୁ ଆନ୍ଦୋଳିତ ଓ ଉଚ୍ଚାଟିତ କରି ଆସିଛି। ଏଗୁଡ଼ିକର ନିର୍ଦ୍ଦିଷ୍ଟ ସ୍ଥିର ଉତ୍ତର ସେ ପାଇ ନାହିଁ । କାରଣ ତା'ର ମୃତ୍ୟୁ ବିଷୟକ ଜ୍ଞାନ ପର୍ଯ୍ୟାପ୍ତ ନୁହେଁ । ତଥାପି ସେ ସ୍ୱୀକାର କରିଆସିଛି ଯେ –

ମୃତ୍ୟୁ ଏକ ଅବଧାରିତ ଅବଶ୍ୟମ୍ଭାବୀ ସତ୍ୟ।

ଯାହାର ଜନ୍ମ ଅଛି ତା'ର ମୃତ୍ୟୁ ଅବଶ୍ୟ ଅଛି ।

ଜନ୍ମପୂର୍ବରୁ ଏବଂ ମୃତ୍ୟୁ ପରେ କ'ଣ ହୁଏ କେହି କହିପାରିବେ ନାହିଁ ।

ମୃତ୍ୟୁ ଏକ ଦୁର୍ଭେଦ୍ୟ ରହସ୍ୟ ।

ସେ ମଧ୍ୟ ଯୁକ୍ତି କରିଆସିଛି ଯେ–

ମୃତ୍ୟୁ ଓ ଜୀବନ ପରସ୍ପରଠାରୁ ଅବିଚ୍ଛେଦ୍ୟ । ପ୍ରାଣୀର ପ୍ରତ୍ୟେକ ନିଶ୍ୱାସ ମୃତ୍ୟୁ ଓ ପ୍ରତ୍ୟେକ ପ୍ରଶ୍ୱାସ ଜୀବନ। ଏଣୁ ଜୀବନ ଓ ମୃତ୍ୟୁ ଗୋଟିଏ ଛନ୍ଦରେ ପ୍ରବାହିତ । ମୃତ୍ୟୁ କୌଣସି ଘଟନା ନୁହେଁ; ମୃତ୍ୟୁ ଏକ ପ୍ରବାହ ।

ମୃତ୍ୟୁ ଯଦି ଶରୀରର ପତନକୁ ହିଁ ବୁଝାଏ ତା'ହେଲେ ଶରୀରାଶ୍ରୟୀ ସମସ୍ତ ଇନ୍ଦ୍ରିୟର ବିଲୋପ ହେଉଥିବାରୁ ମୃତ୍ୟୁର କୌଣସି ଅନୁଭବ ସମ୍ଭବ ନୁହେଁ। ତାକୁ କିଏ ଅନୁଭବ କରିବ ଓ କିପରି ? ଅନୁଭବ କରିବାର ସମସ୍ତ ମାଧ୍ୟମ ଓ ଭୂମି ଅବଲୁପ୍ତ ହେଲେ ଅନୁଭବ ସମ୍ଭବ ନୁହେଁ । ହୋଇପାରେ ମୃତ୍ୟୁ ଏକ ଅତଳ ଶୂନ୍ୟତା । ଶୂନ୍ୟତା କୌଣସି ବିଷୟ ହୋଇନଥିବାରୁ ତାହା ଅନୁଭବ ସାପେକ୍ଷ ନୁହେଁ।

---

* 'ମୃତ୍ୟୁ ଆରପାରିରୁ ସଂକେତ' ପୁସ୍ତକର ମୁଖବନ୍ଧ ।

ହଠାତ୍ ଆଲୁଅ ଲିଭିଗଲା ପରି ମୃତ୍ୟୁ ଆସେ । ଇହକାଳର ମନପ୍ରାଣ ଶରୀର ସ୍ତରୀୟ ସମସ୍ତ କ୍ରିୟା ପ୍ରତିକ୍ରିୟା ସେଇ ମୁହୂର୍ତ୍ତରେ ସ୍ଥଗିତ ହୋଇଥାଏ। ତା' ପୂର୍ବରୁ ମୃତ୍ୟୁ ଛାୟା ରୂପରେ ଜୀବନର ଅନୁସଙ୍ଗୀ ହୋଇ ହୁଏତ ରହିଥାଏ। କିନ୍ତୁ ଗୋଟାଏ ମୁହୂର୍ତ୍ତରେ ମୃତ୍ୟୁ ଶତ ପ୍ରତିଶତ ପ୍ରକଟ ହୋଇଯାଏ । ସେଇଟା ଏ ଜୀବନର ଶେଷ ମୁହୂର୍ତ୍ତ ନୁହେଁ ତା'ର ଅବ୍ୟବହିତ ପରମୁହୂର୍ତ୍ତ। ଏହା ଏକ ଅଲଂଘନୀୟ ବେସାଲିସ୍ ସୀମାରେଖା । ସେଥିପାଇଁ ହୁଏତ ମୃତ୍ୟୁର ଆୟତନ କହିଲେ ବିସ୍ତାର ନୁହେଁ, କେବଳ ଏକ ରେଖାର ଗଭୀରତା। ଗୋଟିଏ ବିନ୍ଦୁର ଅତଳଗର୍ଭକୁ ହିଁ ବୁଝାଏ । ଜୀବନ ଓ ମୃତ୍ୟୁର ଆପେକ୍ଷିକ ନିର୍ଭରଶୀଳତା ଉଭୟକୁ ଅର୍ଥ ଓ ତାତ୍ପର୍ଯ୍ୟ ପ୍ରଦାନ କରେ । ଯାହାର ଆଦି ଅବ୍ୟକ୍ତ, ଅନ୍ତ ମଧ୍ୟ ଅବ୍ୟକ୍ତ। ସେ ମଝିରେ କେବଳ ବ୍ୟକ୍ତ ହୁଏ । ଏହି ବ୍ୟକ୍ତ ମାତ୍ର ହିଁ ଜୀବନ। ଏହାର ନିର୍ଦ୍ଦିଷ୍ଟ ସୀମାରେଖା, ନିର୍ଦ୍ଦିଷ୍ଟ ଆୟତନ ଥିବାରୁ ଏହା ଅନୁଭବ ସାପେକ୍ଷ – ବୋଧଗମ୍ୟ । କିନ୍ତୁ ଯାହା ଅବ୍ୟକ୍ତ ତାହା ଏ ପରିସୀମାର ବହିର୍ଭୂତ।

ଦୀପ ନିର୍ବାପିତ ହେଲେ ଶିଖା ଅଦୃଶ୍ୟ ହୋଇଯାଏ । ଯାହା ଅବଶେଷ ରହେ ତାହା କେବଳ ଏକ ଶୀତଳପିଣ୍ଡ । ତାହା ଏକଦା ଅଗ୍ନିର ଆଧାର କିମ୍ବା ଉପଜୀବ୍ୟ ଉପାଦାନ ଥିଲା । କିନ୍ତୁ ନିର୍ବାପିତ ହୋଇଗଲା ପରେ ସେଥିରୁ ଅଗ୍ନି ତିରୋହିତ ହୋଇଯାଏ, ଏଣୁ ଜ୍ୱଳନ ବା ଦୀପନ କ୍ରିୟା ଆଉ ହୁଏ ନାହିଁ। ସେହିପରି ଜୀବନ ନିର୍ବାପିତ ହେଲେ ଯାହା ପଡ଼ିରହେ ତାହା ଏକ ଶୀତଳ ପିଣ୍ଡ ମାତ୍ର। ତାକୁ ଜୀବନ କ୍ରିୟାରେ ଉପଜୀବ୍ୟ କରି ବ୍ୟବହାର କରୁଥିବା ତତ୍ତ୍ୱଟି ତିରୋହିତ ହୋଇଯାଏ। ଶରୀରର ପତନ ହିଁ ମୃତ୍ୟୁ । କିନ୍ତୁ ଶରୀରକୁ ଜୀର୍ଣ୍ଣବସ୍ତ୍ରପରି ତ୍ୟାଗ କରୁଥିବା ତତ୍ତ୍ୱଟି ମୃତ୍ୟୁ ଅଧୀନ ନୁହେଁ । –ଏଣୁ ଏକ ଅବିନଶ୍ୱର ଆତ୍ମାର କଳ୍ପନା କରାଯାଇଛି। ବାସ୍ତବବାଦୀମାନେ କହନ୍ତି ଭସ୍ମୀଭୂତୋସ୍ୟ ଦେହସ୍ୟ ପୁନରାଗମନଂ କୁତଃ !'' – କିନ୍ତୁ ତଦ୍ରୂପ ତତ୍ତ୍ୱ ବାକ୍ୟ ଅନ୍ୟ ପକ୍ଷରୁ ମଧ୍ୟ ଶୁଣାଯାଏ – ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ, ଧ୍ରୁବଂ ଜନ୍ମ ମୃତସ୍ୟ ଚ''ନ ଚୈବ ନ ଭବିଷ୍ୟାମଃ ସର୍ବେ ବୟଶତଃ ପରମ୍ । – ଉଭୟ ପକ୍ଷର ମତରେ ଦୃଢ଼ତା ଅଛି । ଆତ୍ମା ନାହିଁ, ଆତ୍ମା ଅଛି – ଏ ବିବାଦ ଏ ପର୍ଯ୍ୟନ୍ତ ଅମୀମାଂସିତ ହୋଇ ରହିଛି । ଆତ୍ମା ଇନ୍ଦ୍ରିୟଗ୍ରାହ୍ୟ ନୁହେଁ, ବିଷୟୀଭୂତ ନୁହେଁ । ଏଣୁ ତାହା ପ୍ରମାଣିତ ନୁହେଁ। –କହନ୍ତି, ସମସ୍ତ ଯୁକ୍ତିବାଦୀ, ବସ୍ତୁବାଦୀ, ପଣ୍ଡିତମାନେ। ବିଜ୍ଞାନ ସ୍ଥୂଳ ଦୃଷ୍ଟିରେ ଏମାନଙ୍କ ମତକୁ ସମର୍ଥନ କରେ । କିନ୍ତୁ ବିଜ୍ଞାନର ସୂକ୍ଷ୍ମାତିସୂକ୍ଷ୍ମ ସ୍ତରରେ ବସ୍ତୁଧର୍ମକୁ ଉଲ୍ଲଂଘନ କରୁଥିବା ତତ୍ତ୍ୱ ମଧ୍ୟ ପ୍ରମାଣିତ ତଥ୍ୟ ରୂପେ ଗ୍ରହଣ କରାଯାଏ । ଯଥା କୌଣସି ବସ୍ତୁ କଣିକା ଗତି କରେ କି କରେନାହିଁ ତାହା ପ୍ରମାଣିତ ହୋଇପାରେ ନାହିଁ ଏଣୁ ସେମାନେ ଉଭୟ ଲକ୍ଷଣକୁ ସ୍ୱୀକାର କରି କହନ୍ତି, ଯେ ତାହା

ଗତି କରେନାହିଁ ଏଣୁ କଣିକା (particle) ଗତି କରେ, ଏଣୁ ଏକ ତରଙ୍ଗ (wave) – ଏ ପରିସ୍ଥିତିରୁ ଅନେକ ଅନେକ ଆହୁରି ସୂକ୍ଷ୍ମ ସ୍ତରରେ ବିଜ୍ଞାନ ଆଉ ପ୍ରମାଣ ବା ପ୍ରାମାଣିକତାର ସ୍ଥୂଳ ମାଧ୍ୟମରେ ସୀମିତ ରହେ ନାହିଁ । ଏଣୁ ଯାହାଅଛି ତା' ହୁଏତ ଅଛି, ଯାହା ନାହିଁ ତାହା ହୁଏତ ଥାଇପାରେ – ଏଭଳି ଏକ ଦୋଦୁଲ୍ୟମାନ ମତ ଏବେ ବିଜ୍ଞାନସମ୍ମତ ବୋଲି ଗୃହୀତ ହୋଇଯାଇଛି । ଆତ୍ମା ଥିବା ନଥିବା ବିଷୟରେ ବିଜ୍ଞାନ କୌଣସି ନିର୍ଦ୍ଦିଷ୍ଟ ପକ୍ଷଭୁକ୍ତ ନହୋଇ ଗୋଟାଏ ମୁକ୍ତି ସମ୍ଭାବନାର ନିରବତା ଅବଲମ୍ବନ କରିଥାଏ ।

କୌଣସି ପ୍ରମାଣର ଅପେକ୍ଷା ନ ରଖି କାହିଁକି ଓ କିପରି ସମଗ୍ର ପୃଥିବୀରେ ମାନବ ଇତିହାସର ପ୍ରାକ୍‌କାଳରୁ ଅଦ୍ୟାବଧି ଆତ୍ମା ନାମକ ଏକ ରହସ୍ୟକୁ ଏତେ ପରିମାଣର ସ୍ୱୀକୃତି ମିଳିଛି କହିବା କଠିନ । ପ୍ରାୟ ପ୍ରତ୍ୟେକ ଧର୍ମ, ସଂସ୍କୃତି ଓ ଦର୍ଶନରେ ଆତ୍ମାକୁ ସ୍ପଷ୍ଟ ବା ଅସ୍ପଷ୍ଟ ମାନ୍ୟତା ମିଳିଛି । ସବୁଠାରେ ଆତ୍ମାକୁ ମୃତ୍ୟୁ ବହିର୍ଭୂତ ଏକ ତତ୍ତ୍ୱ ରୂପେ ଗ୍ରହଣ କରାଯାଇଛି । ତାହା ଶରୀରକୁ ଗ୍ରହଣ କରେ ଏବଂ ପରିହାର କରେ। ଶରୀର ତା'ର ପରିଧେୟ କିନ୍ତୁ ପରିଚୟ ନୁହେଁ ! ଆତ୍ମାକୁ ବିଶ୍ୱାସ କରାଯାଏ କିନ୍ତୁ ପ୍ରମାଣ କରିହୁଏ ନାହିଁ । ସ୍ଥଳ ବିଶେଷରେ ଅଶରୀରୀ ଆତ୍ମା ସହିତ ପରିଚୟ ହୋଇଥାଏ । ରାମାୟଣରେ ବନବାସିନୀ ସୀତା ଗୋଦାବରୀ କୂଳରେ ଦଶରଥଙ୍କର ଅଶରୀରୀ ଆବିର୍ଭାବକୁ ପିଣ୍ଡଦାନ କରିବାର ଉଲ୍ଲେଖ ଅଛି । ସେକ୍ସପିଅରଙ୍କ ନାଟକ ହ୍ୟାମ୍‌ଲେଟ୍‌ରେ ତାଙ୍କର ପିତାଙ୍କ ପ୍ରେତାତ୍ମା ନିଜର ହତ୍ୟାରହସ୍ୟ ଉଦ୍‌ଘାଟନ କରନ୍ତି । ପୃଥିବୀର ବିଭିନ୍ନ ସାହିତ୍ୟରୁ ଏଭଳି ଶତାଧିକ ଦୃଷ୍ଟାନ୍ତ ଦିଆଯାଇପାରେ । ଏହାଦ୍ୱାରା ସୂଚନା ମିଳେ ଯେ –

୧. ମୃତ୍ୟୁ ପରେ ଆତ୍ମା ଅବଶେଷ ରହିଯାଏ ।

୨. ପରିତ୍ୟକ୍ତ ଶରୀରର ଆକୃତି ନେଇ ସେ ପ୍ରକଟ ହୋଇଥାଏ ।

୩. ଇହଲୋକରେ ଘଟିଥିବା ଘଟନା ଓ ସମ୍ପର୍କ ସହିତ ସେ ଜଡ଼ିତ ରହିପାରେ ।

୪. ଇହଲୋକର ଅତୃପ୍ତ କାମନା ବାସନାକୁ ଚରିତାର୍ଥ କରିବାକୁ ସେ ଇଚ୍ଛା କରିପାରେ । ମୋଟ ଉପରେ ଶରୀରର ପତନ ପରେ ଅବଶେଷ ଆତ୍ମାରେ ସେହି ଜୀବନ କିଛିକାଳ ପର୍ଯ୍ୟନ୍ତ ଅବ୍ୟାହତ ରହେ। କେତେକାଳ ପର୍ଯ୍ୟନ୍ତ ଇହଲୋକ ସହିତ ପରଲୋକଗତ ଆତ୍ମା ସଂପୃକ୍ତ ରହେ, ସେ ବିଷୟରେ ଏକାଧିକ ମତ ପ୍ରକାଶ ପାଏ। ଅତୃପ୍ତ କାମନାର ପୂର୍ତ୍ତି ବା ସମାପ୍ତି ନ ହେବା ପର୍ଯ୍ୟନ୍ତ ଆତ୍ମା ସେହି ଜୀବନରୁ ମୁକ୍ତ ହୋଇପାରେ ନାହିଁ। କାମନା ତୃପ୍ତ ହୋଇଗଲେ ହୁଏତ ତାହା ଘଟାନ୍ତରରେ ପ୍ରବେଶ କରେ।

ଆଉ ଏକ ମତାନୁସାରେ ଶରୀରର ପତନ ଏକ ଅବସ୍ଥାନ୍ତର ମାତ୍ର । ଶରୀର ଯାତ୍ରାରେ ଯେପରି କୌମାର ଯୌବନ ଓ ଜରା କ୍ରମାନ୍ୱୟରେ ଦେଖା ଦିଅନ୍ତି ଓ ଗୋଟିଏ ଅବସ୍ଥାରୁ ଅନ୍ୟ ଏକ ଅବସ୍ଥାକୁ ଆତ୍ମା ପ୍ରସ୍ଥାନ କରେ ସେହିପରି ଦେହାନ୍ତର ପ୍ରାପ୍ତି । ଏଣୁ ଶରୀରର ପତନ ହେବାର ଅବ୍ୟବହିତ ପରେ ଆତ୍ମା ଆଉ ଏକ ଶରୀରରେ ଆଶ୍ରୟ ନେଇଯାଏ । ଦୁଇଟି ଶରୀରାଶ୍ରୟୀ ଜୀବନକୁ ପୃଥକ୍ କରିବାକୁ କୌଣସି କାଳକ୍ଷେପଣ ବା ମଧ୍ୟାନ୍ତର ନାହିଁ ।

ଏହି କ୍ରମରେ ବହୁ ଜନ୍ମଜନ୍ମାନ୍ତର ଦେଇ ଆତ୍ମା ଗତି କରି ଚାଲିଥାଏ । "ବହୁନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ ।" କିନ୍ତୁ ଘଟାନ୍ତର ସମୟରେ ଯାହାକୁ ଆମେ ମୃତ୍ୟୁ ନାମରେ ଅଭିହିତ କରିଥାଉ ତାର ପୂର୍ବବର୍ତ୍ତୀ ଜୀବନ ବା ଜୀବନମାନଙ୍କର ସମସ୍ତ ସ୍ମୃତି ସାଧାରଣତଃ ଲୋପ ପାଇଯାଏ । ଅସାଧାରଣ କ୍ଷେତ୍ରରେ ସ୍ମୃତି ସ୍ପଷ୍ଟ ରହିଥାଏ । 'ତାନ୍ୟହଂ ବେଦ ସର୍ବାଣି ନ ତ୍ୱଂବେତ୍ଥ ପରନ୍ତପ' – ଆମ ଦୁହିଁଙ୍କର ବହୁ ଜନ୍ମ ବ୍ୟତୀତ ହୋଇସାରିଛି ସେ ବିଷୟରେ ତୋର କୌଣସି ସ୍ମୃତି ବା ଜ୍ଞାନ ନାହିଁ, କିନ୍ତୁ ମୁଁ ସେସବୁ ଜାଣେ । ଜାତସ୍ମରମାନଙ୍କ ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଆଉ ଏକ ଶରୀରରେ ପ୍ରବେଶ କଲାପରେ ସୁଦ୍ଧା ଆତ୍ମା ପୂର୍ବଜନ୍ମର ସ୍ମୃତି ବହନ କରିଥାଏ ଏବଂ ଦେଶକାଳ ଓ ବ୍ୟକ୍ତିବିଶେଷକୁ ସେ ସହଜରେ ଚିହ୍ନଟ କରିଥାଏ ।

ନରମାନ୍ ୱିସ୍ ନାମଧେୟ ଜଣେ ପ୍ରଖ୍ୟାତ ସାଇକିଆଟିଷ୍ଟ ତାଙ୍କ ଗବେଷଣା ପ୍ରସୂତ ପ୍ରଶ୍ନ 'ମେନି ଲାଇଭସ୍ ମେନି ମାଷ୍ଟର୍ସ'ରେ ସର୍ବସମକ୍ଷରେ କ୍ୟାଥାରିନ୍ ନାମଧେୟା ଜଣେ ମହିଳାକୁ ଅତୀତରେ ପ୍ରବେଶ କରାଇ ତାଙ୍କର ପୂର୍ବଜନ୍ମମାନଙ୍କର ବହୁ ତଥ୍ୟ ଉପସ୍ଥାପିତ କରିପାରିଛନ୍ତି, ଏପରିକି ପ୍ରାଚୀନ ମିଶରରେ ଏକ ଜୀବନ ବିତାଇଥିବାର ସ୍ମୃତିଚାରଣ କରି କ୍ୟାଥାରିନ୍ ସମସ୍ତଙ୍କୁ ଅବାକ୍ କରି ଦେଇଛନ୍ତି । ୱିସ୍‌ଙ୍କ ମତରେ ଜୀବନ ଏକ ନିରବଚ୍ଛିନ୍ନ ପ୍ରବାହ । ମୃତ୍ୟୁ ଏକ ତୋରଣ । ବସ୍ତୁତଃ ମୃତ୍ୟୁର କୌଣସି ଅସ୍ତିତ୍ୱ ବା ଭୂମିକା ନାହିଁ; କେବଳ ଏକ ସ୍ମୃତିଲୋପକାରୀ ପ୍ରଭାବ ଥାଇପାରେ ।

ପଲବ୍ରଣ୍ଟନ୍‌ଙ୍କ ଆତ୍ମଲିପି ସମ୍ବଳିତ ଗ୍ରନ୍ଥରେ ପିରାମିଡ୍ ଗର୍ଭରେ ସେ କିପରି ନିଜ ଶରୀରକୁ ପୃଥକ୍ ଏକ ସତ୍ତା ରୂପେ ଦେଖି ପାରିଛନ୍ତି ତା'ର ବର୍ଣ୍ଣନା କରିଛନ୍ତି । ପୁରାତନ ମିଶରର ଧର୍ମଯାଜକ ତାଙ୍କୁ ସେଭଳି ଅନୁଭବ ଦେବାରେ ସାହାଯ୍ୟ କରିଛନ୍ତି ଏବଂ ସାବ୍ୟସ୍ତ କରିଛନ୍ତି ଯେ ଏକପ୍ରକାର ଗୂଢ଼ ବିଦ୍ୟା ଓ ପ୍ରକ୍ରିୟା ବଳରେ ସେମାନେ ମିଶରର ରାଜା ଫାରୋଙ୍କୁ ଓ ସେହିପରି ଅନ୍ୟ ଯେକୌଣସି ବ୍ୟକ୍ତିଙ୍କୁ– ଯଥା ପଲବ୍ରଣ୍ଟନ୍ – ଆତ୍ମାର ଦେହାତିରିକ୍ତ ସ୍ୱତନ୍ତ୍ର ସତ୍ତା ବିଷୟରେ ପ୍ରତ୍ୟକ୍ଷ ଅନୁଭୂତି ଓ ଜ୍ଞାନ ଦାନ କରିପାରୁଥିଲେ । ଶରୀର ଏକ କ୍ଷେତ୍ର ଏବଂ ତା'ର ଅଧିବାସୀ ତାକୁ ଜାଣିଥିବା କ୍ଷେତ୍ରଜ୍ଞ ତା'ଠାରୁ ଭିନ୍ନ ।

ଏଣୁ ଅଶରୀରୀ ଆତ୍ମାର ସ୍ୱତନ୍ତ୍ର ସ୍ଥିତି, ଭୂମି ଓ ଭୂମିକା ସ୍ୱୀକାର କରାଯାଇ ପାରେ। ପିତୃଲୋକର ଉଲ୍ଲେଖ କଲାବେଳେ ପ୍ରେତଲୋକ ମଧ୍ୟ ସୂଚିତ ହୋଇଥାଏ। ଯଦି ଶରୀର ତ୍ୟାଗ କଲାପରେ ଆତ୍ମା ଆଉ ଏକ ଜଗତରେ ଅବସ୍ଥାନ କରେ ତା'ହେଲେ ତ' ଏ ଜଗତରୁ ସେ ବିଚ୍ଛିନ୍ନ ହୋଇଗଲା। ଇହଲୋକଠାରୁ ପରଲୋକ ସମ୍ପୂର୍ଣ୍ଣ ଭିନ୍ନ। କିନ୍ତୁ ଏ ଦୁଇ ଜଗତ ମଧ୍ୟରେ ହୁଏତ ଏକ ଭାସମାନ ବଳୟ ଅଛି ତାହା ମୃତ୍ୟୁଲୋକ। ଅଶରୀରୀ ଆତ୍ମା ଏ ଜଗତର ସ୍ଥାନ କାଳକୁ ଅତିକ୍ରମ କରିଗଲାପରେ ଏହି ବଳୟରେ ପ୍ରବେଶ କରେ। ସେଠାରେ ଦେଶକାଳ ହୁଏତ ନାହିଁ। ନର୍ମାନ୍ ଓ୍ୱିସ୍‌ଙ୍କ ଚରିତ୍ର କ୍ୟାଥାରାଇନ ପାଇଁ ଗୋଟିଏ ଜନ୍ମ ଓ ଅନ୍ୟ ଜନ୍ମ ମଧ୍ୟର ବ୍ୟବଧାନ କେତେ ଦୀର୍ଘ ତାହା କହିବା କଠିନ। ମଧ୍ୟଯୁଗୀୟ ଗୋଟିଏ ଜୀବଦ୍ଦଶା, ପୁରାତନ ମିଶରୀୟ ଜୀବଦ୍ଦଶା ଠାରୁ ବହୁ ଶତାବ୍ଦୀ ବ୍ୟବଧାନରେ ପୃଥକ୍। ଏ ଦୀର୍ଘ ମଧ୍ୟନ୍ତରର କୌଣସି ରୂପରେଖ ବିଷୟରେ ଓ୍ୱିସ୍ ନିରବ – ଏଣୁ ମୃତ୍ୟୁ କେବଳ ଏକ ତୋରଣ, ତା'ର ଅସ୍ତିତ୍ୱ ନାହିଁ ଆୟତନ ନାହିଁ ବୋଲି କହିବା ପୂର୍ବରୁ କ୍ୟାଥାରାଇନ୍ ମାଧ୍ୟମରେ ଓ୍ୱିସ୍‌ଙ୍କୁ ପ୍ରାଚୀନ ମିଶରଯୁଗ ପର୍ଯ୍ୟନ୍ତ ପ୍ରସାରିତ ସାତହଜାର ବର୍ଷର ନିରବଚ୍ଛିନ୍ନ ବିବରଣୀ ପ୍ରସ୍ତୁତ କରିବାକୁ ହେବ। ତାଙ୍କ ପରୀକ୍ଷାଗାରରେ ହୁଏତ ପୁନର୍ଜନ୍ମ ପ୍ରମାଣିତ ହୋଇପାରୁଛି, ତା'ବି ମାତ୍ର ଆଂଶିକ ଭାବରେ। କାରଣ କ୍ୟାଥାରାଇନ୍ ଭଳି ଅନ୍ୟ ସମସ୍ତଙ୍କର ପୁନର୍ଜନ୍ମ ହେଉଛି ବୋଲି ସେ ପ୍ରମାଣ କରିପାରିବେ ନାହିଁ। କିନ୍ତୁ ଏକାଧିକ ବ୍ୟକ୍ତିଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ଦେଲାପରେ, ତାକୁ ସାର୍ବଜନୀନ ରୂପେ ମାନିନେବାକୁ ସେ ପ୍ରସ୍ତୁତ ହୋଇଯାଇଛନ୍ତି।

ଅଶରୀରୀ ଆତ୍ମା ଓ ମୃତ୍ୟୁଲୋକ ସହିତ ସଂଯୋଗ ସ୍ଥାପନ କରିବା ପାଇଁ ବହୁ ପ୍ରାଚୀନ କାଳରୁ ଅଦ୍ୟାବଧି ନାନାପ୍ରକାର ଉପଚାର ବିଧିର ପ୍ରୟୋଗ କରାଯାଇଛି। ତନ୍ମଧ୍ୟରୁ ପ୍ଲାଞ୍ଚେଟ୍ ଗୋଟିଏ। ଏହାର ପ୍ରୟୋଗ ଓ ଲେଡ଼ି ବ୍ଲାଭାଟସ୍କିଙ୍କ କ୍ଲେଆରଭଏନ୍ସ କଥା ନୁହେଁ। ପ୍ଲାଞ୍ଚେଟ୍‌ରେ ଗୋଟିଏ ତିନିଗୋଡ଼ିଆ ଟେବୁଲ୍ ଉପରେ ଗୋଟିଏ କପ୍‌କୁ ତଳମୁହାଁ ରଖି ସ୍ତିମିତ ଆଲୋକରେ ରାତ୍ରିର ନିରବତା ମଧ୍ୟରେ ନିର୍ଦ୍ଦିଷ୍ଟ ଅଶରୀରୀ ଆତ୍ମାକୁ ଆବାହନ କରାଯାଏ। ସେ ଆତ୍ମାର ଆବିର୍ଭାବ ଘଟିଲେ ଟେବୁଲଟି ଦୋଦୁଲ୍ୟମାନ ହୁଏ ଚା' କପ୍‌ଟି ଚାଲେ। ବା ଧୂଆଁଳିଆ ଗୋଟିଏ ଆକୃତି ମଧ୍ୟ ଅସ୍ପଷ୍ଟ ଦେଖାଯାଇପାରେ। – ଆତ୍ମା ସହିତ କଥୋପକଥନ, ସଂଳାପ ବା dialogue ସମ୍ଭବ ହୁଏ ନାହିଁ। ତାର ପରିବେଶକୁ ଏପରି ରହସ୍ୟମୟ ଓ ଭୀତିପ୍ରଦ କରାଯାଇଥାଏ ଯେ ସାଧାରଣ ବ୍ୟକ୍ତିଟିଏ ସେଇଠି ଭୟାର୍ତ୍ତ ଓ ଉତ୍କଣ୍ଠିତ ହୋଇ ଗୋଟାଏ କ'ଣ ଚମତ୍କାର ଘଟିବାକୁ ଅପେକ୍ଷା କରିଥାଏ। କ୍ଲେଆରଭଏନ୍ସ ଜରିଆରେ ଜଣେ ବ୍ୟକ୍ତି

ଗୋଟିଏ ଅଶରୀରୀ ଆତ୍ମା ପାଇଁ ଆଧାର ଓ ମାଧ୍ୟମ ହୋଇଯାଏ । ଭୂତାବିଷ୍ଟ ହୋଇଯାଏ ଏବଂ ସେହି ଅବସ୍ଥାରେ ଅଶରୀରୀ ନିଜର ବକ୍ତବ୍ୟ ପ୍ରକାଶ କରେ ।

ତନ୍ତ୍ର ସାଧନାରେ ଜଣେ ଯୋଗୀ ମୃତ୍ୟୁଲୋକରେ ପ୍ରବେଶ କରି ପାରନ୍ତି ଏବଂ ସେଠାରେ ଦେହାନ୍ତରିତ ଆତ୍ମା ସହିତ ସଂଯୋଗ ସ୍ଥାପନ କରି ପାରନ୍ତି । ଗ୍ରୀକ୍ କିମ୍ବଦନ୍ତିର ଓରଫିଅସ୍ ତାଙ୍କ ତାରଯନ୍ତ୍ର ବାଦନ କରି ପଶୁପକ୍ଷୀ ବୃକ୍ଷଲତାଦି ସଚରାଚର ପ୍ରାଣୀଙ୍କୁ ମନ୍ତ୍ରମୁଗ୍ଧ କରି ଦେଉଥିଲେ । ତାଙ୍କର ପତ୍ନୀ ବିୟୋଗ ହେବାରୁ ସେ ତାଙ୍କ ପତ୍ନୀଙ୍କୁ ମୃତ୍ୟୁଲୋକରୁ ଉଦ୍ଧାର କରିବାକୁ ସେ ଜଗତ୍‌ରେ ତାଙ୍କର ମୋହକ ସଙ୍ଗୀତ ବଳରେ ପ୍ରବେଶ କଲେ ଏବଂ ତାଙ୍କ ପତ୍ନୀଙ୍କର ଆତ୍ମାକୁ ଫେରାଇ ଆଣିବାକୁ ଅନୁମତି ପ୍ରାପ୍ତ ହେଲେ । କିନ୍ତୁ ଇହଲୋକ ପରଲୋକ ମଝିରେ ପ୍ରବାହିତ ବୈତରଣୀ ପାରିହୋଇ ଆସୁଥିଲାବେଳେ ବାଲିରେ ପଦଧ୍ୱନି ଶୁଣି ନ ପାରି ପଛକୁ ଫେରି ଚାହିଁଦେଲେ । ଫଳରେ ସର୍ତ୍ତ ଭଙ୍ଗ ହେଲା ଓ ତାଙ୍କ ପତ୍ନୀଙ୍କ ଆତ୍ମା ଫେରିଗଲା ମୃତ୍ୟୁଲୋକକୁ । ସେହିପରି ପ୍ରମଦ୍ୱରାଙ୍କୁ, ସାବିତ୍ରୀ ସତ୍ୟବାନ ବା ନଚିକେତା ଉପାଖ୍ୟାନରେ ମୃତ୍ୟୁଲୋକରେ ପ୍ରବେଶ କରିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ମହାନ୍ ତନ୍ତ୍ରସାଧକ ଯୋଗୀପୁରୁଷ ନିଗମାନନ୍ଦ ମୃତ୍ୟୁଲୋକରେ ପ୍ରବେଶ କରିବାର ବିଶଦ ବିବରଣୀ ଲିପିବଦ୍ଧ କରିଯାଇଛନ୍ତି ।

ତେବେ ଏ ମୃତ୍ୟୁଲୋକର ଅବସ୍ଥିତି କେଉଁଠି । ତା'ର ଭୌଗୋଳିକ ସୀମାରେଖା ଅଛି କି ? ସେ ଜଗତର ଅନ୍ୟାନ୍ୟ ଅନୁଭବ କ'ଣ ଜାଣିବା ସାଧାରଣ ଦୃଷ୍ଟିରୁ ସମ୍ଭବ ନୁହେଁ ? ଯଦି କେହି ସେ ଭୂମିରେ ପ୍ରବେଶ କରି ସମସ୍ତ ସ୍ମୃତି ଓ ଅନୁଭବ ସହିତ ଏ ଜଗତକୁ ଫେରିଆସେ ତା'ହେଲେ ସେ ହିଁ ସେ ବିଷୟରେ ବୟାନ ଦେଇପାରେ । କିନ୍ତୁ ସେ ବୟାନକୁ ପରୀକ୍ଷା କରିବାର କୌଣସି ଉପାୟ ନାହିଁ । ତାକୁ ହୁଏତ ସମ୍ପୂର୍ଣ୍ଣ ରୂପେ ବିଶ୍ୱାସ କରାଯାଇପାରେ ବା ସମପରିମାଣରେ ଅବିଶ୍ୱାସ ମଧ୍ୟ କରାଯାଇପାରେ । କିନ୍ତୁ ମୃତ୍ୟୁଲୋକରେ ଅବସ୍ଥାନ କରୁଥିବା କୌଣସି ଅଶରୀରୀ ଆତ୍ମା ଯଦି ଏ ଜଗତର କାହା ସହିତ କୌଣସି ମାଧ୍ୟମରେ କଥାବାର୍ତ୍ତା କରିପାରନ୍ତି, ତା'ହେଲେ ପ୍ରଶ୍ନ-ଉତ୍ତର ଛଳରେ ଅନେକ ତଥ୍ୟ ସଂଗ୍ରହ କରାଯାଇପାରେ । ସେହିପରି ଏକ ମାଧ୍ୟମ ହେଉଛି ପ୍ଲାଞ୍ଚେଟ୍ ।

ପ୍ଲାଞ୍ଚେଟ୍ ପ୍ରୟୋଗର ଚିରାଚରିତ ପ୍ରଣାଳୀକୁ ଯଦି ରହସ୍ୟମୁକ୍ତ କରି ଦିଆଯାଏ ତାହା ଏକ ବିଜ୍ଞାନାଗାରର ପରୀକ୍ଷା ଭଳି ଅଧିକ ଗ୍ରହଣଯୋଗ୍ୟ ଓ ବିଶ୍ୱାସଯୋଗ୍ୟ ହୋଇପାରିବ । ଏଥିପାଇଁ ସ୍ୱଚ୍ଛ ଦିବାଲୋକରେ ଭୂଇଁ ଉପରେ ଏକ ଅକ୍ଷରବୃତ୍ତ ଅଂକନ କରି, ତା'ର କେନ୍ଦ୍ରରେ ଗୋଟିଏ ଠିପି ରଖି ଏ କ୍ରିୟା କରାଗଲା । କୌଣସି ନିର୍ଦ୍ଦିଷ୍ଟ ମୃତ ବ୍ୟକ୍ତିର ଆତ୍ମାକୁ ଆବାହନ ନ କରି ଯେକୌଣସି ଅଶରୀରୀ ଆତ୍ମାକୁ ବୃତ୍ତରେ ପ୍ରବେଶ କରିବାକୁ ଅପେକ୍ଷା କରାଗଲା । ଦେଖାଗଲା ବିଭିନ୍ନ ଦେଶକାଳର ଅପରିଚିତ

ମଣିଷଙ୍କ ଆତ୍ମାମାନ ଆସି ନିଜ ନିଜର ପରିଚୟ ଦେବାପରେ ବିବିଧ ପ୍ରଶ୍ନର ଉତ୍ତର ଦେଲେ । ପରିଣାମତଃ ଏ ପୁସ୍ତିକାଟିରେ ଲିପିବଦ୍ଧ ହେଲା "ମୃତ୍ୟୁ ଆରପାରିରୁ ସଂକେତ।" ପ୍ରେତଲେଖ ବା spirit writing ଏହାର ଏକ ପରବର୍ତ୍ତୀ ସୋପାନ । ତଥାପି ଏଥିରେ ଏତେମାତ୍ରାରେ ରହସ୍ୟ ରହିଯାଇଛି ଯେ ତା'ର ଉନ୍ମୋଚନ ଏ ମାଧ୍ୟମରେ ସମ୍ଭବ ନୁହେଁ । ବୋଧହୁଏ ଆଦୌ ସମ୍ଭବ ନୁହେଁ।

ଉଦାହରଣସ୍ୱରୂପ (୧) ଇହଲୋକରେ ନିର୍ଦ୍ଦିଷ୍ଟ ଦେଶକାଳପାତ୍ରରେ ଜଡ଼ିତ ଆତ୍ମା ଶରୀର ତ୍ୟାଗ କଲାପରେ ଏ ଜଗତର ଦେଶକାଳକୁ ଅତିକ୍ରମ କରିଯାଏ, ଅଥଚ ପୁନଶ୍ଚ ବିନା ଶରୀରରେ ଏ ଦେଶକାଳରେ ପ୍ରବେଶ କରେ କିପରି ଏବଂ ଶରୀରଧର୍ମୀ କ୍ରିୟା, ଯଥା– ଶୁଣିବା ବୁଝିବା ଉତ୍ତରଦେବା ଆଦି କରି କିପରି ପ୍ରାଚୀନ ଗ୍ରୀକ୍ ଜଣକର ଅଶରୀରୀ ଆତ୍ମା କିପରି ଏଠାରେ ଏହି ସମୟରେ ଉପସ୍ଥିତ ରହି ଅପରିଚିତ ଇଂରାଜୀ ଭାଷାର ପ୍ରଶ୍ନକୁ ଇଂରାଜୀରେ ଉତ୍ତର ଦେଇପାରୁଛି ? ଏଥିରେ ମୁକ୍ତ ଆତ୍ମାର ସର୍ବବ୍ୟାପକତା ସର୍ବକାଳୀନତା ଓ ସର୍ବଜ୍ଞାପୃତା ପ୍ରମାଣିତ ହେଉଛି ନା ଆଉ କିଛି ? (୨) ଶରୀରରୁ ମୁକ୍ତ ହୋଇଯିବା ପରେ ଅନ୍ୟ ଶରୀରକୁ ଆଶ୍ରୟ କରିବା ଅନିବାର୍ଯ୍ୟ ନା ସେ ଆତ୍ମାଟିର ଇଚ୍ଛାଧୀନ ? ଅଶରୀରୀ ଅବସ୍ଥାରେ ସେ ଆତ୍ମା 'ତପସ୍ୟା' କରି କ୍ରମଶଃ ଉଚ୍ଚରେ ସ୍ତରକୁ ପ୍ରବେଶ କରିବାର ଯେଉଁ ସୂଚନା ମିଳୁଛି, ତାହା କ'ଣ ସତ୍ୟ ? ସେ ବିଷୟରେ ଆଉ ତ' କାହିଁ କେଉଁଠି କିଛି ପ୍ରମାଣ ବା ଉଲ୍ଲେଖ ନାହିଁ । – ଆତ୍ମାମାନଙ୍କର ସ୍ତର ଅତି ସ୍ୱଷ୍ଟ ଭାବରେ କୁହାଯାଇଛି । ସାଧାରଣ ଆତ୍ମା ୨୦/ ୩୦ ସ୍ତରରେ ଥିବାବେଳେ କେହିକେହି ୧୦୮ ଓ ଆଉ କେହି କେହି ୧୦୩୫ରେ ପହଞ୍ଚିଥିବାର ତଥ୍ୟ ଏ ପରୀକ୍ଷାରୁ ମିଳୁଛି । ଅଶରୀରୀମାନେ ଅହରହ ତପସ୍ୟା କରୁଥିବାର ମଧ୍ୟ ସୂଚନା ମିଳୁଛି । ଏହା ଏକ ଅଜ୍ଞାତ ଗଭୀର ରହସ୍ୟ ।

(୩) ଅଶରୀରୀ ଆତ୍ମା ଇହଲୋକର ଦେଶକାଳରେ ପ୍ରକଟ ହେବାପାଇଁ ବିଗତ ଶରୀରର ଆକୃତିକୁ ସାଧାରଣତଃ ଧାରଣ କରିଥାଏ । ଦେଶକାଳପାତ୍ରକୁ ଏକତ୍ର ସ୍ୱୀକାର କରିବା ବୋଧହୁଏ ତା'ପାଇଁ ଅନିବାର୍ଯ୍ୟ। ଏଣୁ ମାଧବର ଆତ୍ମା ସାଧବ ରୂପରେ ପ୍ରକଟ ହୋଇ ପାରିବ ନାହିଁ । କିନ୍ତୁ ସେହିପରି ଏକ ସମ୍ଭାବନା ସୂଚିତ ହୋଇଛି ଘଟନାକ୍ରମରେ । ଅଶରୀରୀ ଆତ୍ମା ଜୀବିତ କୌଣସି ଅପର ବ୍ୟକ୍ତିର ଆକୃତି ନେଇ ପ୍ରକଟ ହୋଇପାରିବ କି ? ହୁଏତ ନିୟମତଃ ନୁହେଁ । କିନ୍ତୁ ବ୍ୟତିକ୍ରମ ବି ହୋଇପାରେ । ଏହା ଆଉ ଏକ ରହସ୍ୟ।

ଏହି ସମସ୍ତ କାରଣରୁ ମୂଳ ମୃତ୍ୟୁରହସ୍ୟ ତ କେହି ଉନ୍ମୋଚିତ କରି ପାରିନାହିଁ ବରଂ ଆଉ ନୂଆ କେତେକ ରହସ୍ୟ ଆଣି ଠିଆ କରାଇଛି । ଏହା ମୂଳରୁ ପରିଷ୍କାର

ହୋଇଯିବା ଉଚିତ ଯେ ଲିପିବଦ୍ଧ ବିବରଣୀମାନଙ୍କରେ କୌଣସି କଳ୍ପନା ବା ଅତିରଂଜନ ନ ଥାଇପାରେ । କେବଳ ଘଟନା ବା ତଥ୍ୟ ଆଲୋଚନା କଲାବେଳେ କିଛିମାତ୍ରାରେ ବିଚାର ବୁଦ୍ଧି ପ୍ରୟୋଗ ହୋଇଥାଇପାରେ ଅନିର୍ବାର୍ଯ୍ୟତା ହେତୁ । କିନ୍ତୁ ଏହା ବହୁ ପାଠକଙ୍କ ମନରେ କୌତୂହଳ ଜାତ କରିପାରେ । ଆହୁରି ଜାଣିବା ପାଇଁ ସେମାନେ ହୁଏତ ଉତ୍କଣ୍ଠିତ ହୋଇପାରନ୍ତି। ସେ ଦିଗରେ କିଏ ବା କ'ଣ କରିପାରିବ ? ପୁଣି ସେ ପରୀକ୍ଷାରେ ପାଦ ଦେବାକୁ ଅନ୍ତତଃ ମୁଁ ସମର୍ଥ ନୁହେଁ କାରଣ ଗୁରୁଙ୍କର ଆଜ୍ଞା ନାହିଁ।'' ମୋତେ ବାରଣ କରାଯାଇଛି କିନ୍ତୁ ମାର୍ଗ ପ୍ରସ୍ତୁତ । ପ୍ରୟୋଗ କୌଶଳ ମଧ ସ୍ପଷ୍ଟ। କେହି ଯଦି ନିଷ୍ଠା ଓ ସାହସର ସହିତ ଏ ଅଜ୍ଞାତ ଭୂମିରେ ପ୍ରବେଶ କରନ୍ତି ଆହୁରି ଅନେକ ତଥ୍ୟ ହୁଏତ ମିଳିପାରିବ। ମୁଁ ସେଭଳି ଉଦ୍ୟମକୁ ସ୍ୱାଗତ କରୁଛି, ତା'ର ପରିଣାମକୁ ଅପେକ୍ଷା କରୁଛି।



# 'କେଡ଼ା'ର କାହାଣୀ*

ପ୍ରାୟ ଦିଗ୍‌ବଳୟ ସେପାରିର ଅଦୃଶ୍ୟ ଭୂମିର କଥା । ଅସ୍ପଷ୍ଟ ଅଥଚ ସୁକୁମାର ବାଲ୍ୟକାଳର କଥା । ଚିକ୍କଣ ଓଦାମାଟିର ଖୋପ ଭିତରେ କଙ୍କିକୁ ଶୁଆଇ ଦେଇ ଉପରୁ ନିବୁଜ କରିଦେଲେ କୁଆଡ଼େ ତା' ଆରଦିନ ସକାଳୁ ତା' ମୁଣ୍ଡଟି ମାଣିକ୍ୟ ହୋଇଯାଏ, ଧରିଥିବା ପ୍ରଜାପତିକୁ ଗେଲ କରି ଉଡ଼େଇ ନ ଦେଲେ ତା' ଡେଣାର ରଙ୍ଗ ଟିପରେ ଲାଗେ ନାହିଁ, ଉଡ଼େଇ ନଦେଲେ ତା' ମା' କୁଆଡ଼େ କାନ୍ଦେ । – ଏହିପରି ବିଶ୍ୱାସ ବେଳର କଥା । କେବେ କିପରି ଓ କାହିଁକି କଞ୍ଚାମାଟିରେ ଜଗନ୍ନାଥ ଆକୃତି ଗଢ଼ି ବା ହଳଦି, ଅଳତା ଓ ଶିମ୍ବପତ୍ର ଦୋରୁଅରେ କାଗଜ ଉପରେ ସିଂହଚିତ୍ର କରି ମୁଁ ଉଲ୍ଲସିତ ହୋଇଥିଲି କହିପାରିବି ନାହିଁ । ପର୍ବତ ଭିତରେ ସଂଚିତ ଜଳରାଶି ପରି ଜନ୍ମରୁ ବୋଧହୁଏ ମୋ ଭିତରେ କିଛି ଗୋଟାଏ ଟଳମଳ ହେଉଥିଲା, ବାଟ ଖୋଜୁଥିଲା ଝରିଯିବା ପାଇଁ। ଆତ୍ମପ୍ରକାଶର ଅହରହ ଓ ଅନିବାର୍ଯ୍ୟ ଚାପ ହେତୁ ହୁଏତ ମୁଁ ମାଧ୍ୟମ ଖୋଜୁଥିଲି; ମାଟି, କାଠ, ପଥର ବା ରଙ୍ଗର ଭାଷା ନେଇ ପରୀକ୍ଷା କରୁଥିଲି। ଅନେକ ବିଳମ୍ବରେ ସବାଶେଷରେ ଲେଖିଲି ପ୍ରଥମେ ଦଶବାର ବର୍ଷ ଇଂରାଜୀରେ ଓ ପରେ ଓଡ଼ିଆରେ। ଲେଖକ ବୋଲି ପରିଚିତ ଏ ବ୍ୟକ୍ତିସତ୍ତା ଅନ୍ତରାଳରେ ଏବେ ମଧ୍ୟ ଅପରିଚିତ ବା କିଞ୍ଚିତ୍ ପରିଚିତ ସେଇ ଚିତ୍ରକର ଓ ସ୍ଥପତି ଲୁଚି ରହିଛନ୍ତି, ମୁଁ ସେମାନଙ୍କୁ ସ୍ୱୀକାର କରେ, ଆତ୍ମପ୍ରକାଶ ପାଇଁ ସେମାନଙ୍କ ମାଧମକୁ ସ୍ୱୀକାର କରେ। ତୂଳୀ, ବଟାଳି ଓ ଲେଖନୀକୁ ସମପରିମାଣରେ ସମ୍ମାନ ଦିଏ। ମୋର ବିଶ୍ୱାସ ଯେ ମୋର ସ୍ରଷ୍ଟା ଏଗୁଡ଼ିକୁ ଅବଲମ୍ବନ କରି ନିଜକୁ ଖୋଜିବାକୁ ଓ ପ୍ରକାଶ କରିବାକୁ ମୋତେ ନିରବ ନିର୍ଦ୍ଦେଶ ଦେଇ ଏ ପୃଥିବୀକୁ ପଠେଇଛନ୍ତି । ଯଥାଶକ୍ତି ସେ ନିର୍ଦ୍ଦେଶ ପାଳନ କରିବା ମୋର ଅନିବାର୍ଯ୍ୟ ଧର୍ମ। ଏଠିକା ମାନଦଣ୍ଡରେ ମୋର ସଫଳତା ବା ବିଫଳତା ମୋ ପାଇଁ ଅବାନ୍ତର। ଚୂଡ଼ାନ୍ତ ଇଜ୍‌ଲାସ୍‌ରେ ମୋ ସ୍ରଷ୍ଟା ପାଖରେ ହିଁ ମୁଁ ଉତ୍ତରଦାୟୀ । ମୁଁ ତାଙ୍କୁ ଅମାନ୍ୟ କରିନାହିଁ। ଏହାହିଁ ମୋ ଜୀବନର ସାର୍ଥକତା।

(*) 'କେଡ଼ା' ଚନ୍ଦ୍ରଶେଖର ରଥଙ୍କ ସର୍ବପ୍ରଥମ ପ୍ରକାଶିତ ଗଳ୍ପ

ସଂକ୍ଷେପରେ କହିଲେ ମୁଁ ଭାଷା ମାଧ୍ୟମରେ ନିଜକୁ ପ୍ରକାଶ କଲା ପରେ ଅନେକ ମାତ୍ରାରେ ହାଲୁକା ଅନୁଭବ କଲି । ପ୍ରବଳ ଚାପରେ ଆବଦ୍ଧ ଜଳରାଶି ଝରିଗଲେ ଗିରିଗର୍ଭ ବୋଧହୁଏ ସେହିପରି ହାଲୁକା ଅନୁଭବ କରୁଥିବ । ଗିରିଝର କେଉଁ ଦିଗରେ ଝରିଯାଏ ବା କେଉଁ ରୂପ ଧାରଣ କରେ, ସେ ବିଷୟରେ ସେ ସଚେତନ ନୁହେଁ । ମୁଁ ମଧ୍ୟ ମୋର ପ୍ରଥମ ଲେଖା ବିଷୟରେ ତା'ର ସଂଜ୍ଞା ବା ପ୍ରକୃତି ବିଷୟରେ ସଚେତନ ନଥିଲି । 'ତ୍ରିଶଙ୍କୁର ସ୍ୱର୍ଗ' ଲେଖା ହେଲା ଛାପା ହେଲା । ବିଜ୍ଞଜନେ ତାକୁ ନିବନ୍ଧ କହିଲେ । ବିଦଗ୍ଧ ରସିକ ପାଠକ ତାକୁ ରମ୍ୟରଚନା ବୋଲି ଆଖ୍ୟାତ କଲେ । ସେ ଧାରା ଅବ୍ୟାହତ ରହିଲା, ବୋଧହୁଏ ଅବ୍ୟାହତ ରହିଛି ଅଦ୍ୟାବଧି । ଶତାଧିକ ରଚନା ରଚିତ ହୋଇଛି ।

କିନ୍ତୁ ତା' ସହିତ; ତା'ଠାରୁ ସ୍ୱତନ୍ତ୍ର ଅଥଚ ତା'ର କୌଣସି ବିରୋଧ ନ କରି ଶାଖାସ୍ରୋତ ସବୁ ପ୍ରବାହିତ ହେଲେ ଗଳ୍ପ, ଉପନ୍ୟାସ ଓ କବିତା । ଏଣୁ ସେଇ ୧୯୬୦-୬୫ ବେଳକୁ ରଚନାର ଖରସ୍ରୋତ ବହୁଥିଲା ବେଳେହିଁ 'ଯନ୍ତାରୂଢ଼' ଉପନ୍ୟାସ ଲେଖା ହେଲା ଏବଂ 'କେଡ଼ା' ଗଳ୍ପ ବନ୍ଧ ଭାଙ୍ଗି ଆଉ ଗୋଟିଏ ସ୍ରୋତର ବାଟ ଫିଟେଇଦେଲା ।

ଭାବତରଙ୍ଗ ମନୋଭୂମିରୁ ସଂଚରି ଆସି ପ୍ରାଣଭୂମିକୁ ଓଦା କଲାବେଳେ ଲେଖା ହେଲା ଗଳ୍ପ ଓ ଉପନ୍ୟାସ । ରଚନାରେ ଯେଉଁ ଆଭାସ ଥିଲା ତାହା ପୂର୍ଣ୍ଣ ପ୍ରକଟିତ ହେଲା । କୌଣସି ଯୋଜନାବଦ୍ଧ ନିଷତ୍ତି ଅନୁସାରେ, ରଚନା ବା ଗଳ୍ପ ଲେଖା ହେଉନଥିଲା । ଜନ୍ମ ନେବା ପୂର୍ବରୁ ହିଁ ତା'ର ରୂପ ଓ ପ୍ରକୃତି ସ୍ଥିର ହୋଇଯାଉଥିଲା । ଏଣୁ 'କେଡ଼ା' ମୋ ଭିତରେ ରୂପ ପରିଗ୍ରହ କଲାବେଳେ ମୁଁ ଅନୁଭବ କରିଥିଲି ଯେ ତାହା ରଚନା ନୁହେଁ । ଲେଖିଲି ଏବଂ ପ୍ରଥମ ଗଳ୍ପ ଲେଖା ହୋଇଗଲା ।

କେଡ଼ା ନିଷାଦପ ରାଉରକେଲା ରାସ୍ତାକଡ଼ରେ ଠିଆ ହୋଇଥିବା ପୂର୍ଣ୍ଣାଙ୍ଗ ବଢ଼ି ପାରୁନଥିବା ଥୁଣ୍ଟାଳିଆ ଗଛପରି ଏକ ଖର୍ବକାୟ ମଣିଷ ପିଲା । ତା' ଭିତରେ ଅତିକାୟ ଶୋଷ, ମୁଣ୍ଡ ଉପରେ ଅତିକାୟ ଦୁଃଖ ଓ ଦାରିଦ୍ର୍ୟ । କିନ୍ତୁ ସେଇ ଥୁଣ୍ଟା ଟାଣୁଆ ଗଛପରି ସେ ଖାତିର କରେ ନାହିଁ ତରଳ ଇସ୍ପାତ୍ ସଦୃଶ ବୈଶାଖୀ ଖରାକୁ, ଝଡ଼କୁ ବା ବଜ୍ରପାତକୁ । ଖାଲି ପାଦ, ବାଙ୍ଗରା ଗୋଡ଼ର ଆଣ୍ଠୁତଳ ଯାଏ ଲମ୍ବି ଆସିଥିବା ଅନିର୍ଦ୍ଦିଷ୍ଟ ମଣିଷ ରଙ୍ଗର ବେସାଇଜ୍ ହାଫ୍‌ପେଣ୍ଟ, ଉପରକୁ ସେହିପରି ଢ଼ିଲା ମେଲା ମଇଳା ହାତବାଲା ଗଞ୍ଜି । ତା' ଉପରକୁ ତା'ର ଅନମନୀୟ ବେସାଲିସ୍ ଉଦ୍ଧତ ଝାମ୍ପୁରା ମୁଣ୍ଡ । ନାଗଫଣା ପରି ଟେଳି ହୋଇ ରହିଥିବା ଏକ ଉଠାଣି ରାସ୍ତାର ତଳ

ମୁଣ୍ଡରେ ଠିଆ ରହିଥାଏ 'କେଡ଼ା' ଏକାକୀ – ଉତପ୍ତ ରାଉରକେଲା, ନିଷ୍କରୁଣ ପୃଥିବୀ ଓ ଅବାନ୍ଧବ ସଂସାରକୁ ମୁକାବିଲା କଲା ଭଙ୍ଗୀରେ ।

ଧୁ'ଧୁ' ଖରାବେଳେ ସେ ନିଛାଟିଆ ରାସ୍ତାରେ କେଡ଼ା ସାମ୍ନାରେ ଅଟକିଯାଏ ଖଣ୍ଡେ ରିକ୍ସା । ଆରୋହୀ ମେଦବହୁଳ ଘର୍ମାକ୍ତ ପଇସାବାଲା ଗରାକ । ଚାଳକ ପାତଳା ଡେଙ୍ଗା ଠେକାଭିଡ଼ା, ଅଣ୍ଟାରେ ଗାମୁଛାଭିଡ଼ା ରିକ୍ସାବାଲା – ତା' ଶ୍ରମଝାଳ ଅବାଧ ଝରି ଯାଉଥାଏ ଛ'ପୁଟ ତଳକୁ । ପତୁପତୁ ଧୂଆଁ ହୋଇଯାଉଥାଏ ରାଉରକେଲାର ତୃଷାର୍ତ୍ତ ଜିଭ ଉପରେ । ସେ ପର୍ବତ ଆରୋହଣ କରିବ ତା'ର ଦୁର୍ବହ ଭାରକୁ ଟାଣି ଟାଣି ।

ଧନୁପରି ବାଙ୍କିଯାଇ ରିକ୍ସାବାଲା ଆଗକୁ ଓ ଉପରକୁ ଟାଣେ । ରିକ୍ସା ପିଠିରେ ମୁଣ୍ଡ ଲଗେଇ ଲେଡ଼ା ମାରି କେଡ଼ା ଠେଲେ । ମଝିରେ ନିର୍ଦ୍ଦୟ ସଂସାର ଓ ଜୀବନ ଯାତନାର ଗୁରୁଭାର । ପାଦତଳେ ସଂଗ୍ରାମର ଭୂମି, ଉପରେ ନିଷ୍କମ୍ପ ନିଦାରୁଣ ଆକାଶ। ରିକ୍ସାବାଲା ଓ କେଡ଼ାର ପ୍ରତି ପଦପାତରେ ପାରି ହେଉଥାଏ ଦୁର୍ଲଙ୍ଘ୍ୟ କାଞ୍ଚନଜଙ୍ଘା।

ଉଠାଣିର ଶିଖରରେ ପହଞ୍ଚିଗଲେ ରିକ୍ସା ଥମିଯାଏ । ଡେଙ୍ଗା ରିକ୍ସାବାଲା ତା' ଅଣ୍ଟାରୁ ସ୍ୱେଦସିକ୍ତ ଦଶପଇସିଟିଏ କେଡ଼ାର ସ୍ୱେଦସିକ୍ତ ପାପୁଲି ଉପରେ ରଖିଦିଏ । ରିକ୍ସା ଓହ୍ଲେଇଯାଏ ପୂର୍ବକୁ, କେଡ଼ା ଓହ୍ଲେଇଯାଏ ପଶ୍ଚିମକୁ ।

ମୁଁ ଏ ଦୃଶ୍ୟ ଦେଖିଛି । ଏବେ ବି ଦେଖୁଛି ଅତି ସ୍ପଷ୍ଟ ପ୍ରାଞ୍ଜଳ, ନିର୍ମମ । ମୁଁ ଯେଉଁଠି ଥାଇ ଦେଖିଛି, ଆପଣ ବି 'କେଡ଼ା' ଗଳ୍ପ ପଢ଼ିଲା ବେଳେ ସେଇଠୁ ଏ ଦୃଶ୍ୟ ଦେଖିଛନ୍ତି, କାରଣ ମୁଁ ହିଁ ଆପଣଙ୍କୁ ସେପରି ଦେଖାଇଛି, କାରଣ ମୁଁ ବି ସେପରି ଦେଖିଛି । ଦୃଶ୍ୟ ପଛକୁ, ଦୃଶ୍ୟପଟକୁ ଟେକି ଆଉ କିଛି ଖୋଜନ୍ତୁ ନାହିଁ; କାରଣ ମୁଁ ଖୋଜେ ନାହିଁ। ମୁଁ ଜାଣେ କିଛି ମଳିବ ନାହିଁ । ଧରାଯାଉ କଥାଟା ଏହିପରି – ଏ ଝଟଝଟ କରୁଥିବା ଉତପ୍ତ ଉଠାଣି ରାସ୍ତା ରାଉରକେଲା ହେବାକୁ ବାଧ ନୁହେଁ । ସେ ଡେଙ୍ଗା ଶିରାଳ ମଣିଷଟି ରିକ୍ସାବାଲା ହେବାକୁ ବାଧ ନୁହେଁ, ଏବଂ ସେ ବାଙ୍ଗରା ଦୁର୍ଦ୍ଦାନ୍ତ ମଣିଷ ଛୁଆ କେଡ଼ା ହେବାକୁ ବାଧ ନୁହେଁ । କିନ୍ତୁ ଏ ସମସ୍ତେ ଏକେ ଏକେ ସତ୍ୟ, ଆପଣଙ୍କ ପରି ମୋ ପରି ବାସ୍ତବ । ଜୀବନର ବିସ୍ତୃତ ଭୂମିରେ କିଏ କୋଉଠି ଖଞ୍ଜି ହୋଇ ରହିଛନ୍ତି । ଯେତେବେଳେ ସୃଷ୍ଟି କାମନା କରି ବିଧାତା ପୁରୁଷ ଉପାଦାନ ଲୋଡ଼ି ବସନ୍ତି, ଏ ଆଚମ୍ବିତ ମୁହୂର୍ତ୍ତରେ ଏମାନେ ଆସି ଏକାଠି ହୋଇଯାନ୍ତି ଏକ ନୂତନ ବିନ୍ୟାସରେ । 'କେଡ଼ା' ଗଳ୍ପ ରୂପ ପରିଗ୍ରହ କରେ ।

ମୋ ଭିତରେ ଚିର ଜାଗ୍ରତ ସାକ୍ଷୀପୁରୁଷ ହିଁ ସେହି ବିଧାତା ପୁରୁଷ ଆଉ ଏକ ଭୂମିକାରେ । ସେ ଏ ଜଗତ୍‌ର ଆଉ ଏକ ବିକଳ୍ପ ଜଗତ୍ ସୃଷ୍ଟି କରିବା ପାଇଁ ସମର୍ଥ ।

ଏଣୁ ଗୋଟିଏ ସୃଷ୍ଟିରେ ଜୀବନର କଷାଘାତରେ ଉତ୍ପୀଡ଼ିତ ଏ ତୃଷାର୍ତ୍ତ ଖର୍ବ ମଣିଷ ପିଲା ପାଇଁ ନୂତନ ସୃଷ୍ଟିରେ କିଛି ନ୍ୟାୟ, କିଛି କ୍ଷତିପୂରଣ, କିଛି କରୁଣା, କିଛି ନ୍ୟୂନତମ ମଣିଷ ମଣିଷ ଭିତରେ ଥିବା ଲବଣାକ୍ତ ସୋଦରପଣର ବ୍ୟବସ୍ଥା କରାଯାଇଛି, 'କେଡ଼ା' ଗଳ୍ପରେ । 'ଗଳ୍ପ' ଏକ ଅଭିନବ ସର୍ଜନା, ରୁକ୍ଷ, ଅବିନ୍ୟସ୍ତ ବାସ୍ତବତାର ବିନ୍ୟସ୍ତ ପରିଶୀଳିତ ବିକଳ୍ପ । ଆପଣ ହୁଏତ କହିବେ 'କେଡ଼ା' ଗଳ୍ପ ମୋର ସୃଷ୍ଟି । କିନ୍ତୁ ବିଧାତା ପୁରୁଷ ଯେ ସର୍ଜନା ସାମ୍ରାଜ୍ୟର ସମ୍ରାଟ, ତା' ପାଇଁ 'କେଡ଼ା' ଏକ ପରିଣାମ, ମୁଁ ଏକ ନିମିତ୍ତ ମାତ୍ର ।



# 'ଅସୂର୍ଯ୍ୟ ଉପନିବେଶ' ମୋ ପାଇଁ ଏକ ଗୁମ୍ଫା

୧୯୭୨/୭୩ ବେଳକୁ ମୁଁ ଟିଟିଲାଗଡ଼ରେ ଅଧ୍ୟାପନା କରୁଥିଲି । ସେତିକିବେଳେ 'ଅସୂର୍ଯ୍ୟ ଉପନିବେଶ' ଲେଖିବାର ଧାରଣା ଆସିଥିଲା ଏବଂ ସଙ୍ଗେ ସଙ୍ଗେ ଲେଖିବା ଆରମ୍ଭ କରିଦେଇଥିଲି ମଧ୍ୟ । କାରଣ ମୁଁ ଆଗରୁ ଖସଡ଼ା ପ୍ରସ୍ତୁତ କରି ଉପନ୍ୟାସ ଲେଖେନାହିଁ । ଉପନ୍ୟାସ ହେଉଛି ଏକ ପ୍ରକାର ଜୀବନ ପ୍ରବାହ । ସେ ସ୍ୱତଃ ପ୍ରବାହିତ ହୋଇଯିବ ଏବଂ ତାକୁ ସେହି ପଥରେ ସେତିକି ସ୍ୱାଧୀନତା ଦେବା ଦରକାର । ଏ ସମ୍ପର୍କରେ ଉଦାହରଣଟିଏ ଦେବି । କେନାଲ ଓ ନଦୀ ମଧ୍ୟରେ ଯୋଉ ପାର୍ଥକ୍ୟ, ଯୋଜନାବଦ୍ଧ ଉପନ୍ୟାସ ଓ ମୁକ୍ତ ଉପନ୍ୟାସ ମଧ୍ୟରେ ସେହି ପାର୍ଥକ୍ୟ । ମାଟି ଖୋଳି କେନାଲ ସୃଷ୍ଟି କରାଯାଏ, କିନ୍ତୁ ନଦୀ ଆପେ ମାଟି ଖୋଳି ତା' ମାର୍ଗରେ ବହିଯାଏ । ନଦୀର ମାର୍ଗ ପରି ମୁକ୍ତ ଉପନ୍ୟାସ ତା' ଢଙ୍ଗରେ ଆପେ ଆପେ ଚାଲିଥାଏ । ମୋର ତିନୋଟିଯାକ ଉପନ୍ୟାସକୁ ମୁଁ ଆଗରୁ ଯୋଜନା କରିନଥିଲି ।

'ଅସୂର୍ଯ୍ୟ ଉପନିବେଶ' ସମ୍ପର୍କରେ ଧାରଣା ଆସିଲା ଓ ମୁଁ ଲେଖିବା ଆରମ୍ଭ କରିଦେଇଥିଲି । ଆଉ ଗୋଟେ କଥା 'ଅସୂର୍ଯ୍ୟ ଉପନିବେଶ' ଲେଖିଲା ବେଳେ ମତେ ଭୀଷଣ ପୀଡ଼ା ଦେଇଥିଲା । ଥରେ ତା' ଭିତରେ ପ୍ରବେଶ କଲା ପରେ ଆଉ ପଛକୁ ଫେରିବାର ଉପାୟ ନଥିଲା । ଗୋଟିଏ ଗୋଟିଏ ଦୃଶ୍ୟପଟ ଫିଟି ଫିଟି ଆସିବା ବେଳେ ମୁଁ ଲେଖିଯାଏ । ଯାହା ଦିଶେ, ତାହା ଲେଖାଯାଏ । ଲେଖିବା ସମୟରେ ଯେଉଁ ଚରିତ୍ରମାନେ ଆସିଛନ୍ତି ସେଥିରେ ସତ୍ୟତା ଅଛି, କିନ୍ତୁ ଅଙ୍ଗେନିଭା ଘଟଣା ଅଛି କି ନା ମୁଁ କହିପାରିବିନି । ମୋ ଆଖିରେ ଯାହା ପଡ଼ିଛି ସେସବୁ ମୋ ଲେଖା ଭିତରକୁ ସ୍ୱତଃ ଆସିଯାଇଛି । ସମଗ୍ର ସମାଜରେ ଯେଉଁ କାଳିମାର ଛାୟା, ମୂଲ୍ୟବୋଧର ଯେଉଁ ଅବକ୍ଷୟ ଘଟିଛି ଏବଂ ତା' ଭିତରେ ଦୁର୍ନୀତି, ଅସହିଷ୍ଣୁତା, ଅନୈତିକତା ଯେପରି ଭାବରେ ପ୍ରବେଶ କରିଛି ସେଗୁଡ଼ିକ ମୋ ଆଖିରେ ପଡ଼ିଛି, ମୁଁ ଲେଖିଛି । ନିର୍ଦ୍ଦିଷ୍ଟ ଚରିତ୍ର, ନିର୍ଦ୍ଦିଷ୍ଟ ପରିବେଶ, ନିର୍ଦ୍ଦିଷ୍ଟ ପ୍ରତିକ୍ରିୟା ସେଭଳି ଭାବରେ ଦେଖିନାହିଁ ହୁଏତ, ଆଉ ଯାହା ଯାହା ଦେଖିଛି ଖଣ୍ଡିତ ଭାବରେ ଉପନ୍ୟାସରେ ପ୍ରକଟିତ ହୋଇଛି ।

'ଅସୂର୍ଯ୍ୟ ଉପନିବେଶ'ରେ ଚରିତ୍ରମାନେ ଆସିଛନ୍ତି, ତାଙ୍କ ଢଙ୍ଗରେ ପରିବେଷ୍ଟିତ ହୋଇଛନ୍ତି । ଏଥିରେ ମୁଁ କ'ଣ କହିବାକୁ ଚାହିଁଛି, ତାହା ମୁଁ ଉପନ୍ୟାସରେ କହିସାରିଛି ।

ମୋର ଆଉ ଅଧିକ କିଛି କହିବାର ନାହିଁ । ଗଛରେ ଫୁଲ ଫୁଟୁଛି, ଫଳ ଧରୁଛି । ଯଦି ଗଛକୁ ପଚାରିବ କ'ଣ ପାଇଁ ଏସବୁ କରୁଛ ? ସେ କ'ଣ କହିବ ? ସେମିତି ଜୀବନରେ ଘଟଣାଗୁଡ଼ିକ ଯାହା ଘଟିଯାଉଛି, ତାହା କାହିଁକି ଘଟିଲା, ତା'ର ତାତ୍ପର୍ଯ୍ୟ କ'ଣ, କୋଉ ଉଦ୍ଦେଶ୍ୟ ନେଇ ତାହା ଘଟିଲା - ଏହା ପଚାରିବାର ଯେମିତି କୌଣସି ମାନେ ନାହିଁ, ଠିକ୍ ସେମିତି 'ଅସୂର୍ଯ୍ୟ ଉପନିବେଶ'ରେ ମୁଁ କ'ଣ କହିବାକୁ ଚାହିଁଛି( ? )ର ଉତ୍ତର କିଛି ନାହିଁ । ଉପନ୍ୟାସରେ ଯାହା କହିସାରିଛି ତାହା ହିଁ ଯଥେଷ୍ଟ।

'ଅସୂର୍ଯ୍ୟ ଉପନିବେଶ' ଲେଖିସାରିଲା ପରେ ସେଥିରେ ଆଉ କିଛି ପରିବର୍ତ୍ତନ କରିବାକୁ ମନକୁ କେବେ ଆସିନାହିଁ । କୌଣସି ଜୀବନ୍ତ ମଣିଷର ଅଙ୍ଗପ୍ରତ୍ୟଙ୍ଗରେ ପରିବର୍ତ୍ତନ ଆଣିବା ଯେତିକି ଦୋଷଯୁକ୍ତ, ଗୋଟିଏ ଛାପା ହୋଇସାରିଥିବା ଲେଖାକୁ ପରିବର୍ତ୍ତନ କରିବା ସେତିକି ଦୋଷାବହ ।

'ଅସୂର୍ଯ୍ୟ ଉପନିବେଶ' ଲେଖିବା ପାଇଁ ମୋତେ ଦୁଇବର୍ଷ ଲାଗିଥିଲା । ଏହି ଉପନ୍ୟାସ ଲେଖିଲା ବେଳେ ମୁଁ ଅନ୍ୟାନ୍ୟ ଗଳ୍ପ ଲେଖାଲେଖି ମଧ୍ୟ କରୁଥିଲି । କିନ୍ତୁ ଅନ୍ୟ କୌଣସି ଲେଖା ଉପରେ 'ଅସୂର୍ଯ୍ୟ ଉପନିବେଶ'ର ପ୍ରଭାବ କିମ୍ବା 'ଅସୂର୍ଯ୍ୟ ଉପନିବେଶ' ଉପରେ ଅନ୍ୟ କୌଣସି ଲେଖାର ପ୍ରଭାବ କିଛି ପଡ଼ିନଥିଲା । ସେତେବେଳେ 'ଅସୂର୍ଯ୍ୟ ଉପନିବେଶ' ମୋ ପାଇଁ ଗୋଟିଏ ଗୁମ୍ଫା ଭଳି ଥିଲା । ଯେତେବେଳେ ଏହା ଲେଖିବାକୁ ଯାଉଥିଲି, ସେ ଗୁମ୍ଫା ଭିତରେ ପଶିଯାଉଥିଲି । ସେ ଗୁମ୍ଫାରୁ ବାହାରିବା ପରେ ହିଁ ଅନ୍ୟାନ୍ୟ ଲେଖା ଲେଖୁଥିଲି । ତେଣୁ କୌଣସି ଲେଖା ଉପରେ ଅନ୍ୟ କୌଣସି ଲେଖାର ପ୍ରଭାବ ନ ପଡ଼ିବା ସ୍ୱାଭାବିକ।



# କବିର୍ମନୀଷୀ ପରିଭୂଃସ୍ୱୟମ୍ଭୂଃ

(ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥଙ୍କର ଇଂରାଜୀରେ ପ୍ରଦତ୍ତ ୩୦, ମାର୍ଚ୍ଚ ୨୦୦୦ରେ ଗୁଆହାଟୀଠାରେ ଅନୁଷ୍ଠିତ 'ପୂର୍ବାଞ୍ଚଳ କବି ସମାରୋହ'ର ଏହି ଉଦ୍‌ଘାଟନୀ ଅଭିଭାଷଣଟିକୁ 'ସ୍ମୃତି'ରୁ ଓଡ଼ିଆରେ ଅନୁସୃଜନ କରିଛନ୍ତି ସେହି ସମାରୋହରେ ଉପସ୍ଥିତ ବିଶିଷ୍ଟ ଓଡ଼ିଆ କବି ଶ୍ରୀଯୁକ୍ତ ହୃଷୀକେଶ ମଲ୍ଲିକ । ଶ୍ରୀ ମଲ୍ଲିକ ନମ୍ରତାର ସହ କହନ୍ତି : 'ଅନୁବାଦଟି ବକ୍ତୃତା ଶୁଣି, ମନେରଖି କରାଯାଇଥିବାରୁ ଏଥିରେ ଯଦି କିଛି ଭାଷାଗତ ଓ ବକ୍ତବ୍ୟଗତ ବିଚ୍ୟୁତି ଥାଏ, ତେବେ ସେଥିପାଇଁ ମୁଁ ପୂର୍ଣତଃ ଦାୟୀ, ଆଉ ଏହାର ପ୍ରତ୍ୟେକଟି ଉତ୍କର୍ଷର ଅଧିକାରୀ ସେଇ ତୁଂଗ ଓ ବରେଣ୍ୟ ବକ୍ତା, କଥାକାର ସ୍ୱୟଂ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ' – ପ୍ରକାଶକ)

ଡକ୍ଟର ଚଂନ୍ଦ୍ର ପ୍ରସାଦ ସାଇକିଆ, କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଅଞ୍ଚଳ-ସମ୍ପାଦକ ଡ଼କ୍ଟର ରାମକୁମାର ମୁଖୋପାଧ୍ୟାୟ, ପ୍ରିୟ ଶ୍ରୀ ନବକାନ୍ତ ବରୁଆ, ଡ଼କ୍ଟର କବିନ୍ ପୁକନ୍, ଡ଼କ୍ଟର ବସନ୍ତ କୁମାର ଗୋସ୍ୱାମୀ ଓ କବିତାପ୍ରେମୀ ବନ୍ଧୁଗଣ!

ଏମିତି ଏକ ଅପରାହ୍ନରୁ ମୁହଁ ବୁଲାଇ ନେବାର ଶକ୍ତି ମୋର ନାହିଁ, କାରଣ ଏପରି ସ୍ନେହ ଜୀବନରେ କ୍ୱଚିତ୍ ମିଳେ । ଆଜିର ଏ ଭବ୍ୟ କବି-ସମାରୋହରେ ଯୋଗଦେବା ସୌଭାଗ୍ୟର କଥା, କାରଣ କବିମାନେ ଓ ମୋ'ପାଇଁ ସର୍ବଦା ମହାର୍ଘଇ ମହାନ୍ । ଶ୍ରୀଯୁକ୍ତ ବରୁଆ କବିତାର କଥା କହିବାବେଳେ ସୂଚନା ଦେଇଛନ୍ତି, କବିତାର ସଂଜ୍ଞା ନିର୍ଦ୍ଧାରଣ କରିବା ବା କବିତା କ'ଣ ଏହା ବ୍ୟକ୍ତ କରିବା ସହଜ ନୁହେଁ । ମୁଁ ତାଙ୍କ ସହିତ ଏକମତ । ତେବେ ପାଶ୍ଚାତ୍ୟର ଜଣେ ଶ୍ରେଷ୍ଠ ଜ୍ଞାନୀମାନୀ ପୁରୁଷ ପ୍ଲାଟୋଙ୍କଠାରୁ ଆରମ୍ଭ କରି ବହୁ ମନୀଷୀ ଓ କବି କବିତାର ସଂଜ୍ଞା ନିରୂପଣ କରିଯାଇଚନ୍ତି । ଯଦିଓ କବିତାର ଏସବୁ ସଂଜ୍ଞା କବିତା ପାଇଁ ଅପର୍ଯ୍ୟାପ୍ତ, ମୋର କିନ୍ତୁ କବିମାନଙ୍କ ବିରୁଦ୍ଧରେ ପ୍ଲାଟୋ-ସୁଲଭ ମତାମତ ନାହିଁ। ପ୍ଲାଟୋ କହିଥିଲେ : 'Poetry is the imitation of an imitation, twice removed from truth.' କବିତା ଏକ ଅନୁକୃତିର ଅନୁକୃତି, ତେଣୁ ସତ୍ୟର ବହୁ ଦୂରରେ । ପ୍ଲାଟୋ ଦାର୍ଶନିକ । ଏଣୁ ଯୁକ୍ତିନିଷ୍ଠ ହେବା ତାଙ୍କ ପକ୍ଷରେ ସ୍ୱାଭାବିକ । ଏହି କାରଣରୁ କାବ୍ୟିକ କଳ୍ପନାକୁ ସେ ଏକ ସଂକ୍ରାମକ ବ୍ୟାଧି ଭାବରେ ଅଭିହିତ କରିଛନ୍ତି । ତାଙ୍କ ପରିକଳ୍ପିତ ରାଷ୍ଟ୍ରରେ କବିମାନଙ୍କ ଅନୁପ୍ରବେଶ ନିଷିଦ୍ଧ କରିଛନ୍ତି । କିନ୍ତୁ କୌତୂହଳର ବିଷୟ ଏହି ଯେ,

ଇଲିୟାଡ୍‌ର ପ୍ରଖ୍ୟାତ କବି ହୋମରଙ୍କୁ ପ୍ଲାଟୋ ମହାଶୟ ଅତ୍ୟନ୍ତ ଆବିଷ୍ଟ ଚିତ୍ତରେ ଲୁଚି ଲୁଚି ଉପଭୋଗ କରିବାର ପ୍ରମାଣ ମିଳେ।

ସେକ୍ସପିୟର୍ ମଧ୍ୟ କବିର ଅବାଧ କଳ୍ପନା ପାଇଁ ତା' ଉପରେ କିଛି ମାତ୍ରାରେ ବାଚାଳତାର ଆରୋପ କରିଛନ୍ତି, ଯଥା– 'The Poet, the lunatic & the lover are of imagination all compact' ଏବଂ କବି ବିଷୟରେ କହନ୍ତି– 'The Poets eye in a fine frenzy rolling glances from heaven to earth, from earth to heaven, and gives to airy nothing a local habitation and a name.' କବିର କଳ୍ପନା ମାଟିରୁ ଆକାଶ ଓ ଆକାଶରୁ ମାଟି ଯାଏଁ ବ୍ୟାପ୍ତ। କବିତାରେ କଳ୍ପନା ଅଜ୍ଞାତକୁ ରୂପ ଦେଇଥାଏ । କୁମାରସ୍ୱାମୀଙ୍କ ମତରେ ପ୍ରତ୍ୟେକ ମଣିଷ ଜଣେ ବିଶେଷ ଧରଣର କବି ଓ ପ୍ରତ୍ୟେକ କବି ଜଣେ ବିଶେଷଧରଣର ମଣିଷ । ଏହି ବ୍ୟାଖ୍ୟା ଅନୁସାରେ ମୁଁ ବି ଜଣେ ବିଶେଷଧରଣର କବି, ଯଦିଓ ପ୍ରକୃତରେ ମୁଁ ଜଣେ ସାଧାରଣ ଲେଖକ । ସୁତରାଂ ଏଭଳି ଏକ କବି-ସମାରୋହରେ ମୋର ଯୋଗଦାନ କଦାପି ଅବାଞ୍ଛିତ ନୁହେଁ ।

'ଏକାଡ଼େମୀ' ଏହି ସମାରୋହକୁ ଭାରତର ପୂର୍ବାଞ୍ଚଳୀୟ କବିମାନଙ୍କୁ ଆମନ୍ତ୍ରଣ କରିଛନ୍ତି । ପୂର୍ବାଞ୍ଚଳକୁ ଭାରତବର୍ଷର 'ପ୍ରାଚ୍ୟଖଣ୍ଡ' କୁହାଯାଏ । ଏହି ପ୍ରମୁଖ ଅଞ୍ଚଳରେ ରାଜ୍ୟ ରାଜ୍ୟର ଭୌଗୋଳିକ ଅବିଚ୍ଛିନ୍ନତା (Contiguity) ସାମାଜିକ, ସାଂସ୍କୃତିକ ଓ ସାରସ୍ୱତ ଅଭିନ୍ନତାକୁ ବୁଝାଏ ନାହିଁ । ଓଡ଼ିଶାର ପଡ଼ୋଶୀ ରାଜ୍ୟ ଆନ୍ଧ୍ର । ମାତ୍ର ଆନ୍ଧ୍ରର ମାତୃଭାଷା ତେଲୁଗୁ ସହିତ ଆମର ଯୋଗସୂତ୍ର ନାହିଁ, ଯଦିଓ ଭୌଗୋଳିକ ଦୃଷ୍ଟିରୁ ଆମେ ପରସ୍ପର ନିବିଡ଼ ପ୍ରତିବେଶୀ। ଅନ୍ୟପକ୍ଷେ ଆମ ପୂର୍ବ-ଭାରତୀୟ ଭାଷାରେ ଅଳ୍ପ ବହୁତ ଫରକ୍ ଥିବା ସତ୍ତ୍ୱେ ଆମେ ଏକ ଭାଷା ହିଁ କହୁଁ। କଲିକତାର ଏକ ପରିବାରରୁ ଜଣେ ଭାଇ ଯଦି ବମ୍ବେ ଓ ଆଉ ଜଣେ ପଞ୍ଜାବରେ ଯାଇ କିଛିକାଳ ବସବାସ କରନ୍ତି, ତେବେ ସେମାନଙ୍କ ମଧ୍ୟରେ ଥିବା ପାରିବାରିକ ଯୋଗସୂତ୍ର କଦାପି ଛିନ୍ନ ହୋଇଯାଏ ନାହିଁ। ଅଞ୍ଚଳ ଭେଦରେ ଗୋଟଏ ଭାଷା ତା'ର ସ୍ୱରୂପରେ କେବଳ ଆଞ୍ଚଳିକ ତାରତମ୍ୟ ବହନ କଲେ ସୁଦ୍ଧା ଏହି ତାରତମ୍ୟ ସାହିତ୍ୟରେ ସର୍ବଦା ଅତିକ୍ରମଣୀୟ।

'ବୋଧଗମ୍ୟତା' ନୁହେଁ 'ଗୋଚରଧର୍ମିତା' ହେଉଛି କବିତାର ପ୍ରଧାନ ଲକ୍ଷଣ । ଖ୍ୟାତନାମା କବି ଓ ସମାଲୋଚକ ଟି.ଏସ୍.ଏଲିୟଟ୍ କହନ୍ତି– 'Great Poetry communicate before it is understood.' ମହାନ କବିତା ବୋଧଗମ୍ୟ ହେବା ଆଗରୁ ଗୋଚରୀଭୂତ ହୁଏ । ବୋଧଗମ୍ୟତା ମସ୍ତିଷ୍କଗତ (a cerebral exercise) ଓ ଅନେକାଂଶରେ ଏହା ଆଭିଧାନିକ ବି । ଭାଷାର ଗୂଢ଼ତା ବା ଅର୍ଥମୟତା ଶବ୍ଦରେ ନୁହେଁ; ଶବ୍ଦର ଧ୍ୱନି, ଧରଣ ଓ ବ୍ୟଂଜନାରେ ହିଁ ନିହିତ ଥାଏ (meaning

is lexicographical)। ଭାରତୀୟ କବିତାର ଗଢ଼ଣ ଏପରି ଯେ, ଏହା ଠିକ୍ ଏକ ଉଚ୍ଚାରିତ ମନ୍ତ୍ର ପରି । ମନ୍ତ୍ରଟିଏ ଉଚ୍ଚାରିତ ହେବା ମାତ୍ରେ ଆମେ ତା'ର ଅର୍ଥାବବୋଧ ଉପରେ ଆଦୌ ଗୁରୁତ୍ୱ ଦେଇ ନଥାଉ ବରଂ ଆମେ ମନ୍ତ୍ରଟି ଶୁଣୁ ଓ ତା'ର ଧ୍ୱନି ଦ୍ୱାରା ଅନୁଭାବିତ ହେଉ । କବିତାର ଏହି ପ୍ରେକ୍ଷାପଟରେ ଆଜିକାଲି କବି-ସମାରୋହ ପାଇଁ ସ୍ଥିରୀକୃତ କାର୍ଯ୍ୟ ସାରଣୀରେ ମୁଁ ପରିବର୍ତ୍ତନ ଆଣିବାକୁ ଚାହେଁ ନାହିଁ । ସ୍ଥିର ହୋଇଛି– ପ୍ରତି ଭାଷାର କବିତା ପ୍ରଥମେ ମୂଳଭାଷାରେ ଆବୃତ୍ତ ହେବ ଓ ପରେ ତା'ର ଇଂରାଜୀ ବା ହିନ୍ଦୀ ଅନୁବାଦ ପଠିତ ହେବ । ଏପରି ବ୍ୟବସ୍ଥା ଦ୍ୱାରା ହୁଏତ କବିତାର ବ୍ୟବହୃତ ଶବ୍ଦର ଆଭିଧାନିକ ଅର୍ଥାଗମନ ସହଜ ହେବ । ମାତ୍ର କବିତାରେ ଶବ୍ଦର ସାମଗ୍ରିକ ବ୍ୟଂଜନା, ଗୂଢ଼ାର୍ଥ ଓ ଗଭୀରତର ମନନରେ ଏହା ସହାୟକ ହେବନାହିଁ । ଏତଦ୍ୱାରା ଶବ୍ଦର ନଂଦନତାତ୍ତ୍ୱିକ ଅର୍ଥାସ୍ୱାଦନ ବିଡ଼ମ୍ବିତ ହେବାର ଆଶଂକା ମଧ୍ୟ ରହିଛି ।

ଆମ ସାହିତ୍ୟର ବିଭିନ୍ନ (ଯଥା: ନାଟକ, ଉପନ୍ୟାସ ଓ ନିବନ୍ଧ ଆଦି) ମଧ୍ୟରେ କବିତା ନିଃସନ୍ଦେହରେ ଏକ ବିଶେଷ ବିଭାବ । ସାରସ୍ୱତ ସମସ୍ତ ବିଭାଗର ଏହା ପ୍ରାଣଶକ୍ତି ବା ଜୀବନ୍ୟାସ କହିଲେ ଅତ୍ୟୁକ୍ତି ହେବନାହିଁ । ରଚନାଶୈଳୀ ଯେତେ ବିଚକ୍ଷଣ ହୋଇଥିଲେ ବି ଜୀବନ୍ୟାସ ବ୍ୟତିରେକେ ସାହିତ୍ୟ ଶବ ତୁଲ୍ୟ । ଗଦ୍ୟ ହେଉ ବା କବିତା ହେଉ, ପ୍ରାଣ ନଥିଲେ ତାହା କଦାପି ସଫଳ ଓ ଉତ୍ତୀର୍ଣ୍ଣ ହେବନାହିଁ । ଏଣୁ ଯେକୌଣସି ସାହିତ୍ୟ ସୃଷ୍ଟିରେ ସାହିତ୍ୟର ସଫଳତା ବା ପାଠକ ଉପରେ ତା'ର ଆବେଦନର ଗଭୀରତା ତହିଁରେ ନିହିତ କାବ୍ୟିକ ଭାଷା ଉପରେ ହିଁ ନିର୍ଭର କରିବା ସ୍ୱାଭାବିକ । ଆମ ଭାରତୀୟ ଭାଷାଗୁଡ଼ିକ ପରସ୍ପରର ଏତେ ନିକଟବର୍ତ୍ତୀ ଯେ ଆମର କବିମାନେ ପୃଥକ୍ ପୃଥକ୍ ଭାଷାରେ କବିତା ଲେଖୁଥିଲେ ମଧ୍ୟ କବିତା ହେଉଛି ଅସଲରେ ଏକ । ବ୍ୟାପକ ଅର୍ଥରେ ସମଗ୍ର ବିଶ୍ୱର ସାହିତ୍ୟ ହିଁ ହେଉଛି ଯଥାର୍ଥରେ ଏକ, ଭିନ୍ନଭିନ୍ନ ଭାଷାରେ ଯଦିଓ ଆମେ ତା'ର ପରିପ୍ରକାଶ କରିଥାଉଁ । ପାଶ୍ଚାତ୍ୟ ଲେଖକମାନେ ଯାହା ଲେଖନ୍ତି, ଆମେ ପ୍ରାଚ୍ୟର ଲେଖକମାନେ ପ୍ରାୟତଃ ତାହାହିଁ ଲେଖୁଁ । ଆମ ସମସ୍ତଙ୍କର ଯାତ୍ରା ଏକବିଂଶ ଶତାବ୍ଦୀକୁ । ଯେଉଁ ଯାତ୍ରାର ଅନ୍ତିମ ଲକ୍ଷ୍ୟ ଅନ୍ୟ କିଛି ନୁହେଁ, ଏକ ଏକକ ମାନବୀୟ ସାହିତ୍ୟ (Single Human Literature) ସୃଷ୍ଟି ।

ଏଇ ପ୍ରାଚ୍ୟଖଣ୍ଡ ହେଉଛି ଭାରତର ଏପରି ଏକ ଅଙ୍ଗ, ଯେଉଁଠି ପ୍ରତ୍ୟହ ସୂର୍ଯ୍ୟଙ୍କୁ ଆବାହନ କରାଯାଏ, ଆବାହନ କରାଯାଏ ଆଲୋକକୁ । ପ୍ରାଚ୍ୟର ଏ ଆଲୋକ-ଆରାଧନା ହେଉଛି ଭାରତବର୍ଷର ପ୍ରତୀକୀ ଆଲୋକ-ସ୍ପୃହା । ଆମେ ଭାରତୀୟମାନେ ଦୈନନ୍ଦିନ ଭାରତର ବିଭିନ୍ନ ଆଞ୍ଚଳିକ ଭାଷାଭାଷୀ ଲୋକଙ୍କୁ ଭେଟୁ ଓ କଥାହେଉ। ଏହିସବୁ

କଥାଭାଷାକୁ ଅନୁଶୀଳନ କଲେ ହୃଦୟଙ୍ଗମ କରିହେବ ଯେ, ଆପାତଃ ଭିନ୍ନତା ସତ୍ତ୍ୱେ ଭାରତବର୍ଷର ସବୁ ଭାଷାହିଁ ହେଉଛି ଏକ ଓ ଅଭିନ୍ନ । ଜଣେ ଭିନ୍ନ ଭାଷାର ଭାରତୀୟ ମୋ' ସହ କଥାହେଲେ ମୋର କାହିଁକି ମନେହୁଏ ଯେ, ସେ ଲୋକଟି ଯେମିତି ତା' ନିଜ ଭାଷାରେ ନୁହେଁ ମୋରି ଭାଷାରେ ହିଁ କଥା ହେଉଛି । ଓଡ଼ିଆ ଓ ଅହମିୟା ଭାଷା ମଧ୍ୟରେ ଭାଷାଗତ ସାମ୍ୟ ଏତେ ଅଧିକ ଯେ ବସେଇ ବସେଇ କେହି ଯଦି ଅହମିୟା ଭାଷାରେ ମୋ' ସହ କଥା ହେବ, ତେବେ ସେ ଭାଷାର ପ୍ରତିଟି ବର୍ଣ୍ଣ ବୁଝିବା ମୋ' ପକ୍ଷରେ ଆଦୌ କଷ୍ଟକର ହେବନାହିଁ । ଅନ୍ୟ ପକ୍ଷରେ ମୋର ଦୃଢ଼ ବିଶ୍ୱାସ ଯେ, ଯଦି ମୁଁ ଓଡ଼ିଆ ଭାଷାରେ କହେ, ତେବେ ଅହମିୟା ଭାଷାର ଯେକୌଣସି ବ୍ୟକ୍ତି ପକ୍ଷେ ମୋ' କଥାର ଅର୍ଥ ବୁଝିବା ଆଦୌ ଦୁଷ୍କର ହେବନାହିଁ । ସୁତରାଂ ଆଜିର କୌଣସି ସହୃଦୟ ଶ୍ରୋତା ପଠିତ କବିତାଗୁଡ଼ିକର ଅନୁବାଦ ହୁଏତ ଯଦି ପ୍ରୟୋଜନ କରୁଥାନ୍ତି, ତେବେ ମୋର ବିଶ୍ୱାସ; ଏ କ୍ଷେତ୍ରରେ ସେ ଇଂରାଜୀ ଭଳି ଏକ ବିଦେଶୀ ଭାଷାକୁ କଦାପି ଅପରିହାର୍ଯ୍ୟ ମଣିବେ ନାହିଁ । ନବକାନ୍ତ ବାବୁ ତାଙ୍କ କବିତାର ଯେଉଁ ଅନୁବାଦ ଏଠି ପାଠକଲେ, ତାହା ଅବଶ୍ୟ ମୂଳ ଅହମିୟା କବିତାର ଖୁବ୍ ବିଶ୍ୱସ୍ତ, କିନ୍ତୁ ଅନୁବାଦ ଅପେକ୍ଷା ମୁଁ କବିତାର ମୂଳ ଅହମିୟା ରୂପଟି ପ୍ରତି ଅଧିକ ଆକୃଷ୍ଟ ।

କବିତା ଲେଖିବାର ବ୍ୟାପାରଟି ହେଉଛି ଏକ 'ନାନ୍ଦନିକ ଅନୁଭୂତି'ର ବ୍ୟାପାର । ଧରନ୍ତୁ ଜଣେ କବି ନିଶାର୍ଦ୍ଧରେ ଉନ୍ନିଦ୍ର ରହି ନିଷ୍ପଲକ ନେତ୍ରରେ ମାଟିରୁ ଆକାଶ ଓ ଆକାଶରୁ ମାଟି ଲୋଡ଼ି ଚାଲିଚି ତା' କଳ୍ପିତ କବିତାର ସଠିକ୍ ଅଭିବ୍ୟକ୍ତି ଏବଂ ପ୍ରତ୍ୟୁଷରେ ତାକୁ ଉପଲବ୍ଧ ହେଉଛି ତା'ର ବହୁ ପ୍ରତୀକ୍ଷିତ ସେଇ ଦୁର୍ଲ୍ଲଭ କବିତା– ଏହି କବି ଜଣଙ୍କୁ ଯଦି ଆପଣ ପଚାରନ୍ତି କବିତା କ'ଣ ?', ମୁଁ ନିଶ୍ଚିତ, ଏହାର ଯଥାର୍ଥ ଜବାବ ସେ କଦାପି ଦେଇ ପାରିବେ ନାହିଁ । କୌଣସି କବି ବା ସ୍ରଷ୍ଟା ପକ୍ଷରେ ଏପରି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେବା ମଧ୍ୟ କଦାପି ସମ୍ଭବ ନୁହେଁ । କୌଣସି କବି ବା ସ୍ରଷ୍ଟା ତା'ର ସୃଷ୍ଟି ପ୍ରକ୍ରିୟାର ରହସ୍ୟକୁ କଦାଚନ, କେବେ ବି ବ୍ୟକ୍ତ କରିପାରିବ ନାହିଁ । ସୃଜନ-ଅନୁଭୂତି କାଳେ କାଳେ ଅବ୍ୟକ୍ତ । ଯଦି ଜଣେ ପ୍ରାଜ୍ଞ ସମାଲୋଚକ ଜଣେ କବିଙ୍କୁ ପ୍ରଶ୍ନ କରେ– ''ତମେ କବିତା ଲେଖିବ ସତ୍ୟ, କିନ୍ତୁ କହି ପାରିବ 'କବିତା କ'ଣ ଓ ଏହା କିପରି ଲେଖାଯାଏ ?', ମୁଁ ଜାଣେ, ତମେ ଏ ପ୍ରଶ୍ନର ଉତ୍ତର କସ୍ମିନ୍‌କାଳେ ଦେଇପାରିବ ନାହିଁ । ଅତଏବ ମୋଠୁଁ ଏହାର ଉତ୍ତର ଶୁଣ । କବି ଜଣକ ଯଦି ନମ୍ର ଓ ବିନୟୀ ହୋଇଥାନ୍ତି, ତେବେ ହୁଏତ ସେଇ ତଥାକଥିତ ପ୍ରାଜ୍ଞ ସମାଲୋଚକଙ୍କର କବିତା ସମ୍ପର୍କୀୟ ଦୀକ୍ଷାଂତ ଭାଷଣ ଶୁଣିପାରନ୍ତି। ମାତ୍ର ସବୁ ଶୁଣିସାରିବା ପରେ ସେ ସେଇ ତଥାକଥିତ ପ୍ରାଜ୍ଞ ସମାଲୋଚକଙ୍କୁ ନିଶ୍ଚୟ

ପ୍ରତିପ୍ରଶ୍ନ କରିବେ । କହିବେ– "ହେ ପ୍ରାଜ୍ଞ, ତୀକ୍ଷ୍ଣ ମେଧାବାନ୍ ସମାଲୋଚକ ! ଥାଉ, ତମେ କ'ଣ ବଖାଣି ଚାଲିଛ କବିତା ରଚନାରେ ପ୍ରକ୍ରିୟା । ତମେ କବିତା କେବେ ପଢ଼ିଛ ନା ଶୁଣିଛ ? ଶ୍ୱାସରେ କେବେ ଘେନିଛ କି କବିତା ? ଯଦି ତାହା କରିନାହିଁ, ତେବେ ତମେ ମୋତେ କବିତା ରଚନାର ନିଦାନ ଶୁଣାଇବାକୁ କିଏ ?"

କବିତା ରଚନାର କୌଣସି ନିର୍ଦ୍ଦିଷ୍ଟ କାରିକା ସତରେ କେଉଁଠି ଅଛିକି ? ଅବଶ୍ୟ ଏକଥା ସତ୍ୟ ଯେ, ଭାରତବର୍ଷର ବହୁ ଧୀମାନ୍ ମନୀଷୀ କବିତାର ଶୈଳୀ ଓ କବିତା ରଚନାର ବିବିଧ ମାର୍ଗ ନିର୍ଦ୍ଦେଶ କରିଯାଇଛନ୍ତି । ମୁଁ ଏମାନଙ୍କ ସହ ଦ୍ୱିମତ ନୁହେଁ । ମାତ୍ର ସୃଜନ ପ୍ରକ୍ରିୟାରେ ସ୍ରଷ୍ଟାକୁ ତା'ର ଅଭିଳଷିତ ସ୍ୱାଧୀନତା ଦିଆଯାଉ, ଏହା ମୁଁ ଚାହେଁ । ସ୍ୱାଧୀନତା ବ୍ୟତିରେକେ, ମୋର ବିଶ୍ୱାସ, କେବଳ କବିତା କାହିଁକି, ଯେକୌଣସି ସୃଜନଶୀଳ କଳା କଦାପି ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ । ଆପଣ ଗୋଟିଏ ଫୁଲକୁ ଫର୍ମାସି କରି ପାରିବେନି .'ତୁ ଏମିତି ଫୁ'ଟୁ ?' ଆପଣ ଗୋଟିଏ ଚଢ଼େଇକୁ ଫର୍ମାସି କରି ପାରିବେନି 'ତୁ ଗୀତ ଗାଆ ଏମିତି ?' ଯଦି ଏପରି କରିପାରିବେ ନାହିଁ, ତେବେ ଆପଣ ଜଣେ କବିଙ୍କୁ କବିତା ଲେଖିବାର ଧରାବନ୍ଧା ମାର୍ଗଟିଏ ନିର୍ଦ୍ଦେଶ କରିପାରିବେ ନାହିଁ।

ଆଗ କବି, ପରେ ସମାଲୋଚକ। ସୁତରାଂ ଜଣେ ସତ୍ କବି ସକଳ ପରିସ୍ଥିତିରେ ସମାଲୋଚକଙ୍କୁ ଏଡ଼ାଇଯିବା ଉଚିତ, ଏଡ଼ାଇଯିବା ଉଚିତ ବୈୟାକରଣିକ ଓ ଭାଷାବିଦ୍‌ଙ୍କୁ । ଶ୍ରେଷ୍ଠ ଓ ମହତ୍ କବି ସମାଲୋଚକଙ୍କୁ କହେ– "କେତେକ ମାମୁଲି ଅର୍ଥର ସୀମାବଦ୍ଧତାରେ କେବଳ ତମେ ଶବ୍ଦକୁ ଦେଖିଛ, ଶୁଣିଛ ବା ଗ୍ରହଣ କରିଛ । ମାତ୍ର ଦେଖିନାହିଁ ଏହାର ସୀମାହୀନ ରୂପର ନିରାକାରତ୍ୱ, ଯାହା ଆକାଶ ପରି ବ୍ୟାପ୍ତ, ଅସୀମ । ଶବ୍ଦକୁ ତା'ର ନିହିତାର୍ଥର ଉପରିକ କେତେକ ବିଶେଷ ଅର୍ଥ (extra territorial denotation) ପ୍ରଦାନ କରିବା ହେଉଛି ସତ୍ ବା ମହତ୍ କବିତାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ବର୍ଣ୍ଣମାଳାରେ ଯାହା ଲିପିବଦ୍ଧ ହୋଇଛି, ଗୋଟିଏ ଶବ୍ଦ କେବଳ ସେତିକି ମାତ୍ର ନୁହେଁ; ତାଠୁଁ ବେଶ୍ ଅଧିକ। ଯେକୌଣସି ଶବ୍ଦରେ ଯେକୌଣସି ଅର୍ଥ ମୁଁ ଅନ୍ୱିତ କରିପାରେ–କବି ଭାବେ ଏ ସ୍ୱାଧୀନତା ମୋର ଜନ୍ମଗତ । ଏହା ମୋର କାବ୍ୟିକ ସ୍ୱାଧିକାର, ସ୍ୱାଭିମାନ ବି । ମୋର ସ୍ୱାଧିକାର ବା ସ୍ୱାଭିମାନକୁ ତମେ କଦାପି ପ୍ରଶ୍ନ କରି ପାରିବ ନାହିଁ ।" ମହାକବିଟିଏ ଲେଖିଯାଆନ୍ତି ଓ ଏହି 'ଲେଖି ଯିବାର' ଟୀକା କରନ୍ତି ସମାଲୋଚକେ । ଏମିତି ଉଦ୍ୟମରୁ ସୃଷ୍ଟି ହୁଏ କାବ୍ୟିକ ସମାଲୋଚନା-ସୂତ୍ର (Principles of Poetics)। କାଳିଦାସ କବିତା ଲେଖିଗଲେ । ଆମେ ତାଙ୍କ କବିତା ପଢ଼ିଲୁ ଓ ସେଥିରୁ କେତେକ ସୂତ୍ର ନେଇ ତାକୁ ଅପେକ୍ଷାକୃତ କମ୍ ଶକ୍ତିଶାଳୀ କବିଙ୍କଠିଁ ପ୍ରୟୋଗ କଲୁ ଓ କହିଲୁ - 'ଏ କବି

ହେଉଛନ୍ତି ଏହି ଦରର ।' ସୁତରାଂ ସମାଲୋଚକୀୟ ବିଚାରଧାରରେ ଭିନ୍ନତା ରହିଛି ଓ ରହିବ ମଧ୍ୟ । ପ୍ରତ୍ୟେକ କବି ସ୍ୱୟଂ ନିଜ କବିତାର ଜଣେ ନିରପେକ୍ଷ ସମୀକ୍ଷକ ଓ ନିଜ ଭିତରେ ନିରବିତ ଏହି 'ସମୀକ୍ଷକ-ସତ୍ତା'ର ଉପସ୍ଥିତି ହିଁ କ୍ରମେ କ୍ରମେ କବିଙ୍କୁ ବୁଝିବାରେ ସାହାଯ୍ୟ କରିଥାଏ – 'କବିତା କ'ଣ ଓ ଏହା କିପରି ଲେଖାଯାଏ ।' କବିମାନଙ୍କୁ ଏକାନ୍ତରେ ଛାଡ଼ି ଦିଆଯାଉ, ସେମାନେ ଛାଁ ଜାଣିବାକୁ ସମର୍ଥ ହେବେ–କବିତାରେ କ'ଣ କରଣୀୟ, ପୁଣି କ'ଣ ନୁହେଁ।

ଆମ ଭାରତୀୟ କାବ୍ୟ ସମାଲୋଚନାରେ ରୀତି, ରସ ଓ ଧ୍ୱନିର କଥା କୁହାଯାଉଛି । ଏତଦ୍‌ଭଳି କବିତାର ଆଉ ଏକ ତାଲିକା ଅଛି, ତାହା ହେଲା Value ଅର୍ଥାତ୍ ଔଚିତ୍ୟ । କବିତାରେ ନୀତି-ନିର୍ଦ୍ଦେଶକାରୀ ଗୁଣଟି ହେଉଛି ଔଚିତ୍ୟ । ଆମେ ଆମ ସୃଷ୍ଟି ପ୍ରକ୍ରିୟାରେ ଯଦିଓ ସ୍ୱାଧୀନ, ତଥାପି ସ୍ୱାଧୀନତା ନାଁରେ କବିତାରେ ଆମେ ଯଦୃଚ୍ଛା ଆଚରଣ କରିପାରିବା ନାହିଁ । ତେଣୁ କବିତା ଲେଖିବାବେଳେ ଔଚିତ୍ୟବୋଧ ପ୍ରସଙ୍ଗଟିକୁ ହେତୁରେ ରଖି ପ୍ରତ୍ୟେକ କବିଙ୍କୁ କବିତା ଲେଖିବାକୁ ହେବ ।

ଆଜିର ଏହି ଅପରାହ୍ଣ ଅଧିବେଶନରେ ମୁଁ ଭାରତବର୍ଷର ଜଣେ ବିଶିଷ୍ଟ ସଂସ୍କୃତ ସମାଲୋଚକ ଓ ଟୀକାକାର ମଲ୍ଲିନାଥଙ୍କୁ ସ୍ମରଣ କରୁଛି । ସାହିତ୍ୟରେ କାଳିଦାସଙ୍କ ପରେ ଯଦିଓ ମଲ୍ଲିନାଥଙ୍କର ଆବିର୍ଭାବ, ତେବେ ସେ କାଳିଦାସଙ୍କ କବିତାର ଚର୍ଚ୍ଚା ଓ ତର୍ଜ୍ଜମା କରିବାକୁ ଯାଇ କହିଛନ୍ତି, ''ମହାଭାଗ ! ଆପଣ ବାକ୍ ଓ ଅର୍ଥକୁ ଶିବପାର୍ବତୀଙ୍କ ସହ ତୁଳନା କରିଛନ୍ତି । କହିଛନ୍ତି 'ବାଗର୍ଥ ବିବ ସଂପୃକ୍ତୌ, ବାଗର୍ଥମ୍ ପ୍ରତିପତ୍ତୟେ ଜଗତଃ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ ।' ଏକଥା ଆପଣ କହିଛନ୍ତି ନା ? ହଁ; ତେବେ ଯେଉଁ 'କୁମାରସମ୍ଭବମ୍'ରେ ଆପଣ ଏକଥା କହିଛନ୍ତି, ତହିଁରେ ପୁଣି କିପରି ଆପଣ ପିତୃମାତୃପ୍ରତିମ ଶିବପାର୍ବତୀଙ୍କ ସଂଭୋଗ ବର୍ଣ୍ଣନା କଲେ (ଯେହେତୁ, ପିତାମାତାଙ୍କ ସଂଭୋଗ ବର୍ଣ୍ଣନା ସନ୍ତାନ ପକ୍ଷେ ତ୍ୟାଜ୍ୟ ଓ ନିଷିଦ୍ଧ) ?'' ଏ ବିଷୟରେ ମୁଁ ଆଉ ଅଧିକ ବ୍ୟାଖ୍ୟା କରିବି ନାହିଁ । କେବଳ ଏତକ କହିବି ଯେ, ଏହା ହେଉଛି ସାହିତ୍ୟରେ 'ଔଚିତ୍ୟ ବୋଧ'ର ଏକ ଦୃଷ୍ଟାନ୍ତ । ଯାହା କରଣୀୟ ନୁହେଁ, ତା'ର ବର୍ଜ୍ଜନ ହିଁ ହେଉଛି ସାହିତ୍ୟରେ 'ଔଚିତ୍ୟ' । ଈଶୋପନିଷଦରେ କୁହାଯାଇଛି–

''ସଃ ପର୍ଯଗାତ୍ ଶୁକ୍ରମକାୟମ୍
ଅପାପବିଦ୍ଧମ୍ ଅସ୍ନାବିରମ୍
କବିଃ ମନୀଷୀଃ ପରିଭୂଃ ସ୍ୱୟଂଭୂଃ
ଯଥାତଥ୍ୟ ଅର୍ଥାନ୍
ବ୍ୟବଧାତ୍ ଶାଶ୍ୱତୀଭ୍ୟଃ ସମାଭ୍ୟଃ''

କବି ମାତ୍ରେଇ କ୍ରାନ୍ତଦର୍ଶୀ । ସେ କେବଳ ଅତୀତକୁ ଦେଖେନାହିଁ; ଅତୀତ, ବର୍ତ୍ତମାନ ଭବିଷ୍ୟତକୁ ଏକତ୍ର ଦେଖିପାରେ । ସେ ମନୀଷୀ, ସେ ପରିଭୂ, ସେ ସ୍ୱୟଂଭୂ। ଏସବୁ ଯଦିଓ 'ବ୍ରହ୍ମ'ର ସଂଜ୍ଞା, ତେବେ କବିମାନଙ୍କ କ୍ଷେତ୍ରରେ ଏହି ସଂଜ୍ଞା ପ୍ରଯୁଜ୍ୟ :

"କବିମ୍ ପୁରାଣମ୍ ଅନୁଶାସିତାରମ୍,
ଅନୁରଣୀୟାନ୍ ସମନୁସ୍ମରେତ୍ୟଃ
ସର୍ବସ୍ୟ ଧାତାରମ୍ ଅଚିନ୍ତ୍ୟ ରୂପମ୍,
ଆଦିତ୍ୟ ବର୍ଣମ୍ ତମସଃ ପରସ୍ତାତ୍ ।"

କବିକୁ ଚିହ୍ନାଇବାର ଏ ପରିଭାଷା ହେଉଛି ଆମର ପରମ୍ପରା । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସବୁ ମହାନ୍ କବିଙ୍କୁ ମୋର ପ୍ରଣାମ । ଉଦ୍ୟୋକ୍ତାମାନେ ଏହି ଭବ୍ୟ ସମାରୋହକୁ ନିମନ୍ତିତ କରି ମୋତେ ବହୁ ଭାବେ ସମ୍ମାନିତ କରିଛନ୍ତି ଓ ଏଠାକୁ ଆସି ମୁଁ ବିଶେଷ ରୂପେ ଅନୁଗୃହୀତ । ସମସ୍ତଙ୍କୁ ଧନ୍ୟବାଦ । 'ଉଦିତୀୟ ନମଃ, ଉଦୟତେ ନମଃ, ଉଦ୍ୟତେ ନମଃ ।' (ଅଥର୍ବ ବେଦ)



# ମନ କଥା..

କୌଣସି ବ୍ୟକ୍ତିକୁ ଚିହ୍ନଟ କରିବା ପାଇଁ ନାମ, ରୂପ, ଉପାଧି ବ୍ୟତିରେକେ ଆଉ କେତୋଟି ଉପାଦାନର ସାହାଯ୍ୟ ନେବାକୁ ହୋଇଥାଏ, ଯଥା– ଦେଶ, କାଳ ଓ ପିତୃତ୍ୱ । କୁହାଯାଉଥାଏ, ଏଇ ଯେ ଜଣକ୍ ଏଇଠି ଠିଆ ହୋଇଛନ୍ତି ଏହାଙ୍କ ନାମ ଏଇଆ, ଏ ଅମୁକ ଅଫିସରେ ସମୁକ କାମ କରନ୍ତି । ତା'ପରେ କୁହାଯାଏ, ଏହାଙ୍କର ଜନ୍ମ ଗଜପତି ଜିଲ୍ଲାର ଅମୁକ ଗାଁରେ ଉଣେଇଶ ଶହ ସତୁରିରେ ହୋଇଥିଲା। ବାପାଙ୍କ ନାଁ ଏଇଆ । ଏଇଭଳି ଇତିହାସ, ଭୂଗୋଳ, ପରମ୍ପରା ଓ କିଛି ଉପସ୍ଥିତ ବାସ୍ତବତାକୁ ନେଇ ସେ ସାରା ଜୀବନ ପରିଚିତ ହୋଇଥାଏ। ଏ ସମସ୍ତର ଅନିବାର୍ଯ୍ୟତାକୁ ନେଇ ସେ ସାରା ଜୀବନ ପରିଚିତ ହୋଇଥାଏ। ଏ ସମସ୍ତର ଅନିବାର୍ଯ୍ୟତାକୁ ମଧ୍ୟ ସେ ସ୍ୱୀକାର କରେ। ଦେଶ କାଳ ପରି ଭାଷା, ସମାଜ ଓ ସଂସ୍କୃତି ସହିତ ମଧ୍ୟ ସେ ଯୋଡ଼ି ହୋଇ ରହିଥାଏ । ଗଛଟିଏ ପୂର୍ଣ୍ଣାବୟବ ହୋଇଗଲା ପରେ ଯେପରି ସାରା ପୃଥିବୀରେ ତା'ର ଚିହ୍ନଟ ବିଷୟରେ କୌଣସି ସନ୍ଦେହ ନଥାଏ, ସେହିପରି ଜଣେ ବ୍ୟକ୍ତିର ପରିଚୟ ସ୍ଥିର ହୋଇଗଲାପରେ ସେ ଯେଉଁଠି ପହଞ୍ଚିଗଲେ ସୁଦ୍ଧା ତା'ର ପୈତୃକ ଚେହେରା ପରି ତାହା ଅପରିବର୍ତ୍ତନୀୟ ହୋଇ ରହିଥାଏ।

ଓଡ଼ିଶାରେ ଜନ୍ମ ହୋଇ ଓଡ଼ିଶାର ମାଟି ପାଣି ପବନରେ ଗଠିତ ହେବା, ଓଡ଼ିଆ କହୁଥିବା, ଓଡ଼ିଶାର ଲୋକେ ଭାରତବର୍ଷର ଯେକୌଣସି ସ୍ଥାନରେ, ଭାରତ ବାହାରେ ଯେକୌଣସି ଦେଶରେ ଓଡ଼ିଆ ବୋଲି ହିଁ ପରିଚିତ ହେବେ । ପରିଚୟ ସ୍ଥିର ହୋଇଗଲେ ଆତ୍ମବିଶ୍ୱାସ ଆସେ, ସ୍ୱାଭିମାନ ଆସେ । ଆତ୍ମ ସଚେତନ ବ୍ୟକ୍ତି ବା ଅନୁଷ୍ଠାନ କେବଳ ସ୍ୱଗୁଣମୁଗ୍ଧ ନୁହେଁ । ସେ ଖୁଣ ବିଷୟରେ ମଧ୍ୟ ସମପରିମାଣରେ ସଚେତନ । ତା'ର ଯାହା କିଛି ଅଛି ତାକୁ ସେ ବୁଝେ ଓ ତା'ର ଉଚିତ ମୂଲ୍ୟାୟନ କରେ । ଯାହା ନାହିଁ ସେ ଅଭାବକୁ ମଧ୍ୟ ବୁଝେ ଓ ତା'ର ନିରାକରଣ ପାଇଁ ସଚେଷ୍ଟ ହୁଏ । ହାଇଦ୍ରାବାଦର ଓଡ଼ିଆ ସମାଜ ନିଜକୁ ଓଡ଼ିଆ ବୋଲି କହିବାରେ ସଂକୋଚ ବୋଧ ନକରୁ । ଶୁଦ୍ଧ ଓଡ଼ିଆ କହିବାକୁ ଲଜ୍ଜା ବୋଧ ନକରୁ । ଅସମର୍ଥ ବୋଧ ନକରୁ । ଆଉ ଯେକୌଣସି ପ୍ରଦେଶର ଲୋକଙ୍କ ସମକକ୍ଷ ସେମାନେ ବୋଲି ବିଶ୍ୱାସ ରଖନ୍ତୁ । କିନ୍ତୁ କେବଳ ଭାବପ୍ରବଣତା ବା ଆବେଗରେ ଭାସି ନଯାଇ ବାସ୍ତବତାକୁ

ସାହସର ସହିତ ସମ୍ମୁଖୀନ ହୁଅନ୍ତୁ, ସେମାନଙ୍କର ଯାହା ନାହିଁ ସେ ବିଷୟରେ ସେମାନେ ହିଁ ସବୁଠାରୁ ଅଧିକ ଜାଣିଛନ୍ତି । ଦୀନତା, ଅସହଂତି, ଅନାଗ୍ରହ, ନିସ୍ପୃହତା ସାଙ୍ଗକୁ ଅଜ୍ଞତା, ଅସହନଶୀଳତା, ଆଳସ୍ୟ, ଶଠତା, ଅସ୍ୱଚ୍ଛତା ଇତ୍ୟାଦି ଯାହା ଆମ ସଂହତିକୁ, ସମ୍ମାନକୁ, ଆମ ବ୍ୟକ୍ତିତ୍ୱକୁ, ଆତ୍ମାକୁ କଳୁଷିତ କରୁଛି, ଅବିକଶିତ ରହିଯାଉଛି, ଓଡ଼ିଆ ଓ ଓଡ଼ିଶା, ଯାହା ପାଇଁ ଏ ସଂଗଠନ ତାକୁ ମୁକ୍ତ ମନରେ ଓ ନିଃସଙ୍କୋଚରେ ମାନି ଯାଉ ଏବଂ ତା'ର ମୁକାବିଲା କରୁ । ତେବେ ହୁଏତ ପ୍ରତିବେଶୀ ରାଜ୍ୟର ଭିନ୍ନ ମାଟିରେ କେବଳ ଓଡ଼ିଆ ସମାଜଟିଏ ଗଢ଼ିଦେବାର ଔପଚାରିକତାକୁ ଅତିକ୍ରମ କରି ସତକୁ ସତ କିଛି କରି ଦେଖେଇବାର ସମ୍ଭାବନା ଆସିପାରେ । ନ ହେଲେ, ଅନୁଷ୍ଠାନଟି କେବଳ ବାର୍ଷିକ ଉତ୍ସବସର୍ବସ୍ୱ ସ୍ମରଣିକା, ବନ୍ଧୁମିଳନ-ସର୍ବସ୍ୱ ହୋଇଯିବାର ଆଶଙ୍କା ଅଛି । ଅନୁଷ୍ଠାନଟି ନିଷ୍ଠା, ଆନ୍ତରିକତା, ସ୍ୱାଭିମାନର ବର୍ତ୍ତିକା ହୋଇ ଜଳୁ ଏବଂ ସେ ଅଞ୍ଚଳକୁ ଆଲୋକିତ କରୁ । ଚକିତ କରୁ ହାଇଦ୍ରାବାଦକୁ, ହାଇଦ୍ରାବାଦର ଓଡ଼ିଆ ସମାଜକୁ ।



# ଶବ୍ଦ ପ୍ରମାଦ– ୧

ଆଜି ଆଲୋଚନାର ବିଷୟ ଅନୁସାରେ ଗୋଟିଏ ପତ୍ର ମଧ୍ୟ ଆସି ପହଞ୍ଚିଛି। ସେ ସମ୍ବାଦ, ସଂପାଦକ ଭୁବନେଶ୍ୱର ଠିକଣାରେ ଚିଠି ଲେଖି ଜଣାଇଛନ୍ତି ଯେ ଓଡ଼ିଆ ଲେଖିଲା ବେଳେ ତାଙ୍କର ଅନେକ ଭୁଲ ହୋଇଯାଉଛି । ବିଶେଷ କରି ହ୍ରସ୍ୱ ଦୀର୍ଘ ସଂକ୍ରାନ୍ତୀୟ ବର୍ଣ୍ଣାଶୁଦ୍ଧିର ମାତ୍ରା ଅଧିକ ହେଉଥିବାରୁ ସେ ବିଷୟରେ ଯଦି କୌଣସି ସହଜ ଓ ସାଧାରଣ ନିୟମ ଥାଏ ତାହା ଜାଣିବାକୁ ସେ ଚାହିଁଛନ୍ତି । ଭୁବନେଶ୍ୱର ଲେଖିଲା ବେଳେ ମଧ୍ୟ ତାଙ୍କର ଭୁଲ୍ ହେବା ବୋଧହୁଏ ଅଜ୍ଞତାରୁ ନୁହେଁ ବରଂ ଅସାବଧାନତାରୁ । ତେବେ ଇକାର, ଉକାର ଏବଂ 'ସ' ଶ ଷ ପ୍ରୟୋଗରେ ହିଁ ଓଡ଼ିଆରେ ନବେ ପ୍ରତିଶତ ବର୍ଣ୍ଣାଶୁଦ୍ଧି ହୋଇଥାଏ । ସେଥିପାଇଁ ଟିକିଏ ସତର୍କ ହେଲେ, ଏବଂ ଭାଷାଟିକୁ ଭଲ ପାଇ ଶୁଦ୍ଧ ପରିଚ୍ଛନ୍ନ ଲେଖିବାକୁ ଇଚ୍ଛା କଲେ ହିଁ ଅଧିକାଂଶ ପ୍ରମାଦ ଦୂର ହୋଇ ପାରିବ ।

ପ୍ରଥମେ କେତୋଟି ସହଜରେ ମନେ ରହିଲା ଭଳି ନିୟମକୁ ବିଚାର କରାଯାଉ।

୧. ଇକାରାନ୍ତ ସ୍ତ୍ରୀଲିଙ୍ଗ ଶବ୍ଦ ପ୍ରାୟଶଃ ଦୀର୍ଘ ଈକାର ଯୁକ୍ତ ହୋଇଥାଏ। ଯଥା– (ସମ୍ରାଟ)- ସମ୍ରାଜ୍ଞୀ, (ଯୁବରାଜ)- ଯୁବରାଜ୍ଞୀ, (ମନସ୍ୱୀ)- ମନସ୍ୱିନୀ, (ତପସ୍ୱୀ)- ତପସ୍ୱିନୀ, (କୁରଙ୍ଗ)-କୁରଙ୍ଗୀ, (ବିଧାତା)-ବିଧାତ୍ରୀ (ମନୀଷା) - ମନୀଷଣା, (କବି) କବୀ (ମେଧାବୀ) - ମେଧାବିନୀ, (କର୍ତା)- କର୍ତ୍ତ୍ରୀ, (ନେତା) - ନେତ୍ରୀ, (ରାଜା) - ରାଜ୍ଞୀ, ରାଣୀ, (ଇନ୍ଦ୍ର) - ଇନ୍ଦ୍ରାଣୀ, (ନଦ) - ନଦୀ, (ସିଂହ) - ସିଂହୀ; ସିଂହାଣୀ ନୁହେଁ, (ସଂସାରୀ)-ସଂସାରିଣୀ, (କରୀ) - କରିଣୀ,(ବିରହୀ) - ବିରହିଣୀ, (ଗୁରୁ) - ଗୁର୍ବୀ ଇତ୍ୟାଦି । ଲକ୍ଷ୍ୟ କରିବାର କଥା ଯେ ପୁଂଲିଙ୍ଗ ଦୀର୍ଘ ଈ କାରାନ୍ତ ହୋଇଥିଲେ ସ୍ତ୍ରୀଲିଙ୍ଗ ବେଳକୁ ତାହା ହ୍ରସ୍ୱ ହୋଇଯାଏ, ଯଥା– ମନୀ(ଷୀ) ଷିଣୀ, ବିର(ହୀ) ହିଣୀ, ସଂସ (ରୀ) ରିଣୀ ।

୨. ବ୍ୟକ୍ତି କୌଣସି ବିଷୟ ସହିତ କୁହାଯାଏ । ଯଥା ଧନଥିବାରୁ ଧନୀ, ମାନ ଥିବାରୁ ମାନୀ, ଗୁଣ-ଗୁଣୀ, ଋଣ-ଋଣୀ, ଚକ୍ର-ଚକ୍ରୀ, ଖଡ଼୍ଗ-ଖଡ୍ଗୀ, ଗୃହ-ଗୃହୀ, ବିବେକ-ବିବେକୀ, ଅଧିକାର-ଅଧିକାରୀ, କୌଶଳ-କୌଶଳୀ ଇତ୍ୟାଦି।

୩. କନ୍ୟା ସୂଚକ ଶବ୍ଦ ପିତା ବା ପ୍ରଦେଶକୁ ନେଇ ନିଷ୍ପନ୍ନ ହେଲେ କେତେକ କ୍ଷେତ୍ରରେ ତାହା ଦୀର୍ଘ ଇକାରାନ୍ତ ହୋଇଥାଏ, ଯଥା - ପର୍ବତର କନ୍ୟା-ପାର୍ବତୀ, ଦ୍ରୁପଦ କନ୍ୟା-ଦ୍ରୌପଦୀ, ପାଞ୍ଚାଳ କନ୍ୟା-ପାଞ୍ଚାଳୀ, କେକୟ କନ୍ୟା-କୈକେୟୀ, କିନ୍ତୁ ସେହିଭାବରେ ପୁତ୍ର ସୂଚକ ଶବ୍ଦ ଦୀର୍ଘ ଇକାରନ୍ତ ନ ହୋଇ ହ୍ରସ୍ୱ ଇ ଯୁକ୍ତ ହୋଇଥାଏ, ଯଥା—ଦଶରଥ ପୁତ୍ର-ଦାଶରଥି, ସୁମିତ୍ରା ପୁତ୍ର ସୌମିତ୍ରି ।

ଦୀର୍ଘ ଉ କାର ବ୍ୟବହାର ପାଇଁ ସେପରି କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ । ପ୍ରକୃତରେ କହିବାକୁ ଗଲେ ହ୍ରସ୍ୱଦୀର୍ଘ ସ୍ୱର କେବଳ ଉଚ୍ଚାରଣ ଭେଦରୁ ହିଁ ସୃଷ୍ଟି ହୋଇଥାଏ । ଦୀର୍ଘ ଈ, ଦୀର୍ଘ ଊ, ଏ, ଐ ଓ ଏବଂ ଔ ଯୁକ୍ତ ହେଲେ ବର୍ଣ୍ଣର ଉଚ୍ଚାରଣରେ ଦୀର୍ଘସ୍ୱର ଆସିଥାଏ । ଉଚ୍ଚାରଣର ଦୀର୍ଘତା ଅନୁସାରେ ଯେଉଁ ତାରତମ୍ୟ ଆସେ ତାକୁ ମାତ୍ରାଭେଦ କୁହାଯାଏ । ହ୍ରସ୍ୱ ଉକାର ଅପେକ୍ଷା ଦୀର୍ଘ ଉକାର ଉଚ୍ଚାରଣରେ ଅନ୍ତତଃ ଗୋଟିଏ ମାତ୍ରା ଅଧିକ ଥାଏ, ଯଥା - ମୟୂର, ସିନ୍ଦୂର, ମୁହୂର୍ତ୍ତ, ନୂପୁର, ଇନ୍ଦୂର, ଚୂଡ଼ାନ୍ତ, ରୂପାନ୍ତର, ସ୍ୱରୂପ, ଦୂର୍ବାଦଳ, ଦୂଷଣୀୟ, ଶୂକର, ମୂକସାକ୍ଷୀ, ମୂଢ଼ମତି, ମୂର୍ଖ, ମୂର୍ତ୍ତି, ଭୂମିକା, ଭୂମିଷ୍ଠ, ଭୂଷଣ । ଯେଉଁ ଭାଷାରେ ହ୍ରସ୍ୱ ଦୀର୍ଘ ଉଚ୍ଚାରଣ କଥା କହିଲା ବେଳେ ବ୍ୟବହୃତ ହୁଏ, ସେ ଭାଷାରେ ଏହି ପ୍ରକାର ବର୍ଣ୍ଣାଶୁଦ୍ଧି ହେବା ବିରଳ । ଉଦାହରଣ ସ୍ୱରୂପ ସଂସ୍କୃତରେ ଦୀର୍ଘ ଉଚ୍ଚାରଣଗୁଡ଼ିକ ଠିକ୍ ଭାବରେ କରି ନଜାଣିଲେ ମାତ୍ରାହ୍ରାସ ହେବ ଏବଂ ବିଶେଷ କରି କାବ୍ୟାଂଶ ପଢ଼ିହେବ ନାହିଁ । ବର୍ତ୍ତମାନ ସମୟରେ ହିନ୍ଦୀ ଏବଂ ତା ସହିତ ସମ୍ପୃକ୍ତ ଭାଷା ମରାଠୀ, ଗୁଜରାତି, କିଛି ମାତ୍ରାରେ ରାଜସ୍ଥାନୀରେ ଦୀର୍ଘ ଉଚ୍ଚାରଣ ସ୍ପଷ୍ଟ ଥିବାରୁ ତଜ୍ଜନିତ ବର୍ଣ୍ଣାଶୁଦ୍ଧି ପ୍ରାୟ ହୁଏ ନାହିଁ । କିନ୍ତୁ ବଙ୍ଗଳା, ଓଡ଼ିଆ ଏବଂ ପୂର୍ବ ଭାରତୀୟ ଭାଷାଗୁଡ଼ିକରେ ହ୍ରସ୍ୱଦୀର୍ଘ ଉଚ୍ଚାରଣ ସ୍ପଷ୍ଟ ନୁହେଁ । ଏ ସବୁ ଭାଷାରେ ରଚିତ କାବ୍ୟ କବିତାମାନଙ୍କରେ ବର୍ଣ୍ଣ ଗଣନା ହୁଏ, ମାତ୍ରା ନୁହେଁ । ତଥାପି ଓଡ଼ିଆରେ ରାଧାମୋହନ ଗଡ଼ନାୟକଙ୍କ ଭଳି କେତେକ କବି ଧ୍ୱନି ବା ମାତ୍ରା ସଚେତନ । ଉଦାହରଣ– ''ତନ୍ୱୀ ତରୁଣୀ କରକରଦନା ବିମ୍ବାଧରୀ'' । ଆଗରୁ ଆଲୋଚିତ ହୋଇଛି ଯେ ସଂସ୍କୃତରୁ ଆହରଣ କରାଯାଇଥିବା ଓଡ଼ିଆରେ ତଦ୍ଭବ ଶବ୍ଦଗୁଡ଼ିକର ଗଠନ ପଛରେ ସଂସ୍କୃତ ଧାତୁ ପ୍ରତ୍ୟୟର ବିଧିବଦ୍ଧ ପରମ୍ପରା ରହିଛି । ଏଣୁ ବନାନ କଲାବେଳେ ସେ ଶବ୍ଦଗୁଡ଼ିକୁ ନେଇ କୌଣସି ବ୍ୟତିକ୍ରମ ହେବା ସମ୍ଭବ ନୁହେଁ । ଧରାଯାଉ କେତେକ ସମାସ ନିଷ୍ପନ୍ନ ଶବ୍ଦ, ଯଥା– ଗୌରୀ + ଶଙ୍କର = ଗୌରୀଶଙ୍କର, ଗୌରୀ+କୁମାର = ଗୌରୀକୁମାର, କିଶୋରୀ+ଚରଣ = କିଶୋରୀ ଚରଣ, ଦେବକୀ+ନନ୍ଦନ = ଦେବକୀନନ୍ଦନ, ଗୋପୀ+ନାଥ = ଗୋପୀନାଥ । ଏ ଉଦାହରଣମାନଙ୍କରେ ପ୍ରଥମ ଶବ୍ଦ ଦୀର୍ଘ ଈକାରନ୍ତ ।

ସମାସ ନିଷ୍ପନ୍ନ ହେବା ପରେ ମଧ୍ୟ ସେ ଶବ୍ଦଗୁଡ଼ିକ ଅପରିବର୍ତ୍ତିତ ରହିଛନ୍ତି । କିନ୍ତୁ ଶଶୀ+ଭୂଷଣ=ଶଶିଭୂଷଣ, ସାକ୍ଷୀ+ଗୋପାଳ = ସାକ୍ଷିଗୋପାଳ, ହସ୍ତୀ+ଯୂଥ =ହସ୍ତିଯୂଥ ।

ଏହିପରି କେତେକ ଉଦାହରଣକୁ ନିୟମ ଅବା ବ୍ୟତିକ୍ରମ ଭାବରେ ମନେ ରଖିବାକୁ ପଡ଼ିବ । ଚିଠି ଲେଖିଲା ବେଳେ କେତେଗୁଡ଼ିଏ ବହୁପ୍ରଚଳିତ ଶବ୍ଦକୁ ନେଇ ଅନେକଙ୍କର ଅସୁବିଧା ହୋଇଥାଏ । ପ୍ରୀତି ଶବ୍ଦରେ ପରେ ଈକାର କିନ୍ତୁ ପ୍ରିୟ ବା ପ୍ରିୟ ଶବ୍ଦରେ ହ୍ରସ୍ୱ । ଆଶୀର୍ବାଦ ଶବ୍ଦରେ ଶରେ ଦୀର୍ଘ ଈକାର କିନ୍ତୁ ଆଶିଷରେ ହ୍ରସ୍ୱଇ । ପ୍ରଣତି, ବିନୀତ, ଇତ୍ୟାଦି କେତେକ ଶବ୍ଦ ପ୍ରତି ଥରେ ସଚେତନ ହେଲେ ତେଣିକି ଅଭ୍ୟାସରେ ପଡ଼ିଯିବ ଏବଂ ଆଉ ଭୁଲ (ଭୂଲ୍ ନୁହେଁ) ହେବ ନାହିଁ ।

ଏ ସ୍ତମ୍ଭର ଉଦ୍ଦେଶ୍ୟ ନୁହେଁ ବ୍ୟାକରଣକୁ ବ୍ୟାଖ୍ୟା କରିବା । ଏହାର ଏକମାତ୍ର ଉଦ୍ଦେଶ୍ୟ ହେଲା ଓଡ଼ିଆ ଲେଖାରୁ ସାଧାରଣ ଶବ୍ଦ ପ୍ରମାଦ ଦୂର କରି ଭାଷା ପ୍ରତି ଏକ ଜାଗରୂକତା ସୃଷ୍ଟି କରିବା । କେବଳ ନିର୍ଭୁଲ ବନାନ ଥିବା ଏକ ଶବ୍ଦାଭିଧାନର ପ୍ରୟୋଜନ ରହିଛି । ଭାଷାକୁ ଶୁଦ୍ଧ ଲେଖିବାକୁ ଏବଂ ଭାଷାକୁ ଭଲ ପାଇବାକୁ ଆରମ୍ଭ କଲେ ବଳେ ସେ ସମସ୍ତ ଅଭାବ ମଧ୍ୟ ଦୂର କରିବାକୁ କ୍ରମଶଃ ପ୍ରୟାସ ହେବ । ଆମେ ସ୍ୱୟଂ ଶୁଦ୍ଧ ଓଡ଼ିଆ ନ ଲେଖିବା ଯାଏଁ ଓଡ଼ିଆ ଭାଷାରେ ପ୍ରକାଶିତ ବିଜ୍ଞାପନମାନଙ୍କରେ ଅନ୍ୟ ଭାଷାଭାଷୀମାନେ କେତେ ଶବ୍ଦ ପ୍ରଦୂଷଣ କରୁଛନ୍ତି ତାହା କିପରି ଜାଣିପାରିବା ? ସେ ବିଷୟରେ କ'ଣ ବା କରିପାରିବା ?



# ଶବ୍ଦ ପ୍ରମାଦ – ୨

'ପୁରିରେ କ୍ରୀୟା ହେଉଛି। ଏକାଦଶାହ ଦିନ ଯୋଗଦେବାକୁ ଆପଣଙ୍କୁ ହାର୍ଦ୍ରିକ ଅନୁରୋଧ। ଇତି।

ପ୍ରାପ୍ତେଷୁ- ଶ୍ରୀ ଚନ୍ଦ୍ରସେଖର ରଥ

ମୁଁ ଭାବିଥିଲି କେବଳ କେତେକ ଯାତ୍ରୀବାହୀ ବସ୍‌ରେ ଗାଡ଼ିମାଲିକଙ୍କ ଅଜ୍ଞତା କିମ୍ବା ଅସାବଧନତା ହେତୁ 'ପୁରି' ଲେଖା ହୋଇଥାଏ ଏବଂ ପ୍ରତିକ୍ରିୟାହୀନ ଯାତ୍ରୀମାନେ ତାକୁ ଦେଖି ନଦେଖିଲା ପରି ଆଚରଣ କରିଥାନ୍ତି। କିନ୍ତୁ ଚିଠି ଖଣ୍ଡିକ ପାଇ ମନେ ହେଲା ଯେ ବ୍ୟାଧି ଆହୁରି ବ୍ୟାପକ।

ପୁରୀ ଶବ୍ଦଟିକୁ ଅନ୍ତତଃ କୌଣସି ଓଡ଼ିଆ ଅଶୁଦ୍ଧ ଲେଖିବେ ନାହିଁ, ବା ଲେଖି ପାରିବେ ନାହିଁ ବୋଲି ମୋର ବିଶ୍ୱାସ ଥିଲା । ପୁର + ଈ ଦ୍ୱାରା ନିଷ୍ପନ୍ନ ଶବ୍ଦ ପୁରୀ । ଏଠାରେ ହ୍ରସ୍ୱ 'ଇ' କାର ହେବନାହିଁ । ଅବଶ୍ୟ ପୁରି ତରକାରି ଆସ୍ୱାଦାନ କରିବାକୁ ଇଚ୍ଛା କରୁଥିଲେ ପ୍ରସଙ୍ଗ ଅନ୍ୟପ୍ରକାର, କାରଣ 'ପୁରି' ସେ କ୍ଷେତ୍ରରେ ଆଉ ଏକ ବସ୍ତୁବାଚକ ବିଶେଷ୍ୟ ଶବ୍ଦ।

ଆମର ସାମାଜିକ ସଂସ୍କାର ଅନୁସାରେ ଅନ୍ତ୍ୟେଷ୍ଟିକ୍ରିୟାକୁ କେବଳ କ୍ରିୟାଶବ୍ଦ ଦ୍ୱାରା ସୂଚିତ କରାଯାଏ। କ୍ରୀଡ଼ା ଶବ୍ଦର ପ୍ରଭାବରେ ହୁଏତ କ୍ରିୟାକୁ 'କ୍ରୀୟା' ବୋଲି ଭ୍ରମ ହେଉଥାଇପାରେ। କ୍ରିୟା, ପ୍ରତିକ୍ରିୟା, ସକ୍ରିୟ ସବୁଠାରେ କେବଳ ହ୍ରସ୍ୱ 'ଇ' କାର।

'ଏକାଦଶାହ' ଶବ୍ଦରେ (ଏକାଦଶ+ଅହନ୍) ମୃତ୍ୟୁର ପରବର୍ତ୍ତୀ ଏକାଦଶସଂଖ୍ୟକ ଦିନଟି ସୂଚିତ ହେଉଥିବାରୁ ତା' ସହିତ ପୁଣି 'ଦିନ' ଶବ୍ଦଟି ଯୁକ୍ତ କରିବାର ପ୍ରୟୋଜନ ନାହିଁ । 'ଏକାଦଶାହ'ରେ ଯୋଗଦେବାକୁ ଲେଖାଯାଇ ପାରିଥାନ୍ତା ।

ହୃଦୟର ବିଶେଷଣ ହାର୍ଦିକ ଏହା(ହୃଦ+ଇକ) ହୋଇଥିବାରୁ ରେଫ୍ ସହିତ ପୁଣି 'ର' ଫଳା ହେବନାହିଁ । ଏଣୁ ଶବ୍ଦଟି ହାର୍ଦିକ, ହାର୍ଦ୍ରିକ ନୁହେଁ ।

'ପ୍ରାପ୍ତେଷୁ' ଲେଖିବା ଅଭ୍ୟାସ ଅଳ୍ପ କେତେ ବର୍ଷ ହେଲା ଦେଖାଦେଇଛି। ମନେହୁଏ, ସମ୍ବୋଧନରେ 'ପୂଜନୀୟେଷୁ' 'ଆଦରଣୀୟେଷୁ' 'ସ୍ନେହାସ୍ପଦେଷୁ' ଆଦି ଶବ୍ଦ ଦ୍ୱାରା ଉତ୍ସାହିତ ହୋଇ 'ପ୍ରାପ୍ତେଷୁ' ଭଳି ଏକ ଉଦ୍ଭଟ ଶବ୍ଦର କଳ୍ପନା କରାଯାଇଛି। ଯେ ପାଏ ସେ ପ୍ରାପ୍ତ ନୁହେଁ, ଯାହାକୁ ପାଏ (ଅର୍ଥାତ୍ ପତ୍ର) ତାହା ପ୍ରାପ୍ତ। ଏଣୁ

ପ୍ରାପ୍ତେଷୁ କହିଲେ 'ପତ୍ର'କୁ ଇଙ୍ଗିତ କରୁଛି କିନ୍ତୁ କୌଣସି ଅର୍ଥ ବହନ କରୁନାହିଁ । ଏଣୁ ପତ୍ର ପଠାଉଥିବା ବ୍ୟକ୍ତି ପ୍ରେରକ ଓ ପତ୍ର ପାଉଥିବା ବ୍ୟକ୍ତି ପ୍ରାପକଙ୍କ 'ଚନ୍ଦ୍ରଶେଖର'କୁ ଚନ୍ଦ୍ରସେଖର ଲେଖିବା ଖୁବ୍ ବିରଳ । କିନ୍ତୁ ସ, ଶ, ଷ, ଜନିତ ଶବ୍ଦ ପ୍ରମାଦ ବିଚାର କରିବା ବୋଧହୁଏ ପ୍ରାସଙ୍ଗିକ ।

ଜନୈକ ଉଚ୍ଚପଦାଧିକାରୀ ପ୍ରଶାସକ ଯୁକ୍ତି କଲେ ଯେ ଆମେ ସ, ଶ ଓ ଷ ର ଉଚ୍ଚାରଣଗତ ପାର୍ଥକ୍ୟ ରଖୁ ନ ଥିବାରୁ ସବୁକ୍ଷେତ୍ରରେ କେବଳ ସେଥିରୁ ଗୋଟିଏ ଲେଖିଲେ କ୍ଷତି କ'ଣ । ଲିଖିତ ଶବ୍ଦର ବୈଶିଷ୍ଟ୍ୟ ଏକ ଜାତୀୟ ପରମ୍ପରା ଓ ପରିଚୟର ପ୍ରତୀକ । ଏଣୁ ତାକୁ ଯଥାସମ୍ଭବ ବଞ୍ଚାଇ ରଖିବାକୁ ହୁଏ । ଧରାଯାଉ ଇଂରାଜୀରେ ତିନୋଟି ଶବ୍ଦ – extension. intention, suspicion. ପ୍ରତ୍ୟେକ ଶବ୍ଦ ଶେଷରେ 'ସନ୍' ଉଚ୍ଚାରିତ ହେଉଥିଲେ ମଧ୍ୟ ଲେଖିବାର ବନାନ୍ ପୃଥକ । କୌଣସି ଇଂରାଜୀ ଭାଷାଭିମାନୀ ବ୍ୟକ୍ତି ତିନୋଟିଯାକ ଶବ୍ଦ ବା ସେଭଳି ଅନେକ ଶବ୍ଦକୁ tion ବା sionରେ ଲେଖିବାକୁ ରାଜି ହେବେ ନାହିଁ ।

ଏଣୁ ସେ ପ୍ରଶାସକ ମହାଶୟକୁ ଆମେ ପ୍ରସାସକ ମହାଶୟ ବୋଲି ଲେଖିବାର କିଛି ଯୁକ୍ତି ଅଛି କି ? ଏହାର ପ୍ରୟୋଗରେ କେତୋଟି ସାଧାରଣ ପ୍ରମାଦ ଦୃଷ୍ଟିଗୋଚର ହୁଏ, ତାହା ବର୍ଜନୀୟ, ଯଥା– ସାଗ, ସାଗୁଆ (ଶୁଦ୍ଧ ଶାଗ, ଶାଗୁଆ), ପରିସ୍କାର (ଶୁଦ୍ଧ, ପରିଷ୍କାର) (ପରି + କୃ + ଅ), ପୁରଷ୍କାର (ଶୁଦ୍ଧ-ପୁରସ୍କାର) (ପୁରଃ+କୃ+ଅ) ପୁସ୍କରିଣୀ (ଶୁଦ୍ଧ - ପୁଷ୍କରିଣୀ) (ପୁଷ୍କର+ଇନ୍+ଇ)– ସାବଳ (ଶୁଦ୍ଧ-ଶାବଳ)– ସାବନ, ସାବନା (କଳା ନୁହେଁ କି ଗୋରା ନୁହେଁ) (ଶୁଦ୍ଧ - ଶାବଳ, ଶାବନା) କିନ୍ତୁ ସାରଳା ଶୁଦ୍ଧ ହେଲେ ସୁଦ୍ଧା ଶାରଦା ଅର୍ଥରେ ଶାରଳାର ପ୍ରୟୋଗ ମଧ୍ୟ ସ୍ୱୀକୃତ।

ରେଫ୍ ଏବଂ 'ର' ଫଳା ବିଷୟରେ ଆଉ ପଦେ । ବର୍ଣ୍ଣର ପୂର୍ବରୁ 'ର' ଉଚ୍ଚାରଣ ରେଫ୍ ଓ ବର୍ଣ୍ଣର ପରେ 'ର' ଉଚ୍ଚାରଣ 'ର'ଫଳା । ଯଥା– ପୂର୍ବ(ରେଫ୍, ବକ୍ର('ର' ଫଳା) ରେଫ ଯୁକ୍ତ ବର୍ଣ୍ଣର ଦ୍ୱିତୀୟ ହେବାର କୌଣସି ମୌଳିକ ନିୟମ ନାହିଁ । ତଥାପି କେତେକ ପ୍ରୟୋଗ ରହିଛି – କର୍ତ୍ତା, ବର୍ତ୍ତମାନ ବର୍ଦ୍ଧିତ, ଅର୍ଦ୍ଧ, ନିର୍ଲଜ୍ଜ ଇତ୍ୟାଦି କିନ୍ତୁ ଏହାକୁ ନିୟମ ବୋଲି ମାନିନେଲେ ଆମକୁ ଧର୍ମ୍ମ, କର୍ମ୍ମ, ଚର୍ମ୍ମ ଭଳି ଅନେକ ଅଚଳ ଶବ୍ଦକୁ ଗ୍ରହଣ କରିବାକୁ ହେବ। ଏଣୁ ରେଫ୍‌ଯୁକ୍ତ ବର୍ଣ୍ଣର ଦ୍ୱିତୀୟ ହେବାର ପ୍ରୟୋଜନ ନାହିଁ। ଅତଏବ ନିମ୍ନଲିଖିତ ଶବ୍ଦଗୁଡ଼ିକୁ ପ୍ରଚଳନ କରିନେବା ବାଞ୍ଛନୀୟ । ଏହା ସଂସ୍କୃତ ସମ୍ମତ ହୋଇଥିବାରୁ କୌଣସି ବାଧା ନାହିଁ। ସୂର୍ଯ, ଚର୍ଚା, ପୂର୍ଣ, କର୍ତା, ବର୍ତମାନ, ବର୍ଧନ, ଅର୍ଧ, ନିର୍ଣୟ, ବର୍ଣନା ଇତ୍ୟାଦି।



# ଶବ୍ଦ ପ୍ରମାଦ – ୩

ଏ ସ୍ତମ୍ଭର ଜଣେ ପାଠକ ମୋ ପାଖକୁ ଚିଠି ଲେଖି ଅନୁରୋଧ କରିଛନ୍ତି ତାଙ୍କୁ ଗୋଟିଏ ଭଲ ଓଡ଼ିଆ ବ୍ୟାକରଣ ବିଷୟରେ ଜଣାଇବା ପାଇଁ । ମୁଁ ତାଙ୍କୁ କିପରି କହିବି ଯେ ଓଡ଼ିଆରେ ବ୍ୟାକରଣ ନାହିଁ । ପଚାଶ ବର୍ଷ ତଳେ ସଂସ୍କୃତ ବ୍ୟାକରଣ ଛାୟାରେ ଯେଉଁ ସନ୍ଧି, ସମାସ ତଦ୍ଧିତ କୃଦନ୍ତ ବିଷୟକ ପୁସ୍ତକ ଲେଖା ହୋଇଥିଲା ତାହା ଯଥାର୍ଥରେ ଓଡ଼ିଆ ବ୍ୟାକରଣ ନଥିଲା । ଆଧୁନିକ ଅର୍ଥରେ ତାହା ବ୍ୟାକରଣ ମଧ୍ୟ ନୁହେଁ । ଆଉ ବା କିପରି କହିବି ଯେ ୧୯୪୨ ମସିହାରେ ପୂର୍ଣ୍ଣଚନ୍ଦ୍ର ଭାଷା କୋଷ ପ୍ରକାଶିତ ହେବା ପରେ ଆଉ ଓଡ଼ିଆରେ ଅଭିଧାନ ଲେଖା ହୋଇନାହିଁ । ଗୋଟିଏ ଜୀବିତ ଓ ବର୍ଦ୍ଧିଷ୍ଣୁ ଭାଷାର ଅଭିଧାନ ଲେଖାଯାଏ ନାହିଁ ନିରବଚ୍ଛିନ୍ନ ଲେଖା ଚାଲିଥାଏ । ଯେପରି ଅକ୍ସଫୋର୍ଡ଼ ଶବ୍ଦାଭିଧାନ । ପ୍ରମୋଦ ଏବଂ ତରୁଣ ଅଭିଧାନକୁ ନେଇ କେତେକାଳ ଆମେ ଚଳିବା ? ମୋ ଭାଷାରେ ବ୍ୟାକରଣ ନାହିଁ କି ଅଭିଧାନ ନାହିଁ - ଏ ଦୁଃଖ କାହାକୁ କହିବି ?

ଏପରି ଦୁରବସ୍ଥାନର (ଦୁଃ-ଅବସ୍ଥା = ଦୁରବସ୍ଥା ଦୁରାବସ୍ଥା ନୁହେଁ) ଶବ୍ଦ ପ୍ରୟୋଗରେ ଉଚ୍ଛୃଙ୍ଖଳତା ଦେଖାଦେବା ସ୍ୱାଭାବିକ । ମନେ ହେଉଛି ସତେବା ଓଡ଼ିଆରେ ଯେ ଯାହା ଲେଖିଲେ ମଧ୍ୟ କାହାରି କିଛି ପ୍ରତିବାଦ କରିବାର ନାହିଁ । ଓଡ଼ିଆ କ'ଣ ଇଂରାଜୀ ନା' ସଂସ୍କୃତ ହୋଇଛି ଯେ ତା' ପାଇଁ ଏବେ ସତର୍କ ବା ସଂଯତ ହେବାକୁ ପଡ଼ିବ? ଏ ପ୍ରକାର ବେଖାତିର୍ ଭାବ, ଅବହେଳା ଓ ଅସମ୍ମାନରେ ଭାଷା ଉଧେଇ ପାରିବ ନାହିଁ । ସେଥିପାଇଁ ଖବରକାଗଜ, ପତ୍ରପତ୍ରିକାମାନଙ୍କରେ ପ୍ରତିଦିନ ପ୍ରକାଶ ପାଉଥିବା ଶବ୍ଦ ପ୍ରମାଦର ଇୟତ୍ତା ନାହିଁ। ଛପା ସରିଲା ପରେ ବର୍ଣ୍ଣାଶୁଦ୍ଧି ସଂଶୋଧନ କରିବା ଶାଗ କାଟି ବାଳ ବାଛିବା ପରି ଏକ ନିଷ୍ଫଳ ପ୍ରୟାସ । ବରଂ ପ୍ରକାଶକମାନେ ଯଦି ଏ ଦିଗରେ ଟିକିଏ ଶ୍ରମ ସ୍ୱୀକାର କରନ୍ତି ତା'ହେଲେ ଭାଷାକୁ କିଛି ମାତ୍ରାରେ ଶୁଦ୍ଧ ରଖାଯାଇପାରେ ।

ଓଡ଼ିଆ ଶବ୍ଦ ଉପରେ ଆଉ ଗୋଟିଏ ଦିଗରୁ ଯେଉଁ ଅତ୍ୟାଚାର ହେଉଛି ସେହି ବିଷୟରେ ଦି'ପଦ ଲେଖିବାକୁ ଯାଉଛି। ଅନେକ ସମୟରେ ଏଭଳି ଶବ୍ଦମାନ ଆଖିରେ ପଡୁଛି, ଯଥା – ବିଗ୍ୟାଁପନ, ବିଂବ, ଦଂଡ଼, ଆଂବ, ଦିଗଂବର, ମଂଦ,

କଂଠ, ଘଂଡ଼ା ଇତ୍ୟାଦି। ଆପଣମାନେ ଜାଣିପାରୁଥିବେ କାହିଁକି ଏପରି ଲେଖାଯାଉଛି। ଏହାଦ୍ୱାରା ଗୁଡ଼ିଏ ଅନୁନାସିକ ଯୁକ୍ତାକ୍ଷରକୁ ଓଡ଼ିଆ ଲିପିରୁ ବହିଷ୍କାର (ବହିସ୍କାର ନୁହେଁ) କରି ଦେବାରୁ ଲେଖା, ସରଳ ସହଜ ଏବଂ ଆଧୁନିକ ହୋଇଗଲା ବୋଲି ଆମର ଧାରଣା। ବହୁ ଦିନରୁ ଚାଲିଆସିଥିବା ଓଡ଼ିଆ ଲିପି ସଂସ୍କାରର ଏହାର ଏକ ଅଙ୍ଗ। ଏଥିରେ ଭାଷା ଓ ଶବ୍ଦ ସାମର୍ଥ୍ୟର କିଭଳି କ୍ଷତି ଘଟୁଛି ଟିକିଏ ବିଚାର କରାଯାଉ।

ସଂସ୍କୃତ-ଭିତ୍ତିକ ସବୁ ଭାଷାରେ ଅନୁନାସିକ ଯୁକ୍ତାକ୍ଷର ପାଇଁ ପାଞ୍ଚଟି ବର୍ଗରେ ପାଞ୍ଚଟି ସ୍ୱତନ୍ତ୍ର ବର୍ଣ୍ଣ ରହିଛି– କ ବର୍ଗରେ ଙ, ଚ ବର୍ଗରେ ଞ, ଟ ବର୍ଗରେ ଣ, ତ ବର୍ଗରେ ନ ଓ ପ ବର୍ଗରେ ମ । ଏହା ବ୍ୟତୀତ ଅନୁସ୍ୱାର (ଂ) ଓ ଚନ୍ଦ୍ରବିନ୍ଦୁ (ଁ) ମଧ୍ୟ ଅନୁନାସିକ ଉଚ୍ଚାରଣରେ ବ୍ୟବହୃତ ହୁଏ । ଲକ୍ଷ୍ୟ କଲେ ଜଣାଯିବ ଯେ ପ୍ରତ୍ୟେକ ଯୁକ୍ତାକ୍ଷରରେ ଅନୁନାସିକ ସଂକେତ ଲାଗି ରହିଛି, ଯଥା– ଙ୍କ ରେ ଙ, ଞ୍ଚ ରେ ଞ, ଣ୍ଟରେ ଣ, ନ୍ତରେ ନ, ମ୍ପରେ ମ । କିନ୍ତୁ ଆମ ଲିପିର ବର୍ତ୍ତୁଳତା ହେତୁ କ୍ଷେତ୍ର ବିଶେଷରେ ଆମେ ବ୍ୟତିକ୍ରମ କରିଛୁ । ଯେମିତି ଧରାଯାଉ ନ୍ତ, ଣ୍ଡ, ଣ୍ଢ, ମ୍ଭ । ଏଥିରେ ତ, ଡ, ଢ, ଭ ନାହିଁ । ସେ ସ୍ଥାନରେ କେତେଗୁଡ଼ିଏ ସଂକେତ ନିଆଯାଇଛି । ଆଉ ମଧ ଯୁକ୍ତାକ୍ଷରଟିକୁ ବୈଶିଷ୍ଟ୍ୟ ଦେବା ପାଇଁ ଆମେ ମୂଳବର୍ଣ୍ଣର ପରିବର୍ତ୍ତନ କରିଛୁ । ଯଥା ଞ୍ଚ ଞ୍ଛରେ ଚ ବା ଛ ଆଦୌ ନାହିଁ।

ଲିପିକାରମାନେ ଗୋଟାଏ ସମୟର ପ୍ରୟୋଜନକୁ ନେଇ ଅକ୍ଷର ସୃଷ୍ଟି କରିଥିଲେ ଏବଂ ସେଗୁଡ଼ିକ କ୍ରମଶଃ ବିବର୍ତ୍ତିତ ରୂପରେ ପ୍ରକାଶିତ ହେଲେ । କିନ୍ତୁ ଅନୁନାସିକ ସ୍ୱରରେ ଅତି ସୂକ୍ଷ୍ମ ବିଭେଦକୁ ନେଇ ଯେଉଁ ସମୃଦ୍ଧ ଭାଷା ସୃଷ୍ଟି ହୋଇଛି ତାକୁ ସଂରକ୍ଷିତ ଓ ବିକଶିତ କରିବା ପରିବର୍ତ୍ତେ ଆମେ ତାକୁ ଧ୍ୱଂସ କରି ଚାଲିଛୁ। ସବୁ ଅନୁନାସିକ ସ୍ୱରକୁ କେବଳ ଅନୁସ୍ୱର ଦେଇ ଲେଖିବା ଏକ ବଳାତ୍କାର। ଏହା ଲିପି ସଂସ୍କାର ନୁହେଁ, ବରଂ ଲିପି ଉଚ୍ଛେଦ।

ହଂସ, କଂସ, ବଂଶ, ସଂସାର ଶବ୍ଦମାନଙ୍କରେ ଅନୁସ୍ୱାର ଯଥାସ୍ଥାନରେ ରହିଛି। କିନ୍ତୁ ସେହିପରି ଯଦି ଆମେ ଆଂବ ଲେଖୁ ତାହା ଏକ ବିକୃତି । କାରଣ ଆମେ ସେ ଶବ୍ଦଟିକୁ ଯେପରି ଉଚ୍ଚାରଣ କରୁ ତାହା ଆମ୍ବ, ଆଂବ ନୁହେଁ । ଅବଶ୍ୟ ସଂସ୍କୃତରେ ଙ ଏବଂ ମ ଯୁକ୍ତ ଅନୁନାସିକ ଶବ୍ଦରେ ଅନୁସ୍ୱାର ବ୍ୟବହାର କରିବାର ବିକଳ୍ପ ଅଛି। ତେବେ ଓଡ଼ିଆର କଂଠ ପଂଡ଼ିତ ଇଂଦୁ ଲେଖିବାର କୌଣସି ଯଥାର୍ଥତା ନାହିଁ। ସେହିପରି ଯଜ୍ଞ ଶବ୍ଦକୁ ଯଗ୍ୟଁ ଲେଖିବାର ମଧ୍ୟ ଯୁକ୍ତି ନାହିଁ।

ହିନ୍ଦୀ କିମ୍ବା ବଙ୍ଗଳାରେ ଏପରି ଅସୁବିଧା ହୋଇ ନାହିଁ କାରଣ ସେମାନଙ୍କର ଅର୍ଧବର୍ଣ୍ଣଗୁଡ଼ିକ ଅତି **ସ୍ପଷ୍ଟ** । ନ୍,ଣ୍,ମ୍ ସହିତ ମିଳିତ ଯୁକ୍ତାକ୍ଷରରେ ବଳାତ୍କାର ଅନୁସ୍ୱାର ପ୍ରୟୋଗ କରିବାର ପ୍ରୟୋଜନ ସେଠାରେ କେହି ଅନୁଭବ କରିନାହାଁନ୍ତି ।

ଏଭଳି ନିର୍ବିଚାର ଅନୁସ୍ୱାର ପ୍ରୟୋଗ କରୁଥିବା ଜଣେ ବ୍ୟକ୍ତିଙ୍କ ସହିତ ମୋର ଆଳାପ ହୋଇଥିଲା । ଅଳ୍ପ ଉଦ୍ଧାର କରୁଛି ।

''ଆପଣ କାହିଁକି ଏମିତି ଅନୁସ୍ୱାର ଦେଇ ସବୁ ଅନୁନାସିକ ଯୁକ୍ତାକ୍ଷର ଲେଖୁଛନ୍ତି ?''

''ଯୁକ୍ତାକ୍ଷର ସଂଖ୍ୟା କମାଇବାକୁ ।''

''କମିଲେ କ'ଣ ହେବ ?''

''କମିଗଲେ ଲେଖିବାକୁ ସହଜ, ଛାପିବାକୁ ସହଜ, କମ୍ପ୍ୟୁଟରରେ ଆସିବାକୁ ସହଜ । ଏତେ ଗୁଡ଼ାଏ ବର୍ଣ୍ଣ ଯୁକ୍ତବର୍ଣ୍ଣ ନେଇ ଓଡ଼ିଆକୁ ଆଧୁନିକ କରିହେବ ନାହିଁ ।''

ଯୁକ୍ତାକ୍ଷରଗୁଡ଼ିକର ଜଟିଳତା ସଂକ୍ରାନ୍ତରେ ମୁଁ ତାଙ୍କୁ କହିଥିଲି ''ଆପଣ ଜାପାନୀ, କିମ୍ବା ଚାଇନିଜ୍ ଅକ୍ଷର ନିଶ୍ଚୟ ଦେଖିଥିବେ । ଆମ ଯୁକ୍ତାକ୍ଷର କ'ଣ ତା'ଠାରୁ ଆହୁରି ଜଟିଳ ? ସେମାନେ ତ' କମ୍ପ୍ୟୁଟରରେ ଛୋଟରୁ ଛୋଟ ଅକ୍ଷର ଲେଖି ପାରୁଛନ୍ତି । ଆମେ ତାଙ୍କଭଳି ସ୍ୱାଭିମାନୀ ନୋହୁ । ଭାଷାକୁ ତାଙ୍କ ଭଳି ଭଲ ପାଉନା କିମ୍ବା ସମ୍ମାନ କରୁନା । ଏଣୁ କମ୍ପ୍ୟୁଟରକୁ ଆୟତ୍ତ ନ କରି ଲିପିଗୁଡ଼ିକୁ କାଟି ପକାଉ । ମୁଣ୍ଡ ଅନୁସାରେ ଟୋପି ନ କାଟି ଟୋପି ଅନୁସାରେ ମୁଣ୍ଡ କାଟି ଦେଉ । ଟିକିଏ ମନେ ପକାଇ ଦେଉଛି ।

''ନଖ ବଢ଼ିଥିଲେ କର କରତନ ରଞ୍ଜିଦିଅ ତହିଁ ଅଳତା ରଙ୍ଗ ।

ନାକ ବଢ଼ିଥିଲେ ତା' କଲେ ଛେଦନ ହେବ ନାହିଁ କି ମୋ ସୌଷ୍ଠବ ଭଙ୍ଗ ।''

ଓଡ଼ିଆ ଆଧୁନିକ ହେଉ; ସମୃଦ୍ଧ ହେଉ, ଏହା କିଏ ନଚାହେଁ । କିନ୍ତୁ ତା'ର ମୌଳିକତା, ତା'ର ସମସ୍ତ ସୂକ୍ଷ୍ମତା, ସମସ୍ତ ବିଭବ ଏବଂ ବିଚିତ୍ରତା ଅକ୍ଷୁଣ୍ଣ ରହୁ। ସେଥିପାଇଁ ବୁଦ୍ଧି ପ୍ରୟୋଗ କରାଯାଉ । ବଢ଼ିପାଣି ସହଜରେ ମାଡ଼ିଯାଉ ବୋଲି ଘରର କାନ୍ଥ ଭାଙ୍ଗିଦେବାରେ କିଛି ବିଜ୍ଞତା ଅଛିକି ?



# ଶବ୍ଦ ପ୍ରମାଦ – ୪

ଓଡ଼ିଆ ଭାଷା ଓ ଶବ୍ଦ ଉପରେ ଯଥେଚ୍ଛାଚାର ସହି ନପାରି ମୂଳତଃ ଓ ସ୍ତମ୍ଭ ଲେଖିବା ଆରମ୍ଭ କରିଥିଲି । ଉଦ୍ଦେଶ୍ୟ ଥିଲା ଯେ ଏପରି ଏକ ସତର୍କ ଘଣ୍ଟି ବାଜିଲେ ଯେ ଯେଉଁଠି ଜାଗ୍ରତ ପ୍ରହରୀ ଥିବେ ହୁଏତ ଆଣ୍ଠୁଭିଡ଼ି ଉଠି ଠିଆହେବେ ଏବଂ ସାକ୍ଷର ଓ ଶିକ୍ଷିତ ସମାଜରେ ଏକ ଭାଷା ସଚେତନତା ସୃଷ୍ଟି ହେବ । କେବଳ ସଚେତନତା ହୁଏତ ଯଥେଷ୍ଟ ହେବନାହିଁ, କାରଣ ସଚେତନତା ପଶ୍ଚାତରେ କିଛି ସତର୍କତା, ଭୟ ଓ ଭାଷାଠାରୁ କିଛି ସମ୍ଭ୍ରମପୂର୍ଣ୍ଣ ବ୍ୟବଧାନ ସୂଚିତ ହେଉଛି ଯେମିତି ଇଂରାଜୀ ଭାଷାକୁ ଖୁବ୍ ସଚେତନ ଭାବରେ କହିବାବେଳେ ଅବା ଲେଖିବାବେଳେ ହୋଇଥାଏ । ପ୍ରକୃତ ଉଦ୍ଦେଶ୍ୟ ହେଲା ଏକ ଭାଷାନୁରାଗ, ଭାଷାଭିମାନ, ଭାଷାକୁ ନେଇ ଗର୍ବ ଆପଣାପଣ ଓ ମମତା ଜାଗ୍ରତ କରିବା । ଏହି ଏକ ସ୍ୱତଃସ୍ଫୂର୍ତ୍ତ ଆନ୍ଦୋଳନ/ଆଲୋଡ଼ନର ରୂପ ନେଇ ପାରିଲେ ଆହୁରି ଭଲ ।

ଏହାର ପ୍ରଥମ ଶୁଭ ସୂଚନା ଆଜି ମିଳିଲା । ଜଣେ ଆଗ୍ରହୀ ତଥା ଅନୁଭବି ପାଠକ ସମ୍ପାଦକଙ୍କୁ ପତ୍ର ଜରିଆରେ ଶବ୍ଦ ପ୍ରମାଦର ଏକ ଦୀର୍ଘ ତାଲିକା ପଠାଇଛନ୍ତି । ତାଙ୍କୁ ସାଦର ସମ୍ମାନ ଜଣାଇ ଆଜି କେବଳ ତାଙ୍କଠାରୁ ମିଳିଥିବା ଶବ୍ଦ ତାଲିକାର କିଛି ଅଂଶ କିଛି ଟିପ୍ପଣୀ ସହିତ ଉପସ୍ଥାପିତ କରୁଛି । ଆଶା କରୁଛି ଏହାଦ୍ୱାରା ଅନେକ ସାଧାରଣ ଭ୍ରମ ସଂଶୋଧିତ ହୋଇପାରିବ ।

**୧. ଭାଷାନ୍ତର ଶବ୍ଦ :**

ଅନ୍ୟ କୌଣସି ଭାଷାରୁ ଓଡ଼ିଆ ଭାଷାକୁ ଶବ୍ଦର ଆଗମ ହେବା ନିଶ୍ଚୟ ସ୍ୱାଗତଯୋଗ୍ୟ । କିନ୍ତୁ ବିଭିନ୍ନ କାରଣରୁ ଆମେ ସେ ଶବ୍ଦଟିକୁ ଯଥାବତ୍ ନ ନେଇ ତା'ର ଗୋଟାଏ ବିକୃତ ରୂପକୁ ବ୍ୟବହାର କରିଥାଉ । ବିଶେଷତଃ ନାମବାଚକ ଶବ୍ଦମାନଙ୍କରେ ଏହିଭଳି କରିବାଦ୍ୱାରା ଉଭୟ ଭାଷାର ଅବମାନନା ହୋଇଥାଏ । କିଛି ଉଦାହରଣ ନିଆଯାଉ–

| **ଅଶୁଦ୍ଧ** | **ଶୁଦ୍ଧ** | **ଅଶୁଦ୍ଧ** | **ଶୁଦ୍ଧ** |
|---|---|---|---|
| ଆକବର | ଅକ୍‌ବର୍ | ପାକିସ୍ଥାନ | ପାକିସ୍ତାଁ(ନ) |
| ଆଫଗାନିସ୍ଥାନ | ଆଫଘାନି ସ୍ତାଁ(ନ) | କୋହିନୂର | କୋହେନୂର |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଆମ୍ବେଦକର | ଆମ୍ବେଡକର | ହାଇଦ୍ରାବାଦ | ହାଇଦରାବାଦ |
| ଗୁଜୁରାଟ | ଗୁଜରାତ୍ | କପିଳବାସ୍ତୁ | କପିଳ୍‌ବସ୍ତୁ |
| ଗୌହାଟି | ଗୁଆହାଟୀ | ଜାଠ | ଜାଟ |
| ଚିତୋର | ଚିତୌଡ | ଝେଲମ | ଜେହଲମ୍ |
| ଚୋହାନ | ଚୌହାଣ | ଡାମନ୍ | ଦାମନ୍ |
| କାଥିଆବାଡ | କାଠିଆବାଡ | ଡ୍ୟୁ | ଦ୍ୟୁ |
| ଏଲ୍ଲାହାବାଦ | ଇଲାହାବାଦ | | |

ବୋଧହୁଏ ଇଂରାଜୀ ବନାନରେ D କୁ 'ଦ' ନ ପଢ଼ି ଡ ପଢ଼ିବା ଦୋଷରୁ ଏ ପ୍ରମାଦ ସୃଷ୍ଟି ହୋଇଥାଇପାରେ ।

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ତଲୱାଣ୍ଡି | ତଲୌଣ୍ଡି | ମିନାର | ମୀନାର |
| ଇଦ | ଈଦ୍ | ଶିଖ ଧର୍ମ ବା ଜାତି | ସିଖ୍ |
| ନାସପତି | ନାଶପାତୀ | ସୁରାଟ | ସୁରତ୍ |
| ଅଙ୍ଗୁର | ଅଙ୍ଗୂର | ଶାଗୁଆନ | ସାଗୌନ୍ |
| ସେଉ | ସେବ୍ | ହରିଆନା | ହରିୟାନା |
| ପାଟନ | ପଟନା | କଲିକତା | କଲିକାତା |
| ପେଶବାର | ପେଶବର | ମେବାର | ମେବାଡ |
| ଭୁଟାନ | ଭୂଟନ | ମାଡ୍ରାସ | ମଦ୍ରାସ |
| ମାରବର | ମାରବାଡ | ହାବଡା | ହାଓଡା |

ସେହିପରି ଓଡ଼ିଶାରେ କେତେକ ନାମବାଚକ ଶବ୍ଦକୁ ଇଂରାଜୀ ବନାନ ଜରିଆରେ ଆମେ ବିକୃତ ଉଚ୍ଚାରଣ କରୁଛୁ । ଯଥା Oriya । ଇଂରାଜୀରେ କହିଲାବେଳେ ସବୁ ଓଡ଼ିଆ, ଓରିୟା କହିଥାନ୍ତି– ବାଲେଶ୍ୱରକୁ ବାଲାସୋର ଓ ବ୍ରହ୍ମପୁରକୁ ବରହମ୍‌ପୁର ମଧ୍ୟ ସେହିପରି ବ୍ୟବହୃତ ହୋଇ ଚାଲିଚି । ସବୁଠାରୁ ବିସ୍ମୟକର ବନାନ ହେଉଛି ଆଳି Aul ଏବଂ କଟକ Cuttack । ଓଡ଼ିଆକୁ ବଦଳାଇବା ଅପେକ୍ଷା ଇଂରାଜୀ ବନାନ୍‌ଗୁଡ଼ିକୁ ସୁଧାରିନେଲେ କେମିତି ହୁଅନ୍ତା ? ଯଥା :

Balasore ବଦଳରେ Baleswar

Cuttack ବଦଳରେ Kattak

Berhampur ବଦଳରେ Brahmapur

Aul ବଦଳରେ Ali

(ଆଲିକୁ କେହି କେହି ଆଲି ପଢ଼ିଲେ ବା କହିଲେ ମଧ୍ୟ କିଛି ଯାଏଆସେ ନାହିଁ)

Oriya ବଦଳରେ Odia

Orissa ବଦଳରେ Odisha

**୨. ସାଧାରଣ ଅସାବଧାନତାଜନିତ ତ୍ରୁଟି**

ସେହି ପତ୍ରରୁ ଆଉ କିଛି ଅଂଶ ଉଦ୍ଧାର କରୁଛି।

| **ଅଶୁଦ୍ଧ** | **ଶୁଦ୍ଧ** |
|---|---|
| ନିନ୍ଦୁକ | ନିନ୍ଦକ |
| ସେବିକା | ସେବକା |
| ପୂଜ୍ୟାସ୍ପଦ | ପୂଜ୍ୟ/ପୂଜାସ୍ପଦ |
| ସକ୍ଷମ | କ୍ଷମ |
| ଅନାଟନ | ଅନଟନ |
| କର୍ତାକାରକ | କର୍ତ୍ତୃକାରକ |
| ଧନୀକ | ଧନିକ |
| ସୃଜନ | ସର୍ଜନ |
| କିମ୍ୱା | କିବା |
| ମହତ୍ୱ | ମହତ୍ତ୍ୱ |
| ଆଶୀଷ | ଆଶିଷ |



# ଶବ୍ଦ ପ୍ରମାଦ – ୫

ଓଡିଆରେ ବର୍ଣ୍ଣାଶୁଦ୍ଧି ଓ ଲିପି ସଂସ୍କାର ସମ୍ପୂର୍ଣ୍ଣ ଅଲଗା ଅଲଗା ସମସ୍ୟା । ଯେତେବେଳେ ପଣ୍ଡିତ ନୀଳକଣ୍ଠ ଦାସ ଏବଂ ତାଙ୍କର ସମସାମୟିକ ଭାଷାବିତ୍‌ମାନେ ଓଡ଼ିଆର ଲିପି ସଂସ୍କାର କଥା ଚିନ୍ତା କରୁଥିଲେ ସେତେବେଳେ ଓଡ଼ିଆକୁ ଯୁଗୋପଯୋଗୀ କରିବା ପାଇଁ ସେମାନେ ଉଦ୍ୟମ କରୁଥିଲେ । କିଭଳି ଗୋଟିଏ ଟାଇପ୍ ରାଇଟ୍‌ରର ସାଧାରଣ ଆକାର ଓ ଯାନ୍ତିକ ନିୟମ ଭିତରେ ଓଡ଼ିଆ ବର୍ଣ୍ଣମାଳା ଆସି ପାରିବ ତାହା ହିଁ ସେମାନଙ୍କର ଚିନ୍ତାର ବିଷୟ ଥିଲା । ଯେହେତୁ ଟାଇପ ରାଇଟର ରୋମାନ ଲିପିର ମାତ୍ର ୨୬ଟି ଅକ୍ଷରକୁ ନେଇ ସମଗ୍ର ଇଂରାଜୀ ଭାଷା ସାହିତ୍ୟକୁ ସହଜରେ ଲେଖିଦେଇ ପାରୁଥିଲା, ଆମର ଏଇଠି ଚେଷ୍ଟା ଚାଲୁଥିଲା କିପରି ସର୍ବନିମ୍ନ ଅକ୍ଷରରେ ଓଡ଼ିଆ ଶବ୍ଦ ସମ୍ଭାରକୁ ଚିପି ଦେଇ ହେବ । ନୂଆ ଟାଇପ୍ ରାଇଟର ଓ ଅଭିନବ କୌଶଳ କଥା ମଧ୍ୟ ଚିନ୍ତା କରାଯାଇଥିଲା । ଫଳରେ ସମସ୍ତ ଅନୁନାସିକ ବର୍ଣ୍ଣ ଲୋପ କରି କେବଳ ଅନୁସାର ପ୍ରଚଳନ ପାଇଁ ମତ ପ୍ରକାଶ ପାଇଥିଲା ଏବଂ ତାକୁ କାର୍ଯ୍ୟତଃ ପଣ୍ଡିତ ନୀଳକଣ୍ଠଙ୍କ ପରି ମନୀଷୀମାନେ ପ୍ରୟୋଗ ମଧ୍ୟ କରି ଅନ୍ୟମାନଙ୍କ ପାଇଁ ଉଦାହରଣ ସୃଷ୍ଟି କରିଥିଲେ ।

ବର୍ତ୍ତମାନ ପ୍ରୟୋଗ ବିଦ୍ୟାର ଆଶାତୀତ ଉନ୍ନତି ଘଟି ଟାଇପ ରାଇଟରଟିକୁ ଅତ୍ୟନ୍ତ ପୁରୁଣା ଯନ୍ତ୍ର ରୂପେ ଉପେକ୍ଷା କରାଗଲାଣି । ଅତ୍ୟାଧୁନିକ ବୈଦ୍ୟୁତିକ ଯନ୍ତ୍ରପାତି, ଲେଜର୍ କମ୍ପ୍ୟୁଟର ଆଦି ଯନ୍ତ୍ର ସାହାଯ୍ୟରେ ଓଡ଼ିଆର ସମଗ୍ର ଅଖଣ୍ଡିତ ବର୍ଣ୍ଣମାଳା ଧାରଣ କଲାଭଳି କ୍ଷମତା ଅର୍ଜନ କରାଯାଇପାରିଛି । ଏଣୁ ଲିପି ସଂସ୍କାରକମାନେ ଏ ଶତାବ୍ଦୀର ପ୍ରାରମ୍ଭରେ ଆରମ୍ଭ କରାଯାଇଥିବା, ଟାଇପ୍ ରାଇଟର ଅଭିମୁଖୀ ପ୍ରୟାସରୁ ଊର୍ଦ୍ଧ୍ୱକୁ ଉଠି ସାମ୍ପ୍ରତିକ ସମୟର କମ୍ପ୍ୟୁଟରକୁ ଉପଯୋଗ କରିପାରିଲେ ଓଡ଼ିଆ ବର୍ଣ୍ଣମାଳାକୁ ଖଣ୍ଡିତ ଏବଂ ଭାଷାକୁ ବିକୃତ କରିବାର ଅନିବାର୍ଯ୍ୟତା ରହିବ ନାହିଁ ।

୨. ଯୁକ୍ତାକ୍ଷର, ହ୍ରସ୍ୱଦୀର୍ଘ ପ୍ରୟୋଗ, ଆମ ଭାଷା ଓ ସାହିତ୍ୟର ବୈଶିଷ୍ଟ୍ୟ । ତାକୁ ଅକ୍ଷୁଣ୍ଣ ରଖିପାରିବା ଆମ କର୍ତ୍ତବ୍ୟ, ଆମ ସାମର୍ଥ୍ୟ, ଗର୍ବ ଓ ଅଭିମାନ । ଏ ସପ୍ତାହ ପାଇଁ ଯେଉଁ ଦୀର୍ଘ ଚିଠିଟି ଆସି ପହଞ୍ଚିଛି ସେଥିରେ ଅଭିଯୋଗର ସ୍ୱର ହେଲା ପ୍ରାୟ ଏହିପରି–

''ଓଡ଼ିଆ ଶିଖିବା ଆମ ପିଲାଙ୍କ ପାଇଁ ଖୁବ୍ କଷ୍ଟ । କାରଣ ୧. ଏଥିରେ ମାତ୍ରା ଫଳା ଆଦି ବର୍ଣ୍ଣର ବାଁରେ, ଡାହାଣରେ, ତଳେ ଏବଂ ଉପରେ ଲେଖିବାରେ ସେମାନେ ଖୁବ୍ ହଇରାଣ ହୁଅନ୍ତି । ଇଂରାଜୀରେ ସେମିତି କିଛି ଅସୁବିଧା ନାହିଁ । ୨. ମୁଦି ନଦୀ କାହିଁକି ହ୍ରସ୍ୱ ଦୀର୍ଘ ଭେଦରେ ଲେଖାଯିବ ଯଦି, ପତ୍ରିକାରେ ସେପରି କୌଣସି ବିଭେଦ ନାହିଁ । ଆଉ ଶେଷରେ ୩. ଆମର ଯେଉଁ ଜଟିଳ ଯୁକ୍ତାକ୍ଷର ବାବା, ତାକୁ ଆୟତ୍ତ କରିବା ସାଧ୍ୟତୀତ । ସେ ସମସ୍ତ ଲୋପ କରି ଭାଷାକୁ ସରଳ ନ କଲେ ତାକୁ କେହି ଆଉ ଶିଖିବେ ନାହିଁ ।''

ଓଡ଼ିଆରେ ବନାନ ମନେରଖିବା କଷ୍ଟକର ବୋଲି ଆମର କହୁଥିବା ମାନନୀୟ ପତ୍ର ପ୍ରେରକଙ୍କୁ ମୁଁ ସ୍ମରଣ କରାଇ ଦେବାକୁ ଚାହେଁ ସେ କେତେ ପରିଶ୍ରମ କରି ଇଂରାଜୀ ବନାନ ମୁଖସ୍ଥ କରିଛନ୍ତି। ବନାନ ବିଷୟରେ ସବୁଠାରୁ ଉଚ୍ଛୃଙ୍ଖଳ ଭାଷା ଯଦି ଥାଏ, ତାହା ଇଂରାଜୀ। ସେଥିରେ ବନାନ ପାଇଁ କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ। ଭାଷାର ଏ ସ୍ୱେଚ୍ଛାଚାରିତା ଉପରେ ମନ୍ତବ୍ୟ ଦେବାକୁ ଯାଇ ଜର୍ଜ ବର୍ନାଡ୍ ଶ' ମହାଶୟ ଗୋଟିଏ ଅତି ପରିଚିତ ଶବ୍ଦକୁ ଅତ୍ୟନ୍ତ ଅପରିଚିତ ଢ଼ଙ୍ଗରେ ଲେଖିଥିଲେ ଏବଂ ଦୃଷ୍ଟାନ୍ତ ଦେଇ ସାବ୍ୟସ୍ତ କରିଥିଲେ ଯେ ଶବ୍ଦଟି ସେପରି ମଧ୍ୟ ଲେଖାଯାଇପାରେ। ଶବ୍ଦଟି ହେଲା Fish। ବର୍ନାଡ୍ ଶ' ତାକୁ ଲେଖିଥିଲେ ghetio। ଯେ ଯୁକ୍ତି ଦେଲେ ଯେ laugh ଶବ୍ଦରେ ghର ଉଚ୍ଚାରଣ ଫ । eve ଶବ୍ଦରେ eର ଉଚ୍ଚାରଣ ଇ। emotion ଶବ୍ଦରେ tioର ଉଚ୍ଚାରଣ ଶ । ଏଣୁ ghetioର ଉଚ୍ଚାରଣ ଫିଶ୍ ଯାହାକୁ fish ରୂପେ ଲେଖାଯାଏ । ଏହାଦ୍ୱାରା ସେ ପ୍ରମାଣ କରିବାକୁ ଚାହିଁଲେ ଯେ ଇଂରାଜୀ ବନାନ୍‌ର କୌଣସି ନିୟମାନୁବର୍ତ୍ତିତା ନାହିଁ । ସବୁ ଉଚ୍ଚ ଶିକ୍ଷିତ ଓଡ଼ିଆଙ୍କ ଇଂରାଜୀ ବନାନ୍ ବିଷୟରେ ସତର୍କତା, ଶ୍ରମ ଏବଂ ନିର୍ଭୁଲ ଲେଖିବା ପାଇଁ ସଂକଳ୍ପ ଟିକିଏ ମନେ ପକାଇ ଦେବାକୁ ଇଚ୍ଛା କରୁଛି । ସେଥିରୁ ଏକ ଦଶମାଂଶ ଚେଷ୍ଟାରେ ଓଡ଼ିଆ ବନାନକୁ ଆୟତ୍ତ କରାଯାଇପାରେ। ସେତିକି ମଧ୍ୟ ପରିଶ୍ରମ କରିବାକୁ କୁଣ୍ଠିତ ହୋଇ ହ୍ରସ୍ୱ ଦୀର୍ଘ ଲୋପ କରିଦେବାର ପ୍ରସ୍ତାବରେ ଭାଷା ପ୍ରତି କେତେ ବେଖାତିର ପ୍ରକାଶ ପାଉଛି ଟିକିଏ ବିଚାର କରନ୍ତୁ। ଓଡ଼ିଆଟା ଯଦି ସହଜ ହୁଏ ତେବେ ଦିପଦ ଲେଖିବାରେ ବା କହିବାରେ ମୋର ଆପତ୍ତି ନାହିଁ। ଯଦି ବନାନ ଫନାନ ଭୁଲ ଧରି ବସିବ, ତା' ହେଲେ ରଖିଥାଅ ପୂରା ଓଡ଼ିଆ - ଯୁକ୍ତିଟି ପ୍ରାୟ ଏଭଳି କଲା ପରି ଶୁଭୁଛି ଏବଂ ଶୁଣିଲେ ଭାରି ବାଧୁଛି । ଓଡ଼ିଆ ଭାଷାର ବନାନ ପ୍ରାୟ ସଂସ୍କୃତ ଆଧାରିତ ଏବଂ ପୃଥିବୀରେ ଅତ୍ୟନ୍ତ ନିୟମାନୁବଦ୍ଧ, ସୁସଂଯତ ଏବଂ ମାର୍ଜିତ ଭାଷା ହେଉଛି ସଂସ୍କୃତ। ଏପରି ଦ୍ୱିତୀୟ ଭାଷା ମଣିଷ ସୃଷ୍ଟି କରି ନାହିଁ। ଅଥଚ ଏତେ ଐଶ୍ୱର୍ଯ୍ୟକୁ ବୁଝି ନ

ପାରି ଆମେ ଗୋଡ଼ରେ ଠେଲିଦେବାକୁ ବସିଛୁ । ବୁଝିଗଲେ ଭାଷାକୁ ବାଗ୍‌ଦେବୀ ରୂପେ ପୂଜା କରିବାକୁ ଇଚ୍ଛା ହେବ । କୌଣସି ଓଡ଼ିଆ ଚାହିଁବ ନାହିଁ, ତା'ର ଭାଷାର ଅଙ୍ଗଚ୍ଛେଦ ହେଉ, ତା'ର ବୈଶିଷ୍ଟ୍ୟ ଲୋପ ପାଉ । ଏଣୁ ସୁଧୀ ପାଠକଙ୍କୁ ଅନୁରୋଧ ରହିଲା ସେମାନେ ଭାଷା ଓ ଶବ୍ଦରେ ଯଥେଚ୍ଛାଚାରକୁ କୌଣସି ଯୁକ୍ତିରେ ପ୍ରଶ୍ରୟ ନ ଦିଅନ୍ତୁ । ଆମ ଭାଷା ସୁନ୍ଦର, ଆମ ଶବ୍ଦ ଅର୍ଥପୂର୍ଣ୍ଣ, ଆମ ବନାନ ସୁଶୃଙ୍ଖଳିତ, ଆମ ଯୁକ୍ତାକ୍ଷର କୋଣାର୍କ କାରୁକାର୍ଯ୍ୟ ପରି ଜଟିଳ ଦିଶୁଥିଲେ ସୁଦ୍ଧା ସୁନ୍ଦର । ସେସବୁ ପରିହାର କରିବାର କୌଣସି କାରଣ ନାହିଁ । ବରଂ ବର୍ତ୍ତମାନ କମ୍ପ୍ୟୁଟର ଯୁଗରେ ତା'ର ସମସ୍ତ ଗୌରବ ସୁଚାରୁ ରୂପେ ପ୍ରତିଷ୍ଠିତ କରିବାର ସମୟ ଆସିଛି । ଆଜି ଏତିକି । ଆର ଥରକୁ ଶବ୍ଦ ପ୍ରମାଦର ଅନ୍ୟ ଦିଗସବୁ ବିଚାର କରିବା ।



# ଶବ୍ଦ ପ୍ରୟୋଗ – ୧

ଏହି ସ୍ତମ୍ଭରେ ''ଶବ୍ଦ ପ୍ରମାଦ'' ଆଲୋଚନା ଅନେକଙ୍କ ଦୃଷ୍ଟି ଆକର୍ଷଣ କରି ପାରିଥିବା ଏକ ଶୁଭଲକ୍ଷଣ । ତଦ୍ଵାରା କିଛି ପରିମାଣରେ ଶବ୍ଦ-ସଚେତନତା ମଧ୍ୟ ସୃଷ୍ଟି ହୋଇପାରିଛି ବୋଲି ମଧ୍ୟ ଆଶା କରାଯାଇପାରେ । କିନ୍ତୁ ଏ ସଚେତନତା ଓଡ଼ିଆ ଭାଷୀଙ୍କ ସ୍ଵାଭୀମାନ-ଭିତ୍ତିକ ନ ହେବା ଯାଏ ଭାଷାର ଦୁର୍ଗତି ଦୂର ହୋଇପାରିବ ନାହିଁ । ଅଭିଧାନ ଲେଖା ହେବନାହିଁ । ଆଧୁନିକ ବ୍ୟାକରଣ ରଚିତ ହେବନାହିଁ । ଯେମିତି ଅନାତ୍ମୀୟତା, ଅବହେଳା ଓ ଅବଜ୍ଞା ଭିତରେ ଓଡ଼ିଆ ଭାଷା ତା'ର ଚରିତ୍ର ଓ ଶୁଦ୍ଧତା ହରାଇ ଚାଲିଥିଲା ସେହିପରି ଚାଲିଥିବ । ତେବେ ଭାରତବର୍ଷରେ ତଥା ପୃଥିବୀରେ ନିଜର ସ୍ଵତନ୍ତ୍ର ପରିଚୟର ମାନ୍ୟତା ପାଇଁ ଓଡ଼ିଆଙ୍କୁ ସର୍ବପ୍ରଥମେ ମାତୃଭାଷାକୁ ହିଁ ନିଜ ବ୍ୟକ୍ତିତ୍ଵର ପ୍ରଧାନ ଅଙ୍ଗ ରୂପେ ମର୍ଯ୍ୟାଦା ଦେବାକୁ ପଡ଼ିବ । ବହୁବିଧ ଅଶୁଦ୍ଧି ଓ ଯଥେଚ୍ଛାଚାର ଭିତରେ ଭାଷାର ଅବକ୍ଷୟକୁ ପ୍ରଶ୍ରୟ ଦେବାକୁ ହେବନାହିଁ। ଏହିଭଳି ଏକ ପ୍ରଗାଢ଼ ଅନୁରକ୍ତି ଓ ବିଶ୍ଵାସ ନେଇ ଭାଷାର ଆଉ ଗୋଟିଏ ଦିଗ ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ମନସ୍ଥ କରିଛି ।

ଶବ୍ଦ-ପ୍ରମାଦ କେବଳ ବର୍ଣ୍ଣଶୁଦ୍ଧିରେ ସୀମିତ ନୁହେଁ । ହ୍ରସ୍ଵ ଦୀର୍ଘ ଭେଦ ଏବଂ ଯୁକ୍ତାକ୍ଷର ଲେଖାର ବ୍ୟତିକ୍ରମରେ ଯାହା ସବୁ ଶବ୍ଦପ୍ରମାଦ ଆଖିରେ ପଡୁଛି ତାହାର ସଂଶୋଧନ କରି ଚାଲିଲେ ସରିବ ନାହିଁ । ଅନେକ ସମୟରେ ଶବ୍ଦର ଅର୍ଥାନୁସାରୀ ପ୍ରୟୋଗ କରାନଗଲେ ମଧ୍ୟ ଶବ୍ଦ ପ୍ରମାଦ ସୃଷ୍ଟି ହୁଏ । 'ଦୁଃଖ ସ୍ଥାନରେ 'ଶୋକ' ପ୍ରୟୋଗ କଲେ ବର୍ଣ୍ଣାଶୁଦ୍ଧି ରହୁନାହିଁ, କିନ୍ତୁ ଅନୁପଯୁକ୍ତ ଶବ୍ଦ ଦ୍ଵାରା ଠିକ୍ ଅର୍ଥ ପ୍ରକାଶ ପାଇପାରୁ ନାହିଁ । ଗୋଟିଏ ବର୍ଗର ଅନ୍ତର୍ଭୁକ୍ତ ହେଲେ ସୁଦ୍ଧା ପ୍ରତ୍ୟେକ ଶବ୍ଦର ଅର୍ଥବଳୟ ସ୍ଵତନ୍ତ୍ର । ଯେପରି ଦେବତାଙ୍କ ପାଇଁ ଅମରକୋଷରେ ନିମ୍ନଲିଖିତ ଶବ୍ଦ ଦିଆଯାଇଛି–

ଅମର, ନିର୍ଜର, ଦେବ, ତ୍ରିଦଶ, ବିବୁଧ, ସୁର; କିନ୍ତୁ ପ୍ରତ୍ୟେକ ଶବ୍ଦର ଅଲଗା ଅର୍ଥ– ଅମର କହିଲେ ଯାହା ବୁଝାଏ ନିର୍ଜର କହିଲେ ତାହା ବୁଝାଏ ନାହିଁ। ଏଣୁ ପ୍ରସଙ୍ଗ ଅନୁସାରେ ଅର୍ଥ ବୁଝି ପ୍ରୟୋଗ ନ କଲେ ଶବ୍ଦ ପ୍ରମାଦ ହୋଇଯିବ।

କେତୋଟି ଉଦାହରଣ ନିଆଯାଉ।

୧. ଦୁଃଖ, କଷ୍ଟ, ଶୋକ, କ୍ଲେଶ, କଷଣ, ଯାତନା, ଯନ୍ତ୍ରଣା, ବେଦନା, ପୀଡ଼ା, ସନ୍ତାପ, ପରିତାପ ।

ଦୁଃଖ ଏକ ବ୍ୟାପକ, ମାନସିକ ଅବସ୍ଥା । ଏହା ଜୀବନର ଏକ ଚିରନ୍ତନ ସତ୍ୟ । ସେଥିପାଇଁ ବୁଦ୍ଧଙ୍କ ବାଣୀ ''ଦୁଃଖମ ସତ୍ୟମ୍'' ଚାହୁଁ ନ ଥିବା ବସ୍ତୁ ପ୍ରାପ୍ତି ଦୁଃଖ, ଚାହୁଁଥିବା ବସ୍ତୁର ଅପ୍ରାପ୍ତି ଦୁଃଖ । ଦୁଃଖ ପାଇଁ ଶରୀରର ରୋଗ ଏକ କାରଣ, ସେହିପରି ରୋଗଜନିତ କଷ୍ଟ ଯନ୍ତଣା ମଧ୍ୟ ଦୁଃଖର କାରଣ । ନିଜର ବା ଅନ୍ୟର ପୀଡ଼ା ହେତୁ ଶୋକ କରାଯାଏ । କିନ୍ତୁ ଶୋକ ଦୁଃଖ ନୁହେଁ, ତାହା ଦୁଃଖର ପରିପ୍ରକାଶ ।

ଯାତନା ଉଭୟ ଶାରୀରିକ ଓ ମାନସିକ । କିନ୍ତୁ ଯନ୍ତଣା କେବଳ ଶରୀରାଶ୍ରୟୀ । ବେଦନା, ଗଭୀର ପ୍ରାଣକେନ୍ଦ୍ରର ଅନୁଭବ । ସନ୍ତାପ, ମନପ୍ରାଣର ଜ୍ୱାଳା । କଷଣର କାବ୍ୟିକ ପ୍ରୟୋଗ ପ୍ରସିଦ୍ଧ ।

 କେ ସହୁ ଦେବକୀ କଷଣ ।
ଜାଣିଲେ ପ୍ରଭୁ ନାରାୟଣ ।

କିମ୍ୱା

କର୍ମ କଷଣ ଦେହ ସହେ ।
ଅରଣ୍ୟେ ଅଜଗର ପ୍ରାୟେ ।

ପ୍ରତ୍ୟେକ ଶବ୍ଦର ଅର୍ଥକୁ ସମ୍ମାନ ଦେଇ ତାକୁ ଯଥା ସ୍ଥାନରେ ପ୍ରୟୋଗ କଲେ ବକ୍ତବ୍ୟ ଶାଣିତ ଏବଂ ସୂକ୍ଷ୍ମ ହୁଏ ।

ଅନ୍ୟାନ୍ୟ ଉଦାହରଣ ନିଆଯାଉ–

୨. ଆଶା, ଭରସା, ବିଶ୍ୱାସ, ଆସ୍ଥା

୩. ବିସ୍ମିତ, ଚକିତ, ଅଭିଭୂତ, ଆଶ୍ଚର୍ଯ୍ୟ, ସ୍ତମ୍ଭୀଭୂତ, ଦ୍ରବୀଭୂତ, ବିଭୋର, ବିହ୍ୱଳ, ଆଚମ୍ବିତ ।

ବିଶ୍ୱାସର ଲକ୍ଷଣ ଦୃଢ଼ତା, ସ୍ଥିରତା । ବିଶ୍ୱାସରେ ବିକଳ୍ପ ସମ୍ଭାବନା ନାହିଁ । କିନ୍ତୁ ଆଶା ଦୋଦୁଲ୍ୟମାନ । ଏହା ହୋଇପାରେ ନହୋଇ ବି ପାରେ । ବର୍ଷା ବତାସିରେ ଛାତ ଉଡ଼ିଯିବାର ସମ୍ଭାବନା ଢେର୍ ତଥାପି ଆଶା ଅଛି ଯେ ଛାତ ସମ୍ଭାଳିଯିବ ସକାଳ ପାହିବା ଯାଏ । ଭରସା ଅପର ସାପେକ୍ଷ୍ୟ । ଆଉ ଜଣକ ଉପରେ ଭରସା କରାଯାଏ । ତେଣିକି ସେ ତା' ମର୍ଜି ଉପରେ ଯାହା କରିବ ବା ନକରିବ । କଲେ ବିଶ୍ୱାସ ଆସିଯିବ, ନ କଲେ ଆସ୍ଥା ତୁଟିଯିବ।

ଆନନ୍ଦରେ ବିଭୋର, ଭୟରେ ବା ଦୁଃଖରେ ବିହ୍ୱଳ ହେବା ପ୍ରୟୋଗସିଦ୍ଧ। ସ୍ତମ୍ଭୀଭୂତ ହେଲେ ସ୍ଥାଣୁତ୍ୱ ସୂଚିତ ହୁଏ । ବାକ୍‌ଶକ୍ତି, ଚଳତ୍ ଶକ୍ତି ସବୁ ଲୋପ ପାଇଯାଏ । କିନ୍ତୁ ଦ୍ରବୀଭୂତ ହେଲେ ବିଗଳିତ ହେବା, ତରଳିଯିବାର ସୂଚନା ମିଳେ।

କରୁଣ ବିଳାପରେ ଜଣେ ଦ୍ରବୀଭୂତ ହୋଇପାରେ । ଅବଶ୍ୟ ଦ୍ରବୀଭୂତ ହେବାର ପୂର୍ବାବସ୍ଥାରେ କଠୋରତା, ନିଷ୍ଠୁରତା ରହିବା ଅଧିକ ସମୀଚୀନ । ପାଷାଣ ହେଲେ ମଧ୍ୟ ଦ୍ରବୀଭୂତ ହୋଇଯିବ ।

ବିସ୍ମିତ ହେବା ଏବଂ ଚକିତ ହେବା ଏକା କଥା ନୁହେଁ । ବିସ୍ମିତ ହେବାରେ ଅପ୍ରତ୍ୟାଶିତର ଆବିର୍ଭାବ ରହିଛି ସେଥିପାଇଁ କିଛି ମାତ୍ରାରେ ନିରାଶା ଓ ବିଡ଼ମ୍ବନାର ସ୍ପର୍ଶ ମଧ୍ୟ ଅଛି । କିନ୍ତୁ ଚକିତ ହେବାରେ ପ୍ରତ୍ୟାଶିତ କିଛି ନାହିଁ । ଉଦାହରଣ ସ୍ୱରୂପ କାହାକୁ ଷ୍ଟେସନରେ ଟ୍ରେନ୍‌ରେ ଛାଡ଼ି ଘରକୁ ଆସିବାର କିଛି ସମୟ ପରେ ସେ ଆସି ଠିଆ ହୋଇଗଲେ ବିସ୍ମିତ ହେବା କଥା । ହଠାତ୍ ଅସମ୍ଭବ ସମ୍ଭବିଗଲେ ଚକିତ ଏବଂ ଦୃଶ୍ୟର ବିମୂଢ଼କାରିଣୀ ଶକ୍ତି ଅଧିକ ଥିଲେ ଆଚମ୍ବିତ ହେବା ସ୍ୱାଭାବିକ । ଅଭିଭୂତ ହେବା ଭାବ ଭୂମିର ବ୍ୟାପାର । ଜଣେ ଅତିଶୟ ଆନନ୍ଦରେ କିମ୍ବା ଅତିଶୟ ଦୁଃଖରେ ଅଭିଭୂତ ହୋଇପାରେ ।

ଆଉ ଏକ ପର୍ଯ୍ୟାୟର ଶବ୍ଦାବଳିକୁ ଲକ୍ଷ୍ୟ କରନ୍ତୁ –

୪. ସନ୍ଦେହ, ସଂଶୟ, ଦ୍ୱନ୍ଦ୍ୱ, ଦ୍ୱିଧା ଚାରିଟିଯାକ ଶବ୍ଦ ନିଷ୍କ୍ରିୟତା ସୂଚକ, କାରଣ କ୍ରିୟା ପାଇଁ ଯେଉଁ ସଂକଳ୍ପ ଓ ଦୃଢ଼ତାର ପ୍ରୟୋଜନ, ତାହା ଏ ଶବ୍ଦମାନଙ୍କରେ ନାହିଁ । ତଥାପି ଏଗୁଡ଼ିକ ଏକାର୍ଥବାଚୀ ନୁହନ୍ତି । ଏକାଧିକ ବିକଳ୍ପରୁ ଗୋଟିକୁ ସନ୍ଦେହ କରାଯାଏ । କୌଣସି ବିକଳ୍ପକୁ ବାଦ୍ ଦେଇ ନ ପାରିଲେ ସଂଶୟ । ଉଭୟ ଗ୍ରହଣୀୟ ଅଥଚ ଗୋଟିକୁ ବାଛି ନ ପାରିଲେ ଦ୍ୱନ୍ଦ୍ୱ । ଦ୍ୱିଧା ସାଧାରଣତଃ ଦୁଇରୁ ଅଧିକ ବିକଳ୍ପରେ ପ୍ରୟୋଗ ହୁଏନାହିଁ ।

ଏହା କେବଳ ଶବ୍ଦର ଅର୍ଥ ଗରିମା, ବିଭବ ଓ ସ୍ୱାତନ୍ତ୍ର୍ୟର ସୂଚନା ଦେବାକୁ ପ୍ରୟାସ । ଶବ୍ଦରୂପୀ ବାକ୍ ଅର୍ଥ ଦ୍ୱାରା ମହିମାନ୍ୱିତ ହେଲେ ବାକ୍‌ଦେବୀ ରୂପେ ପ୍ରତିଭାତ ହୁଅନ୍ତି । ଏହି ରୂପରେ ସେ ବନ୍ଦନୀୟା । ଏଣୁ ଶବ୍ଦ ପ୍ରୟୋଗରେ ଅର୍ଥ ବିଚ୍ୟୁତି ହେଲେ ସୂକ୍ଷ୍ମ ଜଗତରେ ତାହା ଏକ ଅପରାଧ ।



# ଶବ୍ଦ ପ୍ରୟୋଗ – ୨

ଶବ୍ଦ ଅର୍ଥ-ସମନ୍ୱିତ ନିଶ୍ଚୟ କିନ୍ତୁ ଅର୍ଥ ସବୁବେଳେ ଅବିଚଳିତ ଓ ସୀମିତ ନ ହୋଇପାରେ । ବେଳେବେଳେ ଗୋଟିଏ ଶବ୍ଦର ବ୍ୟାପକ ପ୍ରୟୋଗ ହୋଇଥାଏ ଏବଂ ପ୍ରତ୍ୟେକ ପ୍ରୟୋଗର ଅର୍ଥ ସୂଚନା ସ୍ୱତନ୍ତ୍ର । ଉଦାହରଣ– ତାରା ଫୁଟେ, ଭାତ ଫୁଟେ, ଖଇ ଫୁଟେ, ଗଣ୍ଠି ଫୁଟେ, ଫୋଟକା ଫୁଟେ, ବାଣ ଫୁଟେ, ବୋମା ଫୁଟେ । ଶେଷରେ କଢ଼ି ଫୁଟେ କି ଫୁଲ ଫୁଟେ ତାହା ବିଚାର ସାପେକ୍ଷ । ଏ ସମସ୍ତ ପ୍ରୟୋଗରେ ଫୁଟିବା କ୍ରିୟାଟି କେତେବେଳେ ବିମୋଚନ, ଉନ୍ମୀଳନ ତ କେତେବେଳେ ବିସ୍ଫୋରଣର ସୂଚନା ଦିଏ । ସେହିପରି ଜହ୍ନ ହସେ, ଜ୍ୟୋତ୍ସ୍ନା ହସେ, ଘର ହସେ, ଶତ୍ରୁ ହସେ, ଭାଗ୍ୟ ହସେ, ଘର ହସେ, ଶତ୍ରୁ ହସେ, ଭାଗ୍ୟ ହସେ, କିନ୍ତୁ ଭିନ୍ନ ଭିନ୍ନ ଅର୍ଥରେ । ଯେମିତି ଗୋଡ଼ ଖସିବା ଏବଂ ଫଳ ଖସିବା ଏକାର୍ଥବାଚୀ ନୁହେଁ ସେପରି ବେକ ମୋଡ଼ିବା, ମୁହଁ ମୋଡ଼ିବା ଏକା କଥା ନୁହେଁ; ଗାଳି ଖାଇବା, ଖୁରି ଖାଇବା, ଖାପ ଖାଇବା, ଘୁଣ ଖାଇବା, ତୁଣ ଖାଇବା ଏକା କଥା ନୁହେଁ । ଗୋଟିଏ ଶବ୍ଦ କେତେବେଳେ କାହାସାଙ୍ଗରେ ମିଶି, କ'ଣ ଅର୍ଥ ବହନ କରେ ତାହା ପ୍ରୟୋଗରୁ ହିଁ ଜଣାଯାଏ । ଏଠାରେ ଶବ୍ଦ କେବଳ ନିହିତ ଅର୍ଥ ପ୍ରକାଶ ନ କରି ସଞ୍ଚାରଣ ଅର୍ଥ ବହନ କରିଥାଏ । ଶବ୍ଦ ଏକ କିନ୍ତୁ ଅର୍ଥ ଅନେକ ।

କିନ୍ତୁ ସାଧାରଣତଃ ଏହାର ବିପରୀତ ଦୃଷ୍ଟାନ୍ତ ହିଁ ବେଶି ଦେଖିବାକୁ ମିଳେ । ଯେମିତି ମୁଖ, ବଦନ, ଲପନ, ଆନନ ମୁହଁ ପାଇଁ । ମୁହଁରେ ଆମେ କଥା କହୁ ଏବଂ ଖାଉ । ମୁଖ ଏକ ବିବର । ମୁଖମଣ୍ଡଳରେ ଏହି ବିବରର ପ୍ରାଧାନ୍ୟ ସ୍ୱୀକାର କରି ସମଗ୍ର ମଣ୍ଡଳକୁ ମଧ୍ୟ ମୁଖ କୁହାଯାଏ । ଆମେ ସାଧାରଣତଃ ମୁହଁ କହିଲେ ମଣ୍ଡଳକୁ ବୁଝିଥାଉ । ପାଟି କହିଲେ ବିବର । ବଦନ ବେଳେବେଳେ ପରିହାସ କିମ୍ୱା ବ୍ୟଙ୍ଗରେ ପ୍ରୟୋଗ ହୁଏ ନଚେତ୍ ବଦନ ଲପନ ଆନନ ଆଦି ଆଉ ପ୍ରଚଳିତ ହେଉନାହିଁ । ସଂସ୍କୃତ ଭାଷାରେ ଶିବଙ୍କର ବା ବିଷ୍ଣୁଙ୍କର ସହସ୍ରନାମ ସମ୍ଭବ । ସେହି ଯୁକ୍ତିରେ ଯେକୌଣସି ଗୋଟିଏ ବସ୍ତୁକୁ ଏକାଧିକ ଶବ୍ଦରେ ନାମିତ କରାଯାଇପାରେ । କିନ୍ତୁ ପ୍ରତ୍ୟେକ ନାମର ତାତ୍ପର୍ଯ୍ୟ ଅଲଗା । ଓଡ଼ିଆରେ ଏତେ ସମ୍ଭାବନା ହୁଏତ ନ

ଥାଇପାରେ, କିନ୍ତୁ ସ୍ଥଳ ବିଶେଷରେ ଏକାଧିକ ଶବ୍ଦ ଗୋଟିଏ ବିଷୟ ପାଇଁ ବ୍ୟବହାର ହୋଇଥାଏ । ସେ କ୍ଷେତ୍ରରେ ଅର୍ଥ ଅନୁସାରେ ଶବ୍ଦ ବଛାଯିବା ସଚେତନ ପ୍ରୟୋଗ ।

ବନ୍ଧୁ କହିବି କି ସଖା କହିବି କି ମିତ୍ର କହିବି, ତାହା ସମ୍ପର୍କର ବିଶେଷତ୍ୱ ଉପରେ ନିର୍ଭର କରିବା ଉଚିତ । ଗୁରୁ, ଶିକ୍ଷକ, ଉପଦେଷ୍ଟା, ଉସ୍ତାଦ୍ ସେହିପରି ସମ୍ପର୍କ ସାପେକ୍ଷ । ସ୍ତ୍ରୀ, ପତ୍ନୀ, ଭାର୍ଯ୍ୟା, ଧର୍ମପତ୍ନୀ, ସହଧର୍ମିଣୀ କିମ୍ବା ମାଇପ, ଭାରିଯା ଜଣେ ବ୍ୟକ୍ତି ଏବଂ ଗୋଟିଏ ସମ୍ପର୍କକୁ ବୁଝାଉଥିଲେ ମଧ୍ୟ ନିର୍ବିଚାର ପ୍ରୟୋଗ କରାଯାଇପାରିବ ନାହିଁ । ଶବ୍ଦର ଅର୍ଥ କେଉଁଠି ଅଭିଜାତ ମର୍ଯ୍ୟାଦାପୂର୍ଣ୍ଣ ତ' କେଉଁଠି ଇତର ଅବଜ୍ଞାସୂଚକ । ଅଯୋଧ୍ୟାର ରାଜା ରାମଚନ୍ଦ୍ର ତାଙ୍କ ମାଇପ ସୀତା ଦେବୀଙ୍କୁ ବନବାସ ଦଣ୍ଡ ଦେଲେ ଲେଖିବା ଶବ୍ଦର ଅପପ୍ରୟୋଗ । କିନ୍ତୁ ଅନ୍ୟତ୍ର ରାମ ମାୟାମୃଗ ପଛରେ ଗୋଡ଼ାଇବାକୁ ଲକ୍ଷ୍ୟ କରି ଜନୈକ କବି ଲେଖିଛନ୍ତି, ''ରାମ, ହୋଇଲେ ମାଇପ ବୋଲା''-ଏବଂ ଏଠାରେ ଶବ୍ଦ ପ୍ରୟୋଗରେ କୌଣସି ଅସୁବିଧା ନାହିଁ ।

ଏଣୁ ଶବ୍ଦ ପ୍ରୟୋଗ ବେଳେ ତା'ର ପାରିପାର୍ଶ୍ୱିକ ଶବ୍ଦ ପ୍ରତି ଦୃଷ୍ଟି ଦେବାକୁ ପଡ଼ିଥାଏ । କେଉଁ ଶବ୍ଦ ସହିତ ତା'ର ମେଳ ଅଛି ବା ନାହିଁ ତାହା ଚଳଣି ରୁଚି ଦୃଷ୍ଟିରୁ ବିଚାର କରିବାକୁ ପଡ଼ିଥାଏ । ମୋଟାମୋଟି ଭାବରେ ଗୁରୁ-ଲଘୁ ଏକତ୍ର (ଏକାଠି ନୁହେଁ) ହୋଇଗଲେ ଗୁରୁଚାଣ୍ଡାଳ ଦୋଷ ହେଲା ବୋଲି କୁହାଯାଏ । ସଂସ୍କୃତରୁ ଆସିଥିବା ତଦ୍‌ଭବ ଶବ୍ଦ ସହିତ ଦେଶଜ କିମ୍ବା ଯାବନିକ ଶବ୍ଦର ମିଳନରେ ଏହି ଦୋଷ ଦେଖାଦିଏ ବୋଲି ନିୟମ କହୁଛି । କିନ୍ତୁ କବିର ପ୍ରଚଣ୍ଡ ପ୍ରତିଭା କିପରି କୌଣସି ବାରଣ ନ ମାନି ଏ ଦୋଷକୁ ଅନବଦ୍ୟ ଗୁଣର ମାନ୍ୟତା ଦେଇପାରେ ତା'ର ଉଦାହରଣ କବିସୂର୍ଯ୍ୟଙ୍କ ରଚନା ।

ତଥାପି ବିଶେଷଣ ପ୍ରୟୋଗ କଲାବେଳେ ଅର୍ଥ ସଚେତନ ନ ହେଲେ ଶବ୍ଦର ଅପପ୍ରୟୋଗ ହୋଇଯିବାର ଆଶଙ୍କା ରହିଛି । ଘୋର ଖରା ନ ହୋଇ ଘୋର ବର୍ଷା, ପ୍ରଚଣ୍ଡ ଶୀତ ନ ହୋଇ ପ୍ରଚଣ୍ଡ ଖରା ଏବଂ ସେହିଭଳି ପ୍ରବଳ ବାତ୍ୟା, ବନ୍ୟା, ତୋଫାନ ହେବା ଶବ୍ଦର ସ୍ୱୀକୃତ ପ୍ରୟୋଗ । ପ୍ରଗାଢ଼ ସ୍ନେହ, ଗଭୀର ଦୁଃଖ, ଗମ୍ଭୀର ଚିନ୍ତା ଆଦି ପ୍ରୟୋଗରେ ବିଶେଷଣ ଅଦଳବଦଳ କରିଦେଲେ ଅର୍ଥ ବିଭ୍ରାଟ ଦେଖାଦିଏ । କିନ୍ତୁ ବେଳେବେଳେ ଭାବର ଅସାମାନ୍ୟ ପ୍ରକାଶ ହେଲେ ନିୟମ ଉଲ୍ଲଂଘନ ହୋଇଯାଏ । ଯେମିତି, 'ମୁଁ ତାକୁ ଭୀଷଣ ପ୍ରେମ କରେ ।' ଭୀଷଣ ବା ଭୟଙ୍କର ପ୍ରେମର ବିପରୀତ

କୋଟୀର ଭାବ ଭୟର ଦ୍ୟୋତକ । କିନ୍ତୁ ପ୍ରେମର ବିବଶତା ହିତାହିତ ଜ୍ଞାନକୁ ମଧ୍ୟ ଲୋପ କରିଦିଏ, ଶବ୍ଦଜ୍ଞାନ ବା କି ଛାର ।''

ଭାବ ପ୍ରକାଶ ହିଁ ମୌଳିକ ଦାୟିତ୍ୱ । ଶବ୍ଦ ମାଧ୍ୟମ ମାତ୍ର । ଏଣୁ ଶବ୍ଦ ପ୍ରୟୋଗ ଏକ ଅନାବଶ୍ୟକ ପ୍ରତିବନ୍ଧକ ଭାବିବା ସ୍ୱାଭାବିକ ହେଲେ ମଧ୍ୟ ଯୁକ୍ତିସଙ୍ଗତ ନୁହେଁ । କାରଣ ଉପଯୁକ୍ତ ଶବ୍ଦର ଅଭାବରେ ଭାବ ପ୍ରକାଶ ମଧ୍ୟ ଅସମ୍ପୂର୍ଣ୍ଣ, ବିକୃତ ଏବଂ ଅବାଞ୍ଛିତ ରୂପ ନେଇଯିବ । ତା' ବୋଧହୁଏ କୌଣସି ଲେଖକ ବା ବକ୍ତାର ଉଦ୍ଦେଶ୍ୟ ନୁହେଁ ।



# ଆତ୍ମକଥନ

ଲଳିତ ନିବନ୍ଧକାର, ଗାଳ୍ପିକ ଓ ଔପନ୍ୟାସିକ ଭାବେ ଚନ୍ଦ୍ରଶେଖର ରଥ ଓଡ଼ିଆ ସାହିତ୍ୟରେ ସୁପରିଚିତ ଓ ଲବ୍ଧପ୍ରତିଷ୍ଠ । ଯନ୍ତ୍ରାରୂଢ଼, ଅସୂର୍ଯ୍ୟ ଉପନିବେଶ ଏବଂ ନବଜାତକ ଉପନ୍ୟାସର ସେ ସଫଳ ସ୍ରଷ୍ଟା । ଅନେକ ବନ୍ୟାପରେ, ଅଶ୍ୱାରୋହୀର ଗଳ୍ପ, ସମ୍ରାଟ ଓ ଅନ୍ୟମାନେ, ଅନ୍ୟ ଏକ ସକାଳ, ସବୁଯାକ ସ୍ୱପ୍ନ, ବାଘସବାର, ଏତେ ପାଖରେ ସମୁଦ୍ର, ବିକ୍ରିପାଇଁ ଫୁଲମାଳ, ସହଯାତ୍ରୀକ, ସ୍ୱପ୍ନ ବାହକ, ଅନ୍ତିମା, ସବୁଠାରୁ ଦୀର୍ଘରାତି ଓ କ୍ରମଶଃ ଗଭୀର ନଈର ସେ ସଫଳ କଥାକାର । ଯନ୍ତ୍ରାରୂଢ଼ଠାରୁ କ୍ରମଶଃ ଗଭୀର ନଈ ଯାଏ ଏକ ସୂକ୍ଷ୍ମମାନବୀୟ ଚେତନା, ବୌଦ୍ଧିକ ଦାର୍ଶନିକ ତଥା ଆଧ୍ୟାତ୍ମିକ ଚେତନାର ପୃଷ୍ଠଭୂମିରେ ତାଙ୍କର ସୃଷ୍ଟି-ସମ୍ଭାର ସମୃଦ୍ଧ ।

ତାଙ୍କର ଷଷ୍ଠିପୂର୍ତ୍ତି ଅବସରରେ ଲିଖିତ 'ଆତ୍ମକଥନ'କୁ ଏଠାରେ ପ୍ରିୟ ପାଠକମାନଙ୍କ ପାଇଁ ଉପସ୍ଥାପନ କରିଛୁ ।

ଜଣେ ଜୀବିତ ବ୍ୟକ୍ତି ବିଷୟରେ ଏତେ ଲୋକ ଏତେ କଥା କହିବାର ପରମ୍ପରା ଆମ ସାହିତ୍ୟରେ ପ୍ରାୟ ନାହିଁ ।

ଏଣୁ ମନେ ହେଉଛି ସତେବା ମୁଁ ମୋର ଶ୍ରାଦ୍ଧ ସଭାରେ ହିଁ ଚର୍ଚ୍ଚିତ ହେଲାବେଳେ ସେଇଠି ଦୈବାତ୍ ଆବିର୍ଭୂତ ହୋଇଯାଇଛି ।

ଚର୍ଚ୍ଚା କରୁଛନ୍ତି ମୋର ସାହିତ୍ୟିକ ବନ୍ଧୁ, ଲେଖକ, ପାଠକ, ସମାଲୋଚକ ଶୁଭେଚ୍ଛୁମାନେ ।

ଏସବୁ କଥା ହୁଏତ ଖୁବ୍ ସ୍ୱାଭାବିକ ଭାବରେ ଦିନେ ସେମାନେ କହିଥାନ୍ତେ, ଏକ ପ୍ରକାର ବାଧ୍ୟ ହୋଇଥାନ୍ତେ କହିବାକୁ ।

କେହି ଜଣେ ସେଥିରୁ ମୋର ପ୍ରତିକୃତିରେ ମାଲ୍ୟାର୍ପଣ କରିଥାନ୍ତେ ।

ଏମିତି ରୋମନ୍ଥନ ହୋଇଥାନ୍ତା । ଯେ ଯାହା ଦୃଷ୍ଟିରେ

ଯେମିତି ମୋତେ ଦେଖିଛନ୍ତି ତା' କହିଥାନ୍ତେ ।

ପ୍ରତ୍ୟେକେ ଅନନ୍ୟ, ଏକାନ୍ତ, ବ୍ୟକ୍ତିଗତ ଷାଠିଏ ବର୍ଷ ପୂରିଯିବାକୁ ଆଳ କରି ଆଗତୁରା ସେ ସବୁକଥା କୁହା ହୋଇଗଲା । ସେମାନଙ୍କ ପାଇଁ ବିଶେଷ କିଛି ଫରକ ପଡ଼ିଲା ନାହିଁ ହୁଏତ । କିନ୍ତୁ ମୋ ପାଇଁ ଏହା ଏକ ଅସାଧାରଣ ଅନୁଭବ ।

ମୁଁ ଏ ଯାଏଁ ଜାଣିନଥିଲି ଯେ ମୁଁ ଏମିତି ବିଭିନ୍ନ ଦର୍ପଣରେ ବିମ୍ବିତ ହୋଇଛି; ଏମିତି ସେମାନେ ମୋତେ ଦେଖିଛନ୍ତି ଏବଂ ଜାଣିଛନ୍ତି ।

ଯେଉଁମାନେ ଲେଖିଛନ୍ତି ତାଙ୍କୁ ମୁଁ ନୂଆକରି ଦେଖିଲି ।

ଯେଉଁମାନେ ଲେଖିନାହାନ୍ତି, ଲେଖିବାକୁ ଚାହିଁନାହାନ୍ତି, ଲେଖି ପାରିନାହାନ୍ତି ସେମାନଙ୍କୁ ମଧ୍ୟ ଦେଖିଲି ।

ଶବ୍ଦ ଅପେକ୍ଷା ନୀରବତା ହିଁ ମୋତେ ବେଶୀ ମାତ୍ରାରେ ବିସ୍ମିତ କଲା । ବାସ୍, ସେମାନେ ତା'ହେଲେ ଏଇଆ । ମୁଁ ବି ସେମାନଙ୍କ ପାଇଁ ଏଇଆ । ଠିକ୍ ଅଛି ଏହା ହିଁ ଯଥାବତ୍ ଭବିଷ୍ୟତ୍ ପାଇଁ ଗଚ୍ଛିତ ରହୁ ।

କୌଣସି ସାଧାରଣ ଚଳିତ 'ବିଷୟବସ୍ତୁ' ପରି ମୁଁ ମଧ୍ୟ ନୀରବ ରହିଯାଇ ପାରିଥାନ୍ତି । ଭରା ସଭାରେ ମୋର ପାଟି ଫିଟେଇବାର କ'ଣ ପ୍ରୟୋଜନ ଥିଲା ? ସେଥିପାଇଁ ତ କେହି ମୋତେ ଉତ୍ତେଜିତ କରିନଥିଲେ ।

ତେବେ କାଠ କଣ୍ଢେଇଟିକୁ ସୁଦ୍ଧା କହିବାର ସୁଯୋଗ ଦେଲେ ସେ ଯାହା କହିବ ତାକୁ ଆଉ କେହି କହିବା କିମ୍ବା ଜାଣିବା ସମ୍ଭବ ନୁହେଁ । ସେ ସୁଯୋଗ ମୋତେ ଏଇଠି ମିଳିଛି । ସତ୍ୟପାଠ କରି ଜମାନବନ୍ଦି ଦେଉଛି, ସୁଧୀବୃନ୍ଦ, ଶୁଣିବାକୁ ଅବଧାନ ହୁଅନ୍ତୁ । ଆପଣମାନେ ଯାହା କହିଛନ୍ତି ମୁଁ ସବୁ ଶୁଣିଛି । ମୋତେ ବେଳେ ବେଳେ ମାଡ଼ିପଡ଼ିଲା ପରି ଲାଗିଛି । ଆପଣମାନେ କ'ଣ ସତରେ ମୋ'ଠି ଏତେ ଦେଖିଲା ଭଳି ଉପାଦାନ ପାଇଛନ୍ତି ? ନାଇଁ ମଁ, ଆପଣମାନେ ସମସ୍ତେ ଭାରି ଭଲ ମଣିଷ, ଉଦାର ମଣିଷ । ସେଥିପାଇଁ ଆପଣଙ୍କ କଲମରୁ ଯାହା ଭଲପଣିଆ ବାହାରିଛି, ସେଇଟା ଆପଣଙ୍କର, ନହେଲେ ମୁଁ ଟା ଏମିତି କିଏ କି ଆପଣମାନଙ୍କ ଗହଣରେ !

ଶୁଣନ୍ତୁ ତା'ହେଲେ ମୋ ନିଜ କଥା ।

ପ୍ରଥମେ ମୋର ଇତିହାସ ଭୂଗୋଳ ସ୍ଥିର ହୋଇଯାଉ ।

ମୁଁ ବଲାଙ୍ଗିରରେ ଜନ୍ମ ହୋଇଥିବା ଘଟଣାକୁ ନେଇ ଦୁଇ ପ୍ରକାର ପ୍ରତିକ୍ରିୟା ଲକ୍ଷ୍ୟ କରିଛି । କେହି କେହି ତ ଏବେ ସୁଦ୍ଧା ବିଶ୍ୱାସ କରୁନାହାନ୍ତି । ବେଳ ପାଇଲେ ପଚାରି ଦେଉଛନ୍ତି, 'ଆପଣ କ'ଣ ସତରେ ସେଇଠି ଜନ୍ମ ହେଇଥିଲେ ? ଆପଣଙ୍କ ଓଡ଼ିଆ ପଢ଼ିଲେ ତ' ଆଦୌ ଜଣାପଡୁନାହିଁ !'

ଆଉ କେତେ ଅଛନ୍ତି, ଯେଉଁମାନେ କିଛି କହନ୍ତି ନାହିଁ ମୋ ସାମ୍ନାରେ । କିନ୍ତୁ ତାଙ୍କ ଭିତରେ କଥା ପଡ଼ିଲେ କାନରୁ ଦି'କାନ ନ ଶୁଭିଲା ଭଳି ଫିସଫିସ୍ ହୁଅନ୍ତି – 'ଜାଣିନା କି ? ସେଇଟା ପରା ପଶ୍ଚିମାଟାଏ !'

'ନାଇଁ ମ ।...'

'କିଓ ନାଇଁ ମ କ'ଣ, ସେ ପରା ବଲାଙ୍ଗିରିଆ !'

'ସେଇଟାକୁ ଠେଙ୍ଗା ପକେଇ ଜଗିଦିଅ । ଯା ଭିତରେ ପଶି ସେ ଦେଲାଣି ସବୁ ବିଗାଡ଼ି – କ'ଣ ତ' କିମିଆ କରିଚି ଯେ ସବୁ ଗୋଟାଏ 'ହୋ'ରେ ମାତିଛନ୍ତି । ନହେଲେ ସେଇଟା କ'ଣ ଲେଖିଚି କିଓ ? ସେ କ'ଣ ଆମର ଅମୁକ ଦାସ, ସମୁକ ମହାପାତ୍ର, ଗମୁକ ଆଚାର୍ଯ୍ୟ ଠଉଁ ଭଲ ଲେଖିଚି ନା ସାତଜନ୍ମରେ ଲେଖିପାରିବ ?'

ମୁଁ ଉଭୟ ଗୋଷ୍ଠୀର ବିସ୍ମୟ ଏବଂ ଅସୂୟାକୁ ବୁଝେ ଏବଂ କିଛି କହେ ନାହିଁ । କାରଣ କେତେ ସ୍ୱାଭାବିକ ଏବଂ ସାର୍ବଜନୀନ ଏ ପ୍ରତିକ୍ରିୟା ! ସବୁକାଳେ ତ ଏଇଆ ହେଇ ଆସିଚି, ଆଜି ମୋ ପାଇଁ କ'ଣ ନୂଆ ?

ବୋଧହୁଏ ପ୍ରଥମ ବିଶ୍ୱଯୁଦ୍ଧର ଅବ୍ୟବହିତ ପର ଘଟଣା । ୧୯୨୦ ପାଖାପାଖି ସମୟ । ଗୋଟିଏ ଉନ୍ମୂଳିତ ବ୍ରାହ୍ମଣ ପରିବାର ପୁରୀ ଜିଲ୍ଲା ସୁନାଖଳା ପାଖ ପଥରକଟାରୁ ପୈତୃକ ଜମିବାଡ଼ି ଘର ଛାଡ଼ି ମହାନଦୀ କୂଳେ କୂଳେ ସୋନପୁର ବାଟଦେଇ ବଲାଙ୍ଗିରରେ ପହଞ୍ଚିଥିଲା । ଦୁଇପୁଅ, ଦୁଇଝିଅ, ସ୍ତ୍ରୀ, ବାଳଶ୍ରୀ ବିଧବା ଭଉଣୀ ଏବଂ ଖୁଡ଼ୀକୁ ସାଙ୍ଗରେ ନେଇ କେଳେଇ ରଥେ ତରଭା ପାଖରେ ଅଘାଟରେ ନଈରେ ପଶି ଯାଉଥିଲେ । ତାଙ୍କୁ ଯେ ନଈ ପାରିକରି ଦେଇଥିଲା, ଯେ ସେ ଯାଯାବର ପରିବାରକୁ ଥଇଥାନ କରି ରଖିଥିଲା ସେମାନଙ୍କର ନାଁ କ'ଣ କେଜାଣି ! କିନ୍ତୁ ଯେ ସେମିତି ଆତୁଆଳ କରି ଦେଖିଥିଲା ସେ କ'ଣ ଜଣାପଡ଼ି ଯାଇନାହିଁ ଯେ ଗୋଟାଏ କାହାର ନାଁ ଜାଣିନେଲେ ଅଧିକା ହେଇଯିବ ।

ଆସ୍ତେ ଆସ୍ତେ ପରିବାରଟି ଆସି ବଲାଙ୍ଗିରରେ ପହଞ୍ଚିଲା । ସେଇଠି ଜଣାଗଲା ଯେ ରଥ ଆପଣେ ତାଙ୍କରି ଭଳି ଆଉ କେତୋଟି ବ୍ରାହ୍ମଣ ପରିବାର ଗହଣରେ ସେଇଠି ରହିଯାଇ ପାରିବେ ।

ତଥାପି ପରିବାର ସେତେବେଳେ ଉଦ୍‌ବାସ୍ତୁ । ଅସହାୟ ।

ଯାହା ଘରେ ସେମାନେ ଆଶ୍ରୟ ନେଇଥିଲେ ତା ନାଁ କୁଆଡ଼େ ଦୟାସାଗର । ଦୟାସାଗର ନ ହୋଇଥିଲେ କ'ଣ ଆଉ କିଏ ତାଙ୍କୁ ସେମିତି ଆଉଜେଇ ନେଇଥାନ୍ତା ? ସେଇଠି ୧୯୨୯ ମସିହା କୁମାର ପୂର୍ଣ୍ଣିମା ଗୁରୁବାର ଦିନ ଚନ୍ଦ୍ରୋଦୟବେଳକୁ ଅଷ୍ଟମ ଗର୍ଭରେ ଯେଉଁ ପୁଅ ଜନ୍ମ ହେଲା ତା' ନାଁ ଚନ୍ଦ୍ରଶେଖର ।

ଦୟାସାଗରକୁ ଠାବ କରିବାକୁ ମୁଁ ଚେଷ୍ଟା କରିଛି ଆଜୀବନ । ପାଇ ନାହିଁ । ସେ ବୋଧହୁଏ ଇତ୍ୟବସରରେ ସମଗ୍ର ବିଶ୍ୱରେ ପରିବ୍ୟାପ୍ତ ହୋଇଯାଇଛନ୍ତି । ହୋଇପାରେ

ସେ ମୂଳରୁ ହିଁ ସେହିପରି ପରିବ୍ୟାପ୍ତ ଥିଲେ । କେଜାଣି ! ମୋର ମନେହୁଏ ବର୍ତ୍ତମାନ ସୁଦ୍ଧା ମୋ ମୁଣ୍ଡ ଉପରେ ଯେଉଁଠି ଯେଉଁଠି ଛାତଟିଏ ମା' ପକ୍ଷୀର ଡେଣା ପରି ମୋତେ ଆବୋରି ରଖିଛି ସେସବୁ ବୋଧହୁଏ ଦୟାସାଗରଙ୍କ ହିଁ ବସାଘର।

ତା'ପରେ ଆମ ନିଜ ଘର ବୋଲି ଯାହାକୁ କହିଲୁ –

କୋଡ଼ିଏ ଫୁଟରେ ପଚାଶ ଫୁଟ ଡିହ । ଦାମ୍ ପାଞ୍ଚଟଙ୍କା ।

ଝାଟିମାଟି କାନ୍ଥ । ନଡ଼ା ଛାତ ।

ଦାଣ୍ଡଘର, ଉପରଘର, ଦିଅଁଘର, ରନ୍ଧାଘର ପାଭାଗ ତଳଘର ମେଳା ।

ଅଗଣାରେ ସଜନା ଗଛ, ତୁଳସୀ ଚଉରା; ବାଡ଼ିଆଡ଼େ ପିଜୁଳି ବରକୋଳି ।

ଘର ଆଗରେ କାଦୁଅ ରାସ୍ତା–ଆରପାରି ରଜାଘର ଧାନ କ୍ଷେତ ।

ସାଇ ମଝିରେ ଦଶହାତ ଗହୀରର ଝରକୂଅ ।

ସେମୁଣ୍ଡେ ଗଣିବନ୍ଧ । ଗୋଳିଆ ବହଳିଆ ପାଣି ।

ହୁଡ଼ା ଉପରେ ଅସଂଖ୍ୟ ବବୁଲ ଗଛ-

ସେଇଘରେ ଶାଳଗ୍ରାମ ଉପରେ ଅଭିଷେକ ପାତ୍ର ଟେକି ନନା ପୁରୁଷସୂକ୍ତ ବୋଲନ୍ତି । ଦିପହରେ ବୋଉ ନୃସିଂହ ପୁରାଣ ବୋଲେ । ରାତିରେ ଭାଇନା ଅଧ୍ୟାୟେ ରାମାୟଣ ବୋଲିଲା ପରେ ଖିଆପିଆ ହୁଏ । ତା ଆଗରୁ ଦିଅଁଘରେ ମୁଁ ଭାଗବତ ବୋଲେ, ଦୀପ ଦିଏ, ବୋଉ ଅଗଣା ଚଉରା ମୂଳେ ସଂଜବତି ଦିଏ ।

ଘରେ ଶ୍ରାଦ୍ଧ ହେଲାଦିନ ଆମେ ଓପାସରେ ସ୍କୁଲକୁ ଯାଇଥାଉ । ବିନେଇ କକେଇ ତାଳପତ୍ର ପୋଥି ଧରି ବସନ୍ତି । ବୋଉ କଛା ମାରି ପିଣ୍ଡଭାତ ରାନ୍ଧେ । ମୋ ପାଇଁ ପିଣ୍ଡ ପତ୍ରରେ ଖିରିପିଠା, କଦଳୀ ଭଜା, ଶାଗ ରଖା ହୋଇଥାଏ । ନନା ଓପର ଓଳି ବସି ଆଗକଥା କହନ୍ତି ।

ସତ୍ୟବାଦୀ ରଥେ, ମୁକୁନ୍ଦ ରଥେ, ଜୟୀ ରଥେ ତାଙ୍କ ହାତରୁ ପିଣ୍ଡ ପାଆନ୍ତି– ଜୟୀରଥେ କୁଆଡ଼େ ପୁରୀ ବିଜେରାମଚନ୍ଦ୍ରପୁର ଛାଡ଼ି ଚାଲିଆସିଲେ । ସେଇଠି ଆମର ଆଦିପୁରୁଷ ପର୍ଶୁରାମ ରାୟଗୁରୁ କୁଆଡ଼େ ଗଜପତିଙ୍କ ନିଷ୍କର ଭୂମି ପାଇ ବସବାସ କରୁଥିଲେ। ଜୟୀ ରଥେ କୁଆଡ଼େ କାଶୀରେ ଷୋଳବର୍ଷ ପାଠପଢ଼ି ଆସିଥିଲେ । ସର୍ବରାକାର ହୋଇଥିଲେ। ନୀଳକଣ୍ଠଙ୍କ ମଣ୍ଡପରେ ନ୍ୟାୟ ନିଶାପ କରୁଥିଲେ ।

ବଲାଙ୍ଗିରରେ ଘରେ ଗୋଟାଏ ଭାଷା, ଗୋଟାଏ ପରମ୍ପରା, ପୂଜାପର୍ବ, ଆଚରଣ, ବାହାରେ ଆଉ ପ୍ରକାରେ ଭାଷା, ଆଉ ପ୍ରକାରେ ଉତ୍ସବ–ଉଭୟ ମୋର ଉପାଦାନ, ମୋର ଅବଲମ୍ବ । ମୁଁ ତା ସହିତ ବଢ଼ିଛି–

ବଲାଙ୍ଗିରରେ ସମଲେଶ୍ୱରୀ ପାଟଣେଶ୍ୱରୀ ମନ୍ଦିର । ମହାଦେବ, ଜଗନ୍ନାଥ ମନ୍ଦିର । ଗୋପାଳଜୀ ଲକ୍ଷ୍ମୀନାରାୟଣ ମନ୍ଦିର ।

ପାଟଣେଶ୍ୱରୀଙ୍କ ପାଖରେ ବଳିଛେଦ ପରେ ଗଣ୍ଡିଟାକୁ ବୋଝିଆ ହାତରେ ନନା ଘରକୁ ଆଣିଥିଲେ । ସେଇଟା ମୋର ପୋଷା ଛେଳିଛୁଆ, ତାକୁ ଶୁଙ୍ଘିଦେଇ ତା' ମା' କାନ୍ଦିଲା । ମୁଁ କାନ୍ଦିଥିଲି ।

ତାକୁ କଟାକଟି କରିଥିଲେ ପଡ଼ିଶାଘର ହରି ଭାଇନା ।

ସାଇରେ ସବୁ ଘରେ ପ୍ରସାଦ ପହଞ୍ଚେଇବାକୁ ମୋତେ କୁହାଯାଉଥିଲା ।

ସେଇ ହରିନନ୍ଦଙ୍କ ଘରକୁ ନେଇଗଲାବେଳେ ମୋ ହାତରୁ ଚିଲ ଝାମ୍ପି ନେଇଥିଲା ।

ମୁଁ ଆମିଷ ଛାଡ଼ି ଦେଇଥିଲି ।

ସାତ ବର୍ଷରୁ ଖାଲି ଶାଗ ଭାତ ଖାଇଲି ।

ସକାଳେ ଗାଧୋଇ ଦିଅଁଘରେ ବସିଲି,

ସଂଜବେଳେ ଭାଗବତ ବୋଲିଲି,

ବୋଉର ସନ୍ଦେହ ହେଇଥିଲା ଯେ ମୁଁ ବାବାଜି ହୋଇଯିବି ।

ମୁଁ ଏଗାର ବର୍ଷରେ ବ୍ରତ ହେଲି । ଗାୟତ୍ରୀ ଅଭ୍ୟାସ କଲି, ଚଳୁ କଲି ।

ଏଣେ କିନ୍ତୁ ଫୁଟବଲ୍ ଖେଳିଲି । ବର୍ଷାରେ ତିନ୍ତିଲି । ଖୁବ୍ ବଳୁଆ ହେବାର ସ୍ୱପ୍ନ ଦେଖିଲି ।

ଦର୍ପଣ ଦେଖି ନିଜର ଚିତ୍ର ଆଙ୍କିଥିଲି ।

ଡ୍ରଇଂ ଖାତାରେ ଗୋଟାଏ ସିଂହର ଚିତ୍ର କରିଥିଲି ।

ଶିମ୍ବ ପତ୍ର ଦୋରୁଅରେ ତା ଦେହସାରା ସବୁଜ କରିଥିଲି ।

ତା' କେଶରରେ ହଳଦୀ ଲଗେଇଥିଲି ।

ତା ମୁହଁରେ ଅଳତା । ଆଖିରେ ଚୂନ ଦେଇ କଳାଡ଼ୋଳାରେ ମୁଗ ଚୋପା ଲଗେଇଥିଲି ।

ମୋ ଉପର ଭାଇ ତାକୁ ଦେଖି ଥଟ୍ଟା କରିଥିଲେ ।

ବାରେସିରେ ଗୋଟାଏ କୁନ୍ଦା ଖଟ ଖୁରାକୁ କାଟି ମୂର୍ତ୍ତି ତିଆରିବାକୁ ଚେଷ୍ଟା କରିଥିଲି ।

ଗାଳି ଖାଇଥିଲି ସମସ୍ତଙ୍କଠୁ ।

ସ୍କୁଲକୁ ଯାଉଥିଲି ଖାଲି ପାଦରେ । ଧୋତି ସାଙ୍ଗକୁ ହାଫ୍ ହାତର ଜାମା ।

ପ୍ରଥମ ପେଣ୍ଟ ପିନ୍ଧିଲି କଲେଜରେ । ଜୋତା ପିନ୍ଧି ଗୋଡ଼ ଖଣ୍ଡିଆ କରିଥିଲି । ଫୁଟବଲ ଖେଳି ନଖ ଉଲୁରି ଯାଇଥିଲା ।

କଲେଜ ପରୀକ୍ଷାରେ ଫାଷ୍ଟ ହେଲି । ସ୍ପୋର୍ଟସରେ ଚାମ୍ପିଆନ୍ ।

ସ୍ୱପ୍ନ ଦେଖୁଥିଲି ସ୍ପୋର୍ଟସ୍‌ରେ ନାହିଁ ନଥିଲା ନୋହିବ ପାଇଁ - କଳ୍ପନା କରୁଥିଲି– ମୁଁ ସାଢ଼େ ଫୁଟ ଉଞ୍ଚ ହୋଇଯାଇଛି ସିଂହପରି, ମହାବଳ ବାଘ ପରି ପ୍ରଚଣ୍ଡ ଶକ୍ତି– ସାତ ସେକେଣ୍ଡରେ ଶହେ ମିଟର ଧାଇଁଯାଇଛି। ଦୁଇଶ' ମିଟରକୁ ତେର ସେକେଣ୍ଡରେ। ଲୁହାଗୁଳାଟାକୁ ଶହେ ଫୁଟ ଫିଙ୍ଗିଛି, ଡ଼ିସ୍‌କସ୍ ତିନିଶହ ଫୁଟ୍, ଜାଭେଲିନ୍ ସାତ ଶହ। ଇସ୍, ସାରା ଷ୍ଟାଡ଼ିଅମ୍‌ରେ ସମସ୍ତେ ଠିଆ ହୋଇ ମୋତେ ସମ୍ମାନ ଜଣାଇଛନ୍ତି - ସେମାନେ ମୋ ନାଁକୁ ଓଲମ୍ପିକ୍ ପତାକାରେ ଲେଖିବା ପାଇଁ ରାଜି ହୋଇ ଯାଉଛନ୍ତି।

ମୁଁ କହୁଛି– ନା । ବରଂ ଓଲମ୍ପିକ୍ ପତାକାରେ ଭାରତବର୍ଷର ମାନଚିତ୍ର ରଖ। ତା'ଉପରେ ପାଞ୍ଚଟି ବୃତ୍ତ ଅଙ୍କିତ ରହୁ ଯେତେଦିନ ପର୍ଯ୍ୟନ୍ତ ମୋ ରେକର୍ଡ଼ ନ ଭାଙ୍ଗିଛି।

ସେହିପରି ସ୍ୱପ୍ନ ଦେଖୁଥିଲି ପଥରରେ ବିନ୍ଧାଣୀ ହେବା ପାଇଁ ।

ମାର୍ବଲ୍‌ଟା ମୋତେ ଜମା ଭଲ ଲାଗେ ନାହିଁ । କେମିତି ପାଣିଚିଆ ନରମା ରଂଗଟାଏ ।

କାଚ, ମହମ ମିଶିଗଲେ ଯେମିତି ହେବ।

ମୁଁ ମୁଗୁନିକୁ ପସନ୍ଦ କରେ।

ମୁଗୁନିରେ ବୋଉର ଗୋଟାଏ ମୂର୍ତ୍ତିକରି ସମସ୍ତଙ୍କୁ ତାଜୁବ୍ କରିଦିଅନ୍ତି, ଖୁବ୍ ବଡ଼ ମୂର୍ତ୍ତି ଗୋଟାଏ ଖୋଲା ମଇଦାନରେ ଠିଆ କରି ଦିଅନ୍ତି। - ମୁଁ ଗୋଟାଏ ଖରାଛୁଟିରେ ବଡ଼ ଭାଇନାଙ୍କ ପାଖରେ ଥାଏ। ଭାଇନା ଭାଉଜ ମୋତେ ପ୍ରଗାଢ଼ ସ୍ନେହ କରୁଥିଲେ। ଭାଇନାଙ୍କ ପୋଲିସ୍ ଚାକିରି। ତାଙ୍କଠୁ ଗୋଟାଏ ନୂଆ କଲମ ପାଇଲି।

ଗୋଟାଏ ମୋଟା ଖାତାରେ କର୍ଣ୍ଣ ମହାକାବ୍ୟ ଲେଖିବି ବୋଲି ଥୁବ କରିଥିଲି ଗୋଟାଏ ସର୍ଗ ଲେଖି ବି ଦେଇଥିଲି । କୁଆଡ଼େ ହଜିହାଜି ଗଲା - ଏମିତି କିନ୍ତୁ ବାରପ୍ରକାର ସ୍ୱପ୍ନ, ମୋତେ ଏବେ ବି ଘାରି ରଖିଛି । ଅନ୍ତରୀକ୍ଷରେ ଉଡ଼ାଣ ପାଇଁ ମୁଁ ସବୁବେଳେ ଆଖିବୁଜି ଦେଇଛି । ଅତିକ୍ରମ କରିବାର ଇଚ୍ଛା ସବୁବେଳେ ମୋତେ ଉଚ୍ଚାଟିତ କରିଛି–

ସେଥିପାଇଁ ବୋଧେ ମୋ ଲେଖାରେ Larger than life ଚିତ୍ର ବେଳେ ବେଳେ ଉତାରି ଆସିଛି । କେଜାଣି !

ମୁଁ ଗିରିଚୂଡ଼ା ଦେଖିଲେ ଉଲ୍ଲସିତ ହୋଇଛି । ସକାଳ ପାହିଲେ ବଲାଙ୍ଗିରର ମଟକୋଇ ପାହାଡ଼ - କଲେଜ ପାଖରେ ହାତିମୁଣ୍ଡିଆ, ଗନ୍ଧରେଲ୍ ମୋ ଆଖିରେ ପଡ଼ିଛି ମୋ ଅନ୍ତରରେ ଭେଦିଯାଇଛି ।

ମୁଁ ଆକାଶ, ପାହାଡ଼, ସମୁଦ୍ର ଦେଖିଲେ ବିଭୋର ହୋଇଯାଏ । ଉଚ୍ଚ ଉଚ୍ଚ ଦେବଦାରୁ, ଆକାଶମଲ୍ଲୀ ମୋତେ ଭଲ ଲାଗେ । ଗୋଟିଏ ପ୍ରକାର ବଡ଼ମୁହାଁ ଢ଼ଙ୍ଗ ବୋଧହୁଏ ମୋର ଅଛି ।

ସେଥିପାଇଁ ସବୁଠୁ ବଡ଼ ବାଇଗଣପଲ୍ଲୀ ଆମ୍ବ, ବଡ଼ ମଇଁଷି ଶିଙ୍ଘା ବନ୍ତଳ ଦେଖିଲେ ଅଫିସ ଯିବା ବାଟରେ କିଣି ପକାଏ ।

ମୁଁ ଆମ୍ବ ଭଲପାଏ - ଖଟା ପଡ଼ିଲେ ଚିଡ଼ିଯାଏ । ମିଠା ପଡ଼ିଲେ ମାତିଯାଏ । ପାଚିଲ କଦଳୀ ମୋ'ର ପ୍ରିୟ । କାତୁକାତୁ ହେଲେ ପିଙ୍ଗିଦେବାକୁ ଇଚ୍ଛାହୁଏ । ଚୋପା ହାତ ମାରିଲେ ଛାଡ଼ିଯାଉଥିବା ଲହୁଣୀ ଭଳି ନରମ ପାଚି ଯାଇଥିବ । ପାଟିରେ ପଡ଼ିଲେ ମିଳିଯାଉଥିବ । ସେଭଳି ଚନ୍ଦନପୁରୀ, ପାଟକପୁରା, ନାଲି ଚୋପା ପାହାଡ଼ି, ଛିଟ ପଡ଼ିଥିବା କାବୁଲୀ, ଖାଇଲାବେଳେ ମୋ ଆଖି ସ୍ୱତଃ ବୁଜି ହୋଇଯାଏ - ବିରାଡ଼ି ଦୁଧ ସର ଖାଇଲାପରି । ଦୁଧସର ଦେଖିଲେ ହିଁ ମୁଁ ଚୋରେଇ ଖାଇଦିଏ । ଏବେ ବି ! କ୍ଷୀର, ରାବିଡ଼ି, ଛେନା, ଛେନାପୋଡ଼, ସରବସା ମଇଁଷା ଦହି, ଲହୁଣି, ଗୁଆଘିଅ ମୋର ପ୍ରିୟ ।

ଭାତ ଅପେକ୍ଷା ଖେଚେଡ଼ି ମୁଁ ଭଲପାଏ । କାଠିମରା ଖେଚେଡ଼ି, ଅଦାଛେଚା ଘିଅରେ ପୁଚ୍ ପୁଚ୍ । ତା' ଆଗରେ କାନିକା ବି ମୁଁ ଆଡ଼େଇ ଦେଇପାରେ - ବଲାଙ୍ଗିର ସୋନପୁର ଅଞ୍ଚଳର ମୁଗଡାଲି । ଖିରି ଭଳି ହୋଇଥିବ । ସେଥିରେ ଗୁଆଘିଅ ଜିରା ଛୁଙ୍କ ପଡ଼ିଥିବ -ଚମତ୍କାର ! ତା' ସାଙ୍ଗକୁ ଅରୁଆ ଅରୁଆ ବାସୁଥିବା ସାଦା ସରୁ ଅନ୍ନ ।

ଚରିତ୍ରହୀନ ପରିବା ଘାଣ୍ଟ ମୋର ଶତ୍ରୁ । ବରଂ କାକଡ଼, ପୋଟଳ, ଗାଜର, ପିଆଜ ଆଦିର ମୁଦା ସନ୍ତୁଳା ବଢ଼ିଆ । କାବୁଲି ବୁଟ, ନାଲି ଝୁଡୁଙ୍ଗ, ରାଜମାରେ ଯାହାକଲେ ସୁଆଦ । ଲୁଚି, ଛତୁ ଦମ୍ ପାଗ ଚମତ୍କାର । ଇଡ଼ଲି କ୍ଷୀର ଭଳି, କଚୋଡ଼ି ଅଳୁଦମ୍ ଭଳି । ଆଳୁ କିନ୍ତୁ ମୁଁ ଭଲ ପାଏନା- ବରଂ ସାରୁ ତାଠୁ ଭଲ । କୁଜି ସାରୁ, ସଂଖ ସାରୁ, ମାଟିଆଳୁ ପଡ଼ିଥିବା ମହୁର ଖୁବ୍ ଭଲ ।

ଏ ତ' ପ୍ରାୟ ନିରାମିଷ ତାଲିକା - ଏଥିରେ ମିଠା ମିଶିଲେ ସୁବର୍ଣ୍ଣେ ସୁଗନ୍ଧ ସନ୍ଦେଶ–ବୁନ୍ଦିଲଡୁ, ଛେନାପୋଡ଼, ଛେନାଝିଲେକି... ଇତ୍ୟାଦି । ମୁଁ ମୂଳରୁ ନିରାମିଷାଶୀ

ହେଉଥାନ୍ତି । ମୋତେ ବିଭିନ୍ନ ଆଳରେ ଆମିଷ ଖୁଆଇଛନ୍ତି । ମୁଁ ବି ନିର୍ବିଚାର ଖାଇଛି କିଛିଦିନ । ବାରମ୍ବାର ଛାଡ଼ିଛି - ବାରମ୍ବାର ଖୁଆଇଛନ୍ତି । - ବିଭାହେବା ପରେ ପ୍ରତିଦିନ ମାଂସ, ମାଛ, ଅଣ୍ଡା ଅଭ୍ୟାସ କରାଇଛନ୍ତି, ମାଂସଲୋଭୀ କରାଇବା ପାଇଁ।

ବର୍ତ୍ତମାନ ମନେ ନାହିଁ କେବେ ଛାଡ଼ିଛି, କ'ଣ ଛାଡ଼ିଛି - ସେଥିପାଇଁ ଆଉ କେହି ମାଂସ ଖାଉଥିଲେ ମୋର କୌଣସି ବିକ୍ରିୟା ହେଉନାହିଁ । ନିଶା ଭିତରେ ମାଟ୍ରିକ୍ ପଢ଼ିଲାବେଳେ ବଡ଼ଭାଇଙ୍କ ସିଗ୍ରେଟ୍ ବାସ୍ନାରେ ଆକୃଷ୍ଟ ହୋଇ ଥରେ ଲୁଚେଇ ଶୋଷି ଦେଲି । ମୁଣ୍ଡ ଝାଙ୍କିଦେଲା । କପାଳରୁ ଝାଳ ନିଗିଡ଼ିଗଲା । ଜିଭ ଭିଡ଼ିନେଲା । ବାଆସ୍, ତେଣିକି ନ ଗଙ୍ଗଦତ୍ତଃ ପୁନରପି କୂପମ୍ ।

ବି.ଏ. ପଢ଼ିଲାବେଳେ ସ୍ପୋର୍ଟସରେ ମୁଁ ମୋର ସବୁଥିରେ ଫାଷ୍ଟ ହୋଇସାରିଥାଏ । ଚିତ୍‌ହେଇ ପଡ଼ିଥାଏ ମଲାପରି । ମୋତେ ଆମ କ୍ଲାସର ରିଲେ ପାଇଁ ଟାଣିଲେ । ମୁଁ ଉଠି ପାରୁନଥାଏ । କଲେଜ ଡାକ୍ତର ମୋତେ କ'ଣ ଦେଲେ ପିଇବା ପାଇଁ । ମୁଁ ବେଶ୍ ଚେଙ୍ଗା ଅନୁଭବ କଲି, ରିଲେରେ ଧାଇଁଲି । ଆମେ ଫାଷ୍ଟ ହେଲୁ । ପରେ ଶୁଣିଲି ଯେ ସେ ମୋତେ ପାନେ ବ୍ରାଣ୍ଡି ଖାଇବାକୁ ଦେଇଥିଲେ - ସେତିକି - ହଁ ଥରେ ଗଞ୍ଜେଇ ଘୋଟା ସାଙ୍ଗମାନେ ପିଆଇ ଦେଇଥିଲେ । ସେଦିନ ଖୁବ୍ ଭ୍ରମିଲି । ତଳ ଉପର ହେଲି । ଆଖିରେ ତାରା ସବୁ ଦିଶିଲେ । ଆଉ ତା' ପାଖ ପଶିଲି ନାହିଁ ।

ଆମ ସତେଇଶ ପୁରୁଷରେ ନିଶା ପଶି ନାହିଁ । ଅନ୍ତତଃ ମୋ ଯାଏଁ - ତ୍ରିନାଥ ମେଳା ଗଞ୍ଜେଇ ଅବଶ୍ୟ ଏଥିରେ ଲେଖା ନୁହେଁ । ପଇସାକର ଗଞ୍ଜେଇକୁ ଏତେ ବଡ଼ ପେହେଁକାଳିଆ ଶାଳପତ୍ରରେ ମୋଡ଼ି ନନା ଧୂଆଁ ଛାଡ଼ିବାର ମୁଁ ଦେଖିଛି ।

ବାକି ରହିଲା ନାରୀ-

ଅନେକ ବାଛିଆରି ପାଠକ ବେଳେବେଳେ କହିବାର ମୁଁ ଶୁଣିଛି 'ଆଚ୍ଛା, ଚନ୍ଦ୍ରଶେଖରଙ୍କ ଗଳ୍ପ ଉପନ୍ୟାସରେ ପ୍ରେମକଥା କିଛି ନାହିଁ ।' ବୋଧହୁଏ ସେମାନେ ପ୍ରେମ ନାମରେ ଯେଉଁ ପର୍ଯ୍ୟାୟର ଅନୁଭବ ବା ଆଚରଣ କଥା ସାଧାରଣତଃ ପଢ଼ିବାକୁ ପାଆନ୍ତି, ତା ମୋ ଲେଖାରେ ନାହିଁ-

ତା'ର ଅନେକ କାରଣ ହୋଇପାରେ ।

ସର୍ବପ୍ରଥମ କାରଣ ହେଲା ଯେ ମୋର ନୂଆଗଳ୍ପ ସଂକଳନ ପ୍ରକାଶିତ ହେଲାବେଳକୁ ମୋର ବୟସ ପଚାଶ ଟପିଲାଣି, ମୁଁ ଜୀବନର ବିଭିନ୍ନ ଅବସ୍ଥାର ତୋରଣ ଦେଇ ପାରି ହୋଇଆସିଲିଣି । ଯୌବନର ପ୍ରେମ ଭଳି ଆହୁରି ଅନେକ

ଗଭୀର ଗମ୍ଭୀର ଅନୁଭବ ମୋତେ ଆଚ୍ଛନ୍ନ କଲାଣି । ଆବେଗ ରୋମାଞ୍ଚର ପ୍ରେମଗଳ୍ପ ମୋତେ ଆକୃଷ୍ଟ କରିପାରିନାହିଁ। ବରଂ ଜୀବନ ଯାତନା ବିଡ଼ମ୍ବନା, ନୈରାଶ୍ୟ, ବ୍ୟର୍ଥତା ସହିତ ଅତି ବିସ୍ତୃତ ଆପଣାପଣ, ମଞ୍ଜପାକଳ ମଣିଷର ଧୈର୍ଯ୍ୟ ସହନଶୀଳତା, ଉଦାରପଣ ପୁଣି ତା'ର ସ୍ୱାର୍ଥପରତା, ଶଠତା, କପଟାଚାର ମୋତେ ଖୁବ୍ ଦୋହଲାଇଛି ସେଥିପାଇଁ ହୁଏତ ଚନ୍ଦ୍ରଚକୋର ମଧୁବନ ପ୍ରଣୟ, ରୁଷାହସା ଅଭିମାନ ସାମୟିକ ବିରହ - ମିଳନର ଲୁଚକାଳି ମୋତେ ପିଲାଳିଆ ମନେ ହେଉଛି - ସୁନ୍ଦର ବିମୋହକ କିନ୍ତୁ ସ୍ତବ୍ଧ କଲାଭଳି ଶକ୍ତିଶାଳୀ ନୁହେଁ । ଅବଶ୍ୟ ପ୍ରେମର ବ୍ୟାପକ ପରିଭାଷାକୁ ସ୍ୱୀକାର କଲେ, ସେଇଠି ମୃତ୍ୟୁ ସୁଦ୍ଧା ପରାସ୍ତ ହୋଇଯାଇପାରେ, ଜୀବନର ଯାବତୀୟ ଜଟିଳତାକୁ ପକ୍ଷୀ ନୀଡ଼ଟିଏ ପରି ପ୍ରେମର ମହାଦ୍ରୁମ ବହନ କରିପାରେ ଏବଂ ଆକାଶସାରା ଫୁଲ ଫୁଟିପାରେ ।

ଅନ୍ୟ କାରଣ ହେଲା ଯେ ମୁଁ ମୂଳରୁ ନାରୀମାନଙ୍କୁ କରଛଡ଼ା ଦେଉଥିଲି । ନିରାମିଷ ରହିବା, କେବଳ ଶାଗ ଭାତ ଖାଇବା, କୃଚ୍ଛ୍ର ସାଧିବା, ଅଖଣ୍ଡ ବ୍ରହ୍ମଚର୍ଯ୍ୟ ରକ୍ଷା କରିବା ଇତ୍ୟାଦି ଧାରଣା ଉପରେ ଚନ୍ଦ୍ରଶେଖର ମିଶ୍ରଙ୍କ ଛାତ୍ର ସହଚର ବହିପଢ଼ି ମୋର ବିଶ୍ୱାସ ହୋଇଯାଇଥିଲା । ଏଣୁ ଏମ୍.ଏ. ଶେଷବର୍ଷ ପଢୁଥିଲାବେଳେ ତେଇଶ ବର୍ଷରେ ମୋର ବିବାହ ସ୍ଥିର ହେବା ପର୍ଯ୍ୟନ୍ତ ମୁଁ କୌଣସି ନାରୀ ମୁହଁକୁ ଇଚ୍ଛାକରି ଚାହିଁ ନାହିଁ, ଏପରିକି ଭାବୀ ପତ୍ନୀକୁ ସୁଦ୍ଧା ନୁହେଁ– ସେଇ ପ୍ରଥମ ଏବଂ ଶେଷ ନାରୀକୁ ପତ୍ନୀ ରୂପେ ଗ୍ରହଣ କରିବାର ଯାବତୀୟ ଅସୁବିଧା, ଆବେଗିକ, ନୈତିକ ଏବଂ ମନସ୍ତାତ୍ତ୍ୱିକ ଗୋଳମାଳ କଥା ମୁଁ ଜାଣେ– ଆପଣଙ୍କୁ କହି କିଛି ଲାଭ ନାହିଁ - ତେବେ ଆସ୍ତେ ସମସ୍ତ ବିଷୟ ସ୍ୱାଭାବିକ ହୋଇଯିବା ପରେ, ଅନେକ ପରେ ମୁଁ ଜୀବନର ଏ ବିଭାବଟିକୁ ଦୂରରୁ ଏବଂ ନିକଟରୁ ଦେଖିଛି । ଆଦ୍ୟ ଯୌବନର କିଛି ଘଟଣା, କେତୋଟି ନାରୀଙ୍କର କିଛି ଆଚରଣ ଏବଂ ଉଚ୍ଚାରଣ ମୋତେ ନୂତନ ଅର୍ଥରେ ପ୍ରତିଭାତ ହୋଇଚି । ମୋ ପାଇଁ ପରିଣୟ ପରେ ହିଁ ପ୍ରଣୟ ସମ୍ଭବ ହୋଇଛି । ଆଜି ଏ ମୌଳିକ ଆବେଗକୁ ବୁଝିବାରେ ତାକୁ ସ୍ୱୀକାର କରିବାରେ କୌଣସି ଅସୁବିଧା ହୋଇନାହିଁ - ତାକୁ କେନ୍ଦ୍ରକରି ଗଳ୍ପ ବି ଲେଖିଛି କିନ୍ତୁ ଷଡ଼ରସ ଭିତରେ ତା' ଗୋଟିଏ ମାତ୍ର ରସ ରୂପେ ଦେଖା ଦେଇଛି । ତାକୁ ନିଠେଇ ଦେଖିଲେ ଦିଶିବ ।

ମୋର ବି.ଏ. ପାଠ ସାରିଲାବେଳକୁ ୧୯୫୦ । ସେଇବର୍ଷ ମୁଁ ବଲାଙ୍ଗିର ପିଠିକରି ଚାଲିଆସିଲି । ମୋର ପ୍ରଥମ ଏକୋଇଶି ବର୍ଷର ଅନେକ ଅନେକ ସ୍ମୃତିଜଡ଼ିତ ମୋର ବାଲବନ୍ଧୁମାନଙ୍କ ସ୍ନେହ ମଣ୍ଡିତ ବଲାଙ୍ଗିର । ଆଉ କେତେଥର ଫେରିଛି, ତାକୁ ଆଉ ସେପରି ପାଇନାହିଁ ।

ଉତ୍ତର ଭାରତରେ ଲକ୍ଷ୍ନୌରେ ପାଠ ପଢ଼ିଛି ଦୁଇବର୍ଷ । ହିନ୍ଦୀ ଶୁଣିଛି, କହିଛି, ପଢ଼ିଛି– ବଙ୍ଗଳା ଆଗରୁ ପଢ଼ିଥିଲି ବଲାଙ୍ଗିରରେ । ଇଂରାଜୀରେ ତ ସହଜେ ପଢୁଥିଲି । ସେ ଦୁଇବର୍ଷ ଆଇନ୍ ମଧ୍ୟ ସାରିଥିଲି ।

ହଁ, ଏଇଠି ଗୋଟିଏ ରହସ୍ୟର ଉନ୍ମୋଚନ ହେବା ପ୍ରୟୋଜନ । ଅନେକ ସମୟରେ କଥାଛଳରେ ମୋର ପରିଚୟ ଦେବାକୁ କୁହାଯାଇଛି ଯେ ମୁଁ କୁଆଡ଼େ ମିଷ୍ଟର ଲକ୍ଷ୍ନୌ ଥିଲି । ୧୯୫୨ ଲକ୍ଷ୍ନୌ ୟୁନିଭର୍ସିଟିରେ ସୁନ୍ଦର ସ୍ୱାସ୍ଥ୍ୟ ପ୍ରତିଯୋଗିତାରେ ମୋତେ ପ୍ରଥମ ସ୍ଥାନ ମିଳିଥିଲା । ସେ ଏକ ଲମ୍ବା କାହାଣୀ । କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ସେଇଠି ଦୁଇଦଳ କନ୍ଦଳ ଭିତରେ ମୁଁ ଫାଇଦା ପାଇଗଲି । ଚଣ୍ଡୀଦାସ ବଂଗୀୟ କ୍ଲବର ଦାଦା ଏବଂ ଆର ଗୋଷ୍ଠୀ ହିନ୍ଦୀଭାଷୀ ଟଣ୍ଡନ୍‌ର ରାଜ୍ୟ । ଚଣ୍ଡୀଦାସ ସୁନ୍ଦର ଲାଲ ପାଣ୍ଡେ ନାମକ ଗୋଟିଏ ମସ୍ତ ଟୋକାକୁ ତିନିବର୍ଷ ଫାଷ୍ଟ କରେଇ ସାରିଥିଲା । ତା' ପାଖରେ ଆଉ ଶିଷ୍ୟ କେହି ନଥିଲେ । ସେ ହଠାତ୍ ମୋତେ ଦେଖି ଟାଣି ନେଇଥିଲା - ମୁଁ କିଛି କିଛି ବ୍ୟାୟାମ କରୁଥିଲି । ସ୍ପୋର୍ଟସରେ ଡିସ୍କସ୍ ଏବଂ ଗୋଲା ପିଙ୍ଗିବା ପାଇଁ ବେଶ୍ ସ୍ୱାସ୍ଥ୍ୟ ଥିଲା । କିନ୍ତୁ ସେ ପ୍ରତିଯୋଗିତାରେ ପ୍ରଦର୍ଶନ କଳାଭଳି ଦକ୍ଷତା ବା ଅଭିଜ୍ଞତା ଘରେ ଶୂନ । ସେ କିଛି ନଶୁଣି ମୋତେ ଭିଡ଼ି ନେଇଥିଲା । ମୋତେ ଗୋଟାଏ ଚଡ଼ି ପିନ୍ଧେଇ ଦେହସାରା ଗ୍ଲିସେରିନ୍ ଢ଼ାଳିଥିଲା ଏବଂ ଦର୍ଶକ ଗେଲେରି ପଛରେ ଜଣେ ଠିଆହୋଇ ମୋତେ ଯେମିତି ଠାରିଲା ମୁଁ ସେମିତି ହାତ ଗୋଡ଼ ମୋଡ଼ିଲି । ଚଣ୍ଡୀଦାସ ଗୋଟାଏ ପଏଣ୍ଟର ଧରି ସବୁ ବଖାଣିଲା - ମୋ ଉପରେ ଆଲୋକ ବନ୍ୟା । ଚାରିଆଡ଼େ କରତାଳି - କ'ଣ ନା ମୁଁ ହିଁ ମିଷ୍ଟର ଇଉନିଭର୍ସିଟି–ୟାପରେ ଫାଇଜାବାଦ ଗଲି ଉତ୍ତର ପ୍ରଦେଶ ବାର୍ଷିକ କ୍ରୀଡ଼ା ପାଇଁ । ବାଙ୍ଗାଲୋର ଗଲି ଆନ୍ତଃବିଶ୍ୱବିଦ୍ୟାଳୟ ପ୍ରତିଯୋଗିତାରେ ଭାଗନେବା ପାଇଁ - ୧୯୫୮ରେ ଓଡ଼ିଶାରେ ସର୍ବଭାରତୀୟ କ୍ରୀଡ଼ା ପ୍ରତିଯୋଗିତାରେ ଓଡ଼ିଶା ତରଫରୁ ଡିସକସ୍ ପିଙ୍ଗିଥିଲି - ଏମିତି ଏମିତି ଏ ବିଭାଗଟି ମୋ ଜୀବନର ଅଂଶହୋଇ ରହିଗଲା - ସେ ଅନୁଭବ ବେଳେବେଳେ ଫୁଟି ବାହାରି ଯାଇଛି ଲେଖାରେ । ମୁଁ ପହିଲିମାନ ନୁହେଁ, କେବେ ନ ଥିଲି - ସୁନ୍ଦର ସ୍ୱାସ୍ଥ୍ୟ ସହିତ ପହିଲିମାନର କିଛି ସମ୍ପର୍କ ନାହିଁ - ମୋ ଚେହେରା ଦେଖି ଅନେକେ ମୋତେ ପହିଲିମାନ୍ ବୋଲି ଭାବନ୍ତି, ମୋତେ ଭାରି ଲାଜମାଡ଼େ, ଅପମାନିତ ହେଲାପରି ଲାଗେ । କାରଣ ପହିଲମାନ୍‌ଗୁଡ଼ିକ ବେଳେ ବେଳେ କିଭଳି ନିର୍ବୁଦ୍ଧିଆ ଜୀବ ମୁଁ ଦେଖିଛି ଲକ୍ଷ୍ନୌରେ । ସେମାନେ ଶରୀର-ସର୍ବସ୍ୱ ନିବୋର୍ଧ ସ୍ଥୂଳ ପିଣ୍ଡ । ଏଣୁ ମୋତେ ପହିଲମାନ କହିଲେ ମୁଁ ଅପମାନିତ ବୋଧକରେ, ଚିଡ଼ିଯାଏ ।

ଓଡ଼ିଶାକୁ ଫେରିଆସି ମୁଁ ଅଧ୍ୟାପନା କଲି ଇଂରାଜୀରେ, ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ । ବାକ୍‌ଦେବୀ ବୋଧେ ବାକ୍ ରୂପରେ ହିଁ ପ୍ରଥମେ ପ୍ରସନ୍ନା ହୋଇଥିଲେ - ମୁଁ କହିବାକୁ ଭଲ ପାଇଗଲି, ଏବେ ବି ଭାଷଣ ଦେବା ମୋର ଆତ୍ମପ୍ରକାଶର ଏକ ବିଶେଷ ମାଧ୍ୟମ ।

ପଥମ ଅଧ୍ୟାପନା, ପ୍ରଥମ ପ୍ରତିଷ୍ଠା, ପ୍ରଥମ ପିତୃତ୍ୱ ସବୁ ବ୍ରହ୍ମପୁରରେ । ସେଇଠି ମଧ୍ୟ ପ୍ରଥମ ସାହିତ୍ୟ ସୃଷ୍ଟି - ଇଂରାଜୀରେ ରଚନା ଗଳ୍ପ ମନନଧର୍ମୀ ବିଚାର ସବୁ ଏବେ ବି ଗଚ୍ଛିତ ଅଛି – ପ୍ରାୟ ଦଶ ବର୍ଷର ନିରବଚ୍ଛିନ୍ନ ଲେଖା - ସବୁକିଛି ଇଂରାଜୀରେ । ଛାଁ ଭାଁ କଲେଜ ମେଗାଜିନ୍‌ରେ ବାହାରିଛି - ନତୁବା ସବୁ ସେମିତି ସୂତା ବନ୍ଧା ହୋଇ ଥୁଆ ହେଇଛି - କାରଣ ଲେଖିଦେଲାପରେ କାମ ସରିଗଲା ପରି ଅନୁଭବ ମୋର ପ୍ରାୟ ଆସିଥାଏ - ତାକୁ ଛପେଇ ପୁଣି ଥରେ ଦେଖିବାର ଇଚ୍ଛା ମୋର ପ୍ରାୟ ନ ଥିଲା । ଏବେ ବି ନାହିଁ ।

ଅନେକ ସମୟରେ ପ୍ରଶ୍ନ ହୁଏ ମୁଁ କେବେ ଲେଖା ଆରମ୍ଭ କଲି । ତା'ର ଠିକ୍ ଉତ୍ତର ହୁଅନ୍ତା ବୋଧହୁଏ ବ୍ରହ୍ମପୁରରେ ୧୯୫୨-୫୩ ମସିହା ବେଳକୁ । କିନ୍ତୁ ଇଂରାଜୀରେ ଲେଖିବା ଏବଂ ତାକୁ ପ୍ରକାଶ ନ କରି ରଖିବା କ'ଣ ଜଣେ ଓଡ଼ିଆ ସାହିତ୍ୟକାର ଜୀବନର ଆଦିପର୍ବ ହୋଇପାରେ ?' ନିଶ୍ଚୟ ହୋଇପାରେ ଯଦି ଭାଷା ବିଚାରକୁ ଗୌଣ ବୋଲି ଧରାଯାଏ । ଧରାଯିବା ଉଚିତ; କାରଣ ସାହିତ୍ୟ ବସ୍ତୁତଃ ଏକ, ସାରା ପୃଥିବୀରେ ସମଗ୍ର ମାନବଜାତି ପାଇଁ ଭାଷା ଏକ ବ୍ୟଭିଚାରୀ ଆବରଣ ମାତ୍ର । ମୁଁ ଯେ ମୋ ଭିତରେ ଜଣେ ରଚୟିତାକୁ ଆବିଷ୍କାର କରିଥିଲି, ଗଳ୍ପ ଏବଂ ନିବନ୍ଧ ରଚନାରେ ଆତ୍ମପ୍ରକାଶ କରିଥିଲି ତତ୍‌ଜନିତ ଆନନ୍ଦ ପାଇଥିଲି ଏବଂ ତା'ର ସମ୍ଭାବନାରେ ମୁଗ୍ଧଥିଲି, ଏଥିରେ ସନ୍ଦେହ ନାହିଁ । ଯଦି ଗୋଟିଏ ଭାଷା ମାଧ୍ୟମ ମୋତେ ସେତେବେଳେ ବ୍ୟବହାରଯୋଗ୍ୟ ମନେହେବାରୁ ମୁଁ ସେଥିରେ ଲେଖିଥିଲି, ସେଥିରେ କ'ଣ ଯାଏ-ଆସେ ? କିନ୍ତୁ ଓଡ଼ିଆ ସାହିତ୍ୟ ଓ ଭାଷାପ୍ରେମୀ ବନ୍ଧୁଙ୍କୁ ଏ ଯୁକ୍ତିରେ ପରାସ୍ତ କରାଯାଇପାରେ, ବୁଝେଇ ହୁଏ ନାହିଁ । ଏଣୁ ଅନିବାର୍ଯ୍ୟ ଭାବରେ ପରବର୍ତ୍ତୀ ପ୍ରଶ୍ନ ଆସେ ଆପଣ ଓଡ଼ିଆରେ କେବେ ପ୍ରଥମ ଲେଖିଲେ ।

ମୋର ଦଶବର୍ଷର ସାଧନାକୁ ଶୂନ ଘରେ ଥୋଇ ମୁଁ ଅଗତ୍ୟା ଉତ୍ତର ଦିଏ ଯେ ବାରିପଦାରେ ୧୯୬୧-୬୨ ବେଳକୁ ଓଡ଼ିଆରେ ଲେଖିଲି । ଯେଉଁଭଳି ନାଟକୀୟ ଢ଼ଙ୍ଗରେ ଓଡ଼ିଆ ସାହିତ୍ୟରେ ମୁଁ ପ୍ରବେଶ କଲି ତା' ବହୁବାର ବହୁ ସ୍ଥାନରେ କହିଛି । ମୋର ପ୍ରଥମ ଓଡ଼ିଆ ନିବନ୍ଧ 'ତ୍ରିଶଙ୍କୁର ସ୍ୱର୍ଗ' ପ୍ରକାଶ ପାଇଲା ଝଙ୍କାରରେ । ଗୋଟିଏ ଗିରାକଟା ଖାତାର ଦୁଇ ପୃଷ୍ଠା ଚିରି ସେଥିରେ ଏକ ପ୍ରକାର ବେଖାତିର ଢ଼ଙ୍ଗରେ

ଲେଖିଥିଲି ସେ ରଚନା । ତା'ର ମୂଳ ପାଣ୍ଡୁଲିପି ଦୈବାତ୍ ରହିଯାଇଛି ଏ ଯାଏଁ । ତା'ର ଫଟୋଚିତ୍ର ଏଥିରେ ସଂକଳିତ ହୋଇଛି–

ଓଡ଼ିଆରେ ଲେଖିଲି । ଛପାହେଲା ଏବଂ ତା'ପରେ ଲେଖିଚାଲିଲି ଆଜିକୁ ତିରିଶ ବର୍ଷକାଳ । ପଛକୁ ଚାହିଁବାର ଅବକାଶ ପାଇଲି ନାହିଁ - ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟର ଲାଇବ୍ରେରୀ ଏକଦା ରାଜାଙ୍କର ସନ୍ତରଣ ଏବଂ ପ୍ରମୋଦ କକ୍ଷ ଥିଲା । ସେଇଠି ସେଇ ଶୀତଳ ନୀରବତାରେ ନୂଆ ପୁରୁଣା ବହିମାନଙ୍କର ବାସ୍ନାରେ ଗଭୀର ମନନଧର୍ମୀ ରଚନା ଲେଖିବା ମୋ ପାଇଁ ଏକ ଅଭିନବ ଆନନ୍ଦ ଥିଲା । ଇଂରାଜୀରୁ ମୁକୁଳିବାକୁ ସମୟ ଲାଗିଲା । ସେଇ ସମୟରେ ଅଥେଲ୍ଲୋ ମନୋବୃତ୍ତି, ଶ'ଙ୍କ ନରକ ଅମରତ୍ୱର ଅଭିଶାପ ଲେଖିଥିଲି । ସେଥିରେ ଇଂରାଜୀ ସାହିତ୍ୟର ଛାପା ଆଦି ସ୍ପଷ୍ଟ ।

ତା'ପରେ ଅତି ସ୍ୱାଭାବିକ ଏବଂ ସହଜଭାବରେ ମୁଁ ମୋର ନିଜ ଭୂମି ଆବିଷ୍କାର କରିନେଲି ।

ହଁ, ଆପଣମାନଙ୍କ ଅନୁମାନ ସତ୍ୟ । ମୁଁ ଉପନିଷଦ ଗଭୀର ଗମ୍ଭୀର ଉଚ୍ଚାରଣକୁ ମୋ ଅଜାଣତରେ ଆପଣେଇ ନେଲି । ସାଧାରଣରେ ଅସାଧାରଣ ଦେଖିବାର ଗୋଟିଏ ଖୋଇ ମୋର ମୂଳରୁ ଥିଲା। ସେଇଟା ଏଇ ରଚନାର ଭାବ-ବିନ୍ୟାସରେ ପ୍ରକାଶିତ ହେଇଗଲା । କେମିତି ଟିକଏ ଦର୍ଶନ ଦର୍ଶନ ଭଳି ଲାଗିଲା ସେ ପ୍ରକାର ସାହିତ୍ୟ । ମୁଁ ଜାଣିଶୁଣି ସେମିତି ଠାଣି କାଢୁ ନଥିଲି । ସେ ଯେମିତି ଢ଼ଙ୍ଗରେ ହିଁ ପ୍ରକାଶିତ ହେଉଥିଲା । ଅତି ସ୍ୱାଭାବିକ ଭାବରେ -

ବାରିପଦାରେ ପାଞ୍ଚ ବର୍ଷ ମୋ ଜୀବନର ବୋଧହୁଏ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । ସେଇଠି ଓଡ଼ିଆରେ ରଚନା ଲେଖା ଆରମ୍ଭ କଲି । ସେଇଠି ଯନ୍ତ୍ରାରୂଢ଼ ଉପନ୍ୟାସ ୧୯୬୩ ମସିହାରେ ହିଁ ଲେଖାହେଲା । ଏଣେ ମନନଧର୍ମୀ ନିବନ୍ଧ ଏବଂ ଠିକ୍ ସେତିକିବେଳେ ଯନ୍ତ୍ରାରୂଢ଼ ଉପନ୍ୟାସ କେମିତି ମୁଁ ଲେଖିଲି ବୁଝିପାରୁନାହିଁ । ବୋଧହୁଏ ସେତେବେଳେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଦୁଇଟି ଜଗତରେ ମୁଁ ଏକକାଳୀନ ବିଚରଣ କରୁଥିଲି - ତାହା ଏବେ ବି ମୋ ପାଇଁ ଏକ ବିସ୍ମୟ । ଆଉ ଏକ ବିସ୍ମୟ ହେଲା ଯେ ଯନ୍ତ୍ରାରୂଢ଼ର ୨୧ଟି ଅନୁଚ୍ଛେଦ ମୁଁ ଏକୋଇଶ ଦିନରେ ହିଁ ଲେଖିଦେଲି । ପ୍ରତିଦିନ ଦିପହରେ ଗୋଟିଏ ଲେଖା ଲେଖିଦିଏ । ଅବଶ୍ୟ ପ୍ରଥମ ଅନୁଚ୍ଛେଦ ପରେ କିଛିଦିନ ବାଟ ଫିଟି ନଥିଲା । ତା'ପରେ ସମଗ୍ର ଉପନ୍ୟାସଟି ଏକରକମ ଗିରି ନିର୍ଝର ପରି ଝରିଗଲା - ବାରିପଦାରେ ଗୋଟିଏ ବତାସିଆ କୋହଲା ପାଗରେ ଛତାଧରି ମୋ ଘରେ ସ୍ୱର୍ଗତ ପରମାନନ୍ଦ ଆଚାର୍ଯ୍ୟ ଆସି ପହଞ୍ଚିଥିଲେ ରକ୍ତଚାପ ସତ୍ତ୍ୱେ, ଡାକ୍ତରଙ୍କ

ନିଷେଧ ସତ୍ତ୍ୱେ - କେବଳ ଏତିକି କହିବାକୁ 'ତମ ଲେଖା ଭଳି ୧୯୦୩ ମସିହାରେ ଆଉ ଜଣେ ବଙ୍ଗଳାରେ ଲେଖୁଥିଲେ । ଏ ଭାଷାଟା ହେଲା Poetic prose । ଧନ୍ୟ ସେ ପ୍ରାଜ୍ଞ ପୁରୁଷ। ଧନ୍ୟ ମୁଁ।। ସେ ଘଟଣାଟି ଅବିସ୍ମରଣୀୟ।

ବାରିପଦା ମୋର ଆଧ୍ୟାତ୍ମିକ ଜନ୍ମଭୂମି । ସେଇଠି ମୁଁ ଗୁରୁ, ଶାସ୍ତ୍ର, ମାର୍ଗ, ବନ୍ଧୁ, ସହରର ଐଶ୍ୱର୍ଯ୍ୟ ଏକାଥରକେ ପାଇଗଲି । ସେଭଳି ପାକଳ ବୟସରେ ଆତ୍ମିକ ଘନିଷ୍ଠତା ଥିବା ବନ୍ଧୁଟିଏ ପାଇବା ଅସ୍ୱାଭାବିକ । ମୁଁ କିନ୍ତୁ ପାଇଲି ହୃଦାନନ୍ଦ ରାୟ, ଜୀବନ ପାଣି, ବିହାରୀଲାଲ ପଟ୍ଟନାଏକ, ମହାପାତ୍ର ନୀଳମଣି ସାହୁ, ରାଧାକୃଷ୍ଣ ଭଞ୍ଜଙ୍କୁ ଏଇ ପର୍ଯ୍ୟାୟରେ । ସେଇଠି ଆମେ ପରସ୍ପରକୁ ପ୍ରଥମ ଦେଖିଲୁ ଅମୃତ ଦୃଷ୍ଟିରେ- ଏବଂ ଏଯାଏଁ ସେ ଘନିଷ୍ଠତା ସେହିପରି ନିବିଡ଼୍ ରହିଛି, କାଳ ପ୍ରବାହର ପ୍ରହାର ସତ୍ତ୍ୱେ । ପଣ୍ଡିଚେରୀର ଆତ୍ମିକ ଆହ୍ୱାନ ଏବେ ମଧ୍ୟ ବଳବତର, ଆସ୍ପୃହାର ଅଗ୍ନିଶିଖା ଏବେ ବି ଅନିର୍ବାଣ ।

ସେତେବେଳଠୁ ଏଯାଏଁ ମୁଁ କବିତା ଲେଖି ଆସିଛି ଓଡ଼ିଆରେ ଏବଂ ଇଂରାଜୀରେ । କେତେ ଖଣ୍ଡ ଲେଖିଛି ଗଣିନାହିଁ। ପ୍ରାୟ ପ୍ରକାଶ କରିନାହିଁ - ଥାଉ ସେସବୁ । ସବୁ କ'ଣ ଏମିତି ପ୍ରକାଶ କରବା ଅନିବାର୍ଯ୍ୟ । ଲେଖିଲାବେଳେ ଯେଉଁ ନିମଗ୍ନ ମୁହୂର୍ତ୍ତଗୁଡ଼ିଏ ପାଇଛି ସେତିକି କ'ଣ ଯଥେଷ୍ଟ ନୁହେ ? କବିତା, ଚିତ୍ରାଙ୍କନ ଏବଂ ଭାସ୍କର୍ଯ୍ୟ– ମୋର ଗୋପନ ସୃଷ୍ଟି । ଅନ୍ଧାରରେ ଫୁଟି ସେଇ ଅନ୍ଧାରରେ ମଉଳିଯିବା ହେନା ଫୁଲ। ବ୍ରହ୍ମପୁରରେ ପେନ୍‌ସିଲ ପେଣ୍ଟିଂ କରିଛି, ବାରିପଦାରେ ରଙ୍ଗିନ ଚିତ୍ର କରିଥିଲି ଉପେନ୍ଦ୍ରଭଞ୍ଜଙ୍କର। ଜୟପୁର ପୁରୀରେ ବେଶୀମାତ୍ରାରେ ଶବ୍ଦ ବଚନରେ ମୁଗ୍ଧ ଥିଲି ।-ତୈଳଚିତ୍ର ଆରମ୍ଭ କରି ଟିଟିଲାଗଡ଼ରେ, ୧୯୭୦-୭୧ବେଳକୁ । ସେମିତି ଭାସ୍କର୍ଯ୍ୟ ୧୯୫୨ରେ ମାର୍ବଲ କାଟି ମୂର୍ତ୍ତି କରିଥିଲି–ଲକ୍ଷ୍ନୌରେ । ରମେଶ ଦୁବେଙ୍କୁ ଦେଇଦେଲି । ପୁଣି କାଠରେ ମୂର୍ତ୍ତିକଲି ବାରିପଦାରେ । ପଥରରେ କାଟିଲି, ମାଟିରେ ଗଢ଼ିଲି– କ୍ରମେ 'ଗନୁ' ମୋ ଅପେକ୍ଷା ଅନେକ ଭଲ ଚିତ୍ର କଲା, ମୂର୍ତ୍ତି କଲା। ମୁଁ ତାରି ହାତରେ ମୋର ପୂର୍ଣ୍ଣତା ଅନୁଭବ କରୁଛି– ସେମିତି ସୁଯୋଗ ପାଇଲେ ସେ ଅପୂର୍ବ ସିଦ୍ଧି ଲାଭ କରିବ, ଈଶ୍ୱରଙ୍କ ଆଶୀର୍ବାଦ ଥିଲେ ସେ ମୋ ତୂଳୀ ନିହାଣ ମୁଗୁରର ଉତ୍ତରାଧିକାରିଣୀ । ସେମିତି ଭୂଷଣ ମୋ କଲମର ଉତ୍ତରାଧିକାରୀ । ସେ ଲେଖିଲାଣି, ଆହୁରି ଲେଖିବ । ତା'ର ଉଡ଼ାଣ ମୋଠୁ ଆଉ ଉଞ୍ଚକୁ ହେଲେ ମୁଁ ଖୁସିହେବି।

ଜୟପୁର ମୋର ଯୁଦ୍ଧଭୂମି । ମୁଁ ସେଇଠି ସଂଗ୍ରାମ କରିଛି ମାନସିକ, ଆଧ୍ୟାତ୍ମିକ କ୍ଷେତ୍ରରେ। ଯୁଦ୍ଧ ଅନେକ, ସିଦ୍ଧି ବି ଅନେକ, କିନ୍ତୁ ସେଇ ଅନୁପାତରେ କ୍ଷତ ଚିହ୍ନ ବି ଅନେକ। ମୋର ସମଗ୍ର ସ୍ମୃତି ସେଇଠି ଦୋହଲି ଯାଇଛି । ମୋର ସନ୍ତାନ କଷ୍ଟ

ହୋଇଛି, ଅକାଳ ବଜ୍ରପାତ ପରି । ମୁଁ ଶ୍ରୀ ଅରବିନ୍ଦଙ୍କ ଯୋଗରେ ନିମଗ୍ନ ଥିଲି । ବିସ୍ମୟକର ପ୍ରଭାବ ପଡ଼ିଥିଲା ଜୀବନରେ, ଚେତନାରେ, ମନରେ, ପ୍ରାଣରେ। ତା'ପରେ ହୁଏତ କେଉଁ ଏକ ବିଚିତ୍ର ବିଧାନରେ ମୋତେ ଅଗ୍ନିରେ ନିକ୍ଷେପ କରାଗଲା, ଜାଣିବାକୁ କେତେ ଖାଦ କେତେ ଖାଣ୍ଟି । ମୁଁ ସେଇଠି ଅନୁଭବ କରିଥିଲି କେମିତି ଧ୍ୟାନରେ ଉତ୍ତରଣ ହୁଏ, ଗଭୀର ଶୀତଳ ବିସ୍ତାରରେ ନିମଗ୍ନ ହୋଇ ହୁଏ, ଅନୁଭବ କରିଥିଲି କେମିତି ନିଦ୍ରା ନିଦ୍ରା ନୁହେଁ । କେମିତି କାମକ୍ରୋଧ ଶିଥିଳ ହୋଇଯାନ୍ତି, କେମିତି ଭୟ ଲୋପ ପାଇଯାଏ । କିନ୍ତୁ ସେଇଠି ଅନୁଭବ କଲି ମୃତ୍ୟୁ କ'ଣ, ଅଙ୍ଗଚ୍ଛେଦର ବେଦନା କ'ଣ। ଜ୍ୱାଳା କ'ଣ। –ସେମିତି ଛଟପଟ ଅବସ୍ଥାରେ ପଣ୍ଡିଚେରୀ ଯାଇଥିଲି ଅକ୍ଟୋବର ୧୭ ତାରିଖ ଦିନ। ଅନେକ କଳାମେଘ ଘୁଞ୍ଚିଗଲା। ମୁଁ କରୁଣାମୟୀଙ୍କ ଅମୃତ ସ୍ପର୍ଶ ଲାଭ କଲି । ଏ ଜନ୍ମ ସାର୍ଥକ ହୋଇଗଲା। ଫେରିଲି। କିନ୍ତୁ ବିଷଦଗ୍ଧ ହୋଇ ଫେରିଲି।

ମୋ ଭିତରେ ବିଦ୍ରୋହର ଅଗ୍ନି ଦହକି ଉଠିଥିଲା । ମୁଁ ସେତିକିବେଳେ 'ଦିଗବାଉଳା' ଲେଖିଥିଲି । ମୋ ଅନ୍ତରାତ୍ମାକୁ ପଚାରିଥିଲି ସବୁଠାରୁ ନିର୍ମମ ପ୍ରଶ୍ନ । ଉତ୍ତରରେ ନିଜେ ଲେଖିଥିଲି– 'ନିଜକୁ ନାସ୍ତିକ ମନେକରି' । ଓଃ ସେ ସମୟର ବିସ୍ଫୋରଣରେ ସବୁ ତୋରଣ ଭୁଶୁଡ଼ି ପଡ଼ିଥିଲା ।

ପୁରୀ ଆସିଲି । ବିକ୍ଷୋଭର ଆବର୍ତ୍ତ ଭିତରେ ସେଇଭଳି ମୁଁ ମଥିତ ହେଉଥାଏ । ପୁରୀ ମୋ ପାଇଁ ବେଦନାର ଭୂମି, ବିବିଧ ଯାତନାର ଭୂମି । ସେଇଠି ବୋଉକୁ ପକ୍ଷାଘାତ ହୋଇଗଲା । ପତ୍ନୀକୁ ଦୁରାରୋଗ୍ୟ ଆମାଶୟ ହୋଇଗଲା ବର୍ଷାବଧି । ମୋ ସଂସାର ଜଳିଲା ହୁତ୍ ହୁତ୍ ହୋଇ । ସବୁ ଦେଉଳ ଧୂଳିସାତ୍ ହୋଇଗଲା । ମୁଁ ସେଇଠି ସେ ଲାଭର ବିସ୍ଫୋଟରୁ ଆରମ୍ଭ କରିଥିଲି ଅସୂର୍ଯ ଉପନିବେଶ– ସେଇଠି ଯାବତୀୟ ଯାତନା ଭୋଗିଛି - ବକିଛି ଠାକୁରକୁ, ଡାକିଛି କାତର ହୋଇ । ସେଇଠୁ ଚାଲିଆସିଛି ଭୁବନେଶ୍ୱର।

ଭୁବନେଶ୍ୱର ଧ୍ୟାନ ଭୂମି, ହେଲେ ଦୁଃସାଧ୍ୟ । ଏଠି ସ୍ଥିର ରହିବା ତପସ୍ୟା, ସ୍ଥିର ରହିପାରିବା ସାମର୍ଥ୍ୟ । ମୁଁ ପୁରୀ ଭୁବନେଶ୍ୱରରେ ଅବିଶ୍ରାନ୍ତ ରଚନା ଲେଖୁଥାଏ । ଅନେକ ପାଠକ ପଢୁଥାନ୍ତି, ଶ୍ରଦ୍ଧା କରୁଥାନ୍ତି, ସେତେବେଳକୁ ଯନ୍ତାରୂଢ଼ ଦୃଷ୍ଟି ଆକର୍ଷଣ କରି ସାରିଥାଏ । ମୋ ଅଲକ୍ଷ୍ୟରେ ଅତି ଅପ୍ରତ୍ୟାଶିତ କ୍ଷେତ୍ରରେ ଈର୍ଷାର ଅଗ୍ନି ମଧ୍ୟ ଜଳିବା ଆରମ୍ଭ କରିସାରିଥାଏ ।

ଟିଟିଲାଗଡ଼ ପରିପଲ୍ଲୀର ଭୂମି, ତନ୍ତଭୂମି । ସେଇଠି 'ଅସୂର୍ଯ୍ୟ ଉପନିବେଶ' ଲେଖା ସରିଲା । ସେଇଠି ଇହକାଳ ପରକାଳ ଯୋଡ଼ିହେଲା ବିଚିତ୍ର ଢ଼ଙ୍ଗରେ । ସେଇଠି ପ୍ଲାଞ୍ଚେଟ୍ ଡାକିଥିଲି ଦୁଇବର୍ଷ । ଶତ୍ରୁପକ୍ଷ ମୋତେ ବ୍ୟଥିତ କରିଛନ୍ତି, ଆହତ ଅପମାନିତ କରିଛନ୍ତି । କିନ୍ତୁ ମିତ୍ର ପକ୍ଷ ତୋଳିଧରିଛନ୍ତି, ସେଇ ପରିମାଣରେ ଗୌରବିତ ମଣ୍ଡିତ କରିଛନ୍ତି ।

ଫେରିଲି ଭୁବନେଶ୍ୱରକୁ । ଜାଣିଗଲି ଯେ ମୁଁ ସ୍ୱସ୍ଥାନକୁ ଆସିଗଲି । ଏଠୁ ଆଉ ସ୍ଥାନାନ୍ତର ନାହିଁ । ଯଥାବିଧି କେବଳ ଲୋକାନ୍ତର ହିଁ ହେବ, ହେଲାବେଳେ । ଏଇଠି ଆରମ୍ଭ ହେଲା ଏକ ଘନୀଭୂତ ବିଚିତ୍ରବର୍ଣ୍ଣର ପର୍ଯ୍ୟାୟ । 'ରଥ ସପ୍ତକ' ଟିଟିଲାଗଡ଼ରୁ ଆରମ୍ଭ କରି ଆସିଥିଲି । 'କ୍ଷେତ୍ରଯିବି' ପରେ ଲେଖା ହେଲା, 'ହୋ ଭଗତେ', 'ପ୍ରଭୁବିଜେ' । ଏବଂ ତା'ପରେ ଆଉ ଏକ ବୀଜଭୂମି ଅଙ୍କୁରିତ ହେବାର ଅନୁଭବ କଲି । ଅନେକ ଅନୁଷ୍ଠାନ ଗଲି, ଅନେକ ଭାଷଣ ଦେଲି । ବହୁ ବ୍ୟକ୍ତି ବହୁ ବେଦନା, ବହୁ ପରିଚିତି ବହୁ ଅନୁରାଗ ଦେଇ ଖୁବ୍ ଦ୍ରୁତ ଗତିରେ ପାରିହେଲି ।

ଆରମ୍ଭକଲି ଗଳ୍ପଲେଖା ଏବଂ ଲେଖି ଚାଲିଲି । ବର୍ଷ ଦି'ଟା ତିନିଟା ଭିତରେ ୫୦/୬୦ ଗପ ଲେଖିଗଲି । ହୁରିପଡ଼ିଲା ରଥେ ଗଳ୍ପ ଲେଖିଲେ ବୋଲି ଏବଂ ମୋତେ ଭାରି ମହରଗ ପଡ଼ିଲା ସେ ବେଉସା । ମୋର ଯେଉଁମାନେ ଖୁବ୍ ଘନିଷ୍ଠ ପର୍ଯ୍ୟାୟରେ ଥିଲେ, ରାତାରାତି ଯୁଦ୍ଧ ଘୋଷଣା କଲେ । ବିଭିନ୍ନ ମହଲରେ ମୋର ନିନ୍ଦା ରଟିଲେ । ବହୁ କୁବଚନ କହିଲେ । ମୋତେ ଦେଖିଲେ କଥା କହିଲେ ନାହିଁ । ମୁଁ ବିସ୍ମିତ ହେଲି, ବ୍ୟଥିତ ହେଲି । ସେମାନଙ୍କ ଅନ୍ତର୍ଦାହ ମୁଁ ବୁଝିପାରିଲି । ଦେଖ ଭାଇ, ମୁଁ ତୁମର ପ୍ରତିଦ୍ୱନ୍ଦ୍ୱୀ ହେବାକୁ ଗଳ୍ପ ଲେଖିନାହିଁ । ମୋ ଆୟତରେ ଥିଲେ, ତୁମ ବନ୍ଧୁତା ଖାତିର୍‌ରେ ମୁଁ କଲମ ଛାଡ଼ି ବି ଦିଅନ୍ତି । ମୁଁ ଚାହେଁନା ମୋ ଗଳ୍ପଲେଖା ପାଇଁ ତୁମେ ଏତେ ସନ୍ତାପିତ ହୁଅ । ମୁଁ ଚାହେଁନା ତୁମେ ମୋର ଉପସ୍ଥିତିରେ ଏମିତି ଈର୍ଷା ଜର୍ଜର ହୁଅ । ସତ କହୁଛି ଭାଇ, ବିଶ୍ୱାସ କର ନକର ଗଳ୍ପ ଆସୁଛି ବୋଲି ଲେଖୁଛି । ତୁମେ ସବୁ କୋଉକାଳୁ ଲେଖୁଛ । ଯଶ ପ୍ରତିଷ୍ଠା ଅର୍ଜନ କରିଛ । ମୁଁ ସେଥିପାଇଁ ପ୍ରତିସ୍ପର୍ଦ୍ଧା କରୁନାହିଁ । କିନ୍ତୁ ଲେଖୁ ଲେଖୁ ଯଦି ତମେ ନ୍ୟୂନ ହୋଇଗଲ ମୋର ସେଥିକୁ ଚାରା ନାହିଁ – କାରଣ ମୋର ପ୍ରତିବଦ୍ଧତା ମୋ ମାଲିକ ପାଖରେ, ବାକ୍‌ଦେବୀ ପାଖରେ । ଏଠି କ'ଣ ହେଲା ନହେଲା, କିଏ ତାପିତ ହେଲା ବା ଆହ୍ଲାଦିତ ହେଲା, ସେକଥା ଦେଖିବାକୁ ମୋତେ ବେଳ କାହିଁ? ମୋର କିନ୍ତୁ ବିଶ୍ୱାସ ତମେ ଦିନେ ନିଶ୍ଚୟ ବୁଝିବ ଏବଂ ମୋତେ ଗଳ୍ପ ଲେଖିବାର ଅପରାଧ ଆଳରେ ଦଣ୍ଡଦେବାର

ଅସମୀଚୀନତା ପାଇଁ ଦୁଃଖିତ ହେବ । ତୁମ ପାଇ ମୋର ବନ୍ଧୁପଣ ସେପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିବ ଏବଂ ଅପେକ୍ଷା କରିଥିବ ।

ଓଡ଼ିଆ ସାହିତ୍ୟ ଏକାଡ଼େମୀରୁ ଲାଗ ଲାଗ ଦୁଇବର୍ଷ ପୁରସ୍କାର ପାଇଯିବାରୁ ଅନେକଙ୍କୁ ଅସୁଖ ଲାଗିଥିଲା । ତା' ପଛକୁ ସାରଳା ପୁରସ୍କାର ଯୋଡ଼ି ହୋଇଯିବାରୁ ଫାଟି ପଡ଼ିଲା କ୍ରୋଧ, ଘୃଣା ଏବଂ ଅସୂୟା । ସେ ସମୟର ପୁରସ୍କାର ଏବଂ ତିରସ୍କାର ମୋ ପାଇଁ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ, ସମ୍ପୂର୍ଣ୍ଣ ନୂଆ ଅନୁଭବ । ବର୍ତ୍ତମାନ ଦଶବର୍ଷ ପଛକୁ ଅନେଇଲେ ସମଗ୍ର ବିଷୟଟି ଏକ ବ୍ୟାଥା ବିନ୍ଦୁପରି ଅତୀତରେ ବୁଡ଼ି ରହିଛି, ଅସାହିତ୍ୟିକ ବିଚାରରେ ସାହିତ୍ୟ ଓ ସାହିତ୍ୟିକକୁ କର୍ଦମାକ୍ତ କରିବାର ଦୃଷ୍ଟାନ୍ତ ହୋଇ ରହିଛି ।

ଛାଡ଼ନ୍ତୁ, ସେଇଠି ସମୟ ନଷ୍ଟ କରିବାର ପ୍ରୟୋଜନ ନାହିଁ, ମୋର ଚିନ୍ତା ଅନ୍ୟତ୍ର । ମୁଁ ଚାହିଁଥିଲି କେତେ କ'ଣ କରିବାକୁ । କିନ୍ତୁ ହେଲା ତା'ଠାରୁ ଢ଼େର୍ କମ୍ । କାମ ବାକି ପଡ଼ିଛି - ଆଉରି ଷାଠିଏ ବର୍ଷ ପାଇଁ । ବିଶାଶହେବର୍ଷ ପରମାୟୁ ମୁଁ ଚାହେନା । ମୁଁ ଚାହେଁ ଆଉ ଯେତିକି ମିଳୁ ପଛେ ବ୍ୟର୍ଥ ନଯାଉ । ଯେଉଁଦିନ ଏ ଡାଳରୁ ଫୁଲ ଫୁଟିବା ସମାପ୍ତ ହୋଇଯିବ, ତା' ଆରଦିନ ସୂର୍ଯ୍ୟ ଉଇଁବା ପୂର୍ବରୁ ସେ ସ୍ୱୟଂ ସମାପ୍ତ ହୋଇଯାଉ, ନ ହେଲେ ସେ କ'ଣ ଜବାବ୍ ଦେବ ସବିତାକୁ ?

ଆପଣମାନେ ପ୍ରାୟ ସମସ୍ତେ ଯାହା ଚାହିଁଥିଲେ କହିବାକୁ ତାହା କହିପାରିଲେ ନାହିଁ ବୋଲି ମନ ଉଣା କଲା ପରି ଜଣାଯାଉଛନ୍ତି । କିନ୍ତୁ ଆଉ କ'ଣ ଆପଣ ଲେଖିଥାନ୍ତେ ? ଢ଼େର୍ ଲେଖିଛନ୍ତି । ଆପଣ କ'ଣ ଭାବୁଛନ୍ତି ଜୀବନର ଏ ପର୍ଯ୍ୟାୟରେ ମୁଁ କାହା ମତାମତକୁ ଅପେକ୍ଷା କରିଛି ? ଗୋଟାଏ ଦେଶକାଳରେ ଥାଇ କିଛି ଘନିଷ୍ଠତା, କିଛି ଅନ୍ତରଂଗତା, କିଛି ପରିଚୟ ଯଦି ପ୍ରକାଶ ପାଇଥାଏ ଆପଣଙ୍କ ଲେଖାରେ ତାହା ହିଁ ଯଥେଷ୍ଟ । ସେ ଦୁଇପଦରେ ପାଠକ ଆପଣଙ୍କୁ ଚିହ୍ନିବ ବେଶୀ, ମୋତେ କମ୍ । ସେଥିପାଇଁ ଆପଣ କ'ଣ କହିଲେ ତାହା ମୋ ପାଇଁ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଆପଣ ଯେ କହିଲେ, କହି ପାରିଲେ, କହିବାକୁ ଉଚିତ ମଣିଲେ ଏହା ମୋ ପାଇଁ ସମ୍ମାନର ବିଷୟ । ଯେଉଁମାନେ କହିବା ଉଚିତ, କହି ପାରିଲେ ନାହିଁ ବା କହିବାକୁ ଚାହିଁଲେ ନାହିଁ, ସେମାନଙ୍କୁ ଆଉ ଏପରି ଅବସର ମୋ ଜୀବଦ୍ଦଶାରେ ବୋଧହୁଏ ନ ମିଳିପାରେ । ସେମାନଙ୍କ ନାମୋଲ୍ଲେଖ କରୁନାହିଁ, କାରଣ ସେମାନଙ୍କୁ ମୁଁ ସମ୍ମାନ କରେ ଏବଂ ଏ ନଗଣ୍ୟ କର୍ମରେ ସେ ସହଯୋଗ କରି ପାରିଲେ ନାହିଁ ବୋଲି କେହି ତାଙ୍କୁ ଭୁଲ୍ ବୁଝାଯାଉ ଏକଥା ବି ମୁଁ ଚାହେଁ ନାହିଁ। କିନ୍ତୁ ଏହା ଅବଶ୍ୟ

ସତ ଯେ ଆଜିଠୁ ଆଉ ତିରିଶ ଚାଳିଶ ବର୍ଷ ପରେ ଭବିଷ୍ୟତର ପାଠକ ଏ ସଂକଳନରେ ସେମାନଙ୍କ ନାଁ ନ ଦେଖି ବିସ୍ମିତ ହୋଇପାରେ, ଯେମିତି ମୁଁ ସ୍ୱୟଂ ବିସ୍ମିତ ହେଉଛି ବର୍ତ୍ତମାନ।

ଷାଠିଏ ବର୍ଷ ପୂରିଯିବା ସେପରି କୌଣସି ବିଶିଷ୍ଟ ଘଟଣା ନୁହେଁ । ଗଛଭଳି ବଞ୍ଚି ଜାଣିଲେ ସତୁରି, ଅଶୀ, ନବେ, ଶହେ ଯାଏଁ ଗଡ଼େଇ ନେଇ ହେବ । ସେଇଟା ତ ଆୟୁଷ ନୁହେଁ । ମଣିଷ ଜନ୍ମ ପାଇଁ ପ୍ରକୃତ ଆୟୁଷ ମୃତ୍ୟୁ ପରେ ହିଁ ଗଣନା କରିବା କଥା ।

ଆପଣମାନେ ନିଜ ନିଜ ଢ଼ଙ୍ଗରେ ମୋତେ ସ୍ୱୀକାର କରି ଗୌରବିତ କରିଛନ୍ତି; ଆପଣଙ୍କ ସ୍ନେହ ଶ୍ରଦ୍ଧାରେ ମୁଁ ସ୍ନାନ କରିଛି, ଆଶୀର୍ବାଦରେ ଅଭିଷିକ୍ତ ହୋଇଛି, ଆପଣମାନଙ୍କ ଆଖି ଦର୍ପଣରେ ନିଜର ପ୍ରତିବିମ୍ବ ଦେଖି ଅଭିଭୂତ ହୋଇଛି । ଆପଣମାନେ ବରଂ ମୋର ଆୟୁଷ ନେଇ ଦୀର୍ଘାୟୁ ହୁଅନ୍ତୁ। ଆପଣଙ୍କ ମିତ୍ର ଦୃଷ୍ଟିରେ ଆହୁରି ଅନେକ ସାଧାରଣଙ୍କୁ ଅସାଧାରଣତ୍ୱ ପ୍ରଦାନ କରନ୍ତୁ । ମିତ୍ରସ୍ୟ ଚକ୍ଷୁଷି ସମୀକ୍ଷାମହେ ।



# ଆତ୍ମକଥନ – ୨

ଦଶବର୍ଷ ହେଇ ଦେଖୁ ଦେଖୁ ବିତିଗଲା ।

ଜୀବନରେ ସୁଖ ଅଛି ବୋଲି ବୋଧହୁଏ ଏମିତି ହୁ' ହୁ' ଚାଲିଗଲା ସମୟ । ନହେଲେ ତ' ମୁହାଣ ପାଖେଇ ଆସିଲେ ସୁଖ ଧିମେଇଯିବା କଥା ।

ଦଶବର୍ଷ ଏମିତି କିଛି ବେଶି ସମୟ ବି ନୁହେଁ ।

ଆଉ ବାଗେ ଦେଖିଲେ କମ୍ ବି ନୁହେଁ । ବେଳ ପଡ଼ିଲେ ଗୋଟାଏ ମିନିଟ୍‌ ବି ସୁନାଫଳ ପରି ଉଚ୍ଚ ଡାଳରେ ଓହଳି ଥିବ । ଆତୁର ଆତ୍ମା ଯେତେ ଓହଟି ହେଲେ ବି ହାତରେ ପତୁନଥିବ । ଆଖିରୁ ଆଲୁଅ ଲିଭିଯିବ ।

ଏମିତି ଦଶବର୍ଷ ସାରା ଅସୁମାରି ଘଟଣାରେ ଜଳଘଟ ପରି ନିରନ୍ଧ୍ର ଭରି ହୋଇ ରହିଛି । ସବୁ ଅଙ୍ଗେ ନିଭେଇବା କଥା । ତା' ଭିତରେ ସମ୍ମାନ, ଶ୍ରଦ୍ଧା, ଆପଣାପଣ, ସାଫଲ୍ୟ, ସାର୍ଥକତା । ତା' ଭିତରେ ପୁଣି ନିନ୍ଦା, ଅପବାଦ, ଅପମାନ । ବିଚିତ୍ର ଏ ଜୀବନବୃକ୍ଷ । ଯାର ଡାଳ ଡାଳକେ ଫଳ ଅଲଗା । ମିଠା, ଖଟା, କଷା ଫଳରେ ନଇଁ ରହିଛି ଡାଳମାନ ।

କିନ୍ତୁ ସବୁ ଫଳ ପାଚିଲା, ଟଳମଳ, ସୁନ୍ଦର । ଏପରି କି ମହାକାଳଫଳ ବି ରଙ୍ଗ ଟହଟହ । ମନେହୁଏ ପାକଳ ବୟସରେ ସବୁ ଏମିତି ନିଜ ନିଜ ରସରେ ଭରପୂର ହୋଇଯାନ୍ତି । ସୁନ୍ଦର ଦେଖାଯାଏ ଚଉଦ ଭୁବନ । ପୁରୁଣା ଅଭିଯୋଗର ଦାଢ଼ ମରିଯାଏ, ବୁଡ଼ିଯାଏ ପରିପୂର୍ଣ୍ଣତାର ଶୀତଳ ଜଳଧାରରେ । ସତକଥା । 'ଜୀବନ ପାତ୍ର ମୋ ଭରିଛ କେତେମତେ, ନଦେଲ ବୋଲି କିଏ କହିବି ସତେ ଆଉ !'

ଏତିକିବେଳେ ବୋଧହୁଏ ଅମୃତ ସଂଚରିଯାଏ ଡ଼ୋଳା ଉପରକୁ । ସେଥିପାଇଁ 'ମିତ୍ରସ୍ୟ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ / ମିତ୍ରସ୍ୟ ଚକ୍ଷୁଷା ସମିକ୍ଷାମହେ ।' ପ୍ରଥମଥର ପାଇଁ ଜୀବନରେ ପୃଥିବୀ ବର୍ତ୍ତୁଳ ଦିଶେ ଅମୃତ ଫଳ ପରି । କେହି ଜଣେ ବୁକୁରେ ପଦାଘାତ କଲେ ବି ତାଙ୍କୁ ଶ୍ରୀବତ୍ସଲାଞ୍ଛନ ରୂପେ ସ୍ୱୀକାରି ନେବାକୁ ପ୍ରବଣତା ଓ ପ୍ରସ୍ତୁତି ଆସିଯାଏ ।

କ'ଣ ଆଉ କହିବି ? ମୋର ପାଠକକୁଳ ତ' ମୋର କୁଟୁମ୍ବ । ଊଣାଅଧିକେ ଏ ଦଶବର୍ଷରେ ଘଟିଥିବା ଉଚ୍ଚ ଉଚ୍ଚ ଘଟନା କଥା ଜାଣନ୍ତି । କିନ୍ତୁ ଜାଣନ୍ତି ନାହିଁ

ଅନେକ କଥା, ଯାହା ତାଙ୍କ ଆଖିରେ ପଡ଼ିନାହିଁ । ଅଥଚ ମୋ ପାଇଁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଜାଣନ୍ତି ନାହିଁ, ସେ ଘଟନାମାନଙ୍କୁ ଘେରି ରହିଥିବା ମୋର ଘନିଷ୍ଠ ଅନୁଭବ । ମୁଁ ତ' କହି ନାହିଁ । କେମିତି ବା କହିବି । କହିପାରିଲେ ତ' ବ୍ୟାସ ହୋଇଥାନ୍ତି । ତାଙ୍କ ନିଜ ରକ୍ତର ଗାଥା ତ' ମହାଭାରତ ।

ତେବେ ଶୁଣନ୍ତୁ କିଛି କିଛି ।

୧୯୮୯ ଅକ୍ଟୋବର କୁମାର ପୂର୍ଣ୍ଣିମା – ମୋର ଷଷ୍ଟିପୂର୍ତ୍ତି ପାଇଁ ଆୟୋଜନ । ଆପଣାର ଲୋକସବୁ ଆସି ଏକାଠି ହେଲେ । ଉତ୍ସବ ଭଳି ଲାଗିଲା । କିନ୍ତୁ ମୋତେ ସମସ୍ତଙ୍କ ସାଙ୍ଗରେ ମିଶିଯିବାର ସୁଯୋଗ ନଥିଲା । ସମସ୍ତଙ୍କ କଥାରେ, ଇଙ୍ଗିତରେ, ହାବଭାବରେ ଶୁଭୁଥିଲା – ତମେ ବାରି ହେଇ ଠିଆ ହୁଅ । ତମକୁ ପରା ଷାଠିଏ ପୂରିଗଲା । ସେଥିପାଇଁ ପରା ଏ ଆୟୋଜନ ।

ସେମାନେ ମୋତେ ସ୍ୱାଗତ ଜଣେଇଥିଲେ, କି ସତର୍କ କରିଦେଉଥିଲେ, ଅଭିନନ୍ଦନ ଜଣାଉଥିଲେ କି ସମ୍ବେଦନା ଜଣାଉଥିଲେ ମୁଁ ଠିକ୍ ଧରି ପାରୁ ନଥିଲି । ବୋଧହୁଏ ଉଭୟରୁ କିଛି କିଛି ଘଟୁଥିଲା । ସେମାନଙ୍କ ପୁଷ୍ପଗୁଚ୍ଛ ସତ୍ତ୍ୱେ କରମର୍ଦ୍ଦନ ଓ ପିଠି ଥାପୁଡ଼ା ସତ୍ତ୍ୱେ ମୋତେ କେମିତି ଏକୁଟିଆ ଏକୁଟିଆ ଲାଗୁଥିଲା । କିଛି ମାତ୍ରାରେ ଡର ମାଡୁଥିଲା ।

ଡର ଏଇଥିପାଇଁ ଯେ ଏମାନେ ଆଉ କିଛି ସମୟ ପରେ ଯେ ଯାହା ଘରକୁ ଚାଲିଯିବେ, ଆମ ପରିବାର ପୁଅବୋହୂ ଝିଅ ଜ୍ୱାଇଁ ବି ଏକାଠି ଫେରିବେ । ସେମାନେ ସବୁ ନିଜ ନିଜ ଜାଗାକୁ ବାହୁଡ଼ିବାର ଯୋଜନା ପାଞ୍ଚିବେ । କିଏ ବ୍ରହ୍ମପୁର ଯିବ, କିଏ ଯିବ ବଲାଙ୍ଗି ।

ମୋ ମୁଣ୍ଡରେ ଯେଉଁ ଷଷ୍ଟିପୂର୍ତ୍ତିର ମୁକୁଟ ପିନ୍ଧାଇ ଦିଆଗଲା ସେ ଆଉ ଓହ୍ଲାଇ ହେବ ନାହିଁ । କିନ୍ତୁ ହୁଏତ ମୋତେ ଶୁଣେଇଲା ପରି ଅନ୍ଧାରରୁ କହୁଥାଏ କଲିଷଠା ଷାଠିଏ ପୂରିଗଲା ଭାଇ ! ଏଣିକି କାଳଠୁ କିଛି ବୟସ କରଜ ମାଗି ବଞ୍ଚିବ, ତା' ମର୍ଜି ସେ ଦେଇପାରେ ନ ଦେଇପାରେ ।

ଷଷ୍ଟିପୂର୍ତ୍ତି ପାଳନର ପରବର୍ତ୍ତୀ ଦଶପନ୍ଦର ଦିନ ମୁଁ ଆଚ୍ଛନ୍ନ ହୋଇ ରହିଲି ଗୋଟାଏ ପ୍ରକାର ଆକାଶିଆ ଅନୁଭବରେ । ସତ କଥା ତ ! ଏଣିକି କିଏ କହିବ କ'ଣ କେତେବେଳେ ହୋଇଯାଇପାରେ !

ହଁଅ । ହେଲେ ହବ । ଡେମ୍ଫ ଶୁଖିଗଲା ଉତାରୁ ପାଚିଲା ପତ୍ରକୁ ଝଡ଼ିଯିବାକୁ କେତେ ଘଡ଼ି । ଖାଲି ଟିକିଏ ପବନ ପତର ମୁଣ୍ଡରେ ବାଜିଲେ ହେଲା । ବାକି ସେ

ଅଭିନନ୍ଦନ ଗ୍ରନ୍ଥ କଥା – ଚର୍ଚ୍ଚା ସମସ୍ତଙ୍କ ମନକୁ ପାଇଗଲା । ଜଣେ ମରମୀ ବନ୍ଧୁ କହିଲେ 'ଏଭଳି ଚର୍ଚ୍ଚିତ ହେବାକୁ କାହାର ଭଲା ମନ ନହେବ ! ଷାଠିଏ ପୂରୁ କି ସତୁରି ପୂରୁ !'

'ଚର୍ଚ୍ଚାକୁ ଆଲୋଚନା ବିଚିତ୍ରାର ଏକ ନମୁନା ରୂପେ ବିଶ୍ୱବିଦ୍ୟାଳୟର ଗ୍ରନ୍ଥାଗାରରେ ରଖାଗଲା ! କିଏ କେତେବେଳେ ଦେଖିବାକୁ !'

କିନ୍ତୁ ସେଥିରେ କିଛି ଲୋକ ଅହନ୍ତା କଲେ । ଯାଦୁ ସିଆଡୁ କେତେ କଥା କହିଲେ । ମୁଁ ଆଦୌ ବିସ୍ମିତ ହେଲି ନାହିଁ । କାରଣ ଅବିମିଶ୍ର ସୁଖ ଟିକିଏ ମୁଁ କେବେ ପାଇନାହିଁ । କେଜାଣି କାହିଁକି ମୋର ବିପକ୍ଷଟିଏ ସବୁବେଳେ ପ୍ରତିବାଦ କରୁଛି, କୋଳାହଳ କରୁଛି, ମୋର ଯୋଗ୍ୟତାକୁ ସବୁବେଳେ ପ୍ରଶ୍ନ କରିଛି ମୋର ପାରିଲାପଣିଆ ସାଙ୍ଗରେ ମୋର ସଙ୍କୋଚପଣିଆ ମୋର ମଣିଷପଣିଆକୁ ବି ପ୍ରଶ୍ନ କରିଚି । ମନ ଛିଃ ହୋଇଯାଇଛି । କାନ୍ଧରୁ ସମ୍ମାନର ଚାଦରଖଣ୍ଡ କାଢ଼ି ପକେଇ ଦେବାକୁ ଇଚ୍ଛା କରିଚି। କିନ୍ତୁ ସେଭଳି କିଛି କାର୍ଯ୍ୟକରି ମୁଁ ବିପକ୍ଷର ମନୋବାଂଛା ପୂର୍ଣ୍ଣ କରି ନାହିଁ ସତ ଯେତେ ସବୁ ମାନ ଅପମାନକୁ ଗୋଟିଏ ଦୀର୍ଘଶ୍ୱାସରେ ଦୂରକୁ ଆଡ଼େଇ ଦେଇଛି ।

ଛାଡ଼, ଷଷ୍ଠିପୂର୍ତ୍ତି ହେଲା ନ ହେଲା, 'ଚର୍ଚ୍ଚା' ଛପା ହେଲା ନ ହେଲା, କ'ଣ ଥାଏ ସେଥିରେ ? ମୋର ଆଚ୍ଛନ୍ନ ଭାବ କଟିଗଲା, ଭୟ ବିଷାଦ ଦୁଃଖ ଅପସରିଗଲା । ସହଜ ସ୍ୱାଭାବିକ ନିଃଶ୍ୱାସ ପ୍ରଶ୍ୱାସ ଚଳିଲା । ଦିନ ରାତି ହେଲା, ସରଳ ହେଇଗଲା ଜୀବନ ପ୍ରବାହ ।

କେଜାଣି କାହିଁକି ଅନୁଷ୍ଠାନ ଅପେକ୍ଷା ବ୍ୟକ୍ତିକୁ ମୁଁ ବେଶି ଗୁରୁତ୍ୱ ଦେଇ ଆସିଛି । ଲୋକେ ଅନୁଷ୍ଠାନକୁ ଆଦରି ନେଇଛନ୍ତି, ତାକୁ ବ୍ୟବହର କରି ଲାଭବାନ ହେଉଛନ୍ତି । ମୁଁ କିନ୍ତୁ ମଣିଷଟିକୁ ସ୍ୱୀକାର କରିଛି । ଥରେ କାହାକୁ ନିଜ ବେଢ଼ା ଭିତରେ ପାଇଲେ, ତା ମୁଲାହିଜାରେ ମୁଁ ନିର୍ବିଚାର ଆଗେଇ ଯାଇଛି । ବ୍ୟକ୍ତିଗତ ପରିଚୟ ଆଢୁଆଳରେ ସେମାନେ ମୋତେ ବ୍ୟବହାର କରିଛନ୍ତି । ଅଜଣା ମଞ୍ଚମାନଙ୍କରେ ଠିଆ କରେଇଛନ୍ତି । ତଥାପି ମୁଁ ମୋର ଏ ଦୁର୍ବଳ ବିନ୍ଦୁଟିକୁ ମୋ ଚରିତ୍ରରୁ ପୋଛି ପାରିନାହିଁ । ଫଳରେ ଦଦରା ଜିପ୍‌ରେ ବସି ବହୁକଷ୍ଟରେ ଅଗମ୍ୟ ଅଞ୍ଚଳକୁ ଭାଷଣ ଦେବାକୁ ଯାଇଛି । ବାଟରେ ଗାଡ଼ି ଅଚଳ ହେବାରୁ ଆଣ୍ଠୁଯାଏ ଲୁଗା ଟେକି କାଦୁଅ ନାଳ ପାରି ହେଇଛି । ପୂର୍ବ ଦିନ ରାତିରେ ଝଡ଼ ବର୍ଷାରେ ମଞ୍ଚ ସାଜସଜା ଉଲୁରି ଯାଇଛି । ଆୟୋଜକ ଗୋଟାଏ କ୍ଲାସରୁମ୍‌ରେ ଲଣ୍ଠନ ଜାଳି ତିନି ଜଣ ଲୋକ ଯୋଗାଡ଼ କରିଛନ୍ତି । କହିଛନ୍ତି ଆଲୋଚନା କରିବାକୁ । ମୁଁ ହସିବି କି କାନ୍ଦିବି ଜାଣି

ପାରିଲି ନାହିଁ । ସେ ବୋଧହୁଏ ମୋ ପାଇଁ ରାସ୍ତା ଖର୍ଚ୍ଚ କରିଥିବା ହେତୁ ସେତକ କୌଣସି ପ୍ରକାରେ ଆଦାୟ କରିବାକୁ ଚାହିଁଛନ୍ତି । ବନ୍ଧୁ ଜଣକ ଅଧ୍ୟାପକ । ଖୁବ୍ ସମ୍ମାନ କଲାଭଳି କଥା କହି ମତେ ଭଳେଇ ନେଇଥାନ୍ତି । ମୁଁ ସେଇଠି ଖୁବ୍ ରାଗି ଯାଇ ସମସ୍ତଙ୍କ ଚୌଦପୁରୁଷକୁ ଶୋଧିଲି । ସେମାନେ କହିଲେ – ଭାଷଣ ଖୁବ୍ ଭଲ ହେଲା । ରାଜଧାନୀରେ; ହେଇଥିଲେ ଚହଳ ପଡ଼ିଯାଇଥାନ୍ତା ।

ରାଜଧାନୀରେ ଢ଼େର୍ ଭାଷଣ ଦେଇଛି । କେବେ ଚହଳ ପଡ଼ିନାହିଁ । ହଁ ଏମିତି କିଛି ଶ୍ରୋତା, ଭାଷଣପରେ ପାଖେଇ ଆସିଛନ୍ତି । କ'ଣ କହିବେ ହୋଇ କହିନାହାନ୍ତି । ମୁଁ ତାଙ୍କ ଆଖିକୁ ଚାହିଁ ଅନୁମାନ କରିଛି ଯେ ସେମାନେ ପ୍ରଶଂସା କରିବାକୁ ଚାହୁଁଛନ୍ତି । ଭାବ ଗଦ୍‌ଗଦ ହୋଇଛନ୍ତି । ଚହଳ ପଡ଼ିଛି ବାହାରେ । କଲିକତାରେ, ଋଷିକେଶରେ । ସେଇଠି ବିଶେଷ ଘଟଣା ଘଟିଲେ ଚହଳ ପଡ଼େ । ଓଡ଼ିଶାରେ ଲୋକେ ଭାରି ତରକା । ମୁହଁ ଫିଟାନ୍ତି ନାହିଁ । କାଳେ ପ୍ରଶଂସା କରିଦେଲେ ସେ ଲୋକଟା ବିଖ୍ୟାତ ହୋଇଯିବ ! ସବୁ ଢ଼ୋକି ଦିଅନ୍ତି ; ହସ, କାନ୍ଦ, ଅନୁଭବ, ଉଲ୍ଲାସ । ମୁଦା ମାଠିଆ ପରି ଟଳମଳ ହେଉଥାନ୍ତି, କିନ୍ତୁ ପାଟି ଫିଟାନ୍ତି ନାହିଁ । ଭାରି ଭାବପ୍ରବଣ ଲୋକଗୁଡ଼ିଏ । ଡରକୁଳା ଧକପଚିଆ, କୁତୁର୍ଫିଆ ଲୋକ । ତାଙ୍କୁ ମୁଁ ଜାଣେ, ବୁଝେ । ତାଙ୍କ ପାଇଁ ଦୁଃଖ କରେ, ପ୍ରାର୍ଥନା କରେ । ଏଇ ଗୁଣ ହେତୁ ବିଶ୍ୱନାଥ କବିରାଜଙ୍କୁ, ଜୟଦେବଙ୍କୁ, ଶ୍ରୀଧର ସ୍ୱାମୀଙ୍କୁ, ବଳଦେବଙ୍କୁ ଓଡ଼ିଆ କହି ଦେବାକୁ ଏମାନଙ୍କ ଲେଉଟେ ନାହିଁ । ପଠାଣିସାମନ୍ତଙ୍କୁ, ଉପେନ୍ଦ୍ର ଭଞ୍ଜଙ୍କୁ ବୁକୁବାଢ଼େଇ ନିଜର ବୋଲି ଓଡ଼ିଶା ଭିତରେ କିମ୍ବା ବାହାରେ ଜାହିର କରିପାରନ୍ତି ନାହିଁ । ଛାଡ଼ ଏ ଦୁଃଖ ନକହିଲେ ଭଲ । ମୁଁ ତ ନିଜେ ଗୋଟିଏ ମୁଦାମୁହାଁ ଦୁର୍ବଳ ଓଡ଼ିଆଟାଏ । ମୁଁ କ'ଣ କରିଛି ଯେ ଆଉ କାହାକୁ ଦୋଷ ଦେବି ? କେବେ ଓଡ଼ିଆଙ୍କ ପାଟି ଫିଟିବ, ଡେଣା ମେଲିବ, ଦାରିଦ୍ର୍ୟଦୋଷ, କାର୍ପଣ୍ୟଦୋଷ କଟିବ କେଜାଣି ! ଶହେ ବର୍ଷପରେ ବି ବୀଣାପାଣିଙ୍କ କୃପା ଏ ଉତ୍କଳଭୂମିରେ ଉଣା ଜଣାପଡୁଛି ।

କିନ୍ତୁ ମାନିବାକୁ ମୋର କୁଣ୍ଠା ନାହିଁ ଯେ ବଙ୍ଗାଳୀ ଯେମିତି ଅବଜ୍ଞା କରି ଜାଣନ୍ତି ସେମିତି ଆଦର ବି କରି ଜାଣନ୍ତି । ୧୯୯୩ ମସିହା କଥା । ସ୍ୱାମୀ ବିବେକାନନ୍ଦଙ୍କ ଚିକାଗୋ ଭାଷଣର ଶତ ବାର୍ଷିକୀ ପାଳନ ହେଉଥାଏ କଲିକତାରେ । ପୃଥିବୀର ବହୁ ବିଶିଷ୍ଟ ବିଦ୍ୱାନମାନଙ୍କର ସମାବେଶ ହୋଇଥାଏ । ଚାରିଦିନର ଉତ୍ସବ । ସେପ୍ଟେମ୍ବର ୧୧, ୧୨, ୧୮, ୧୯ ତାରିଖ । ଭାରତର ଯେଉଁ କେତେଜଣ ବକ୍ତାଙ୍କୁ ଡକାଯାଇଥିଲା, ସେଭିତରେ ମୁଁ ଥିଲି । ଭୁବନେଶ୍ୱର ରାମକୃଷ୍ଣ ମିଶନ ପରିସରରେ ବହୁବାର କହିବାର ଅବକାଶରେ ମୁଁ ବୋଧହୁଏ ସେମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲି ।

କଲିକତା ବିମାନବନ୍ଦରରୁ ମୋତେ ନେଇ ରାମକୃଷ୍ଣ ଇନଷ୍ଟିଚ୍ୟୁଟ୍ ଅଫ କଲଚରର ଅତିଥିଶାଳାରେ ମର୍ଯ୍ୟାଦା ସହକାରେ ରଖାଗଲା । ରାତି ପାହିଲେ ୧୧ ତାରିଖ । ସେଦିନ ରାମକୃଷ୍ଣ ମିଶନର ସଭାପତି ସ୍ୱାମୀ ଭୂତେଶାନନ୍ଦ, ଉପସଭାପତି ରଙ୍ଗନାଥାନନ୍ଦ, ଭାରତର ରାଷ୍ଟ୍ରପତି ଶଙ୍କର ଦୟାଳ ଶର୍ମା, କେନ୍ଦ୍ରମନ୍ତ୍ରୀ ଅର୍ଜୁନ ସିଂ, ପଶ୍ଚିମବଙ୍ଗ ରାଜ୍ୟପାଳ କେ.ଭି. ରଘୁନାଥ ରେଡ୍ଡି ଆଦିଙ୍କ ଗହଣରେ ନେତାଜୀ ଷ୍ଟାଡ଼ିଅମର ୧୨୦୦୦ ଶ୍ରୋତାଙ୍କ ସମକ୍ଷରେ ମହାସଭାର ଉଦ୍‌ଘାଟନ ଉତ୍ସବ ଦେଖି ଏବଂ ସାରା ପୃଥିବୀରୁ ଅଷ୍ଟ୍ରେଲିଆ, କାନାଡ଼ା, ଚାଇନା, ଫିନ୍‌ଲାଣ୍ଡ, ଫ୍ରାନ୍ସ, ଜର୍ମାନୀ, ହଲାଣ୍ଡ, ଇସ୍ରାଏଲ, ଜାପାନ, ମାଲେସିଆ, ନେଦରଲ୍ୟାଣ୍ଡ, ନିଉଜିଲାଣ୍ଡ, ରୋମାନିଆ, ରୁଷିଆ, ଶ୍ରୀଲଙ୍କା, ତୁର୍କି, ଆମେରିକା, ଇଂଲଣ୍ଡ, ଭିଏତ୍‌ନାମ, ବାଂଲାଦେଶ ଆଦିରୁ ସମାଗତ ଶତାଧିକ ବିଦ୍ୱାନ୍ ଓ ପ୍ରାୟ ସମସ୍ତ ଧର୍ମବିଶ୍ୱାସର ପ୍ରତିନିଧିଙ୍କୁ ଦେଖି ମୋର ଅସ୍ମିତା ବିଷୟରେ ଗ୍ଲାନିବୋଧ ଦେଖା ଦେଲା । ରହିରହି ଭୟ ସଂଚାର ହେଲା ।

ତା' ଆରଦିନ ପ୍ରଥମ ଅଧିବେଶନରେ ମୋର କହିବାର ପାଳି । ସେତେବେଳକୁ ସିରାକ୍ୟୁଜ୍ ୟୁନିଭର୍ସିଟିର ହୁଷ୍ଟନ ସ୍ମିଥ୍, ବିଶ୍ୱ ଭାରତୀର ପ୍ରାକ୍ତନ କୁଳପତି ପ୍ରଫେସର ଅଶିନ୍ ଦାସଗୁପ୍ତ, କାମ୍ବ୍ରିଜର ଡକ୍ଟର ଜୁଲିୟସ ଲପ୍‌ନର, ପ୍ରଫେସର ଅମର୍ତ୍ତ୍ୟ ସେନ୍, ହାମ୍ବୋଲ୍ଟ ବିଶ୍ୱବିଦ୍ୟାଳୟ ଜର୍ମାନୀର ହିଲଟ୍ରଡ୍ ରଷ୍ଟୋ, ଫିନ୍‌ଲାଣ୍ଡର କୟା ବ୍ରାଣ୍ଡ୍ ଆଦିଙ୍କୁ ମୁଁ ଶୁଣିସାରିଥାଏ । ସେମାନେ ଥାକ ଥାକ ନିବନ୍ଧ ପ୍ରସ୍ତୁତ କରି ଆଣିଥାନ୍ତି ।

୧୧ ତାରିଖ ରାତିରେ ମୋର ଘୋର ମନସ୍ତାପ ହେଲା । ମନେହେଲା ମୋ ଭଳି ବେକୁବ୍ ପୃଥିବୀରେ ନ ଥିବେ । ଓଡ଼ିଶାରେ ଆପଣା ଲୋକଙ୍କ ଗହଣରେ ମୁଁ କେବେ ଲିଖିତ ଭାଷଣ ପଢ଼ିନାହିଁ । ଆଗରୁ ବିଷୟ ଉପରେ ଚିନ୍ତାଗୁଡ଼ିକୁ ମନେ ମନେ ସଂହତି, ବିନ୍ୟସ୍ତ କରି ନେଇଥାଏ । ଏମିତି ଠିଆହୋଇ ବାଗ୍‌ଦେବୀଙ୍କୁ ସ୍ମରଣ କରି କହିଥାଏ । କେବେ ଲୋକହସା ହେବାକୁ ପଡ଼ିନାହିଁ । ବକ୍ତା ବୋଲି କିଛି ସୁଖ୍ୟାତି ନ ମିଳିଛି ତା' ବି ନୁହେଁ । ହେଲେ କଲିକତାର ସେ ଭବ୍ୟ ପରିବେଶରେ ଶେଷକୁ ମୋତେ ଧୂଳିସାତ୍ ହେବାର ବୋଧେ ଯୋଗ ଥିଲା । ମୋତେ ରାତିସାରା ନିଦ ହେଲା ନାହିଁ । ବହୁବାର ଚେଷ୍ଟା କରିଛି ଦଶମିନିଟିଆ ଭାଷଣଟିଏ ଲେଖିଦେଲେ ପଢ଼ି ଦିଅନ୍ତି । ହେଲା ନାହିଁ ।

୧୨ ତାରିଖ । ସକାଳ ଅଧିବେଶନ । ସେଦିନ ପ୍ରାୟ ୧୪୦୦୦ ଶ୍ରୋତା । ବାହାରେ ବର୍ଷା । ମୁଁ ମଞ୍ଚ ଉପରକୁ ଚଢ଼ିଲାବେଳେ ମୋ ମୁଣ୍ଡ ଫାଙ୍କା ହୋଇଗଲା । ମୋ ନାଁ ବୋଧେ ପଚାରିଲେ କହିପାରିନଥାନ୍ତି । ଆଖି ବୁଜି ସ୍ଥିର ହେବାକୁ ଚେଷ୍ଟା କଲି । ଯାହା କହିବାକୁ ଭାବିଥିଲି ମନେ ପକାଇଲି । ସ୍ୱାମୀଜୀଙ୍କ ଭବ୍ୟ ରୂପ ମନେ

ପକେଇଲି । ବାକ୍‌ଦେବୀଙ୍କୁ ସ୍ମରଣ କଲି । ମୋ ନାଁ ଡକା ହେଲା । ଧଳା ଧୋତି ପଞ୍ଜାବି ପିନ୍ଧି ଭାଷଣ ପୀଢ଼ ଉପରେ ଠିଆ ହେଲେ ଭୁଲିଗଲି ମୁଁ କେଉଁଠି ଅଛି, କ'ଣ କହୁଛି । କିନ୍ତୁ ଇଂରାଜୀରେ କହିଗଲି, ବିଷୟ ଥିଲା 'ସ୍ୱାମୀଜୀଙ୍କ ମତରେ ବିଶ୍ୱସଂହତି, ସମସ୍ୟା ଓ ସମ୍ଭାବନା ।'

ଦଶ ବାର ମିନିଟ୍‌ର ଭାଷଣ, ମଝିରେ ମଝିରେ କରତାଳି ମୋ କାନରେ ବାଜିଛି । ତା'ପରେ ପରେ ସଭାର ସ୍ତବ୍ଧତା ବି ମୋତେ ଘେରି ଯାଇଛି । ଯେତେବେଳେ ଗୋଟିଏ ବେଦମନ୍ତ୍ର ସହିତ ମୁଁ ଉପସଂହାର କଲି, ମୁଁ ଦେଖିଲି ସମସ୍ତେ ଠିଆ ହୋଇ କରତାଳିରେ ଏ ବକ୍ତାଟିକୁ ସମ୍ବର୍ଦ୍ଧିତ କରୁଛନ୍ତି । ସେ ସମୟର କୃତକୃତ୍ୟତା ଜୀବନର ଏକ ଅବିସ୍ମରଣୀୟ ସାଫଲ୍ୟ ଓ ସାର୍ଥକତା ମୋର କିଛି ମନେ ନାହିଁ । ସେ ସବୁ ବୋଧେ ମୋର ଅନୁଭବକୁ ଆସିନଥିଲା । ପରେ ଆସିଲାବେଳେ ବାରଂବାର ମନେ ପଡୁଥିଲା । ଏବେ ବି ମନେ ପଡ଼ିଲେ ରୋମ ଟାକୁରି ଉଠିଛି 'ତୋମାର ମତନ୍ ଦୟାଲ ବନ୍ଧୁ ଆର୍ ପାବ ନା !' କିଏ ମୋତେ ସେ ପ୍ରଳୟ ଜଳରେ ପିଠି ପତେଇ ଧରିନେଲା ସମସ୍ତଙ୍କ ଅଲକ୍ଷ୍ୟରେ । ଶୁଣିଥିଲି କିନ୍ତୁ 'ସେଦିନ ଜାଣିଲି, ଅନୁଭବ କଲି ଆଉଜି ଜାଣିଲେ ସେ ସଂଭାଳି ଜାଣେ ।

ମୂଳ କଥାକୁ ଫେରିଆସୁଛି। ସଭା ପରେ ସମଗ୍ର ସଭାର କେନ୍ଦ୍ରରେ ମୋତେ ବହୁ ଶ୍ରଦ୍ଧା, ସମ୍ମାନ, ଅଭିନନ୍ଦନ ମିଳିଲା । ବହୁ 'ଅଟୋଗ୍ରାଫ ଦେବାକୁ ପଡ଼ିଲା । ବେଲୁର୍ ମଠର ମାନନୀୟ ସ୍ୱାମୀଜୀଗଣଙ୍କ ଶ୍ରଦ୍ଧାଶ୍ଳେଷ ଲାଭ କରି ନିଜକୁ ଧନ୍ୟ ମଣିଲି । ଲୋକେଶ୍ୱରାନନ୍ଦଜୀ ମହାରାଜ ମୋ କାନ୍ଧରେ ହାତ ରଖି ମୋତେ ସମସ୍ତଙ୍କ ସହିତ ପରିଚୟ କରି ଦେଉଥାନ୍ତି । ଏତେ ଗହ ଗହ ପ୍ରଶଂସା, ସମାଦର, ସେତେବେଳେ ରଖିବାକୁ ମୋ ଭିତରେ ଥାନ ନଥିଲା, ଏବେ ବି ନାହିଁ । ବେଲୁର୍ ମଠ ଗଲୁ । ସେଇଠି ତା' ଆରଦିନ ମଧ ଗୁଞ୍ଜୁରୁଥାଏ ସେ କ୍ଷୁଦ୍ର ଭାଷଣଟିର ପ୍ରଶଂସା । ଏ ଅନୁଭବଟି ନିଟୋଳ ମୁକ୍ତା ଫଳ ପରି ଟଳମଳ – ଏହାର ତୁଳନା ନାହିଁ ।

ଯା ପୂର୍ବରୁ ଋଷିକେଶ ଯାଇଛି, ସ୍ୱାମୀ ଶିବାନନ୍ଦଙ୍କ ୧୨୫ ତମ ଜନ୍ମଦିବସ ଉପଲକ୍ଷେ । ସ୍ୱାମୀ ଶିବାନନ୍ଦଙ୍କର ଅନେକ ଶ୍ରଦ୍ଧା ଓ ଆଶୀର୍ବାଦ ଲାଭ କରିଛି । ସ୍ୱାମୀ ଆତ୍ମାନନ୍ଦଜୀ ମହାରାଜ, ପଣ୍ଡିଚେରୀର ମାଧବ ପଣ୍ଡିତଙ୍କ ଗହଣରେ ଭାଷଣ ଦେଇଛି । ସେଇଠି ମୋର ଅଧାପକୀୟ ସ୍ଥିତିରେ ମୁଁ ଆତ୍ମସ୍ଥ ଓ ଆତ୍ମସଚେତନ ରହିଛି । ଢ଼େର୍ ପ୍ରଶଂସା ପାଇଛି ।

ଯା'ପରେ ଲକ୍ଷ୍ନୌ, ପାଟନା (୧୯୯୪) ରାମକ୍ରିଷ୍ଣ ମିଶନ୍‌କୁ ଯାଇ ଭାଷଣ ଦେଇଛି । ରାମକ୍ରିଷ୍ଣ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କଲଚର୍‌ରେ ବାର୍ଷିକ ୧୯୯୪ ଉତ୍ସବରେ

ଭାଷଣ ଦେଇଛି । ବହୁ ସାଫଲ୍ୟ ଓ ସମ୍ମାନ ମିଳିଛି । ହାଇଦ୍ରାବାଦ ୧୯୯୬ରେ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହ୍ୟୁମାନ୍ ଭେଲ୍ୟୁଜ୍‌ରେ ଶ୍ରୀ ଅରବିନ୍ଦଙ୍କ ବିଷୟରେ ଦୀର୍ଘ ଦୁଇଟି ଭାଷଣ ପ୍ରଦାନ କରିଛି । ଏ ସବୁ ଠିକ୍ । ଭାଷଣ ଭଲ । ଶ୍ରୋତା ଭଲ । ଉତ୍ତମ ସମାଦର, ସମ୍ମାନ ଶ୍ରଦ୍ଧା ।

କିନ୍ତୁ ୧୯୯୩ ସେପ୍ଟେମ୍ବର ୧୨ ତାରିଖ ପୂର୍ବାହ୍ନରେ ଯାହା ଘଟିଲା ଓ ତା'ପରେ ଯାହା ମିଳିଲା ତାର ତୁଳନା ନାହିଁ ।

ଅବଶ୍ୟ କହିବା ଓ ଲେଖିବା ଅଲଗା ଅଲଗା ଅନୁଭବ, ଯେପରି ଶୁଣିବା ଓ ପଢ଼ିବା ମଧ୍ୟ ସ୍ୱତନ୍ତ୍ର ଅନୁଭବ । ପଠିତ ନିବନ୍ଧକୁ ମୁଁ କହିବାର ମର୍ଯ୍ୟାଦା ଦେଉ ନାହିଁ । କହିବାବେଳେ ଏକତ୍ର ତିନିଟା ଶାଖାରେ ଫଳ ଫଳେ । ବକ୍ତା ନିମଗ୍ନ ରହିଥିଲାବେଳେ ଚିନ୍ତା କରୁଥାଏ ବଛା ବଛା ଶବ୍ଦରେ ପ୍ରକାଶ କରୁଥାଏ, ଯାହା କହିଲା ତାକୁ ମନେରଖିଥାଏ, ଆଗରେ ଶ୍ରୋତାଙ୍କୁ ଅନେଇଥାଏ । କଥା ଲାଖରେ ବାଜୁଛି ନା ନାହିଁ ଲକ୍ଷ୍ୟ କରୁଥାଏ, ନିଜକୁ ନିଜେ ପ୍ରଶ୍ନ କରୁଥାଏ, ଠିକଣା କଥା ଠିକଣା ବାଗରେ କହିଲା ନା ନାହିଁ । କଥା ଅଯଥା ଫେଣେଇଲା, ନା ଯେତିକି ଯେମିତି କହିବା କଥା କହି ପାରିଲା । ତା'ର ସ୍ୱର, ତା'ର ଶବ୍ଦ ଯୋଜନା, ତା'ର ବକ୍ତବ୍ୟ, ତା'ର ମୌଳିକତା ତା'ର ରସବୋଧ ଓ ରସିକତା ଏବଂ ଏ ସମସ୍ତ ଓ ଆହୁରି ଅନେକ କିଛିର ତାତ୍‌କାଳିକତା ହିଁ ତାକୁ ବାଗ୍ମୀ କରିପାରେ । ମିତଂ ଚ ସାରଂ କହିବାରେ ସାହାଯ୍ୟ କରିପାରେ ।

କିନ୍ତୁ ସତକୁ ସତ କ'ଣ ଏସବୁ ସେ ସଚେତନ ରହି କରେ ! ଯଦି କରେ ସେ ଏକରକମ ଘୋଷାପାଠ ଆବୃତ୍ତି କରୁଥିବା ଅଭିନେତା ବା ନେତା ! ବକ୍ତା ଏକ ଉପସ୍ଥିତ ବୁଦ୍ଧିସମ୍ପନ୍ନ ତତ୍କାଳ କବି । ସେ creative writer ଭଳି ଜଣେ creative speaker. ସେ କସ୍ମିନ୍ କାଳେ ପୁନରାବୃତ୍ତି କରିପାରେ ନାହିଁ । ନୂଆ ତାଳରେ ନୂଆପତ୍ର ମେଲି ଚାଲିଥାଏ । ଏଠି ସେଠି ପୁରୁଣା ପ୍ରସଙ୍ଗ କିଛି ଆସିଯାଇପାରେ । କିନ୍ତୁ ସଫଳ ଭାଷଣଟିଏ, ନୂଆ ଗଳ୍ପ ବା ନୂଆ କବିତାଟିଏ ଭଳି ଏକ ସ୍ୱତନ୍ତ୍ର ସୃଷ୍ଟି ।

କବିତା ଲେଖିବାବେଳେ କବି ହୃଦୟ ସମାନଧର୍ମୀ ପାଠକଟିଏ କଳ୍ପନା କରେ । ସେ ନିରବଧି କାଳ ଓ ବିପୁଳା ପୃଥିବୀରେ କେବେ କୋଉଠି ସମ୍ଭବିବ ବୋଲି ବିଶ୍ୱାସ ରଖି ରଚନା କରେ ।

ବକ୍ତା କେବେ ଶ୍ରୋତାକୁ କଳ୍ପନା କରେ ନାହିଁ । ତା' ଆଗରେ ଉତ୍କର୍ଣ୍ଣ, ଉତ୍କଣ୍ଠିତ ଶ୍ରୋତାଙ୍କ ସମାବେଶ । ସେ ଭିତରେ କିଏ ସହୃଦୟ– କିଏ ଅହୃଦୟ, କିଏ ସମାନଧର୍ମା କିଏ ଅସମାନଧର୍ମା ଜାଣିବା କଷ୍ଟ । ନିରବଧିକାଳ ଓ ବିପୁଳା ପୃଥ୍ୱୀ

ହଠାତ୍ ସଘନ ସଂକୁଚିତ ସାନ୍ଦ୍ର ହୋଇ ସଭାଗୃହରେ ବିବିଧ ଶ୍ରୋତା ରୂପରେ ସାକାର ହୋଇଯାଏ ।

ସେଥିପାଇଁ ବକ୍ତାର ପରିସ୍ଥିତି ଭାରି ଜରୁରୀ । କବି ନିଜ ଇଚ୍ଛାର ମାଲିକ । ମର୍ଜି ହେଲା ଲେଖିଲା, ନହେଲା କଲମ ଥୋଇ ଦେଇ ଫୁଲ ବଗିଚାକୁ ଚାଲିଗଲା । କିନ୍ତୁ ବକ୍ତାର ସେ ସମ୍ଭାବନା ନାହିଁ । ଥରେ ଉଭା ହୋଇଗଲେ ସେଇଠୁ ଓହରିଯିବାର ବାଟ ନାହିଁ ।

ଶବ୍ଦ ଯଦି ଭଣା ପଡ଼ିଗଲା କବି ତାକୁ ତେର ଘଣ୍ଟା ପରେ ତେରଥର ସଂଶୋଧନ କରି ମାଜି ଦେଇପାରେ । ବିଚରା ବକ୍ତାର ଶବ୍ଦ ବାଟୁଳି ଭଳି ଥରେ ମୁହଁରୁ ବାହାରିଗଲେ ତା' ଉପରେ ଆଉ ଆୟତ୍ତ ନଥାଏ । ତାକୁ ସହସ୍ର କର୍ଣ୍ଣଶ୍ରୋତା ଧରିନେଇଥାଏ । ତେଣିକି ସେଇ ଶବ୍ଦକୁ ଖଞ୍ଜିଲା ଭଳି ଆଉ ଶବ୍ଦ ଜାଲ ବୁଣି ଅବାଟରେ ଗୋଡ଼ ଖସୁଥିଲାବେଳେ ସମ୍ଭାଳିବାକୁ ପଡ଼େ ବକ୍ତାକୁ ।

ବକ୍ତାକୁ ବେଳ ନାହିଁ । ଅତି ବେଶି ଘଣ୍ଟାଏ । ଏଣେ ବିଶେଷଜ୍ଞ କହନ୍ତି ଯେ କୋଡ଼ିଏ ମିନିଟ୍‌ରୁ ଊର୍ଦ୍ଧ୍ୱ ସମୟ କୌଣସି ଶ୍ରୋତା ଗୋଟିଏ ବିଷୟ ଉପରେ ମନୋନିବେଶ କରିପାରେ ନାହିଁ । ଏଣୁ ଯଦି ସମଗ୍ର ବକ୍ତବ୍ୟରେ ମୌଳିକତା, ଚମତ୍କାରିତା, ନିର୍ଭୁଲ ଶବ୍ଦ ଯୋଜନା ସହିତ ଉଚ୍ଚାରଣର ସ୍ୱଚ୍ଛତା, ମଧୁରତା, ତୀକ୍ଷ୍ଣ ଯଥାସ୍ଥାନରେ ନ ରହିଲା ଶ୍ରୋତା ସମୁଦ୍ର କମ୍ପିତ ହୁଏ, ଅସ୍ଥିର ହୁଏ ଆଉ ତେଣିକି ବକ୍ତା ଗୃହୀତ ହୁଏ ନାହିଁ ।

କହିବା ତ ଦୈନନ୍ଦିନ ନିତ୍ୟବ୍ୟବହାର୍ଯ୍ୟ କ୍ରିୟା। ଜଣେ ଜଣକ ସାଙ୍ଗରେ କଥା ହେବା ସଂଳାପ। ପର୍ଯ୍ୟାୟକ୍ରମେ ସେଇଟା ଆଳାପରୁ ଉପନିଷଦଯାଏ ବ୍ୟାପି ଯାଇପାରେ। କିନ୍ତୁ ଜଣେ ବକ୍ତା ଆଗରେ ଅନେକ ଶ୍ରୋତା ଉପସ୍ଥିତ ଥିଲେ ପରିସ୍ଥିତି ଅଲଗା । ସମସ୍ତଙ୍କ ରୁଚି, ମନୋଭାବ, ଆଶା, ଆକାଙ୍କ୍ଷାର ମୋଟାମୋଟି ଗ.ସା.ଗୁ. ବାହାର କରିବା ସହଜ ନୁହେଁ । ଏଣୁ ଗୋଟାଏ ବିଷୟ ସ୍ଥିର କରାଯାଇଥାଏ, ସମସ୍ତେ ମୋଟାମୋଟି ତାହାରି ଉପରେ ଚେତନାରେ କେନ୍ଦ୍ରୀଭୂତ ହୁଅନ୍ତି । ବକ୍ତା ମଧ୍ୟ ତାକୁ ଆଶ୍ରା କରି ତା'ର କଥା କହିବା ଆରମ୍ଭ କରେ । କିଛି ଜଣା, କିଛି ଅଜଣା, କିଛି ଅନୁଭବ କଥା ଶ୍ରୋତାଙ୍କୁ ଶୁଣାଏ । ସେଥିରେ କିଛି ଆମୋଦିତ କଲାଭଳି, କିଛି ଚମତ୍କୃତ କଲାଭଳି, କିଛି ଅଭିଭୂତ, ଦ୍ରବୀଭୂତ କଲାଭଳି କଥା ମଧ୍ୟ ଥାଏ । ଘଣ୍ଟାଏ ସମୟ ଭିତରେ ବକ୍ତା ତାଙ୍କୁ କୁହୁକ ମନ୍ତ୍ରରେ ଅନ୍ୟ ଏକ ରାଜ୍ୟକୁ ନେଇଯିବା ଭଳି ସାମର୍ଥ୍ୟ ନ ରଖିଲେ ଶହ ଶହ ମନକୁ ଏକାଠି ବାନ୍ଧି ରଖିବା ସହଜ ନୁହେଁ । କେବଳ ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା, ବହୁଳ ଉଦ୍ଧୃତି ଯଥେଷ୍ଟ ନୁହେଁ । କିଏ କ'ଣ କହିଛି

ଜାଣିବା ଅପେକ୍ଷା ଶ୍ରୋତା ଚାହାନ୍ତି ବକ୍ତା କ'ଣ କହୁଛି ଶୁଣିବାକୁ । ଏଣୁ ମୌଳିକତା ଚିନ୍ତାରେ, ଅନୁଭବରେ, ବକ୍ତବ୍ୟରେ, ଭାଷାରେ, ଶବ୍ଦରେ, ନ ରହିଲେ ବକ୍ତା ସଫଳ, ସାର୍ଥକ ହୋଇପାରିବ ନାହିଁ । ନିମଗ୍ନ ରହି ନିଜକୁ କହି ଜାଣିଲେ ଅନ୍ୟକୁ କହିବା ସହଜ ।

ବେଳେବେଳେ ସଭାସ୍ଥଳରେ ଏକ ଅତ୍ୟନ୍ତ ନିବିଡ଼ ଘନିଷ୍ଠତା, ଗୋଟାଏ ପ୍ରକାର ଅସାଧାରଣ ଆପଣାପଣ ଅନୁଭବ ହୁଏ । ସେଇଠି ବକ୍ତା ଅତ୍ୟନ୍ତ ସ୍ୱଚ୍ଛନ୍ଦ, ମୁକ୍ତ ସହଜ ହୋଇଯାଏ । ସାଧାରଣତଃ କେହି ଜଣେ କଣ୍ଠେ ବସି ପଦ କହି ନ ଦେଲେ ତ' ବକ୍ତା ହେବା ଅସମ୍ଭବ । କିନ୍ତୁ ଏଭଳି ପରିବେଶରେ ସତକୁ ସତ, ଗଛଡାଳକୁ ଉଡ଼ନ୍ତା ପକ୍ଷୀ ଓହ୍ଲେଇ ଆସିଲା ପରି ଅଭୁତ କଥାସବୁ ସ୍ୱଚ୍ଛ ଶବ୍ଦମାନଙ୍କୁ ନେଇ ଓହ୍ଲେଇ ଆସନ୍ତି । ଏଭଳି ଅନୁଭବ ମୋର ବାରଂବାର ଆସିଛି । ବକ୍ତୃତାଟିଏ କବିତାଟିଏ ବା ଚିତ୍ରଟିଏ ପରି ଅନାୟାସ ଓହ୍ଲେଇ ଆସିଛି । କଟକ ମାତୃଭବନରେ ଅନେକ ଥର, କେନ୍ଦୁଝରରେ ପ୍ରପତ୍ତି ସ୍ମାରକୀ ବେଳେ, ଚାନ୍ଦବାଲିରେ, ରାଉରକେଲା ଯୋଗମନ୍ଦିରରେ ୧୯୯୮ରେ ଏଭଳି ସ୍ପଷ୍ଟ ଅନୁଭବ ଆସିଛି । ନିଜେ ନିଜ ଉପରେ ବିସ୍ମିତ ହେବାର, ନିଜ ଉଚ୍ଚାରଣରେ ଅଜ୍ଞାତ ନୂତନ ସତ୍ୟ ଆବିଷ୍କାର କରିବାର ବିରଳ ଅନୁଭବ କୌଣସି ନିୟନ୍ତ୍ରୀ ମଙ୍ଗଳକାରିଣୀ ଶକ୍ତି-ହାତରେ ନିଜେ ଏକ ଉପଚାର ଯନ୍ତ୍ର ହୋଇଯିବାର, ମାଧ୍ୟମ ହୋଇଯିବାର ଅଭୁତ ଅନୁଭବ ଆସିଛି ।

ଏ ପ୍ରସଙ୍ଗରେ ଆମେରିକା ଗସ୍ତବେଳେ ଦୁଇ ତିନୋଟି ଭାଷଣ-ଉଲ୍ଲେଖଯୋଗ୍ୟ, ଗୋଟିଏ ଟରଣ୍ଟୋ ସହରରେ, ଗୋଟିଏ ୱାଶିଂଟନରେ ଏବଂ ଆଉ ଗୋଟିଏ ଆଲ୍‌ବାମାରେ । ଏ ବର୍ଷ ରଥଯାତ୍ରା ପୂର୍ବଦିନ । ଜଗନ୍ନାଥ ତତ୍ତ୍ୱ, ଆଗାମୀ ଶତାବ୍ଦୀରେ ଉପନିଷଦର ପ୍ରାସଙ୍ଗିକତା ଏବଂ ବେଦର ବାର୍ତ୍ତା ଥିଲା ବିଷୟ । ମାଧ୍ୟମ ପ୍ରଥମଟିରେ ଓଡ଼ିଆ, ଅନ୍ୟ ଦୁଇଟିରେ ଇଂରାଜୀ, ସେ ଭାଷଣଗୁଡ଼ିକ ଅନ୍ୟମାନଙ୍କୁ ମୁଗ୍ଧ କଲା ନିଶ୍ଚୟ, କିନ୍ତୁ ମୋତେ ତଦପେକ୍ଷା ଅଧିକ ବିସ୍ମିତ କଲା ଓ ଆମୋଦିତ କଲା । ମନେହେଲା ସତେବା ମୁଁ ଗୋଟିଏ ମାଧ୍ୟମ ମାତ୍ର । ମୋ ଜରିଆରେ ଆଉ କିଏ ହୁଏତ କହୁଚି ।

ଶ୍ରୀ ଅରବିନ୍ଦ ପାଠଚକ୍ର ଓଡ଼ିଶାରେ ଅନେକ । ବହୁ ସ୍ଥାନରେ । ବହୁବାର ପହଞ୍ଚିଛି । ଏବଂ ଗୋଟିଏ ମିନିଟ୍‌ରେ ମାଇକ୍ ଆଗରେ ଠିଆ ହୋଇ କହିବାକୁ ପଡ଼ିଛି । ଯଥା ବଡ଼ବିଲ୍ ପାଖରେ ମାଟ୍‌କାମ୍‌ବେଡ଼ା । ଗାଡ଼ିରୁ ଓହ୍ଲେଇଲା ମାତ୍ରେ ଉତ୍କଣ୍ଠିତ ଅପେକ୍ଷମାଣ ଶ୍ରୋତାଙ୍କ ଆଗରେ ଠିଆ ହେଲି । ଯାତ୍ରାର ଯାବତୀୟ ଦୁଃଖ ମନେ ପକାଇବାକୁ ବେଳନାହିଁ । କ'ଣ କହିବାକୁ ହେବ ଜଣାନାହିଁ । ଜଣେ ପଦେ କହି

ଆଡ଼େଇ ହୋଇ ଯାଇଛନ୍ତି... 'ଅମୁକ ବିଷୟରେ ଏବେ ସାର୍ କହିବେ ! – ବାଃ, ଏ କ'ଣ କଳଗାଉଣା ହେଇଛି ! କିନ୍ତୁ ସତକୁ ସତ ଘଣ୍ଟାଏ କାଳ କୋଉଠୁ କୋଉଠୁ କ'ଣ ସବୁ ଆସି ଅଜାଡ଼ି ହେଇଗଲା । ଉଭୟ ଶ୍ରୋତା ଓ ବକ୍ତା ସ୍ତବ୍ଧ ହୋଇ ଶୁଣୁଥାନ୍ତି ।

ଠିକ୍ କହିଲେ ଭାଷଣ ଦେବା ବୋଧହୁଏ ଆରମ୍ଭ ହେଲା ୧୯୫୩ ମସିହାରେ । ପୁରୁଷୋତ୍ତମପୁର ହାଇସ୍କୁଲର ବାର୍ଷିକ ଉତ୍ସବ । ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ସହିତ ନଈ ପାର ହୋଇ ପହଞ୍ଚିଥିଲି । ସେତେବେଳେ ଖଲ୍ଲିକୋଟ କଲେଜରେ ଇଂରାଜୀ ଅଧ୍ୟାପନା ଆରମ୍ଭ ହୋଇଥାଏ । ମୂଳରୁ ହିଁ ବାକ୍‌ପଟୁତା ବା ଇଂରାଜୀରେ ଯାହାକୁ କୁହାଯାଏ gift of the gab ପାଇଁ ଖ୍ୟାତି । ଅଦ୍ୟାବଧି ସହସ୍ରାଧିକ ସଭାରେ ବହୁବିଧ ବିଷୟମାନଙ୍କରେ କହିବାକୁ ପଡ଼ିଛି– ଭାଷା, ସାହିତ୍ୟ, ସଂସ୍କୃତି, ଧର୍ମ, ଦର୍ଶନ, କଳା, ଉପନିଷଦ, ଗୀତା, ରାମକୃଷ୍ଣ, ବିବେକାନନ୍ଦ, ନିଗମାନନ୍ଦ, ଶ୍ରୀଅରବିନ୍ଦ । ମୋ ଜୀବନଧାରାରେ ଏହା ଏକ ସମାନ୍ତର ସ୍ରୋତ । ବେଳେବେଳେ ବେକୁବ୍ ଭଳି କିଛି କହି ପାରିଲି ନାହିଁ ବୋଲି ଆତ୍ମଗ୍ଳାନିରେ ଭାଙ୍ଗି ପଡ଼ିଛି, ଯଥା - ଡଃ ହରେକୃଷ୍ଣ ମହତାବଙ୍କ ଉପସ୍ଥିତିରେ କଟକ ଉପରେ ବର୍ଷାଝଡ଼ ଚାଲିଥିଲାବେଳେ ବିଷୁବ ମିଳନ ସାଂଧ ଅଧିବେଶନରେ ବକ୍ତା ଭାବରେ ଯାହା କହିଲି ବା କହିପାରିଲିନାହିଁ ବୋଲି ହା-ହତୋଽସ୍ମି କହି ଆଉଟୁ ପାଉଟୁ ହୋଇଥିଲି ବହୁଦିନ ପର୍ଯ୍ୟନ୍ତ । ହଠାତ୍ ଜଣେ ସେହି ସଭାରେ ଉପସ୍ଥିତ ଶ୍ରୋତା ବହୁ ବର୍ଷ ପରେ ମନେପକାଇ କହିଲେ ଯେ ସେଇଟା କୁଆଡ଼େ ତାଙ୍କ ପାଇଁ ଏକ ଅବିସ୍ମରଣୀୟ ବକ୍ତବ୍ୟ ।

କେବଳ ଲେଖକ ହୋଇ ରହିବାରେ ମୋର ଆପତ୍ତି ନଥିଲା । ସେଥିରେ ବି ପୁଣି ଖାଲି ନିବନ୍ଧ ଲେଖିଥିଲେ ବହୁ ଶତ୍ରୁତାରୁ ବଞ୍ଚିଯାଇଥାନ୍ତି । କିନ୍ତୁ ଗଳ୍ପ ଉପନ୍ୟାସ ବି ସ୍ୱାଭାବିକ ଢ଼ଙ୍ଗରେ ଆସିଲେ ଅରଣ୍ୟକୁ ଚଢ଼େଇ ପରି । ଫଳରେ ମୁଁ ସବୁପ୍ରକାର ଲେଖିଲି – କବିତା ବି ଲେଖିଛି । ଭୟରେ ଛପେଇ ନାହିଁ । କାଳେ ପୁଣି ଶତ୍ରୁ ହୋଇଯିବେ । କାହାର ଏକଚାଟିଆ ପୈତୃକ ଇଲାକାରେ ଅନଧିକାର ପଶିଗଲି ବୋଲି ତ ସେମାନେ ଭାବନ୍ତି । ମୁଁ ଜାଣେ ସାହିତ୍ୟରେ ସେମିତି କିଛି ରାଜ୍ୟ ନାହିଁ କି ରାଜା ନାହାନ୍ତି । ତେବେ କାହିଁକି କାହା ସାଙ୍ଗରେ ବାଦ କଲି ବୋଲି କିଏ ଭାବିବ – ସେମିତି ଗଳ୍ପରେ ହେଲା । ସେଥିପାଇଁ କବିତା ଛାପି ନାହିଁ, ନାଟକ ଏମିତି ଲତାଗୁଳ୍ମ ଉଡାଡ଼ରୁ ଉଙ୍କି ମାରିଛି । କିନ୍ତୁ ମୁଁ ସେ ଆଡ଼କୁ ଦୃଷ୍ଟି ଦେଇନାହିଁ । କହିପାରୁନାହିଁ ଯଦି ସେ ବି ସାମ୍ନାରେ ଆସି କେବେ ଦାବି କରିବ ସେ ତାକୁ ମଧ ଆପଣେଇବାକୁ ମୁଁ ବାଧ ହୁଏ । ସୁଧୀଜନେ, ଦୋଷ ଘେନିବେ ନାହିଁ ।

କେବଳ ବକ୍ତାଟିଏ ହୋଇଥିଲେ ମଧ୍ୟ ମୋର ଆପତ୍ତି ନଥିଲା । ବୃତ୍ତି ଅଧ୍ୟାପନା । ଏଣୁ ବକ୍ତା ହେବାରେ ଆପତ୍ତି ବା କେଉଁଠି ? ସେ ଭୂମିରେ ମୋର ଏକାଧିକ ପ୍ରଥିତଯଶା ବନ୍ଧୁ ଅଛନ୍ତି । ପାଟି ଫିଟେଇଲେ ଗଂଗା ପ୍ରବାହ ପରି ଅନର୍ଗଳ ଭାଷଣ ବାହାରେ । ବାକ୍‌ଦେବୀଙ୍କ କୃପା ଲାଭ କରିଛନ୍ତି ଯଶସ୍ୱୀ ବକ୍ତା ଭାବରେ । ଲେଖିବା ତାଙ୍କ ପାଇଁ ଏକ ଗୌଣ କ୍ରିୟା ବା ପ୍ରାୟ ନିଷ୍ପ୍ରୟୋଜନ । ମୁଁ ବି ସେପରି ହୋଇ ପାରିଥିଲେ ଚଳିଥାନ୍ତା ।

କିନ୍ତୁ ବିଧିର ବିଚିତ୍ର ବିଧାନ – ମୋତେ ଉଭୟ ମାର୍ଗରେ ବିନିଯୋଗ କଲେ ମାଲିକେ । ସେହିପରି ତୂଳୀ ବଟାଳି ଧରାଇ ଦେଇଥିବାରୁ ରଙ୍ଗ ରୂପର ଛନ୍ଦ ସୃଷ୍ଟି କରିବାକୁ ପ୍ରବୃତ୍ତ ହେଲି । ଜୀବନରେ ଏ ମୋଡ଼ ଉପରେ ଛିଡ଼ାହୋଇ ଭାବୁଛି ଯେ କୌଣସି ଗୋଟିଏ ମାଧ୍ୟମରେ ନିଜକୁ ପ୍ରକାଶ କରିବାର ପର୍ଯ୍ୟାପ୍ତ ସାମର୍ଥ୍ୟ ନ ଦେଇ ମାଲିକ ଚାହିଁଲେ ଏପରି ବିବିଧ ମାର୍ଗରେ ନଚେଇବାକୁ । ଫଳରେ ସବୁ କ୍ଷେତ୍ରରେ ଦଶ ଅଙ୍ଗୁଳ ନ୍ୟୂନ ହୋଇ ଠିଆ ହେଲି । ଶୀର୍ଷଭେଦ କରି ପାରିଲିନାହିଁ । ହେଉ, ସେଥିପାଇଁ କୌଣସି ଦୁଃଖ ନାହିଁ । ସେ ଯେମିତି ଚାହିଁଲେ ସେପରି ହେଲି । ଯଦି ସେପରି ହୋଇ ପାରିଲି ତାହାହିଁ ତ ମୋର ସାର୍ଥକତା । ମାଲିକ ଆଗରେ ହଠାତ୍ ତ' ଠିଆହେବାକୁ ପଡ଼ିବ ନାହିଁ !

ମୋର ବନ୍ଧୁ, ସୁଜନ, ସୁଜାଣ ପଣ୍ଡିତ ସୁଧୀଜନେ, ଯଦି କୌଣସି କ୍ଷେତ୍ରରେ ମୁଁ ଆପଣଙ୍କୁ ନିରାଶ କରିଥାଏ ଦୋଷ ଘେନିବେ ନାହିଁ । ମୋର ମାନିବାରେ ତିଳାର୍ଦ୍ଧେ ଦ୍ୱିଧା ନାହିଁ ଯେ ଏ ସବୁ ମୋ ଗୋଚରରେ ହୋଇନାହିଁ, ଆଉ ଜଣକ ମର୍ଜି ଉପରେ ହୋଇଛି । ଅତିରଞ୍ଜିତ କରିବାରେ ସାରଳା ତ୍ରେତାଯୁଗ ମଲ୍ଲ । କିନ୍ତୁ ବିଶ୍ୱାସ କରନ୍ତୁ ସେ ଯେତେବେଳେ କହନ୍ତି, 'ରାତିରେ ସେ ପଦମାନ କହିବି, ଏ ଦିନ ଆଲୁଅରେ କବି ତାକୁ ପ୍ରବନ୍ଧ କରେ ସେଥିରେ ଆଦୌ ଅତିରଞ୍ଜନ ନାହିଁ । ନ୍ୟାୟାଳୟର ଶପଥପାଠ ପରି ଏହା ସତ୍ୟ । ସଭାମଞ୍ଚରେ ଭାଷଣ ଦେବାବେଳେ, ନିଭୃତରେ ବସି କବିତା ଲେଖିଲାବେଳେ ସେ ହିଁ ଅଦୃଶ୍ୟ ଭୂମିରୁ ପଦ କହି ଦିଏ । ଏହା ସତ୍ୟ ସତ୍ୟ ।

'ବକ୍ତା ଚନ୍ଦ୍ରଶେଖର' ବୋଲି ଗୋଟିଏ ନିବନ୍ଧ ଯଦି ଏ ସଂକଳନରେ ପ୍ରକାଶ ପାଇନଥାନ୍ତା, ମୋ ବ୍ୟକ୍ତିତ୍ୱର ବକ୍ତାଭାବ ଉପରେ ମୁଁ ଆଦୌ ପାଟି ଫିଟେଇ ନଥାନ୍ତି । କିନ୍ତୁ କଥା ପଡ଼ିବାରୁ କୈଫିୟତ ଦେବା ଅନିବାର୍ଯ୍ୟ ହୋଇପଡ଼ିଲା ।

ଏ ଦଶବର୍ଷରେ ମୁଁ ଦଶଦିଗରେ ବିସ୍ତୃତ ହୋଇଯିବାର ଅନୁଭବ କରିଛି । ପରିବାର ଶଖାପ୍ରଶାଖାୟିତ ହୋଇଯାଇଛି । ଆଚମ୍ବିତ କରି ମୋର ଦୁଇଝିଅ ଏକାଦିନକେ ବିବାହ ହୋଇ ଚାଲିଯାଇଛନ୍ତି ହାଇଦ୍ରାବାଦ ଓ ବାଙ୍ଗାଲୋର । ଆଚମ୍ବିତ କରି ମୁଁ

ଓଡ଼ିଶା ସୀମା ଟପି କଲିକତା, ଦିଲ୍ଲୀ, ହାଇଦ୍ରାବାଦ, ଲକ୍ଷ୍ନୋ, ପାଟନା, ଋଷିକେଶରେ ପହଞ୍ଚିଛି । ଶେଷବେଳକୁ ଏ ବର୍ଷ ଯାଇଛି ଆମେରିକା । ପଚାଶଦିନ ରହଣି କାଳରେ ସାରା ମହାଦେଶ ଭ୍ରମିଛି । ବହୁ କଥା ଦେଖିଛି, ବହୁ କଥା ଶୁଣିଛି । ବହୁକଥା କହିଛି । ଦେଇଛି, ପାଇଛି ଅନେକ । ଏହାରି ଭିତରେ ତିରିଶ ବର୍ଷ ପରେ 'ଯନ୍ତାରୂଢ଼' ଉପନ୍ୟାସ ହିନ୍ଦୀଭାଷୀପାଠକ ଜଗତକୁ ପ୍ରବେଶ କରିଛି । ମାକ୍‌ମିଲାନ୍ ତା'ର ଇଂରାଜୀ ଅନୁବାଦ କରାଉଛନ୍ତି ଭାଷା ସରହଦ ଡେଇଁ । ଏ ଉପନ୍ୟାସ ବିସ୍ତୃତ ଭୂମିରେ ପହଞ୍ଚିଛି ।

୧୯୯୭ରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀରେ 'ସବୁଠାରୁ ଦୀର୍ଘରାତ୍ରୀ'ର ଅବସାନ ଘଟିଛି । ତନ୍ନାମ ବିଶିଷ୍ଟ ଗଳ୍ପ ସଂକଳନ ପାଇଁ ଏକାଡ଼େମୀ ପୁରସ୍କାର ଆସିଛି । ଅଭିନନ୍ଦନ ଅପେକ୍ଷା କାହିଁକି ଏତେ ବିଳମ୍ବ ହେଲା ବୋଲି ଏକ ଆହତ ଶ୍ରଦ୍ଧାର ପ୍ରତିବାଦ ଗୁଞ୍ଜରିତ ହୋଇଛି ଚାରିଆଡ଼େ ।

ସେହି ଏକାଡ଼େମୀର କାର୍ଯ୍ୟକାରୀ ସମିତିର ସଭ୍ୟରୂପେ ଦିଲ୍ଲୀ ଯିବାଆସିବା ଭିତରେ ଶ୍ରୀଅରବିନ୍ଦ ଆଶ୍ରମ, ଦିଲ୍ଲୀ ଶାଖା ସହିତ ସମ୍ପର୍କ ଘନିଷ୍ଠତର ହୋଇଛି । ସେମାନେ ତ' ଓଡ଼ିଆ ଜାଣନ୍ତି ନାହିଁ । ଅନୁବାଦ ତ' ନାହିଁ । ସେମାନେ ହଠାତ୍ ବକ୍ତାଟିକୁ ଆବିଷ୍କାର କରିଛନ୍ତି । ତାକୁ ଶ୍ରଦ୍ଧା କରିଛନ୍ତି । ନୈନିତାଲରେ ଅନୁଷ୍ଠିତ ହେଉଥିବା ଶିବିରକୁ ପ୍ରତିବର୍ଷ ନିମନ୍ତ୍ରଣ କରି ନେଉଛନ୍ତି । ଶ୍ରୀ ଅରବିନ୍ଦଙ୍କ ପ୍ରଶ୍ନ ଆଲୋଚନା କରିବା ଦାୟିତ୍ୱ କେବଳ ନୁହେଁ, ତାହା ଏକ ସୌଭାଗ୍ୟ । ପାହାଡ଼ ଚୂଳରେ ଘନ ନିରବତା ଭିତରେ ଶ୍ରୀଅରବିନ୍ଦଙ୍କ ଜିଜ୍ଞାସୁ ଭକ୍ତଙ୍କ ଗହଣରେ ଦିବ୍ୟଜୀବନ ଗ୍ରନ୍ଥ ଆଲୋଚନା କରିବା ଏକ ଦିବ୍ୟ ଅନୁଭବ । ଏହା ମହୋଦଧି ତଟଦେଶରୁ ହିମାଳୟ ପାଦଦେଶ ପର୍ଯ୍ୟନ୍ତ ବିସ୍ତାର ଭଳି ଅଭିଭୂତ କରିଛି । ଏହା ମୋ ଜୀବନରେ ଏକ ଭବ୍ୟ ବିସ୍ତାର । ଫୁଲ ପାଖୁଡ଼ା ମେଲିଲା ପରି ବିସ୍ତୃତ ହୋଇଗଲେ ସମ୍ଭାବନା ସରିଯାଏ ନା କ'ଣ ! ସତୁରି ପୂରିଗଲା । ଏଇଠୁ କ'ଣ ଆଉ ଏକ ଆରୋହଣର ଆରମ୍ଭ ହେଲା ବୋଲି କହିହେବ ନା ଘଟ ପରିପୂର୍ଣ୍ଣ କରିଦେଇ ମାଲିକ ଇସାରା ଦଉଛନ୍ତି ଘଟାନ୍ତର ପାଇଁ ?

ଉଭୟ ପାଇଁ ମୁଁ ପ୍ରସ୍ତୁତ ।

୨୦୦୦ ମସିହା ପରେ ନୂତନ ଶତାବ୍ଦୀ । ହଠାତ୍ ରାତି ପାହିଲେ ସୃଷ୍ଟି ଆନ ଆନ ହୋଇଯିବାର ସମ୍ଭାବନା ନାହିଁ । କାଳ ପ୍ରବାହରେ ମୋଡ଼, ଭାଙ୍ଗ ବା ଲେଉଟାଣି କିଛି ନାହିଁ । କିନ୍ତୁ କ'ଣ ନୂଆଟାଏ ହେଲା ବା ହେବାକୁ ଯାଉଛି, ଏଭଳି ଏକ ପ୍ରତ୍ୟୟ ପଛରେ ଯେଉଁ ମାନସିକତା ଅଛି, ତାହାହିଁ ପ୍ରକୃତ ପରିବର୍ତ୍ତନ ।

ଏଥିରେ ପୃଥିବୀର ଭାଗ୍ୟ, ମଣିଷ ଜାତିର ଭାଗ୍ୟ ନିୟନ୍ତ୍ରିତ ହେଉଛି ଆଉ ଗୋଟିଏ ଦିଗରେ ଆଉ ଗୋଟିଏ ବିବର୍ତ୍ତିତ ମଣିଷ ପାଇଁ ବୋଧହୁଏ ଭୂମି ପ୍ରସ୍ତୁତ ହେଉଛି । ମନେ ହେଉଛି ଅଦ୍ଭୁତ ଶକ୍ତିକେନ୍ଦ୍ରମାନ ସୃଷ୍ଟି ହେଉଛନ୍ତି । ଆଣବିକ ପରମାଣବିକ ଶକ୍ତି ତ' କାଲିକା କଥା, ସେଇଟା ପୁରୁଣା । ତାକୁ ଅତିକ୍ରମ କରି ଆଉ ଗୋଟାଏ ଶକ୍ତିର ଆବିଷ୍କାର ହେବାକୁ ଯାଉଛି । ପରିବର୍ତ୍ତନର ଅର୍ଥ ବିବର୍ତ୍ତନ, ବ୍ୟୁତ୍ଥାନ । ଏହାର ଅର୍ଥ ଉଲ୍ଲଙ୍ଘନ, ବିସ୍ଫୋରଣ ମଧ୍ୟ । ଏଥର ବିସ୍ଫୋରଣ ଘଟିବ ମଣିଷ ଭିତରେ । ତାର ମାନସ କ୍ଷେତ୍ରରେ, ତା'ର ପ୍ରାଣ କେନ୍ଦ୍ରରେ, ତା'ର ଚେତନା କେନ୍ଦ୍ରରେ ।

ମନେହୁଏ ଯେଉଁ ଦେଶରେ ଅଦ୍ଭୁତକର୍ମା ବିଜ୍ଞାନୀମାନେ ଜନ୍ମିଛନ୍ତି ସେହି ଦେଶରେ ହିଁ ତ୍ରିକାଳଦର୍ଶୀ ଋଷିମାନେ ଜନ୍ମିବେ। ପୃଥିବୀର ଭୌଗୋଳିକ ସୀମାରେଖା ଅପ୍ରାସଙ୍ଗିକ ହୋଇଯିବ। କରାମଳକବତ୍ ପୃଥିବୀକୁ ପାପୁଲି ଉପରେ ଧରି ମହାପୁରୁଷମାନେ ତା'ର ସଂସ୍କାର କରିବେ । ଆୟାରର୍ଲାଣ୍ଡର ଡବ୍ଲିନ୍ ସହରରେ ରାସ୍ତା ମୁଣ୍ଡରେ ଛିଡ଼ାହୋଇ ସ୍କୁଲ ଛାତ୍ରମାନେ ଗାୟତ୍ରୀ ମନ୍ତ୍ର ଜପ କଲାପରି ସାରା ପୃଥିବୀରେ ଏକ ନୂଆ Renaissance ଆସିବ। ଭାରତୀୟ ବୈଦିକ ଚେତନାର ଅଭ୍ୟୁତ୍ଥାନ ହେବ। କିନ୍ତୁ ଭାରତ ବାହାରେ ସବାଶେଷରେ ସେ ପ୍ରବାହ ଫେରିଆସିବ ଭାରତକୁ ଏବଂ ଏଇଠି ଉଠିବ ଆଉ ଏକ ଦିବ୍ୟଜ୍ୟୋତି।

ଏହା କଳ୍ପନା ନୁହେଁ। ଏହା ଦ୍ରଷ୍ଟା ପୁରୁଷଙ୍କର ଉପଲବ୍ଧି। ତା'ର କିଛି କିଛି ଚାକ୍ଷୁଷ ପ୍ରମାଣ ମଧ୍ୟ ଦେଖାଗଲାଣି।

ଏଭଳି ଏକ ଅଭିନବ ଜାଗରଣ ବେଳେ ଯେଉଁମାନେ ଜୀବିତ ଓ ଜାଗ୍ରତ ଥିବେ ସେମାନେ ଧନ୍ୟ। ମୁଁ ରହିବି କି ନା ଜାଣେନା।

ରହିଲେ କିନ୍ତୁ ଅଣାପୂର୍ତ୍ତି ପାଳନ ହେବ ନାହିଁ । ସେତେବେଳେ ବୋଧେ ନୀରବ ରହିବା ଅଧିକା ଅର୍ଥପୂର୍ଣ୍ଣ ହେବ । ପରସ୍ପରକୁ ଚାହିଁ ରହିବା, ଚାହିଁ ରହି ଅଳ୍ପ ହସିଦେବା ହିଁ ବୋଧହୁଏ ଯଥେଷ୍ଟ ହେବ ।

ପ୍ରକୃତରେ ଏତେ କଥା କହିବାର ଏତେ ଲେଖିବାର କ'ଣ ଅର୍ଥ ଅଛି ? ଶତାବ୍ଦୀ ସରିଆସୁଛି । ସେ କ'ଣ କୋଳାହଳ କରୁଛି ? ଆକାଶ କୋଳାହଳ କରୁଛି ନା ପୃଥିବୀ ?

ଏଣିକି ପୁରାତନ ପକ୍ଷୀପରି ପାଖେଇ ଆସନ୍ତୁ । ନିରବିଯିବା । କ'ଣଟାଏ ଅପୂର୍ବ ହେବାକୁ ଯାଉଛି । ତାକୁ ସମ୍ଭ୍ରମର ସହିତ ଅପେକ୍ଷା କରିବା ।



# ମୁଁ କାହିଁକି ଲେଖେ...

ଏକଦା ଜଣେ ମାର୍କିନ ଲେଖକଙ୍କ ବୈଠକ ଘରକୁ ତାଙ୍କ ପତ୍ନୀ ଏବଂ ସାନପୁଅ ପଶିଆସିଲେ । ପିଲାଟି ତା' ବାପାଙ୍କୁ କିଛି ସମୟ ଚାହିଁ ମା' କାନ ପାଖରେ ଫିସ୍ ଫିସ୍ କରି ପଚାରିଲା, ''ଡାଡ଼ିଙ୍କ ଦେହ କ'ଣ ଅସୁସ୍ଥ ଅଛି ?'' ମା' ତା' ଡେଣା ଧରି ଆଡ଼ ହୋଇଗଲାବେଳେ କହିଲେ, ''ନା, ସେ ଉପନ୍ୟାସ ଲେଖୁଛନ୍ତି ପରା !'' ବସ୍ତୁକୁ ଚାହିଁଲା ଭଳି ଅନେଇଲେ ଆଖିରେ ବୋଧେ ସ୍ୱପ୍ନ ଦିଶେ ନାହିଁ ଏବଂ ଆଖି ମେଲି ଏମିତି ସ୍ୱପ୍ନ ଦେଖୁଥିଲାବେଳେ ଭାବୁକ ଲେଖକଟି ବୋଧହୁଏ ଅନ୍ୟମାନଙ୍କୁ ଭୟଙ୍କର ଅସୁସ୍ଥ ଦେଖାଯାଉଥିବ । ପ୍ଲାଟୋଙ୍କ ପରି ଜ୍ଞାନୀ ମଧ୍ୟ କବିଙ୍କୁ ଦେଖି କହିଥିଲେ ଯେ, ସେ ଭୂତାବିଷ୍ଟ, ତା'ର ପାଗଳାମି ଏକ ସଂକ୍ରାମକ ବ୍ୟାଧି । ଏଣୁ ତାଙ୍କ ଆଦର୍ଶ ସମାଜରେ ତା' ପାଇଁ ସଦର ଦର୍ଜା ବନ୍ଦ ରଖିବାକୁ ସେ ହୁକୁମ ଜାରି କରିଥିଲେ ।

ଏବେ ମଧ୍ୟ ପରିସ୍ଥିତି ସେଇଆ । ଦିନେ ଅକସ୍ମାତ୍ ଚାକିରିଆ ଲେଖକ ତା'ର ଉପର ହାକିମଙ୍କ ଡାକରା ପାଇ ତାଙ୍କ ଦପ୍ତରରେ ପହଞ୍ଚେ । ଆଖିରୁ ଚଷମା ଥୋଇଦେଇ ହାକିମ ତାକୁ ପଚାରନ୍ତି, ''ଆଚ୍ଛା ତୁମେ କ'ଣ ଲେଖାଲେଖି କର ବୋଲି ଶୁଣିଲି, କ'ଣ ସେଥିରୁ ଟଙ୍କା ପଇସା ମିଳେ ? ଯଦି ମିଳୁ ନାହିଁ ତେବେ ସରକାରୀ ସମୟ ବରବାଦ୍ କରି କାହିଁକି ସେଥିରୁ ଗୁଡ଼ାଏ ଗଣ୍ଡଗୋଳରେ ପଶୁଛ ? ମାନେ ମୁଁ ତୁମକୁ ନିରୁତ୍ସାହିତ କରୁନାହିଁ । କିନ୍ତୁ ଏଠି ବରଂ ସେତିକି ବୁଦ୍ଧି ଖର୍ଚ୍ଚ କରି ଫାଇଲ୍ କାମ କଲେ ସୁନାମ ମିଳିବ । ତା' ବାହାରେ ଆମେ ତ ସରକାରଙ୍କ ଚବିଶ ଘଣ୍ଟିଆ ଚାକର । ଆମେ ଅନ୍ୟ କୌଣସି କାମ କରିବା ଗୋଟାଏ ପ୍ରକାର ବେଆଇନ ନୁହେଁ କି ? ତା'ପରେ ବାର୍ଷିକ ଗୋପନୀୟ ରିପୋର୍ଟ, ଦରମା, ବଦଳି କେତେ କ'ଣ ?'' ବେଶ୍ ବୁଝାମଣା ଥିବା ବନ୍ଧୁ କହନ୍ତି– ''ହେ, କାଇଁ ସବୁବେଳେ ଦଶଟଙ୍କି ହଜେଇଲା ପରି ମୁହଁଟା କରି ବସଚ ମ ! କାଲି ରବିବାର, ଆସ ଦାସବାବୁ ଘରେ ତାସ୍ ପକାଇବା । ଲେଖି ପକେଇଲେ କୋଉ ସ୍ୱର୍ଗକୁ ବାଟ ଫିଟିଯିବ ନା ଦରମା ବଢ଼ିଯିବ । ସେଇ ଅଣଗେଜେଟେଡ଼ ତିନିଶ ତିରିଶ ।''

ଦାର୍ଶନିକ ବନ୍ଧୁ କହନ୍ତି– ''ପୃଥିବୀରେ ଶହ ଶହ ଭାଷାରେ କୋଟି କୋଟି ବହି ଲେଖା ହେଲାଣି । ତୁମେ ଏବେ ଆଉ ଖଣ୍ଡେ ଲେଖିଲେ ନଲେଖିଲେ କଣ

ସେଥିରେ ବିଶେଷ ଯାଏ-ଆସେ । ତୁମକୁ କ'ଣ ନୋବେଲ ପ୍ରାଇଜ୍ ମିଳିଯିବ ? ସେଥିରୁ ନିବୃତ୍ତ ହୁଅ । ଯେତେଦିନ ଅଛ, ଆସ ହରିକୀର୍ତ୍ତନ କରିବା । ବାକି ସବୁ ଫାଲତୁ...''

ଶେଷକୁ ଥାଆନ୍ତି ପତ୍ନୀ – ''କେତେ ଲୋକ କେତେ କଥା କହୁଛନ୍ତି, ଆମର ଖାଲି କ'ଣ ଲେଖା ଚାଲିଛି । କିଏ ଏବେ ଲେଖକଗୁଡ଼ାଙ୍କୁ ପଚାରୁଛି ? ଏତେ ତ ଲେଖିଲଣି, କାହିଁ ଟଙ୍କା ପାଞ୍ଚଟା ଘରକୁ ଆସିଲା ନାହିଁ । ଏମିତି ସକାଳ ସଞ୍ଜ ଏଥିରେ ନ ଖଟି ଆଉରି ଧପ୍‌ପା ସିଂ ଘରେ ହିସାବଖାତା ଲେଖିଲେ ସେ ମାସକୁ ଦୁଇଶ' ଦେବ ବୋଲି କହୁଥିଲା ପରା । ସମସ୍ତେ କେତେ ଫନ୍ଦିଫିକର କରି, ଧରାଧରି କରି ପିଲାଙ୍କୁ ବଡ଼ଲୋକ କରି ଦେଉଛନ୍ତି । ଘରଦ୍ୱାର ଜମିବାଡ଼ି କରି ଗାଡ଼ି ମଟର କଲେଣି । ଆମ ପରି ଓଲୁ କିଏ ଅଛି ? ମୂର୍ଖ ଅଯୋଗ୍ୟଗୁଡ଼ାକ ତଳକୁ ମୁହଁ କରି ଖାଲି ବହି ଲେଖନ୍ତି । ସେଗୁଡ଼ାକ କିଛି କାମକୁ ନୁହଁନ୍ତି । ହେଇ ତ ଯେଉଁମାନଙ୍କୁ ଭଣ୍ଡ ବୋଲି କହୁଥିଲ, ସେମାନେ ସବୁ ବହି ଛପେଇ ପୁରସ୍କାର ଗୋଟେଇ ନେଲେ - ତମକୁ କିଏ ପଚାରିଲା ? ଯା'ର ହେବ ସବୁ ହେବ; ଯା'ର ନାହିଁ, କିଛି ନାହିଁ । ତୁମେ କାହିଁକି ଏଥିରୁ ଗୁଡ଼ାଏ ଲେଖୁଛ ମ ?''

ବାସ୍ ! ଏଣିକି ଆତ୍ମରକ୍ଷା ନ କଲେ ଏ ସଂସାର ବଞ୍ଚିବାକୁ ଦେବ ନାହିଁ । ହାତୀକୁ ମାହୁନ୍ତ ବୁଝେଇଲା ପରି ଗୋଟିଏ ଅନ୍ୟ ସ୍ତରର ଚେତନା ପାଖରେ ଠରାଠରି କରି ନିଜ କଥା ପହୁଞ୍ଚାଇବାକୁ ହିଁ ହେବ ।

ମୁଁ ଲେଖେ, କାରଣ ନ ଲେଖି ବଞ୍ଚିବା ସମ୍ଭବ ନୁହେଁ । ଆପଣଙ୍କ ଶ୍ୱାସକ୍ରିୟା ପରି ଏଇଟା ମୋର ଅତି ସ୍ୱାଭାବିକ ଧର୍ମ । ମୁଁ ଆପଣଙ୍କ ପରି କୋଠା, ବାଡ଼ି, ସମ୍ପତ୍ତି ପାଇଁ ନିଜକୁ ସମ୍ପୂର୍ଣ୍ଣ ଖର୍ଚ୍ଚ କରିଦେଇ ପାରିବି ନାହିଁ । ମୁଁ ହୁଏତ କୋଠାରେ ରହିବାକୁ ଚାହେଁ, ରହିବାଟା ମୋର ପ୍ରୟୋଜନ । ଆପଣଙ୍କ ପରି ଖାଇ ପିନ୍ଧି ପାରିଲେ ବି ମୋର ଗୁଡ଼ାଏ ମୌଳିକ ସମସ୍ୟା ଛିଣ୍ଡିଯାଆନ୍ତା । ମୁଁ ଆହୁରି ବୁଡ଼ି ପାରନ୍ତି ମୋ କାମରେ । ବାୟାଚଢ଼େଇ ବସାଟିଏ ବାନ୍ଧି ତା' ପିଲାଙ୍କ ମୁହଁରେ ଆହାର ଦିଏ । ମୁଁ ବିନୟର ସହିତ କହୁଛି ଯେ, ଆପଣମାନେ ମୋ ଆଖିକୁ ତା'ଠାରୁ ଭିନ୍ନ ଦିଶନ୍ତି ନାହିଁ । ବରଂ ଆହୁରି ଟିକିଏ ବୋକା, ଆହୁରି ଟିକିଏ ସନ୍ତପ ଦିଶନ୍ତି । ଆପଣଙ୍କୁ ଆଗକୁ ଆଗକୁ ଯୋଜନା - ତିନିତାଲା ଉପରେ ପାଞ୍ଚତାଲା ଏବଂ ଆହୁରି ଆହୁରି ଚହଟି ଉଠୁଥିବା ମନର ଶୋଷଗୁଡ଼ାକ ସେ ବାତୁଳିଆ ଚଢ଼େଇଟି ପାଖରେ ମୁଁ ଖୋଜି ପାଏ ନାହିଁ । ଆପଣମାନେ ଭୁଲ ବାଟରେ ଚାଲିଛନ୍ତି ବୋଲି କହିବାକୁ ମୋର ସାହସ

ନାହିଁ । କାରଣ ଠିକ୍ କ'ଣ ମୁଁ ଜାଣିନାହିଁ। କିନ୍ତୁ ମୋତେ ଯଦି ଆପଣଙ୍କ ପରି ବଞ୍ଚିବାକୁ କୁହାଯାଆନ୍ତା, ସତ କହୁଛି ମୁଁ ମୋଟେ ପାରନ୍ତି ନାହିଁ ।

ଗୋଟିଏ ସମୟରେ ମୁଁ ଖୁବ୍ ଧନ୍ଦି ହୋଇଛି । ବହୁତ ଖୋଜିଛି, ବହୁତ ପଚାରିଛି, କିନ୍ତୁ ଆଦୌ ପାଇନାହିଁ ମୋ ଜୀବନର ଲକ୍ଷ୍ୟ । ମୁଁ ଯେତେବେଳେ ସ୍ଥିର ହୋଇ ମୋତେ ଏବଂ ମୋର ଚାରିଆଡ଼କୁ ଅନେଇ କିଛି ବୁଝିବା ବୟସକୁ ଆସିଲି, ସେତେବେଳକୁ ଯୌବନ ଢଳି ଆସୁଥାଏ । ମୁଁ ମୂଳରୁ ଅନୁଭବ କରୁଥିଲି ଯେ, ବୋଧହୁଏ ଏ ସଂସାରରେ ବଞ୍ଚିବା ପାଇଁ ଯୋଗ୍ୟତା ପାଇନାହିଁ । ଏ ଧସ୍ତାଧସ୍ତି ଭିତରେ ମାରପେଞ୍ଚ ଓସ୍ତାଦି ମୋର ନାହିଁ । କିନ୍ତୁ ସଂସାର ଛାଡ଼ି ଯିବାକୁ ଯଥେଷ୍ଟ ସାହସ ମଧ୍ୟ ନାହିଁ । ଇଚ୍ଛା ନଥାଇ ଏଠି ଠେଲିପେଲି ଚଳିଯିବାକୁ ହେବ। ଘୋଷାରି ହୋଇ ଯିବାକୁ ହେବ, ଏ ଧୂଳିଆ ଝାଳୁଆ ବଟତଳ । ଏଣୁ ମୋ ମନର ଖୁବ୍ ଗହୀରରେ ଏକ ଅସ୍ୱସ୍ତିକର ଅନବରତ ଜ୍ୱଳନ୍ତ ପ୍ରଶ୍ନଟିଏ ଉଠିଲା, ''ମୁଁ କ'ଣ ଏମିତି କାଠଗୋଲାରୁ ଆଳୁ ଗୋଦାମକୁ, ଦପ୍ତରି ଚୌକିରୁ ଡାକ୍ତରଖାନା ପିଣ୍ଡାକୁ ଖାଲି ଅଣନିଃଶ୍ୱାସୀ ହୋଇ ଦଉଡ଼ିବାକୁ ଆସିଥିଲି ? ମୋର କ'ଣ ଆଉ କିଛି ମହତ୍ତର ସମ୍ଭାବନା ନାହିଁ ?'' ଜାଣିବା ଲୋକ କହିଲେ ''ତୋ ଭିତରେ ଖୋଜ୍ । ଯାର ଉତ୍ତର ସେଇଠି । ତତେ ଯିଏ ପଠେଇବି ସେ ତୋ ଭିତରେ ତୋ ଜୀବନର ଚାବିଟି ଲୁଚାଇ ରଖିଛି । ତାକୁ ପାଇବାର ପରଖ ହେଲା ଯେ, ଯାହା କଲେ ତୋ ମନରେ ଗଭୀର ସନ୍ତୋଷ ଆସୁଛି, ଗ୍ଲାନି ଆସୁନାହିଁ, ଯାହା ନ କଲେ ରହିପାରିବୁ ନାହିଁ, ତାହା କରିବାକୁ ହିଁ ତୋତେ ନିର୍ଦ୍ଦେଶ ଅଛି । ତାହା ହିଁ ତୋ ଜୀବନର ଲକ୍ଷ୍ୟ ।'' ମୁଁ ଖୋଜି ଦେଖିଲି, ପାଇଲି ଅନେକ କଥା । ପଥର କାଟି ତା' ଦେହରୁ ରୂପ ଉକୁଟେଇବା ମୋର ଗୋଟିଏ ଗଭୀର ତୃଷା । କାଟିଲି ମଧ୍ୟ । ନିହାଣ, ମୁଗୁର ପାଇଁ ଏବେ ବି ମୋର ବରାଦ ରହିଛି । ପଥର ପାଇଁ ସ୍ୱପ୍ନ ରହିଛି । କାଠ, ମାଟି, ମାର୍ବଲ ପରି କାଗଜ ବା ପର୍ଦ୍ଦା ଉପରେ ରଙ୍ଗ ଚଢ଼େଇବା ମଧ ଗୋଟାଏ ନିଶାପରି ମାଡ଼ି ଆସିଲା । ଅନେକ ଆନନ୍ଦ ବି ପାଇଲି । କିନ୍ତୁ ବହୁ ମୂର୍ତ୍ତି ଭାଙ୍ଗି ଫିଙ୍ଗିଲି, ବହୁ କାଗଜ ଚିରି ଫୋପାଡ଼ିଲି । ଭିତରର ସ୍ୱପ୍ନକୁ କେବେ ଦେଖିଲା ଭଳି, ଛୁଇଁଲା ଭଳି ରୂପ ଆଉ ଦେଇପାରିଲି ନାହିଁ । ଫଳରେ ଅସନ୍ତୋଷ ହିଁ ବଢ଼ିଲା, ହତାଶା ବଢ଼ିଲା ।

ମନ ଭିତରେ ଅନେକ ସ୍ୱପ୍ନ । ସେ ସବୁ ଉହୁଙ୍କି ଉଠୁଥାଆନ୍ତି ଫିଟି ଆସିବାକୁ । ସେଗୁଡ଼ାକୁ ଧାରଣା କରିବା ଏକ ପ୍ରକାର ଅଦ୍ଭୁତ ବେଦନା । ଦିନେ ହଠାତ୍ ଗୋଟାଏ କ'ଣ ଖଲାସ ହୋଇଗଲା ପରେ ଅନେକ ଉଶ୍ୱାସ ଲାଗିଲା କିନ୍ତୁ ମୋଟ ଉପରେ ଭଲ ଲାଗିଲା । ଦେଖିଲି ଯେ, ମୁଁ କ'ଣ ଗୋଟାଏ ଲେଖି ପକେଇଲି । 'ଲେଖା'

ଆତ୍ମପ୍ରକାଶର ମାଧ୍ୟମ ରୂପେ ମନକୁ ମନ ଆସିଥିଲା । ଏମିତି ଆସିନଥିଲେ ମୁଁ ଲେଖି ନଥାନ୍ତି ଓ ଜାଣିନଥାନ୍ତି ଲେଖା କ'ଣ ? ଆସ୍ତେ ତାକୁ ମୁଁ ସ୍ୱାଭାବିକ ଭାବରେ ଗ୍ରହଣ କଲି, ସେ ମୋତେ ଅଧିକାର କରିବା ମୁଁ ଅନୁଭବ କଲି । ଆବିଷ୍କାର କଲି ନିଜକୁ, ନୂଆ କରି ଦେଖିଲି ସଂସାରକୁ । ମୋର ସମଗ୍ର ସତ୍ତାକୁ ତାହା ଧୀରେ ଧୀରେ ସଂକ୍ରମିତ କଲା, ଉଦ୍‌ବର୍ତ୍ତିତ କଲା । ମୋର ସ୍ୱାଭାବିକ ଜୀବନଧର୍ମ ସହିତ ଏକୀଭୂତ ହୋଇଗଲା । ଲେଖିବା, ବଞ୍ଚିବା ମୋ ପାଇଁ ଏକାକାର ଏକାର୍ଥବାଚୀ ।

ଲେଖାରୁ ଆନନ୍ଦ ମିଳେ । ଆତ୍ମପ୍ରକାଶର ଆନନ୍ଦ । ବୀଜରୁ ଅଙ୍କୁରର ଉଦ୍‌ଗମ ପରି, ଗଛରେ ଫୁଲର ପ୍ରସ୍ଫୁଟନ ପରି, ଫୁଲରେ ସୌରଭର ସଂଚାର ପରି । ଲେଖିଦେଲା ପରେ ତାକୁ କିଏ ପଢ଼େ, କିଏ ପଢ଼ିବା ଉଚିତ, ସେ ବିଷୟ ମୋତେ ବିବ୍ରତ କରିନାହିଁ । ସେ ପଢ଼ିଲେ ତା'ର ଉପକାର ହେବ ବା ନହେବ କିମ୍ବା ଉପକାର କ'ଣ ଏ ପ୍ରଶ୍ନ ମଧ୍ୟ ମୋର ନାହିଁ । ମୋର ସମସ୍ୟା ସମ୍ପୂର୍ଣ୍ଣ ରୂପେ ମୋ ଭିତରର । ମୁଁ ଯାହା ଚାହୁଁଚି କହିବାକୁ, ତା' ଠିକ୍ କହିପାରୁଚି ନା ନାହିଁ । ଓଃ ! କେତୋଟି ଶବ୍ଦ ଭିତରେ ଠେଲିପେଲି ଗୁଡ଼ିଏ ସୁକୁମାର କମନୀୟତାକୁ ଗଳେଇ ପକେଇବା ଏକ ଦୁଃସହ ଯନ୍ତ୍ରଣା । ସତେବା ରେଳ ଡବାର ଜଞ୍ଜିର ବାଟେ ମୋର ଶିଶୁ ସନ୍ତାନକୁ ଉଠେଇ ଆଣିବାକୁ ମୁଁ ବାଧ୍ୟ । ଏଇ ଷ୍ଟେସନ୍‌ରେ ତାକୁ ଓହ୍ଲାଇ ନ ଦେଲେ ଚଳମାନ ଗାଡ଼ିରେ ସେ ଅଜ୍ଞାତ ରାଜ୍ୟକୁ ସବୁଦିନ ପାଇଁ ଚାଲିଯିବ । ଭିଡ଼ା ଓଟରାରେ ତା'ର ଶଙ୍କି ଲାଗିଯାଏ । ସେ ଛଟପଟ ହୁଏ, ମୁଁ ଚିତ୍କାର କରେ । ଚଳନ୍ତି ଗାଡ଼ି ସାଙ୍ଗରେ ଝାଳ ସରସର ଧାଇଁ ଧାଇଁ ମୁଁ ଜୋର୍‌ରେ ତାକୁ ଶେଷରେ ନେଇଆସେ । କ'ଣଟାଏ ନେଇଆସେ ମୋର ସାହସ ହୁଏ ନାହିଁ ଦେଖି ଦେବାକୁ । ମୁଁ ଆଜି ବୁଜି କେବଳ ତା'ର ଉଷ୍ମମ ବାରେ । ମୋତେ ସେତିକିବେଳେ ହୁଏତ ଆପଣ କେହି ଦେଖନ୍ତି ଯେ, ମୁଁ ଅସୁସ୍ଥ ବା ମୋର ଦଶଟଙ୍କି ହଜିଯାଇଛି ।

ଚିନ୍ତାଟିଏ ଆସନ୍ତି ମାନନୀୟ ଅତିଥି ପରି । ତାଙ୍କୁ ଗ୍ୟାରେଣ୍ଟି ନ ଦେଲେ, ତାଙ୍କୁ ଆସନ ପଦାସନ ନ ଦେଲେ ସେ ବିମୁଖ ହୋଇ ଦୁଆରୁ ବାହୁଡ଼ି ଯାଆନ୍ତି । ଅତିଥିର ସେ ସମୟ ବିଚାର ନ ରହିବା କଥା । ସେ ଆସନ୍ତି ଯେତେବେଳେ ମୁଁ ଦପ୍ତରକୁ ବାହାରୁଥାଏ । ଆଚମ୍ବିତ ଭାବରେ ଆସନ୍ତି, ଯେତେବେଳେ ମୁଁ ଗହମ ପାଇଁ ଧାଡ଼ି ଲଗେଇ ରବିବାରିଆ ଖରାରେ ଠିଆ ହୋଇଥାଏ । ମୁଁ ତରତରରେ ତାଙ୍କୁ ବସିବା ପାଇଁ କହିଦେଇ ଆପଣଙ୍କ ସେବାରେ ଲାଗିଯାଏ । ତଥାପି ଆପଣ କହନ୍ତି ଯେ, ମୁଁ ଫାଇଲ୍ କାମ ମନୋଯୋଗ ଦେଇ କରିନାହିଁ । ଆପଣ ଶ୍ରୁତଲିଖନ

ଡାକିଲାବେଳେ ବାକି ଛାଡ଼ିଯାଇଛି । ମୋ ଘରେ ଅଭ୍ୟାଗତ ବୋଲି ମୁଁ ଆପଣଙ୍କୁ ବୁଝେଇବି କେମିତି ? ବରଂ ଆପଣଙ୍କ ନୀତିଶତକ ଶୁଣିଗଲେ ଭଲ ।

ମୁଁ କ'ଣ କେବେ ଚାହେଁ ବହି ଛାପିବି, ପୁରସ୍କାର ପାଇବି ? ଯଦି ଆପଣ ଠିକ୍ ବୁଝିବେ ତ କହିବି ଯେ, ମୁଁ ଏ ବ୍ୟାଧିରୁ ମୁକ୍ତି ମଧ୍ଧ ଚାହେଁ । କିପରି ଅଣାୟତ୍ତରେ ମୋତେ ଲେଖିବାକୁ ହୁଏ । ଦିନେ ଆପଣଙ୍କ ଅଧରାତିଆ ଭାତନିଦ ଭାଙ୍ଗି ଯଦି ଆସି ମୋତେ ଦେଖନ୍ତେ ତେବେ ଠିକ୍ ବୁଝିପାରନ୍ତେ । ମୁଁ ସେତେବେଳେ କିପରି ଭୂତାବିଷ୍ଟ ଦିଶେ, ମୁଁ ଜାଣେ ; ମୋ ମେଘୁଆ ପେଜୁଆ ଆଖିରେ କେତେ ସ୍ୱପ୍ନ ପହଁରୁଥାଏ ମୁଁ ଜାଣେ । ଦିନେ ଦିନେ ପାହାନ୍ତା ପହରର କାକର ପବନରେ ଚେତା ଭାଙ୍ଗେ । ବସି ଦେଖେ ଯେ ମୁଁ ଯାହା ଗାରେଇଛି ସେଗୁଡ଼ାକ କିଛି ନୁହେଁ । ଖଣ୍ଡିଆ ଦଣ୍ଡିଆ, ଆବୁରୁ ଜାବୁରୁ କ'ଣ ଗୁଡ଼ାଏ ।

ଆପଣ ପଚାରିବେ କାହିଁକି ମୁଁ ଯନ୍ତ୍ରଣା ପାଏ । ଯାହା ଜଣେ ଭାବିବ ତାହା ତ' ସାଫ୍ ସାଫ୍ ଲେଖିଦେବ; ସେଥିରେ ଏତେ ଭାବନା ଗୋଟାଏ କ'ଣ ? ଏଗୁଡ଼ା ସବୁ ମୋର ଅଯୋଗ୍ୟତା । ମୋର କିଛି ବ୍ୟାକରଣ ପଢ଼ିବା ଦରକାର, କିଛି ଶବ୍ଦ ଅର୍ଥ ମୁଖସ୍ଥ କରିବାର ପ୍ରୟୋଜନ । ଆପଣଙ୍କ ଉପଦେଶ ପାଇଁ ଧନ୍ୟବାଦ । ହୁଏତ ଆପଣ କହିଲା ପରି ମୋର ବ୍ୟାକରଣ ପଢ଼ିବା ଉଚିତ । କିଛି ଶବ୍ଦାର୍ଥ ମୁଖସ୍ଥ କରିବା ଉଚିତ... କିଛି ଯୋଗ୍ୟତା ସେ ଦିନରୁ ହୁଏତ ହୋଇଯାଆନ୍ତା । ମୁଁ ପ୍ରକୃତରେ ଚାହେଁ ସଫା ସଫା ଯାହା ଭାବୁଛି ତାହା ଲେଖିଦେବା ପାଇଁ । କିନ୍ତୁ ପ୍ରଥମେ ସତକୁ ସତ ବ୍ୟାକରଣ ବାଟ ଜଗି ଠିଆ ହୁଏ । ବିଭକ୍ତି, କାରକ, କ୍ରିୟା, ବିଶେଷଣ, ବିଶେଷ୍ୟ, ସର୍ବନାମର ଗୋଟାଏ ରଣଦୁର୍ମଦ ସୈନ୍ୟ । ସମସ୍ତେ ପୋଲିସ କନେଷ୍ଟବଳ । ସମସ୍ତଙ୍କ ମୁଣ୍ଡରେ ଶାସକର ଟୋପି, ହାତରେ ଠେଙ୍ଗୁଣି । ତାଙ୍କୁ ନ ମାନିଲେ ଆପଣ ହିଁ ମୋତେ ଦଣ୍ଡ ଦେବେ । ତାଙ୍କୁ କୌଣସି କୌଶଳରେ ଧପେଇ ମୁଁ ଚାଲିଯାଇ ଦେଖେ, ମହା ମହା ପ୍ରତିଭାଶାଳୀ ଲୋକ ବାଟ ଜଗି ଠିଆ ହୋଇଛନ୍ତି । ପ୍ଲାଟୋ କହୁଛନ୍ତି, 'ସେ ଚିନ୍ତାଟା ମୋର, ଯଦି ବ୍ୟବହାର କରୁଚ ସ୍ୱୀକାର କରି ବ୍ୟବହାର କର ।' କାଳିଦାସ କହୁଛନ୍ତି, ସେ ଉପମାଟୀ ତାଙ୍କର; ଭାରବୀ କହୁଛନ୍ତି ଅର୍ଥଟା ତାଙ୍କର । ମୋଟେ ବାଟ ନାହିଁ । ଯଦି ସ୍ୱୀକୃତି ଜଣାଏ ଆଉ କିଛି କରିହେବ ନାହିଁ । କେବଳ ସ୍ୱୀକୃତି ଜଣେଇବା କଥା, କେବଳ କଲେଜ ପାଠପରି କିଏ କ'ଣ କହିଛନ୍ତି ତା'ର ତାଲିକା ତିଆରି କଲାପରେ ନିଜର କିଛି ଆଉ କହିବାର ନଥାନ୍ତା – ମୁଁ କେବଳ ସେମାନଙ୍କୁ କହେ, ହେ ମାନବ ଜାତିର ଗୁରୁକୁଳ ! ଆପଣଙ୍କୁ ମୋର ବିନମ୍ର ପ୍ରଣତି । କେବଳ ବାଣୋଚ୍ଛିଷ୍ଟ ନୁହେଁ, ଆପଣ ସମସ୍ତଙ୍କର ଉଚ୍ଛିଷ୍ଟ ଏସବୁ । ତଥାପି ମୁଁ ଭାବେ

ଯେ ଏ ଚିନ୍ତାଗୁଡ଼ିକ ଆପଣଙ୍କ ପାଖକୁ ଯେମିତି ଶୂନ୍ୟରେ ଆସିଥିଲେ, ସେହିପରି ମୋ ପାଖକୁ ମଧ୍ୟ ନିଜ ଉଦାର ପଣରେ ଆସିଛନ୍ତି । ସେ କାହାରି ନଥିଲେ, ମୋର ମଧ୍ୟ ନୁହନ୍ତି । ଆପଣ ତାଙ୍କୁ ହୁଏତ ମୋ ଅପେକ୍ଷା ବେଶି ଅଳଙ୍କାର ଆଭରଣ ଦେଇ ଅଭ୍ୟର୍ଥନା କରିଥିଲେ, ମୁଁ ତା ପାରୁନାହିଁ । ଅତଏବ ମୋତେ ଆଉ ବ୍ୟସ୍ତ କରନ୍ତୁ ନାହିଁ । ତଥାପି ଦାର୍ଶନିକ କହନ୍ତି - ''ସାବଧାନ ! ଆମ କଥା ଆମ ଭାଷାରେ କହିବାକୁ ତୁ ବାଧ୍ୟ । ବୈଜ୍ଞାନିକ କହନ୍ତି ଚୋପ୍, ତୁ ଏ ରାଜ୍ୟରେ ପଶିବାକୁ ମନା । ଗଙ୍ଗାକୁ ଭଗୀରଥ ଗଡ଼େଇ ଆଣିଲା ପରି ଏ ତପସ୍ୟା, ବାଟଯାକ ବହୁ ବାଧାବନ୍ଧ ପାରିକରି ଆଣିବା ଦାୟିତ୍ୱ କିଛି କମ୍ ନୁହେଁ ।''

ପୁଣି ଶେଷକୁ ଆସନ୍ତି ଲଜ୍ଜା, ସଙ୍କୋଚ, ସଂସ୍କାର । ଯାହା କହିବାକୁ ଇଚ୍ଛା ତା' କହିହୁଏ ନାହିଁ । 'ସ୍ମର ଗରଳ ଖଣ୍ଡନମ୍' ପରେ ''ମମ ଶିରସି ମଣ୍ଡନମ୍ ଦେହି ପଦ ପଲ୍ଲବ ମୁଦାରମ୍'' ଲେଖିବାକୁ ସାହସ କୁଳାଏ ନାହିଁ ବା କହିଦେଇ ଭଞ୍ଜଙ୍କ ପରି ଅଳଙ୍କାରର ନିବୁଜ ସୁନା ଖୋଳ ଭିତରେ ଘୋଡ଼ାଇ ଦେବାକୁ ପଡ଼େ । ମାର୍ବଲର ଅତି ଅଦ୍ଭୁତ ମୂର୍ତ୍ତିଟିଏ କରି ଦେଇ ଫ୍ୟାଗ୍ ପତ୍ରଟିଏ ଖୋଜିବାକୁ ପଡ଼େ । ସମସ୍ତେ କ'ଣ 'ଲେଡ଼ି ଚାଟର୍ଲି'ଙ୍କୁ ସେମିତି ଦେଖେଇ ପାରିବେ ନା ନିଟ୍‌ସେଙ୍କ ପରି ଖୋଲାଖୋଲି ଈଶ୍ୱରଙ୍କୁ କବର ଦେଇପାରିବେ । ତଥାପି ସେମାନଙ୍କର ଏ ପ୍ରୟାସ ଏକ ଚୂଡ଼ାନ୍ତ କ୍ରୋଧର ପ୍ରୟାସ । ଖୁବ୍ ରାଗିଯାଇ ଜଣେ ଯେମିତି ଜାଣିଶୁଣି ତା'ର ପରିଧେୟ ଫିଙ୍ଗି ଦେଉଛି । ସୁଠାମ ସୈନ୍ଧବ ଅଶ୍ୱପରି କ'ଣ ନିରାବରଣ ନିଃସଙ୍କୋଚ ଠିଆହୋଇ ହୁଅନ୍ତା ନାହିଁ ? ବୋଧହୁଏ ଋଷି ଚେତନାରେ ହିଁ ଏହା ସମ୍ଭବ ହୁଅନ୍ତା । ଉପନିଷଦର ଋଷି ପାଇଁ ସଙ୍କୋଚ ନାହିଁ, ଭୟ ନାହିଁ, ଆଡ଼ମ୍ବର ନାହିଁ, ପ୍ରୟାସ ନାହିଁ, ସେ ମନ୍ତ୍ରଦ୍ରଷ୍ଟା-ତ୍ରିକାଳ ଦ୍ରଷ୍ଟା, ସେ ସ୍ୱୟଂପ୍ରତିଷ୍ଠ ।

ଅତି କ୍ଷୁଦ୍ର, ଦୁର୍ବଳ, ବିମୂଢ଼ ଜୀବଟିଏ ମୁଁ। ଅହରହ ମୋର ସନ୍ତାନ ଶିଳାରେ କ୍ଷତବିକ୍ଷତ ହେବାର ଯାତନା ମୁଁ ଭୋଗ କରେ। "କେ ସହୁ ଦେବକୀ କଷଣ।" ବନ୍ଦୀ ଘରର ପାଚେରି ଦୁର୍ଲଙ୍ଘ୍ୟ, ପାଦରେ ଶାଙ୍କୁଳି ଦୁଚ୍ଛେଦ୍ୟ। ଯଦି କୌଣସି ସ୍ୱପ୍ନର ଦେବଶିଶୁ ଜୀବନ୍ତ ମୁକୁଳି ଆସନ୍ତା; ତାହାହିଁ ହୁଅନ୍ତା ମୋର ମାତୃତ୍ୱର ଚରମ ସଫଳତା। ତା'ପରେ ଶପଥ କରୁଛି, ମୁଁ ଆଉ ଲେଖନ୍ତି ନାହିଁ ।



# ହୁକୁମ୍‌ନାମା

ମୋତେ ନ ଶୁଣି ତୋ'ର ଗତ୍ୟନ୍ତର ନାହିଁ । କିନ୍ତୁ କହିବା ନ କହିବା ମୋ ମର୍ଜି ଉପର କଥା । ଏତେ ଉପରୁ ମୁଁ ଚାହିଁଲେ ବି ତତେ ଠଉରାଇ ପାରିବି ନାହିଁ । ତୁ ହୁଏତ ସେ ସବୁଜ ରଙ୍ଗ ଭିତରେ କେଉଁଠି ଥାଇପାରୁ । ସେ ସବୁ ମୋ ଶସ୍ୟ । ସେଇଟି ଫଳନ୍ତି ଗଛ ଥିବେ । ଦୁହାଁଳି ଗାଈ ଥିବେ । ବହୁରଙ୍ଗା ପକ୍ଷୀଗହଣରେ ହୁଏତ ତୁ ଥାଇପାରୁ । ପକ୍ଷୀରକ୍ତରେ ବ୍ୟଞ୍ଜନ ମୋର ଭାରିପ୍ରିୟ । ....... ତୁ ସେ ବିସ୍ତୀର୍ଣ୍ଣ ବଢ଼ିପାଣି ଭିତରେ ଆକଣ୍ଠ ବୁଡ଼ି ରହିଥିବା ନଡ଼ାଘର ଶେଣିକୁ ଧରି କେଉଁଠି ଓହଳି ଥାଇପାରୁ । ତୋପାଖକୁ ଲାଗି ଆତଙ୍କିତ ଅଜଗରଟିଏ କିମ୍ବା ଅନ୍ଧ ଚେମେଣି ଚଟିଆମାନେ ଓହଳିଥାଇ ପାରନ୍ତି । ମୁଁ ସେ ଗୁଡ଼ାକୁ ଘୃଣା କରେ । ..... ତୁ ସେ ଧୂଆଁ ମେଘ ତଳେ ବି ଥାଇପାରୁ । ପଥର ପାଣି ହୋଇ ନିଆଁଧାରରେ ବହି ଯାଉଥିଲା ବେଳେ ତା' କୂଳରେ ଠିଆ ହୋଇଥିବା ମୁଖାପିନ୍ଧା ଅସଂଖ୍ୟ ଅନାମଙ୍କ ଭିତରେ ଥାଇପାରୁ । ମୁଁ ସେମାନଙ୍କୁ ପଶାପାଳିର ଗୋଟିପରି ଭଲପାଏ । ସେମାନେ ମାଡ଼ଖାଇ ମଲାବେଳେ ମୁଁ ବେଶ୍ ଉପଭୋଗ କରେ । ...... ଏଠୁ ସୂତାଖିଅ ପରି ଦିଶୁଥିବା ସେ ରାସ୍ତାରେ ପୋକ ମାଛି ହାଉଯାଉ ହେଉଛନ୍ତି । ଭିଡ଼ାଭିଡ଼ି ମରାମରି ହେଉଛନ୍ତି । କେତେ ପ୍ରକାର ଯାନ ଚଢ଼ି ସେଇ ଭିତରେ ଘୂରି ବୁଲୁଛନ୍ତି । ସେ ସହରମାନଙ୍କର ଅସଂଖ୍ୟ ଥାଟ ଭିତରେ ତୁ' ହୁଏତ' ଥାଇପାରୁ । ମୁଁ ଏଣତ ଉଞ୍ଚରୁ ଏ ସବୁ ଦେଖିବା ସମ୍ଭବ ନୁହେଁ । ମୋର ଇଚ୍ଛା ମଧ୍ୟ ନୁହେଁ । ସେଥିପାଇଁ ତୋ'ରି ଭଳି ଅସୁମାରି ସେବକ ଅଛନ୍ତି ଯେଉଁମାନେ ମୋତେ ଏ ଖବର ଯୋଗୋଇ ଦିଅନ୍ତି ଶସ୍ୟମାନେ ଫଳ ଦେଲାପରି, ପକ୍ଷୀ ରକ୍ତଦେଲା ପରି।

ମୁଁ ତୋତେ ସେବକ ନକହି ଆଉ କ'ଣ କହିପାରେ ? ଏଠି ତ' ସମସ୍ତେ ସେବକ ହେବାକୁ ବାଧ୍ୟ । କେବଳ ଜଣେ ସେବକ ନୁହେଁ । ସେ ଜଣକ ମୁଁ । ମୁଁ ହିଁ ଏକାମାତ୍ର ସେବ୍ୟ । ବାକି ସମସ୍ତେ ମୋର ବିଭିନ୍ନ ସେବାରେ ନିଯୁକ୍ତ ହୋଇ ରହିଛନ୍ତି । ସେମାନେ ଚିରକାଳ ସେମିତି ନିଯୁକ୍ତ ଥିଲେ ଏବଂ କଥା ମୁଁ ଜାଣେ । ସେମାନେ ବି କେହି ବଞ୍ଚିପାରିବେ ନାହିଁ । ଚିରକାଳ ବୋଝ ବୋହୁଥିବା ମୁଣ୍ଡରୁ ବୋଝ କାଢ଼ିଦେଲେ ତା'ର ଭାରସାମ୍ୟ ଦୋହଲି ଯାଏ । ସେ ତେଣିକି ଠିଆ ନ ରହି ଭୁସୁଡ଼ି ପଡ଼େ । ମୋର ସେବକ ହେବା ତୋ'ର ଧର୍ମ, ତୋ ସ୍ଥିତିର ଏକମାତ୍ର ତାତ୍ପର୍ଯ୍ୟ । ଏଣୁ ଅନିବାର୍ଯ୍ୟ

ପରିସ୍ଥିତିରେ ରୁଚି ଅରୁଚିର ପ୍ରଶ୍ନ କାହିଁ ? ତୁ ମୋତେ ଘୃଣା କରିପାରୁ । ବରଂ ନ କଲେ ଭୟ କରୁଛୁ ବୋଲି ପ୍ରମାଣିତ ହେବ କେମିତି ? ହୁଏତ ତା' ସାଙ୍ଗେ ସାଙ୍ଗେ ଭକ୍ତି ବି କରୁ ଏବଂ ସେଇ ପରିମାଣରେ ଭଲପାଉ । ମୋତେ ହତ୍ୟା କରିବାକୁ ଗୋପନରେ ଉଦ୍ୟମ କରୁ ଥାଇପାରୁ । କିନ୍ତୁ ମୁଁ ଜାଣେ ତୋ'ରି ଉପାର୍ଜନରେ ମୋ ହାତୀ ପାଇଁ ହାଉଦା କିଣାଯାଏ । ମୋ ଛତ୍ର ଚାମରରେ ଲାଗିଥିବା ମୋତି ଆଉ ମାଣିକ୍ୟ ସବୁ ତୋରି ଲୁହ ଲହୁର ରୂପାନ୍ତର । ଏ କଥାଗୁଡ଼ାକ ଲେଖନକାର ସେବକମାନେ ମୋତେ ଯୋଗାଇ ଦେଇଛନ୍ତି । ହୁଏତ ତୁ ନିଜେ ଯୋଗାଇ ଦେଇଛୁ ।

କେବଳ ତୋ ବେକକ୍ଷନ୍ଧାରେ ନୁହେଁ ମୁଁ ତୋ ଚେତନାରେ ବି ସବାର ହୋଇ ରହିଛି ଚିରକାଳ । ତୋର ଅସହାୟ ନାବାଳିକ କାଳରେ ଯିଏ ତୋ ମୁଣ୍ଡ ଉପରେ ହାତ ଥାପି ତୋ ବାପ ବୋଲାଇଥିଲା ସେଇ ଫେରି ଆସିଛି ବିଭିନ୍ନ ରୂପରେ ବାରମ୍ବାର ଏବଂ ତୋର ଅସହାୟତାକୁ ଜାରି ରଖିଛି । ତୁ ଉପରକୁ ଆଖି ତୋଳି ତା ମୁହଁକୁ ଚାହିଁଛୁ । ଶଙ୍କିଛୁ ଭୟରେ । ସମର୍ପିତ ହୋଇଛୁ ଭରସାରେ । ତେଣିକି ଉପର କହିଲେ ତୁ ବୁଝିଯାଇଛୁ ଯେ ସେ ସବୁ ବାପମୟ । ସେଇଠି ସବୁ ବଡ଼, ସବୁଭଲ । ଉପର କହିଲେ ବାପ ଏବଂ ବାଦଶାହ । ଉପର କହିଲେ ସାମ୍ରାଜ୍ୟ ଓ ସ୍ୱର୍ଗ । ସେଇଠି ସବୁ ସତ୍ୟ, ସବୁ ସୁନ୍ଦର୍ । ତଳେ କିଛି ନାହିଁ । ଉପରକୁ ଅନେଇ ମୁଗ୍ଧ ହେବା, ବିଭୋର ହୋଇ ନିଜକୁ ଉତ୍ସର୍ଗ କରିଦେବା ଦୁର୍ବଳ ନାବାଳକି । ଏଥିରୁ ତୁ ମୁକ୍ତ ହୋଇନାହୁଁ କିମ୍ବା ହୋଇ ପାଇବୁ ନାହିଁ । ମୋଠାରୁ ମଧ୍ୟ ମୁକ୍ତ ହୋଇ ପାରିବୁ ନାହିଁ । ମୋର ଏ ଉଚ୍ଚ ସିଂହାସନ, ମୋର ଏ ଉଡ଼ାଣ ସବୁସେଇ ଉପର ଦିଗ କଥା, ଜ୍ୟେଷ୍ଠ ଏବଂ ଶ୍ରେଷ୍ଠ ଦିଗକଥା ।

ମୁଁ ତୋର ପାଳକ। ଏଣୁ ତୋର ଶାସକ କିମ୍ବା ଶୋଷକ ହେବାରେ ତୋର କ'ଣ ଆପତ୍ତି ଥାଇପାରେ ? ମୁଁ ତୋର ଗ୍ରହଚକ୍ର । ଇଚ୍ଛାହେଲା ରତ୍ନଭଣ୍ଡାର ଖୋଲିଦେଲି । ଇଚ୍ଛାହେଲା ମୋ ଦୃଷ୍ଟିର ଅଗ୍ନିରେ ତୁ ଜଳିଗଲୁ । ତୁ ମୋର ଉଭୟ ଦିଗ ଦେଖିଛୁ । ବୁଝିଛୁ ଏବଂ ମାନିଯାଇଛୁ । ତୋ' ବାପ, ଗୋସେଇଁ ବାପ ବି ମାନିଥିଲେ । ତୋ ନାତି ଅଣନାତି ମାନିବେ । ତୋର ଅସୁବିଧାଟା ମୁଁ ବୁଝିପାରୁଛି । ତୁ ହୁଏତ ଭାବିନେଇଛୁ ଯେ ତୁ ମୋର ଭକ୍ତ ହୋଇଥିବାରୁ ମୋର ଭୋଜ୍ୟ ନୁହେଁ । ତୁ ଅବଶ୍ୟ ମୋର ଭୋଜ୍ୟ । ଏଡ଼େ ସହଜ କଥାଟା ତୁ କେମିତି ବୁଝିପାରୁ ନାହୁଁ । ସବୁଦିନ ନତଜାନୁ ହୋଇ ମୋ ଉଦ୍ଦେଶ୍ୟରେ ଆଖିବୁଜି ବସୁଚୁ । ତୋ'ର କନ୍ୟାକଳତ୍ର ସମସ୍ତଙ୍କୁ କେଉଁ ଅଧିକାରରେ କେଜାଣି ମୋତେ ଅର୍ପଣ କରୁଛୁ । କହୁଛୁ ଯେ ମୁଁ ହିଁ ତୋ'ର ସର୍ବେସର୍ବା । ଅଥଚ ସ୍ୱାଦ ବାରିବା ପାଇଁ ମୁଁ ତୋତେ ଏବଂ ତୋର ପରିବାରକୁ

ଭକ୍ଷଣ କଲାବେଳେ ତୁ ନିଜକୁ ସାର୍ଥକ ନ ମଣି ଛଟପଟ ହେଉଛୁ । ତୁ କ'ଣ ଜାଣିନାହୁଁ ଯେ ମୋର ଉଚ୍ଛିଷ୍ଟ ହୋଇପାରିଲେ ତୋର ମହାର୍ଦମୂଲ୍ୟ କେତେ ଗୁଣ ବଢ଼ିଯିବ ? ଛାଡ଼ ସେ କଥା । ବେଳେ ବେଳେ ଏମିତି ବକ୍‌ବାଜି କରିବାକୁ ମୋତେ ଭଲ ଲାଗେ । ତୋ ଉପରେ ହୁକୁମ୍‌ନାମା ଜାରି କରିବା ପୂର୍ବରୁ ଏମିତି ଟିକିଏ ଆଳାପ କରିବାକୁ, ଦନ୍ତାଘାତ ପୂର୍ବରୁ ଲେହନ କରିବାକୁ ଭଲଲାଗେ ।

ତୁ ଗୋଟାଏ ବେକୁବ୍ । ସେଥିପାଇଁ ନିଜ ବେକୁବ୍‌ପଣ ବୁଝିପାରୁ ନାହୁଁ । ତୋର ଅନେକ କଥା ମନେ ବି ନାହିଁ । ତୋତେ ଏକଦା ବଣୁଆ ହାତୀ ଗୋଡ଼େଇଲା- ବେଳେ ତୁ ଗୋଟିଏ ଗଛ ଆଢୁଆଳରେ ରହି ବର୍ତ୍ତି ଯାଇଥିଲୁ । ନଈସୁଅରେ ଭାସିଗଲାବେଳେ ଗୋଟାଏ ଚକାପଥରକୁ କୁଣ୍ଢେଇ ଧରି ବଞ୍ଚିଯାଇଥିଲୁ । ଆହୁରି ପିଲାବେଳେ ମାଙ୍କଡ଼ ତଡ଼ି ଆଣିଲା ବେଳେ ତୋ ବାପ ଠେଙ୍ଗା ଧରି ତାକୁ ଘଉଡ଼େଇ ଦେଇଥିଲା । ଏ ସମସ୍ତେ ଗୋଟିଏ ପାସଙ୍ଗରେ ପଡ଼ିଗଲେ । ସମସ୍ତେ ତୋର ତ୍ରାଣକର୍ତ୍ତା । ଗଛ ପଥରରେ ବାପପଣ ନଥିଲା । ତୁ ସେ ରଙ୍ଗ ମଡ଼େଇ ତାଙ୍କୁ ଠିଆ କଲୁ । ବଳିଭୋଜା ଦେଇ ସନ୍ତୁଷ୍ଟ ରଖିଲୁ । ତେଣିକି ସେମାନେ ରକ୍ତମୁଖା ହୋଇ ଖାଇବାକୁ ଆରମ୍ଭ କଲେ । ତୁ ସେମାନଙ୍କୁ ପାଳିଲୁ । କିନ୍ତୁ ବିଶ୍ୱାସ କରି ବସିଲୁ ଯେ, ସେ ସିନ୍ଦୂରିତ ଶିଳାଖଣ୍ଡଟି ସତକୁ ସତ ଜଗଦମ୍ବା । ସେଭଳି ପ୍ରଚାର ମଧ୍ୟ କଲୁ । କୀର୍ତ୍ତନ କଲୁ । ସେମିତି ଦିନେ ପ୍ରଥମ ବାଦଶାହ ଆସି ତୋ ଦିଲ୍ଲୀ ସିଂହାସନରେ ବସିଲେ । ତୋ ଭୟ ତାଙ୍କୁ ସର୍ବଶକ୍ତିମାନ୍ କରିଦେଲା; ତୋ ବେକୁବ୍‌ପଣ ତତେ ସେ ସିଂହାସନ ଆଗରେ ବଳିଭୋଜା କରିଦେଲା । ଏବେ ସେ ସବୁ ଭୁଲିଯାଇ କାହିଁକି ପାଟିତୁଣ୍ଡ କରୁଛୁ ? କିଏ ତୋତେ ଶୁଣୁଛି ? ଖାଲୋଇରେ ପଡ଼ିଥିବା ମାଛ ତା' ନିଜ ଇଚ୍ଛାରେ ସେ ଭିତରେ ପଶିଛି । ତାକୁ ଇଜ୍ଜତ୍ ଦେବାପାଇଁ ଅନ୍ତତଃ ଆଉ ତାକୁ ସେ ଅଗାଧ ପାଣି ସୁଅକୁ ଫେରାଇଦେବା କଥାନୁହେଁ । ସେ କ'ଣ ଭାବିବ ? ଏଣୁ ତାକୁ ଅମର ଆତ୍ମାର ଗାଥା ଶୁଣାଉଥିଲା ବେଳେ ହତ୍ୟା କରାଯାଇପାରେ ।

ତୋଠାରୁ ବହୁଗୁଣରେ ଅମିତ ପରାକ୍ରମଶାଳୀ କେହିଜଣେ ସବୁବେଳେ ତୋ ଉପରେ ରାଜୁତି କରୁଥାଉ, ତୋର ରକ୍ଷାକବଚ ହୋଇ ରହିଥାଉ ଅପ୍ରକଟ ଶୂନ୍ୟରେ; ତୋର ବିଶ୍ୱାସ ତୋତେ ବଞ୍ଚାଇ ରଖିଥାଉ ଯେ ତୁ ଡାକିଲେ ସେ ତୋତେ ତ୍ରାଣ କରି ନିଏ । ନ ହେଲେ ତୁ ବଞ୍ଚିବୁ କେମିତି ? ଫୁଲଚନ୍ଦନରେ ଶୋଭା ପାଉଥିବା ଦିଅଁ, ବହୁମତରେ ନିର୍ବାଚିତ ମନ୍ତ୍ରୀ ଓରଫ୍ ବାଦଶାହ, ସାହିରେ ନିଶମୋଡ଼ି ବାନା ଟେକିଥିବା ଘନା ପହିଲ୍‌ମାନ, ସେ ବିଶାଳ ବଟବୃକ୍ଷ, ସେ ଚକାପଥର-ସମସ୍ତେ ତୋ ବାପ ! ସମସ୍ତଙ୍କ ଆଗରେ ତୁ ମାଙ୍କଡ଼ । ଭୟରେ ଚୋରି ଡକାୟତ ଦଙ୍ଗା ମରୁଡ଼ି, ବନ୍ୟା,

ଦାରିଦ୍ର୍ୟ, ଅନାହାର ଭୟରେ ଶରଣ ପଶିଥିବା ନାବାଳକ । ତୋର ସେଇ ଅଳି, ସେଇ କାନ୍ଦଣା, କମ୍ପିତ ଅନୁନୟ ଆଉ କରଯୋଡ଼ ପ୍ରାର୍ଥନା । ଏ ତାଲିକାରେ ସେ ବାପଟି ହୁଏତ କିଛି ପରିମାଣରେ ସତ । ତା' ହାତରେ ସେ ଠେଙ୍ଗା, ତୋ ପ୍ରତି ତା'ର ମୋହ, ସେଥିପାଇଁ ଦାୟିତ୍ୱ ଏବଂ ତୋତେ ବଞ୍ଚେଇବାର ଇଚ୍ଛା- ଏ ସବୁ ମଧ୍ୟ ସତ । କିନ୍ତୁ ଯେତେବେଳେ ଶହେଗୁଣ, ହଜାରେ ଗୁଣ ବାପ ପଣିଆ ଖୋଜି ଖୋଜି ତୁ ଗୋଟାଏ ଜଗଦୀଶ୍ୱର ବା ଦିଲ୍ଲୀଶ୍ୱର ପାଖରେ ପହଞ୍ଚିଯାଉ ସେତେବେଳେ ବିଡ଼ମ୍ବିତ ହେବା ସ୍ୱାଭାବିକ । କାରଣ ଶହେଗୁଣ ବାପପଣିଆ ତା' ଉପରେ ଆରୋପ କଲାବେଳେ ତୁ ତାକୁ ଶହେଗୁଣ ଉଚ୍ଚ, ଆସନରେ ବସେଇ ଦେଉ । ଫଳରେ ଏତେ ଉଚ୍ଚରୁ ସେ ତୋତେ ଦେଖିଲା ବେଳକୁ ଆଉ ଅନେକତ ତୋ ସାଙ୍ଗରେ ମିଶିଯାନ୍ତି । ସେ ତୋତେ ବାରିପାରେ ନାହିଁ । ଆଉ ସେ ଜଗତ୍‌ପିତା କଥା ବି ଠିକ୍ ସେଇଆ । ଖାଲି ଏ ପୃଥିବୀଟିକୁ ଏଡ଼େ ବଡ଼ ପଡ଼ିଆରେ ଧୂଳିଟିଏ ପରି ସେ ଦେଖି ପାରୁ ନ ଥିବେ କେମିତି ସେ ତତେ ବଣୁଆହାତୀ ଦାଉରୁ ତ୍ରାଣ କରିବେ ? ମୁଁ ସେ ବିଚାରକ ପାଇଁ ଏ ସଫେଇ ଦେଇପାରେ କାରଣ ମୁଁ ନିଜେ ତତେ ଏଯାଏଁ ଠାବ କରି ପାରିନାହିଁ ।

ଆଁଶ୍ଚର୍ଯ୍ୟ କଥା; ମୋ ପାଖରେ ଖବର ପହଞ୍ଚିଛି ଯେ ତୁ କୁଆଡ଼େ ମୋର ସାମର୍ଥ୍ୟ ଯୋଗ୍ୟତା, କୁଳୀନତା, ବିଜ୍ଞତା ଆଦି ଫାଲ୍‌ତୁ ବିଷୟରେ ପ୍ରଶ୍ନ କରୁଛୁ ? ସେ ଗୁଡ଼ାକ ତୋ ପାଇଁ ଦରକାର । ଭଲ ଶସ୍ୟ ହେବାକୁ ହେଲେ ଅନେକ ଗୁଣର ଅଧିକାରୀ ହେବାକୁ ପଡ଼େ । ଭକ୍ଷକ ପାଇଁ ଏକମାତ୍ର ଗୁଣ ହେଲା କ୍ଷୁଧା । ସେଇଟା ମୋ ପାଖରେ ପ୍ରଚୁର ପରିମାଣରେ ଅଛି । ତୋର ଭ୍ରମଜାତ ହେବା ସ୍ୱାଭାବିକ । କାରଣ ଆକାର ପ୍ରକାରରେ ମୁଁ ତୋ ଭଳି ହୁଏତ ଦିଶିଯାଉଛି । ତେବେ ଯୋଡ଼ିଏ ହାତ, ଗୋଟିଏ ମୁହଁଥିବା ଜଣେ ଆଲେକ୍‌ଜାଣ୍ଡାର ପାଇଁ କାହିଁକି ବାରଟି ସମ୍ପୂର୍ଣ୍ଣ ବାର୍‌ହା ଭଜା ହୋଇ ଥୁଆ ହୁଏ ? ହଜାରେ ମୁହଁରେ ଖାଇଲେ ସୁଦ୍ଧା ସେ ତାକୁ ସାରି ପାରିବ ନାହିଁ । ତୁ ଜାଣୁ ତା'ର ସତକୁ ସତ ହଜାରେ ମୁହଁ ଅଛି ବୋଲି ? ତା' କ୍ଷୁଧା ମଧ୍ୟ ହଜାରେ ଗୁଣ ଅଧିକ । ଦେବତାର ପାର୍ଶ୍ୱରେ ଥିବା ପାର୍ଶ୍ୱଦେବତା ପରି ବାଦଶାହର ପାଖାପାଖି ଗୋଲାମମଣ୍ଡଳୀର ଏକେ ଏକେ ବାଦଶାହ । ସେମାନଙ୍କର ପୁଣି ହଜାରେ-ଲେଖା ମୁହଁ । ବାଦଶାହା ସ୍ପର୍ଶରେ ନକଲି ବାଦଶାହ ସୃଷ୍ଟି ହୋଇଯାନ୍ତି । ଏଣୁ ଯୋଗ୍ୟତା ସାମର୍ଥ୍ୟ ଆଦି ବିଷୟ ତୁମ ପାଇଁ ଯାହା ଅର୍ଥ ବହନ କରେ, ମୋ ପାଇଁ ତାହା ନୁହେଁ । ଗୁଣ ଏକାଠି କରି ସାମଗ୍ରୀ ଗୋଟେଇ କେହି କେବେ ବାଦଶାହ ହୁଏ ନାହିଁ । ବାଦଶାହ ତ ଚିରକାଳ ଥାଏ ସେ ଆସେ ନାହିଁ କି ଯାଏ ନାହିଁ ।

ତୁ ଆହୁରି କୁଆଡ଼େ କହିବାର ଶୁଣାଯାଉଛି ଯେ ଆମ ବାପେ ପାନ ବିକାଳୀ ଥିଲେ– ଥାଇ ପାରନ୍ତି । ସେଥିରେ ତୋ ବାପର କ'ଣ ଗଲା । ତୋ ଛୋଟିଆ ନଡ଼ା ଘରେ ରହି ମାଟିପିଣ୍ଡାରେ ଶୋଉଥିଲେ । ସେ ସବୁ କେଉଁକାଳ କଥା ତୁ କହୁଚୁ । ଫଳଟିଏ ପାଚିବା ପର୍ଯ୍ୟନ୍ତ ଚେରଠାରୁ ତାଳଯାଏଁ ସବୁ ବୃଥା ବନସ୍ପତି । ଫଳ ଦେଖିଲା ପରେ କେଉଁ ଗୋବରଗଦା ପ୍ରଥମେ ମଞ୍ଜି ଗଜେଇଥିଲା ସେଇଟା ବିଚାର ଯୋଗ୍ୟ ନୁହେଁ । ଏବେ ତ' ସେ ଆମ ବାପ ବୋଲି ପରିଚିତ ହେବେ, ଆମେ ତାଙ୍କ ପୁଅ ବୋଲି ନୁହେଁ । ତୋ ପାଇଁ କିନ୍ତୁ ଏ ପ୍ରଶ୍ନ ଭାରି ଗୁରୁତ୍ୱପୂର୍ଣ୍ଣ । ଘୋଡ଼ା କୁକୁର ପରି ମକା, ବାଜ୍‌ରା ଧାନର ପୁରୁଷାନୁକ୍ରମିକ ଇତିହାସ ରଖାଯାଏ । ତୋର ତ' ନିଜ୍‌ର କିଛି ନାହିଁ । ତୁ କେବଳ କେହି ଗୋଟାଏ ଅମୁକର ପୁଅ । ସେଇ ବାପ ଜରିଆରେ ହିଁ ତୋର ପରିଚୟ । ତୁ ତୋ ବାପ ଭଳି ସେବା କରି ପାରୁଛୁ ନା ନାହିଁ; ସହି ପାରୁଛୁ ନା ନାହିଁ, ପାଠ ପଢ଼ି କହି ପାରୁଛୁ ନା ନାହିଁ-ଏଇଟା ଜାଣିବା ଖୁବ୍ ଜରୁରୀ । ତୁ ଏସବୁ ମୋ ବିଷୟରେ ଜାଣିବାକୁ ଚାହୁଁଛୁ ଶୁଣି ହସ ମାଡ଼ିଲା । ହଁ, ତୁ ଯେହେତୁ ମୋ ସେବକ ତୁ ନିଶ୍ଚୟ ମୋ କଥା ଜାଣିବା ଉଚିତ୍ । ସେଥିରେ ତୋର ଭକ୍ତି ବଢ଼ିବ । ସମ୍ମାନ ବଢ଼ିବ । ସମ୍ମାନ କରି ନ ଜାଣିଲେ ସେବା କରିବୁ କେମିତି ? ଏଣୁ ତୋର ଜାଣିବା ଉଚିତ ବାଦଶାହଙ୍କର ରୁଚି କ'ଣ ? ସେ କେଉଁ ପ୍ରକାର ଭୋଗ ଇଚ୍ଛା କରୁଛନ୍ତି । ସେ କେମିତି ଏବଂ କେତେବେଳେ ଦୟା ବଣ୍ଟନ କରନ୍ତି । କେମିତି କ୍ଷମା କରନ୍ତି, କେମିତି ଆକାଶରୁ ଦାନ ବିତରଣ ହୁଏ । ଏସବୁ ଜାଣିଲେ ତୋର କର୍ତ୍ତବ୍ୟ ସ୍ଥିର ହୋଇପାରିବ । ତୁ ବାଦଶାହଙ୍କ ନିକଟବର୍ତ୍ତୀ ହୋଇ ପାରିବୁ । ଏବଂ ସେଇ ପରିମାଣରେ ବାଦଶାହା ତେଜରେ ଝଟକିବୁ । ବେକୁବ୍ ଭଳି ବାଟ ହୁଡ଼ିଗଲେ କେବଳ ଶସ୍ୟ ହୋଇ ପଡ଼ି ରହିବୁ ।

ତୋର କୁଆଡ଼େ ଗଉଁ ଅଛି ଯେ, ତୁ ମୋ ପାଖକୁ ଆସିବୁ ନାଇଁ । ତୁ କ'ଣ ଭାବିଛୁ ମୁଁ ତୋ ପାଖକୁ ଯିବି ? ସୂର୍ଯ୍ୟକୁ ଡାକିଲେ ସେ ଆସିପାରିବ ? ଅଥଚ ସେ କ'ଣ ଆସୁନାହିଁ ? ସେ ସେଡିକି ଉଞ୍ଚରୁ ବୁଣି ଦେଉଛି ଆଲୋକର ଦାନା । ତୁ ତୋ ଖୋପ ଭିତରୁ ବାହାରି ଯେତେ ଗୋଟେଇ ପାରିଲୁ । ଗୋଟାଏ ସାଧାରଣ କଥା ତୁ ବୁଝି ପାରୁନାହୁଁ । ମୁଁ ତତେ ଜାଣେ ନାହିଁ କି ଖାତିର୍ କରେ ନାହିଁ । ତୁ ବା ତୋ ଭଳି ଚୌଦ ଗଣ୍ଡା ଯେମିତି ଇଚ୍ଛା ସେମିତି ମରିଗଲେ କିଛି ଯାଏ ଆସେ ନାହିଁ । କିନ୍ତୁ ଗୋଠ ମରିବ ନାଇଁ । ତାକୁ ମାରିବାକୁ ଦିଆଯିବ ନାହିଁ । ଗୋଠକୁ ବଞ୍ଚେଇ ନ ରଖିଲେ ଆମ ସେବାରେ, ଆମ ରାଜୁତିରେ ନ୍ୟୂନଭାବ ଆସିଯିବ । ଏଣୁ ମୁଁ ମୋଟାମୋଟି ଭାବରେ ଗୋଟାଏ ଅଞ୍ଚଳରେ ଦାନା ବୁଣେଇ ଦିଏ । ସେ ଭିତରେ ତୁ ନିଶ୍ଚୟ

ଆସୁଥିବୁ । ଯେତିକି ପାଇଗଲୁ ସେତିକି ତୋର ଯୋଗ୍ୟତା । ମନେ ରଖ୍, ସମଗ୍ର ଛେଳିଗୋଠ ବାଦ୍‌ଶାହଙ୍କର । ସବୁଛେଳି ତାଙ୍କର; ଛେଳିଛୁଆ ବି ତାଙ୍କର । ତା ବୋଲି ଗୋଟାକୁ ସେ କାନ୍ଧରେ ଧରି ବୁଲିବେ ଏଇଟା କେମିତି ସମ୍ଭବ ? ବେଶି ହେଲେ ତାକୁ ମଣୋହିରେ ବ୍ୟଞ୍ଜନ ହେବାର ସୁଯୋଗ ଦେଇପାରନ୍ତି ।

ମଝିରେ ମଝିରେ ତୋ ଭଳି ବ୍ୟତିକ୍ରମଟାଏ ଦେଖାଦେଲେ ମୁଁ ଆମୋଦିତ ହୁଏ । ଅନେକ କାଳ ପରେ ଶିକାର କରିବାର ରୋମାଞ୍ଚକର ଆନନ୍ଦ ମିଳିପାରେ ବୋଲି ଆଶାକରେ । ଅନ୍ୟପକ୍ଷେ ଏମିତି ଛଟପଟ ନ ହେଲେ ତାକୁ ମାରିବା ଶବ-ସଂଗମ ଭଳି ଏକ ନିରାନନ୍ଦ କ୍ରିୟା । ଦମନ କରିବାକୁ, ଦଣ୍ଡ ଦେବାକୁ ମୁଁ ସୁଯୋଗ ଖୋଜୁଥାଏ । ବଟସ୍ଥର ଭୃତ୍ୟମାନେ ସୁଯୋଗ ଦିଅନ୍ତି ନାହିଁ । କେବେ କେମିତି ତୋ'ଭଳି ଜଣେ ବାହାରି ମୋତେ ଅବଜ୍ଞା କରେ । କାହିଁକି କରେ, ମୁଁ ଜାଣେ । ସେ ମନେ ମନେ ଚାହୁଁଥାଏ ନିଜେ ବାଦଶାହ ହେବାପାଇଁ । ଏବେ ତୁ ମଧ୍ୟ ସେଇ ଉଦ୍ୟମରେ କିଛିବାଟ ଉଠି ଆସିଲୁଣି । ତୁ ଆଉ ସାଧାରଣ ଶସ୍ୟ ଭିତରେ ନାହୁଁ । କିନ୍ତୁ ବାଦାଶାହଙ୍କୁ ବିରୋଧ କରି ତତ୍‌କ୍ଷଣ ବାଦଶାହ ହେବା ଏତେ ସହଜ ପଡ଼ିଛି ? ସେଥିପାଇଁ ତୁ ବଳ ସଂଗ୍ରହ କରି ପାରିବୁ ନାହିଁ । ଗୋପନରେ କିଛି କିଛି ଥାଟ ସଂଗ୍ରହ କଲାପରେ ପଟିଫିଟେଇ ଥିଲେ ଅବା କ'ଣ ହୋଇଥାନ୍ତା । ତଥାପି ମୋର ଅକ୍ଷୌହିଣୀ ସୈନ୍ୟ ଆଗରେ କି ଛାର ତୁ ! ମୁଁ ତତେ ସୁବବେଳେ ପରାଜିତ କରିବି, ପରାଭବ ଦେବି । ତା'ର କାରଣ କ'ଣ ଜାଣିଚୁ ? ତୁ ବିଦ୍ରୋହ କଲାବେଳେ ସୁଦ୍ଧା ଉପରକୁ ଚାହିଁ ତୋର ଅନିର୍ଦ୍ଦିଷ୍ଟ ବାପକୁ ପ୍ରାର୍ଥନା କରୁଚୁ ତୋତେ ଶକ୍ତି ଦେବାପାଇଁ । ତୁ ଏକ ନାବାଳକ । ତୁ କେବଳ ସେବକ ହେବାର ଯୋଗ୍ୟ । ମୁଁ ଉପରକୁ ଚାହେଁ ନାହିଁ କାରଣ ଉପର କହିଲେ ମୁଁ ନିଜେ । ମୋ ଉପରକୁ ଆଉ କିଛି ନାହିଁ । ଏଣୁ ଶକ୍ତି କହିଲେ ମୋର ଶକ୍ତି, ମୋର ସାମର୍ଥ୍ୟ । ଏ ସେବକ ପ୍ରଜା, ସୈନ୍ୟସାମନ୍ତ ହାତ ହତିଆର, କଳ କାରଖାନା ସବୁ ମୋ ଦେହରେ ଖଞ୍ଜି ହୋଇ ରହିଛନ୍ତି । ସେଇଟା ମୋର ବିଶ୍ୱରୂପ । ତୁ କ'ଣ ମୁକାବିଲା କରିବୁରେ ନଗଣ୍ୟ ! ତୁ ପରା ତୋ ନିଜ ଭିତରେ ହାରି ସାରିଛୁ ! ସେଇଠି ତୁ ବାଦଶାହ ନ ହେବା ଯାଏଁ କେମିତି ମୋତେ ଯୁଝିପାରିବୁ ? ଲୋକେ କ'ଣ କହିବେ ?

ଗୋଟାଏ ସୁଯୋଗ ତୋ ପାଇଁ ଥାଇ ପାରେ । ମୁଁ ତତେ ମାରି ସାରିଲା ପରେ ତୋର ସ୍ମୃତିକୁ ଅନ୍ୟମାନେ ବାଦଶାହର ସମ୍ମାନ ଦେଇ ପାରନ୍ତି– ମାନେ ମନଇଚ୍ଛା ଉପରକୁ ଉଠେଇ ଦେବତା କରିଦେଇ ପାରନ୍ତି । ମନେକର ମୁଁ ତତେ କଣ୍ଟା ମାରି ଚଉକାଠରେ ଖଞ୍ଜି ଦେବି । ମୁଣ୍ଡରେ ଗୋଟାଏ କଣ୍ଟାର ମୁକୁଟ ମଡ଼େଇ ଦେବି

ପରିହାସରେ । ସେଇ ଚଉକାଠରୁ ତୋ ବାପ ତତେ ଖସେଇ ପାରିବ ନାହିଁ କି ପୁଅ, ବି ଖସେଇ ପାରିବ ନାହିଁ । କିନ୍ତୁ ମଜା କଥା ହେଲା ତୁ ମଲା ପରେ ତତେ ବାଦଶାହ ବୋଲି ମାନୁଥିବା ତୋର ଭକ୍ତମାନେ ତତେ ଏଇ ଦଣ୍ଡିତ ଅବସ୍ଥାରେ ହିଁ ଚିରକାଳ ଜଗି ରହିଥିବେ । କଣ୍ଟାଟିଏ ଖସିଗଲେ ପୁଣି ମାରି ଦେଉଥିବେ । ମୋର ଦଣ୍ଡାଦେଶକୁ ଅନ୍ୟଥା କରିବାର ଶକ୍ତି ସେମାନଙ୍କର କସ୍ମିନ୍‌କାଳେ ନଥିଲା ଏବଂ ରହିବ ନାହିଁ । କିନ୍ତୁ ମୁଁ କାହାକୁ କେମିତି ଦଣ୍ଡଦେବି ସେଇଟା ମୋ ମର୍ଜି ଉପର କଥା । କାରଣ ଦଣ୍ଡ ମଧ୍ୟ ଏକ ଅନୁଗ୍ରହ । ତତେ ଏଇଭଳି କିଛି ଦଣ୍ଡାନୁଗ୍ରହ ଦେବା ପାଇଁ ମୋର ଇଚ୍ଛା ହେଲାଣି । କିନ୍ତୁ ସେଥିରେ ସାମାନ୍ୟ ଅସୁବିଧା ଅଛି । ତୋର ମୁଣ୍ଡ ସମସ୍ତଙ୍କ ଉପରେ ଉଭାରି ଦିଶୁ ନାହିଁ । ତୋର ସ୍ୱର ସିଧାସଳଖ ମୋ ପାଖେ ପହଞ୍ଚି ପାରୁନାହିଁ । ଏଣୁ ତୁ କୌଣସି ବିଶିଷ୍ଟ ଦଣ୍ଡ ମହୋତ୍ସବ ପାଇଁ ଉପଯୁକ୍ତ ହୋଇ ନାହୁଁ । ତତେ ଆଉ ଟିକିଏ ବଢ଼ିବାର ସୁଯୋଗ ଦେଲେ ହୁଅନ୍ତା । କିନ୍ତୁ ମୋର ଇଚ୍ଛା ବିଷୟରେ ମୋର ଅନୁଚର ତଦ୍‌ବିତ୍ ଭୃତ୍ୟମାନେ ଜାଣି ସାରିଲେଣି । ସେମାନଙ୍କୁ ନିରାଶ କରିବାକୁ ମୁଁ ଚାହେଁ ନାହିଁ ।

ଶୁଣ୍ ତେବେ ହୁକୁମ୍ ନାମା ।

"ଶାହାନ୍‌ଶାହ, ବାଦଶାହଙ୍କ ମର୍ଜି ସମସ୍ତଙ୍କୁ ଜଣାଇ ଦିଆଯାଉଛି କି ସେ ଯାହା କହିବେ ତାହା ହିଁ ସତ୍ୟ । ତାହା ହିଁ ଶିରୋଧାର୍ଯ୍ୟ । ଭାରପ୍ରାପ୍ତ ସେବକମାନେ ଯେଉଁ ଆଦେଶ ଫରମାଇସ୍ କରୁଛନ୍ତି ତାହା ବାଦଶାହଙ୍କ ଖାସ୍ ହୁକୁମ୍ ସଲାମି ଉପରେ ହେଉଛି । ତାହା ଅଲବତ୍ ପାଳନୀୟ । ଅନାମଧେୟ ବିଦ୍ରୋହୀମାନଙ୍କୁ ବେରହମ୍ ଶାସ୍ତି ହୁକୁମ୍ କରି ସେବକମାନଙ୍କୁ ନିଜ ନିଜର ଚରିତ୍ର ସଂଶୋଧନ କରିବାକୁ ମୌକା ଦିଆଯାଉଛି । ସେଥିପାଇଁ ସେମାନେ ହଜୁର୍ ବାଦ୍‌ଶାହଙ୍କୁ କୃତଜ୍ଞତା ଜଣାଇବାକୁ ଇଜାଜତ୍ ଦିଆଯାଉଛି । ଦୋଷ ଗୁରୁତର କିନ୍ତୁ ଦୋଷୀ ଗୁରୁତ୍ୱହୀନ ହୋଇଥିବାରୁ ଖୋଦ୍ ବାଦଶାହଙ୍କ ହାତରେ ଦଣ୍ଡ ପାଇବାକୁ କାବିଲ ନୁହେଁ । ତାକୁ ସେଥିପାଇଁ ନିମ୍ନତମ ପାର୍ଶଦ ନିଜ ଇଜଲାସ୍‌ରେ ମୃତ୍ୟୁଦଣ୍ଡ ପର୍ଯ୍ୟନ୍ତ ଇଚ୍ଛାନୁସାରେ ଦେଇପାରିବେ । ସେଥିପାଇଁ ଗୋଟିଏ ମାତ୍ର ଦୋଷୀ ଯଥେଷ୍ଟ ମନେ ନ ହେବାରୁ ତା'ସହିତ ତା'ର ସମସ୍କନ୍ଧ କିମ୍ବା ନିମ୍ନସ୍କନ୍ଧ ଆଉ ଡ଼ଜନେ ଯୋଡ଼ି ଦିଆଯାଉଛି । ଏ ସମସ୍ତଙ୍କର ଏକାଠି ଶିରଚ୍ଛେଦନକଲେ କିଛି ମାତ୍ରାରେ କୌତୂହଳୀ ଜନତା ଉପଭୋଗ କରି ପାରିବେ । ସେମାନଙ୍କର ପରିବାର-ବର୍ଗଙ୍କ ସାମ୍ନାରେ ଦଣ୍ଡ ଦିଆଗଲେ ସେମାନଙ୍କର ଅନୁନୟ, ପ୍ରାର୍ଥନା, ଚିତ୍କାର କ୍ରନ୍ଦନାଦି ଦୃଶ୍ୟଟିକୁ ଆହୁରି ହୃଦୟସ୍ପର୍ଶୀ କରିପାରିବ । ଏ ସଂକ୍ରାନ୍ତରେ ବାଦଶାହଙ୍କ ନିମ୍ନତମ ପାର୍ଶଦ ଅର୍ଥାତ୍ ଛାମୁଛାଟ୍ ଛାଟିଆଙ୍କ ନିଷ୍ପତ୍ତି ଚୂଡ଼ାନ୍ତହେବ । ମୂଳରୁ ଏ ଯାବତ୍

ରହିଥିବା ନିୟମାନୁସାରେ ବାଦଶାହଙ୍କ ହୁକୁମ୍‌ନାମା ଉପରେ ଅପିଲ୍ ଦରଖାସ୍ତ ସମ୍ପୂର୍ଣ୍ଣ ନିଷିଦ୍ଧ ଏବଂ ଦଣ୍ଡନୀୟ ଅପରାଧ ।

ତୁ କିଏ ବା କେଉଁଠି ଅଛୁ ଏକଥା ଜାଣିବା ନିଷ୍ପ୍ରୟୋଜନ । କାରଣ ତୁ ନଗଣ୍ୟ । ତୋର ଅସଦାଚାର ପାଇଁ ତୁ ଏବଂ ତୋ ଦ୍ୱାରା ସଂକ୍ରମିତ ତୋର ସମସ୍ତ ସମର୍ଥକଙ୍କୁ ଦଣ୍ଡବିଧାନ କରାଗଲା । ଆମ ଅରଣ୍ୟର ହରିଣ ଏବଂ ହରିଣ ଛୁଆ ଖେଳୁଥିଲା ବେଳେ ତୁମେମାନେ ସେଇଠି ଥିଲ ଏବଂ ଦେଖୁଥିଲା ବେଳେ ତୁମେମାନେ ସେଇଠି ଥିଲ ଏବଂ ଦେଖୁଥିଲ। ହରିଣ ଛୁଆକୁ ବାଘ ନେଇଗଲା । ଅଥଚ ତୁମ ସମସ୍ତଙ୍କୁ ନେଲା ନାହିଁ । ଏଥିପାଇଁ ତୁମେ ଦାୟୀ । ମୋଟ ଉପରେ ବାଘ ପାଇଁ ଏବଂ ବାଘର କ୍ଷୁଧା ପାଇଁ ତୁମେ ଦାୟୀ । ବାଘ ଏକ ବାଦଶାହା ଜାନୁଆର । ତାକୁ ନିଶ୍ଚୟ ଭୋକ ହେବ । ସେତେବେଳେ ତୁମେ ଏବଂ ତୁମର ପାଳିତ ଶାବକମାନଙ୍କ ଦ୍ୱାରା ତାକୁ ତୃପ୍ତ ରଖିବା ଦାୟିତ୍ୱ ତୁମର । ସେଥିରେ ତୁମେ ଖିଲାଫ୍ କରିଛ । ତୁମେ ଓଲଟି କହୁଚ ଯେ ତୁମକୁ ମଧ୍ୟ ଭୋକ କରୁଛି । ଏବଂ ସେଥିପାଇଁ କୁଆଡ଼େ ତୁମେ ଅନାହାରରେ ମରିଯାଉଛ. । ହାସ୍ୟାସ୍ପଦ ! କ୍ଷୁଧା ଏକ ବାଦଶାହୀ ଅଧିକାର । ସେ ଭୋକ୍ତା ତୁମେ ଭୋଜ୍ୟ । ତୁମର କ୍ଷୁଧାର ଅଧିକାର ନାହିଁ । ଯଦି ସେଭଳି ଅସ୍ୱାଭାବିକ ଲକ୍ଷଣ ଦେଖାଗଲା ତେବେ ତୁମେ ନୀରବରେ ପରସ୍ପରକୁ ଭୋଜନ କରି ଅପେକ୍ଷା କରିଥାନ୍ତ । ତୁମକୁ କେହି ଜଣେ ଅଧିକାରୀ ଭୋଜନ ନ କରିବା ଯାଏଁ ଭୋଜ୍ୟ ହେବାର ଅଧିକାରକୁ ଅପେକ୍ଷା କରିଥାନ୍ତ ।

ବିନା କାରଣରେ ଉତ୍ତେଜିତ ହେବା ତୋର ଅନ୍ୟ ଏକ ଲକ୍ଷଣ । ତୋର ଊର୍ଦ୍ଧ୍ୱଭୂମିରେ ଘଟୁଥିବା ଆମର ଗୋପନୀୟ ବିଷୟ ଜାଣିବାରେ ତୁ ଅଯଥା କୌତୂହଳୀ। ସମସ୍ତଙ୍କ ଆଗରେ ଭାଷଣ ଦେବା ଏବଂ ସବୁବେଳେ ଗୁଡ଼ାଏ କ'ଣ ଲେଖିବାର ବଦଭ୍ୟାସ ମଧ୍ୟ ରହିଛି । ଯଦି ତୁ ସତକୁ ସତ ଲେଖନକାର ହେବାକୁ ଚାହୁଁଥାଉ ତତେ ଉପରକୁ ଟୋଳି ଆଣି ଏ ରାଜ ସଭାରେ ଶିକ୍ଷାନବିସ୍ କରାଯାଇ ପାରେ । ଯେଉଁମାନଙ୍କୁ ଚାଟୁକାର ବୋଲି ତୁ ଅପପ୍ରଚାର କରୁଛୁ ସେମାନଙ୍କ କଳାକୌଶଳ ଦେଖିବାକୁ ତତେ ସୁଯୋଗ ଦିଆ ଯାଇପାରେ । ଚାଟୁକାରିତା, ବାକ୍‌ଚାତୁରୀର ଚୂଡ଼ାନ୍ତ ସିଦ୍ଧି । ମୁଁ ଜାଣେ ଏବଂ ସେ ଲେଖନକାର ମଧ୍ୟ ଜାଣେ ଯେ ଚାଟୁବଚନ ସତ୍ୟନୁହେଁ । କିନ୍ତୁ କି ମଧୁର ଶୁଣିବାକୁ ଏବଂ ଗାଇବାକୁ । ବାଦଶାହଙ୍କ ସେବା ହିଁ ତ' ସବୁ ସେବକଙ୍କ ଲକ୍ଷ୍ୟ । ତେବେ ତୋର ସାମର୍ଥ୍ୟ ଅନୁସାରେ ତୁ କାହିଁକି ଏମାନଙ୍କ ସହିତ ସାମିଲ ନ ହେବୁ ? ବାଦଶାହା ସ୍ପର୍ଶରେ କାହିଁକି ଚିକ୍କଣ ନ ଦିଶିବୁ ? – ପୋଷା କୁକୁରର ଲାଞ୍ଜ ମାଲିକକୁ ହଇରାଣ କଲେ କାଟି ଦିଆଯାଏ । ତଦ୍ୱାରା କୁକୁରର

ସ୍ୱାସ୍ଥ୍ୟର ଉନ୍ନତି ଘଟେ । ଅନେକ ବକ୍‌ବାକି କରୁଥିବାରୁ ତୋର ସେ ଜିଭଟିକୁ ସେଇଭଳି କାଟିଦେବାର ବ୍ୟବସ୍ଥା କରାଯିବ । ତୁ ନିର୍ଦ୍ଵନ୍ଦ୍ୱରେ ଲିଖନକାର ହୋଇ ଏଇଠି ଜାବଜ୍ଜୀବନ ରହିଯାଇ ପାରୁ । ଅର୍ଥାତ୍ ବାଦଶାହ ମୁଗ୍ଧ ହୋଇ ତତେ ଭୋଜନ ନ କରିବା ପର୍ଯ୍ୟନ୍ତ ।

ହୁକୁମ୍ ନାମା ସମସ୍ତଙ୍କ ପାଇଁ ଅଲଙ୍ଘନୀୟ । କିନ୍ତୁ ବାଦଶାହଙ୍କ ପାଇଁ ନୁହେଁ । ନିୟମ ସମସ୍ତଙ୍କୁ ଶାସନ କରେ । କିନ୍ତୁ ତାହା ବାଦଶାହଙ୍କ ବାକ୍ୟାଧୀନ । ସେ ଯାହା କହିବେ ତାହାହିଁ ନିୟମ । ତୁ ଅନାମଧେୟ ପଷ୍ଟିମ ଅରଣ୍ୟ ନଗଣ୍ୟ ବିନ୍ଦୁ । ତତେ ମୁଁ ଦଣ୍ଡ ଦେବାକୁ ଚାହେଁ । ଦୟା କରିବାକୁ ଚାହେଁ । ତୁ ବି ଚାହୁଁ ତୋ ଉପରେ କେହି ଜଣେ ଏପରି ଦଣ୍ଡ ଦେଉଥାଉ ଏବଂ ଦୟା କରୁଥାଉ । ତୁ ଶାସିତ ଭୃତ୍ୟ, ତୋର ଅଭିଳାଷ ପୂର୍ଣ୍ଣ କରିବା ମୋର ମାଲିକପଣ । ତତେ ବାଛିବାର ଅଧିକାର ଦେଲି । ହୁଏତ ତୋର ଜିହ୍ୱା ଛେଦନ ହେବ ନଚେତ୍ ଶିରଚ୍ଛେଦନ ହେବ । ତୋର ଇଚ୍ଛା ।



# ବିପତ୍ତି ମାର୍ଗ

ସମ୍ପଦର ସଖାମାନେ ବିପଦରେ ଦେଖାଦିଅନ୍ତି ନାହିଁ ବୋଲି ପ୍ରବାଦ ଅଛି । ଏଣୁ ବିପତ୍ତିବେଳେ ସବୁ ଯାତନା ଏକାକୀ ହିଁ ହୁଏତ ସହିବାକୁ ପଡ଼େ; କାରଣ ମିଷ୍ଟାନ୍ନ ବାଣ୍ଟିଲା ପରି ଯାତନାକୁ ବାଣ୍ଟି ହୁଏନାହିଁ । ସୁଖ ସମ୍ପଦକୁ ଲୋଡ଼ିବାକୁ ହୁଏ । ଦିନରାତି ସେହି ସ୍ୱପ୍ନରେ ନିମଗ୍ନ ରହିବାକୁ ହୁଏ । ଅହରହ ଆବାହନ ସତ୍ତ୍ୱେ କାହା ଜୀବନରେ କେତେ ମାତ୍ରାରେ ଏ ବିରଳ ମେଘମାଳା ବର୍ଷା କରିଯାଆନ୍ତି । କହିବା କଠିନ । ଏଣୁ ଖୋଜୁଥିବା ସମ୍ପଦ ମିଳେ କି ନ ମିଳେ ତାକୁ ପାଇଥିବା ଲୋକେ ମଧ୍ୟ କହିପାରନ୍ତି ନାହିଁ । କିନ୍ତୁ ବିପଦ ସବୁବେଳେ ଅନାହୂତ ଆସେ । ବଜ୍ରପରି ଅବତରଣ କରେ । ସେଥିରେ ସନ୍ଦେହର ଅବକାଶ ନ ଥାଏ । ଶ୍ୱାପଦର କ୍ଷୁଧା ପରି ତାହା ତୀବ୍ର, ଶାଣିତ ଏବଂ ପ୍ରାଞ୍ଜଳ । ସେ ଅବଶ୍ୟ ବିଦାରଣ କରିବ, ଲହୁଲୁହାଣ କରିବ । ସେ ଅନୁଭବର ସାନ୍ଦ୍ରତା ବାଘ ମୁହଁରେ ପଡ଼ିଥିବା ବ୍ୟକ୍ତି ହିଁ ବୁଝେ । ସମ୍ପଦର ଅନୁଭବକୁ ଅନ୍ୟେ ବହୁତେ ବୁଝାଇ ହୁଏ । କିନ୍ତୁ ବିପଦର ଅନୁଭବ ନିହାତି ସ୍ୱତନ୍ତ୍ର, ବ୍ୟକ୍ତିଗତ ଏବଂ ଅପରର ଅବୋଧ । ତାକୁ ବୁଝାଇ ହୁଏ ନାହିଁ । ସମ୍ପଦ, ସମ୍ପଦ ଭିତରେ ତୁଳନା କରାଯାଇ ପାରେ; କିନ୍ତୁ ବିପଦ ଅତୁଳନୀୟ । ଏଣୁ ଅନୁଭବର ବ୍ୟାପକତା ଭିତରେ ସୁଖ ସମ୍ପଦ ଆସିପାରେ, କିନ୍ତୁ ଗଭୀରତା, ଗମ୍ଭୀରତା ପାଇଁ ବିପଦ ସମୁଦ୍ରରେ ବୁଡ଼ା ମାରିବା ଅପରିହାର୍ଯ୍ୟ । ଏ ଅଗ୍ନିବର୍ତ୍ମରେ ନ ପଶିବା ଯାଏଁ ମଣିଷ ପାକଳ ହୁଏ ନାହିଁ । ତା'ର ନାବାଳିକ କଟିପାରେ ନାହିଁ ।

ଘୋର ବର୍ଷା ବତାସୀ ଘୋଟି ରହିଛି । ଆଉ କିଛି ସମୟ ପରେ ରାତ୍ରି ମାଡ଼ି ଆସିବ । ମୁହଁକୁ ମୁହଁ ଦିଶିବ ନାହିଁ । ଜୀବନର ତନ୍ତୁ ଯେକୌଣସି ମୁହୂର୍ତ୍ତରେ ଛିଣ୍ଡି ଯାଇପାରେ ବୋଲି ଆଶଙ୍କା ହେଉଥିବ । ତଥାପି ସଂସାର ଯାତ୍ରାରେ ଠିଆ ରହିବା ମନା; ଯିବାକୁ ହିଁ ହେବ । ଏଣେ ଆଗରେ ଗର୍ଜନ କରୁଛି ନଈ । ତାକୁ ପାରି କରିବ କିଏ ? ନଈ ଘାଟରେ ଦୁର୍ଦ୍ଦିନର ଅତ୍ୟାଚାର ସହୁଥିବା ଆଉଗୁଡ଼ିଏ ନୀରବ ପ୍ରାଣୀ ଏକତ୍ରିତ ହୋଇଛନ୍ତି । ସମସ୍ତେ ସମପରିମାଣରେ ଅସହାୟ ସମପରିମାଣରେ ବିପଦଗ୍ରସ୍ତ, ନାଉରୀସମେତ ! ଟଳମଳ ନାଆ ଭିତରେ ପାଖରେ ଯେ ବସିଛି, ସେ ସୋଦର, ସେ ବନ୍ଧୁ । ତାକୁ ପାଇ ଭରସା ଆସୁଛି ମନରେ ଯେ, ଏଥର ହୁଏତ ପାରି ହୋଇଯିବା ।

ନାଆ ଟଳିଲା ବେଳେ ତାକୁ ଜାବୁଡ଼ି ଧରିବାରେ ଛଳନା ନାହିଁ, ଅଭିନୟ ନାହିଁ, ଅବିଶ୍ୱାସ ନାହିଁ । ସଂପୂର୍ଣ୍ଣ ଅପରିଚିତ ଦୁଇଟି ପ୍ରାଣୀ ପରସ୍ପରକୁ ଭିଡ଼ିଧରନ୍ତି ବିନା ଦ୍ୱିଧାରେ । ଭାବନ୍ତି ହୁଏତ ଏହି ସେଇ ଈଶ୍ୱର, ଯାହାକୁ ମୁଁ ଖୋଜୁଥିଲି, ଯେ ମୋତେ ଏ ଦୁର୍ଦ୍ଦିନ ପାରି କରାଇନେବ ।

ନିଦରେ ନିଶ୍ଚେଷ୍ଟ ଶୋଇଥିବା ଗାଁ ଉପରେ ଅତର୍କିତ ବନ୍ୟା ମାଡ଼ିଯାଇଛି । ଆର୍ତ୍ତନାଦ ଭିତରେ ଛିଣ୍ଡିଯାଇଛି ସବୁ ମମତାର ତନ୍ତୁ । ସମସ୍ତେ ସ୍ୱତନ୍ତ୍ର ଭାବରେ ବୁଡ଼ିଯାଉଛନ୍ତି, ଭାସିଯାଉଛନ୍ତି । ସେତିକିବେଳେ ଜଡ଼-ଚେତନ ପର ଆପଣା ନିର୍ବିଶେଷରେ ଯାହା ପାଖରେ ମିଳିଲା ତାକୁ ପରମାଶ୍ରୟ ଭାବି ଆବୋରି ନେବା, ତା’ ସହିତ ବୁଡ଼ିବା କିମ୍ବା ଭାସିବା ଅତି ସ୍ୱାଭାବିକ ଭାବରେ ଘଟିଯାଏ । ପ୍ରଳୟ ପ୍ରବାହରେ ଯେ ସମ୍ଭାଳି ନିଏ ସେ ହୁଏତ ଗୋଟାଏ ଉପୁଡ଼ି ପଡ଼ିଥିବା ଗଛ । ତା’ ଡାଳରେ ରାତି ପାହିଯାଏ । ସ୍ୱଚ୍ଛ ଅନ୍ଧାର ଭିତରେ ଭିତରେ ହୁଏତ ଦେଖାଯାଏ ଯେ ଯାହା ଉପରେ ଭରାଦେଇ ସେ ପାଦ ଥାପିଛି ସେଇଟା ଗଛ ଡାଳରେ ଗୁଡ଼େଇ ହୋଇଥିବା ମହା ଅଜଗର । ସେତେବେଳେ ପ୍ରବଳ ଦୁର୍ବଳ ଉଭୟେ ବିପଦଗ୍ରସ୍ତ । ସେ ଆଉ ଖାଦ୍ୟ ଖାଦକ ନୁହନ୍ତି । ଜଣଙ୍କର କ୍ଷୁଧା ନାହିଁ, ଅପରର ଭୟ ନାହିଁ । ଘୋର ପ୍ରଳୟର ଚାପରେ ସେ ଉଭୟେ ସହନଶୀଳ, ପରସ୍ପର ନିର୍ଭରଶୀଳ, ପ୍ରତିବେଶୀ ।

ଘରେ ନିଆଁଲାଗିଯାଇଛି । ହୁତ୍‌ହୁତ୍ ଜଳିଯାଉଛି ସର୍ବସ୍ୱ । ସେ ସର୍ବଗ୍ରାସୀ ଶିଖା ଭିତରୁ ଅର୍ଦ୍ଧଦଗ୍ଧ ଯେ ଉବୁରି ଆସୁଛି ସେ ଖୋଜୁଛି ଅନ୍ୟମାନଙ୍କୁ । ଘୋର କୋଳାହଳ ଓ ବ୍ୟସ୍ତତା ଭିତରେ ସେମାନେ କେବଳ ନାବାଳକ ପିଲାଟିକୁ ଉଦ୍ଧାର କରି ଆଣୁଛନ୍ତି । ମୃତ୍ୟୁକୁ ଅପେକ୍ଷା କରିଥିବା ମୁମୂର୍ଷୁ ତାକୁ ଦେଖୁଛି, ଜଳିଯାଉଥିବା ସର୍ବସ୍ୱକୁ, ତା ଭିତରେ ଦଗ୍ଧୀଭୂତ ହୋଇଯାଇଥିବା ପରିବାରକୁ ଦେଖୁଛି । ନାବାଳକଟିକୁ ବୁକୁ ଉପରକୁ ଟାଣିନେଇ ହୁଏତ କହୁଛି, "ତୁ ହିଁ ମୋର ସର୍ବସ୍ୱ । ମୁଁ ତୋ ପାଇଁ ବଞ୍ଚିପାରେ କିମ୍ବା ମରିପାରେ ।" ଏ ଆପଦଗ୍ରସ୍ତ ବେଳା ସବୁ ଆବରଣ ଖସେଇ ଦେଇ ଆତ୍ମପୁରୁଷକୁ ଉଭାରି ଆସିବାକୁ ଦିଏ ।

ଆମେ ବିପଦକୁ ଏଡ଼େଇ ଯାଉ ସେଥିରେ ଜ୍ୱାଳା ଯନ୍ତ୍ରଣା ଅଛି ବୋଲି ନୁହେଁ; ସେଥିରେ ଅନାବୃତ ସତ୍ୟ ଅଛି ବୋଲି । ଆମେ ସତ୍ୟକୁ ଭଲ ପାଉନା; ଭୟ କରୁ । ସେଥିପାଇଁ ତାକୁ ହୁଏତ ସଂଭ୍ରମ, ସମ୍ମାନ ଦେଉ ଦୂରରେ ରଖିବା ପାଇଁ । ସେ ପାଖକୁ ଆସିଗଲେ, ଜୀବନର ପରିଧି ଭିତରେ ପ୍ରବେଶ କରିଗଲେ, ଅନେକ କୁହୁଡ଼ି ଅପସାରିତ ହୋଇଯାଏ; ଆବରଣ ଖସିପଡ଼େ । ପ୍ରାଞ୍ଜଳ ହୋଇଯାଏ ଦିଗନ୍ତ । ବସ୍ତୁ, ବ୍ୟକ୍ତି ସବୁ ସ୍ପଷ୍ଟ ହୋଇଯାଆନ୍ତି । ସ୍ପଷ୍ଟତାକୁ ସହି ହୁଏନାହିଁ, କାରଣ ମାୟାଞ୍ଜନ ଲଗେଇ ଜଗତକୁ

ଦେଖିବାରେ, ବିଚିତ୍ର ବର୍ଣ୍ଣ ସୃଷ୍ଟିକରି ନିଜପାଇଁ ତାକୁ ସ୍ପୃହଣୀୟ କରିବାରେ ଆମେ ଅଭ୍ୟସ୍ତ। ମୋର ନିୟମିତ ଭୋଜିସଭାରେ ସୁପରିହିତ, ଶିଷ୍ଟାଚାରୀ, ମିଷ୍ଟଭାଷୀ, ବନ୍ଧୁ ବ୍ୟକ୍ତିଙ୍କର ସମାବେଶ ହୁଏ। ସେମାନେ ପଲାଉନ୍ନରେ ପରିତୃପ୍ତ ହୁଅନ୍ତି; ମୋତେ ପ୍ରଶଂସାରେ ପରିତୃପ୍ତ କରନ୍ତି। କିନ୍ତୁ ମୋର ଆର୍ଥିକ ଦୁଃସ୍ଥିତିବେଳେ ସେହିମାନେ ହିଁ ଅପରିଚିତ ଭଳି ମୋତେ ଚାହିଁ ରହନ୍ତି, ଆଡ଼ହୋଇ ଚାଲିଯାଆନ୍ତି। ଏ ନିଭୃତ ସତ୍ୟକୁ ମୁଁ ସହିପାରେ ନାହିଁ। କିନ୍ତୁ ତାହା ଅବିକମ୍ପିତ ମୋତେ ଚାହିଁ ରହେ, ମୁଁ ତାକୁ ସ୍ୱୀକାର କରିବା ପର୍ଯ୍ୟନ୍ତ।

ସେଥିପାଇଁ ହୁଏତ ସତ୍ୟର ସୂର୍ଯ୍ୟକୁ ଚାହିଁ ପାରିବାର ସାମର୍ଥ୍ୟ ଲାଭ କରିବାକୁ, ସଂସାରର ଅଭିନୟରୁ ଉତ୍ତୀର୍ଣ୍ଣ ହୋଇ ତତ୍‌କୁ ସତ୍ ରୂପେ ଅନୁଭବ କରିବାକୁ ବହୁ ଜ୍ଞାନୀଜନ ବିପଦକୁ ଆବାହନ କରିଛନ୍ତି । ପୋଡ଼ି ନ ଗଲେ ମୋର ଧୂପ ଗନ୍ଧଦାନ କରେନା; ଜଳି ନ ଗଲେ ମୋର ଦୀପ ଆଲୋକ ବିକରଣ କରେନା । ସେଥିପାଇଁ କବି ତା'ର ଅନ୍ତର ଭିତରେ ତୀବ୍ର ଦହନ ଜାଳି ରଖିବାକୁ 'ନିଷ୍ଠୁର' ପ୍ରଭୁଙ୍କୁ ନିବେଦନ କରିଛି । କାରଣ ସେ ବୁଝିଛି ଯେ କେବଳ ମାୟାବରଣର ଛଳନା ଭିତରେ ପାରି ହୋଇଯିବା ଏ ଦୁର୍ଲ୍ଲଭ ଜୀବନର ଅପଚୟ ।

ଅନ୍ୟ ପକ୍ଷେ ସଂସାର ହିଁ ତ ଛଳନା। ତାକୁ ସତ୍ୟରେ ପରିଣତ କରିଦେଲେ ମୁଠାଏ ଖାର କେବଳ ଉଦ୍‌ବୃତ୍ତ ରହିପାରେ। ଅଗ୍ନିରେ ଶୋଧନ ହେଲେ ସବୁ ଭସ୍ମୀଭୂତ ହୋଇଯିବ। ତାକୁ ନେଇ ଆଉ ସଂସାର ରଚନା କରିହେବ ନାହିଁ। ଆମେ ସଂସାର ସମୁଦ୍ରରେ ବିଚରଣ କରୁଥିବା ଜଳଜୀବ। କିଏ ମନାକଲା ମହାକାଶ ପରମସତ୍ୟ ବୋଲି ? କିଏ ମନା କଲା ଜଳସ୍ଥଳ ପରି ଅଗ୍ନି, ମରୁତ୍, ବ୍ୟୋମ ମଧ ମହାମାନନୀୟ ତତ୍ତ୍ୱ ? ତା' ବୋଲି ଜଳଜୀବକୁ ତା'ର ପୋଷକ ଉପାଦାନରୁ ମୁକ୍ତ କରିଦେଲେ ସେ ବଞ୍ଚିପାରିବ ନାହିଁ। ସଂସାରର ଶୀତଳ ମାୟାମୋହ ଆମର ପୋଷକ ଉପାଦାନ। ସେଥିରେ ସୁଖ ସମ୍ପଦ ଅତି ସ୍ୱାଦ୍ୟ, ଉପଜୀବ୍ୟ। ସେଥିରେ ପ୍ରତାରିତ ହେବା ବରଂ କାମ୍ୟ, କିନ୍ତୁ ବିପଦର ଅଗ୍ନିରେ ଦଗ୍‌ଧୀଭୂତ ହେବା, ତା'ର କ୍ଷତ ଚିହ୍ନ ବହନ କରି ଜଳିଯାଇଥିବା ସଂସାରରେ ବଞ୍ଚିବା ସମ୍ଭବ ନୁହେଁ। ଯେ ସର୍ବଶକ୍ତିମାନ ପ୍ରଭୁ ସେ ଦୟାଶୀଳ, କ୍ଷମାଶୀଳ, ଜଗତ୍‌ପିତା ହିଁ ହୁଅନ୍ତୁ । ବିପଦ ବାରଣ ହେଉ। ସମ୍ପଦ ହିଁ ଆମ ସଂସାର ପରିପୂର୍ଣ୍ଣ କରୁ। ସମ୍ପଦର ସ୍ୱପ୍ନ ଆମ ମନକୁ ବିଭୋର ରଖୁ। ମଣିମାଣିକ୍ୟର ଆଭୂଷଣ ଆମ ଶରୀରକୁ ମଣ୍ଡିତ କରୁ।

ସଂସାରର ଶହେରେ ଅନେଶତ ଭାଗ ଏହିଭଳି ସମ୍ପଦର ପକ୍ଷପାତୀ। କିନ୍ତୁ ସେମାନଙ୍କର ଗହଣରେ ସେହି ବିରଳ ଗୋଟିଏ ମାତ୍ର ସ୍ୱର ଶୁଣାଗଲେ ସେମାନେ

ତଟସ୍ଥ ହୋଇଯାଆନ୍ତି । ଆଡ଼ ହୋଇ ତାକୁ ବାଟଛାଡ଼ି ଦିଅନ୍ତି । ବହ୍ନୁ ବଜ୍ରାଗ୍ନିରେ ବିଶୋଧିତ, କଣ୍ଟାର ଆଘାତରେ ଅଙ୍ଗ ପ୍ରତ୍ୟଙ୍ଗରୁ ରକ୍ତ କ୍ଷରଣ କରୁଥିବା ସେ ସମ୍ରାଟକୁ ନତମସ୍ତକ ପ୍ରଣାମ କରନ୍ତି । ତା'ର ନିରାଭରଣ କ୍ଷୀଣ ଶରୀରରେ ଆଖି ପଡ଼ିଗଲେ ଅନ୍ତର ମଥିତ ହୋଇଯାଏ । ସତ୍ୟର ଅଗ୍ନି ସଞ୍ଚରି ଯାଏ । କ୍ଷଣକ ପାଇଁ ଇଚ୍ଛା ହୋଇଯାଏ, ଯାଉ ଜଳି ସବୁ ସମ୍ପଦ ପଛେ, ଏ ଅଗ୍ନିରୁ ଗୋଟିଏ ସ୍ଫୁଲିଙ୍ଗ ମୋ ଭିତରେ ପ୍ରବେଶ କରିଯାଉ; ମୁଁ କିଛିମାତ୍ରାରେ ଦଗ୍ଧୀଭୂତ ହୁଏ । କେବଳ ସଂସାରରେ ବିଳସୁଥିବା ପ୍ରାଣୀଟିଏ ମୁଁ । ମୋ ଭିତରେ ଲୁଚିଥିବା ଇନ୍ଧନ ଜଳିଗଲେ ମୁଁ କିଛିମାତ୍ରାରେ ଦେଦୀପ୍ୟମାନ ହୋଇ ଉଠନ୍ତି । ହେ, ପୋଷଣକର୍ତ୍ତା ପୁଷନ୍ । ମୁହୂର୍ତ୍ତକ ପାଇଁ ସୁବର୍ଣ୍ଣର ଢାଙ୍କୁଣୀକୁ ଅପସାରିତ କର । ତା' ପଶ୍ଚାତ୍‌ର ଜ୍ୱଳମାନ ସତ୍ୟକୁ ମୁଁ ଥରେମାତ୍ର ଦେଖିଦେଇ ଜୀବନକୁ ସାର୍ଥକ କରେ ।



# ସ୍ୱାଭିମାନୀ କିଏ ?

କାଳେ ଅଯୋଗ୍ୟଙ୍କ ଭିଡ଼ ଜମିଯିବ, ଏଥିପାଇଁ ପ୍ରଥମେ ବାରଣ କରିବାକୁ ପଡୁଛି—

ଯେଉଁମାନେ ବାପର ନାଁ ନେବାକୁ ଲଜ୍ଜାବୋଧ କରନ୍ତି ଏବଂ ଗୋସେଇଁ ବାପର ନାଁ ଜାଣନ୍ତିନାହିଁ, ତଳେ ନାକ ଘଷୁଥିଲେ ମଧ୍ୟ ଲଜ୍ଜିତ କିମ୍ବା ଅପମାନିତ ହୋଇପାରନ୍ତିନାହିଁ, କୌଣସି ପ୍ରକାରେ ବଞ୍ଚିଯିବାକୁ ନିଜ ଜାତିର ବା ଦେଶର ଇଜ୍ଜତ ବିକ୍ରୀ କରିଦିଅନ୍ତି, ଅନୁଗ୍ରହ ଯେଉଁମାନଙ୍କର ଏକମାତ୍ର ଧ୍ୟେୟ, ଅନୁକରଣ କରିବା ଏକମାତ୍ର ଦକ୍ଷତା, ଭିକ୍ଷା ଯୋଗ୍ୟ ହେବାକୁ ଯେଉଁମାନେ ଯୋଜନା କରୁଥାନ୍ତି, ଯେଉଁମାନଙ୍କର ମଥାନରେ ଜଡ଼ାଗଛ ଉଠିଲେ ତାକୁ ଛାଇ ହେଲା ବୋଲି ଭାବନ୍ତି, ଶକ୍ତିଶାଳୀ ଅପହର୍ତ୍ତା ପାଖରେ ଚିର ଶାଳକରୂପେ ରହିବାକୁ ଜୀବନର ଏକମାତ୍ର ସମ୍ଭାବନା ଭାବି ଆପ୍ରାଣ ଉଦ୍ୟମ କରୁଥାନ୍ତି, ଅସମର୍ଥ, ଅଳାଜୁକ, ଥୋବଡ଼ା ଅମେରୁଦଣ୍ଡୀ ଏଇ ପ୍ରାଣୀମାନେ ଚିରକାଳ ଦେହ ମନ ପ୍ରାଣରେ କ୍ରୀତଦାସ ହୋଇ ରହିଥିବାରୁ ସ୍ୱାଭାମାନୀ ହୋଇପାରିବେ ନାହିଁ । ସେଥିପାଇଁ ତାଙ୍କର ଯୋଗ୍ୟତା ନାହିଁ।

ଆଉ ଥୋକେ ଯେଉଁମାନେ ମାନ ଅପମାନର ଉର୍ଦ୍ଧ୍ୱକୁ ଉଠିଯାନ୍ତି, ମିତ୍ର ମରିଗଲେ ଅଥବା ଶତ୍ରୁ ମରିଗଲେ ଯାହାକୁ ଏକାପରି ଲାଗେ, ଯେ ଦୁଃଖରେ ଅନୁଦ୍‌ବିଗ୍ନମନା ଏବଂ ସୁଖରେ ବିଗତସ୍ପୃହ ରହିପାରନ୍ତି, ଉଦାସୀନ, ସଂସାରତ୍ୟାଗୀ, କାମନାବିରହିତ, ନିର୍ମୋହୀ ଏ ଯୋଗୀପୁରୁଷମାନେ ସ୍ୱାଭିମାନୀ ନୁହନ୍ତି, ତାକୁ ଉତ୍ତୀର୍ଣ୍ଣ ହୋଇଯାଇଥିବାରୁ ସେଥିପାଇଁ ଯାଙ୍କର ମଧ୍ୟ ଯୋଗ୍ୟତା ନାହିଁ ।

ସ୍ୱାଭିମାନ ଏକ ଆତ୍ମ ସଚେତନ ବ୍ୟକ୍ତିର ମର୍ଯ୍ୟାଦାବୋଧ । ସେ ସମର୍ଥ ଏବଂ ସାମର୍ଥ୍ୟ ସଚେତନ । "ସେମାନେ ତୋର ସାମର୍ଥ୍ୟ ନିନ୍ଦା କରୁଛନ୍ତି" ଏତିକି ମାତ୍ର ଶୁଣିଦେଲେ ଉତ୍‌ଫଣ ନାଗପରି ସେ ଯୁଦ୍ଧ ଘୋଷଣା କରେ । ସେହିପରି ତା'ର ପରିଚୟର ଅଙ୍ଗୀଭୂତ ପରମ୍ପରା, ଦେଶ, ଜାତି, ପିତୃପୁରୁଷଙ୍କ ନିନ୍ଦା ସେ ସହି ପାରେନାହିଁ । କାରଣ ସେ ସେମାନଙ୍କୁ ଚିହ୍ନେ, ଭଲପାଏ ଏବଂ ସେମାନେ ଆହତ ହେଲେ ନିଜେ ଆହତ ହୁଏ । ସେ ମମତାପ୍ରବଣ, ସ୍ୱାଧୀକାରସଚେତନ; କିନ୍ତୁ ଏ ସମସ୍ତ ବିଷୟରେ ସାଲିସ୍ କରିପାରୁନଥିବା କ୍ରୋଧୀ ପୁରୁଷ ।

ସ୍ୱାଭିମାନ ଗର୍ବ ନୁହେଁ; କିନ୍ତୁ ଗର୍ବରହିତ ମଧ୍ୟ ନୁହେଁ । କେତେକ ବିଷୟରେ ଗର୍ବକରି ପାରୁନଥିବା ବ୍ୟକ୍ତି ସ୍ୱାଭିମାନୀ ହୋଇପାରିବନାହିଁ । ମରୁସ୍ଥଳୀରେ ଜନ୍ମିଥିଲେ ସୁଦ୍ଧା ଯେ ନିଜ ଜନ୍ମଭୂମିକୁ 'ସାରେ ଯାହାଁସେ ଆଚ୍ଛା' ବୋଲି ବୁକୁ ଫଟାଇ କହି ପାରୁନଥିବ, ଜନନୀ ଜନ୍ମଭୂମି ଯାହାପାଇଁ ସ୍ୱର୍ଗଠାରୁ ମଧ୍ୟ ଗରୀୟସୀ ନୁହେଁ, ସେ ସ୍ୱାଭିମାନୀ ନୁହେଁ । ହାଡ଼ୁଆ ଦୁର୍ବଳ ପୁଅଟି ପାଇଁ ମା' ଯେମିତି ମନେମନେ ମରିଯାଉଥାଏ, ସେ ପଡ଼ିଶା ଘର ପୁଅଠୁ କେମିତି ଅଧିକ ସ୍ୱାସ୍ଥ୍ୟବାନ ହେବ, ସେଥିପାଇଁ ଧନଜୀବନ ପଣ ଲଗାଇ ଦେଉଥାଏ, ଅଥଚ ତାକୁ ନେଇ ପ୍ରଚଣ୍ଡ ଗର୍ବ କରିପାରେ, ସେହିପରି ନିଜର ଅତୀତ ପାଇଁ, ଇତିହାସ, ସାହିତ୍ୟ, ସଂସ୍କୃତିପାଇଁ ଯାହାର ଅହେତୁକ ଗର୍ବ ନାହିଁ, ସେ ସ୍ୱାଭିମାନୀ ନୁହେଁ । ଏ ଗର୍ବ ମମତାବୋଧରୁ, ଆପଣାପଣରୁ ଆସେ । ତାହା ଆସ୍ଫାଳନ ନୁହେଁ । ମୋ ଦେଶ ମୋ ପାଇଁ ସବୁଠାରୁ ଭଲ, କାରଣ ତାହା ମୋର ଦେଶ– ଏହାହିଁ ସ୍ୱାଭିମାନୀର ସ୍ୱର, ଏଇଟା ବି ତା'ର ବିଶ୍ୱାସ । ସେ ତା'ର ସବୁ ଅଭାବ, ଦୈନ୍ୟ ବୁଝେ, ସେଥିପାଇଁ ତା'ର ଦୁଃଖର ଅନ୍ତ ନାହିଁ; କିନ୍ତୁ ତା'ପାଇଁ ତାହାର ଗର୍ବର ମଧ୍ୟ ସୀମା ନାହିଁ ।

ସ୍ୱାଭିମାନ – ଅଭିମାନ ନୁହେଁ, ଦର୍ପ ନୁହେଁ । ଦର୍ପରେ ଅନ୍ୟକୁ ପଦାନତ କରିବାର ବିଳାସ ପାଇଁ ହତ୍ୟା କରିବାର ଜିଜ୍ଞାସା ଥାଏ । ସେଥିପାଇଁ ଲଙ୍କାର ଦର୍ପ ଦଳନ ହେଲା । ଅଭିମାନୀ ଧରାକୁ ସରା ଜ୍ଞାନ କରେ, ଅବମାନନା କରେ, ମର୍ଯ୍ୟାଦା ଲଂଘନ କରେ । ସେଥିପାଇଁ କୌରବ ନିପାତ ହେଲେ । ସ୍ୱାଭିମାନୀ ପୁରୁଷ ମର୍ଯ୍ୟାଦାବନ୍ତ, ମର୍ଯ୍ୟାଦା ସଚେତନ ନିଜପାଇଁ ଯେତିକି, ଅପର ପାଇଁ ମଧ୍ୟ ସେତିକି । ସେ ମର୍ଯ୍ୟାଦା ଲଂଘନ କରିପାରେ ନାହିଁ ।

କୌଣସି ପ୍ରକାର ଦାସତ୍ୱକୁ ସ୍ୱାଭିମାନୀ ସହ୍ୟ କରିପାରେ ନାହିଁ । କାର୍ଯ୍ୟରେ, ବାକ୍ୟରେ, ଚିନ୍ତାରେ ଆଉ କାହାର ମାଲିକପଣକୁ ସେ ଅସ୍ୱୀକାର କରେ । ଯେ ଆଉ ଜଣକର ନିର୍ଦ୍ଦେଶକୁ ଅପେକ୍ଷାକରି ରହେ, ସେ କ୍ରୀତଦାସ । ସ୍ୱାଭିମାନୀ ବ୍ୟକ୍ତି ସ୍ୱାଧୀନଚେତା, ନିର୍ଭୀକ, ସ୍ୱତନ୍ତ୍ର । ସେ ତା'ର ମୂଲ୍ୟବୋଧକୁ ବଜାୟ ରଖି ସାମାଜିକ ନେତୃତ୍ୱକୁ ସ୍ୱୀକାର କରେ । ସେ ଉତ୍‌ଶୃଙ୍ଖଳ ନୁହେଁ, ଅବଜ୍ଞାକାରୀ ନୁହେଁ । ସେ ସଂଯତ, ସୁସଂହତ, ଭଦ୍ର । କିନ୍ତୁ ଆଜ୍ଞାକାରୀ ଭୃତ୍ୟ ନୁହେଁ । ଇଚ୍ଛା ବିରୁଦ୍ଧରେ ତାକୁ କେହି ବାଧ୍ୟ କରାଇ ପାରିବ ନାହିଁ । ସେ ନିଜ ବିଶ୍ୱାସରେ ଅଟଳ । ଏ ସ୍ୱାଭିମାନୀ ପୁରୁଷ ଉପରେ ବଳପ୍ରୟୋଗ ହେଲେ ତା' ମୁଣ୍ଡ କଦାପି ନଏଁ ନାହିଁ; ବରଂ ଛିଣ୍ଡିଯାଏ ।

ବିତ୍ତଶାଳୀ ହେଲେ ଜଣେ ଶକ୍ତିଶାଳୀ ହୋଇପାରେ; କିନ୍ତୁ ତା' ସହିତ ସ୍ୱାଭିମାନୀ ହେବା କିମ୍ବା ମର୍ଯ୍ୟାଦାବନ୍ତ ହେବାର ସମ୍ପର୍କ ନାହିଁ । ସେଥିପାଇଁ ଏକ ଭିନ୍ନ ମନୋବୃତ୍ତିର

ପ୍ରୟୋଜନ । ଧନଶାଳୀମାନେ ଭୀରୁ, ମିଥ୍ୟାଚାରୀ, ପରସ୍ୱାପହାରୀ ହୋଇପାରନ୍ତି, ସେହିପରି ଧନହୀନ ବ୍ୟକ୍ତି ଦୁର୍ବଳ, ଅସହାୟ, ମାନହୀନ, ମର୍ଯ୍ୟାଦାହୀନ ହୋଇପାରେ; କିନ୍ତୁ ସ୍ୱାଭିମାନୀ ଅନ୍ୟ ଏକ ପର୍ଯ୍ୟାୟର ବ୍ୟକ୍ତି । ଧନ ଥିବା ନଥିବା ସେଥିପାଇଁ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଦରିଦ୍ର ସ୍ୱାଭିମାନୀ ହେବା ଯେତିକି କଷ୍ଟ ଧନୀକକୁ ମଧ୍ୟ ସେତକି କଷ୍ଟ । କାରଣ ଉଭୟେ ନିର୍ଭୀକ ହେବାକୁ ପଡ଼ିବ, ମଥା ଟେକି ରଖିବାକୁ ପଡ଼ିବ ।

ସ୍ୱାଭିମାନୀ ଭିକ୍ଷା କରିପାରେନାହିଁ । ଅନୁସରଣ କିମ୍ବା ଅନୁକରଣ କରିପାରେନାହିଁ; କିନ୍ତୁ ସ୍ୱାଭିମାନ ବଡ଼ିମା ନୁହେଁ, ଦେଖାଣିଆପଣ ନୁହେଁ । କାରଣ ସେଥିରେ ମିଥ୍ୟା, ଢମ ନାହିଁ, ଠକାମି ନାହିଁ । ତାହା ଏକ ପ୍ରକାର ଚରିତ୍ର, ଧାତୁଗତ, ମୌଳିକ, ଚେତନାଭିତ୍ତିକ । ସେ ପରାଜୟ ମଧ୍ୟ ସହି ପାରେନାହିଁ । ଉପେକ୍ଷାର ସହିପାରେନାହିଁ । ସହିଗଲେ କ୍ଳୀବତ୍ୱ ପ୍ରମାଣିତ ହୁଏ ଏବଂ ସ୍ୱାଭିମାନୀ କ୍ଳୀବ ନୁହେଁ । ତା'ଠାରୁ ଅଯୋଗ୍ୟ ନ୍ୟୂନ ବ୍ୟକ୍ତି, ଅନୁଷ୍ଠାନ ବା ଦେଶ ତାକୁ ପରାଜିତ କଲେ ସେ ଆହତ ନାଗପରି ମୁକାବିଲା କରେ । "ତୋତେ ମୁଁ ଅବଶ୍ୟ ପରାସ୍ତ କରିବି" ବୋଲି ସଂକଳ୍ପ କରେ । ଅଧିକ ବଳଶାଳୀ ପାଖରେ ନଇଁ ନଯାଇ କହେ "ବର୍ତ୍ତମାନ ତୋ ହାତରେ ମୁଁ ମରିଯାଇପାରେ; କିନ୍ତୁ ପରାଜିତ ହେବିନାହିଁ ।"

କେତେଗୁଡ଼ିଏ ମୂଲ୍ୟକୁ ସେ ପ୍ରାଣଠାରୁ ଅଧିକ ମହତ୍ୱ ଦିଏ ଏବଂ ମହାର୍ଘ ରତ୍ନଭଣ୍ଡାର ପରି ତା' ଚାରିପଟେ ପହରା ଦେଉଥାଏ । ସେଥିରେ କାହାରି ହସ୍ତକ୍ଷେପ ହେଲେ ସେ ଯୁଦ୍ଧ ଘୋଷଣା କରେ । ଯାହାର ସେପରି ନୈତିକ ମୂଲ୍ୟ ନାହିଁ, ସେ କାହାକୁ ନେଇ ଏବଂ କାହାପାଇଁ ସ୍ୱାଭିମାନୀ ହୋଇପାରିବ ? ଆତ୍ମ ମର୍ଯ୍ୟାଦା ଏଇ ମୂଲ୍ୟ ଭୂମିରେ ହିଁ ପ୍ରତିଷ୍ଠିତ । ଦେଶାତ୍ମବୋଧ, ସାମାଜିକ, ରାଜନୀତିକ ଏବଂ ପାରିବାରିକ ଦାୟିତ୍ୱ ଏଇ ସ୍ୱାଭିମାନ ଉପରେ ନିର୍ଭରଶୀଳ । ଯେ ଯେତେ ବେଶୀ ସ୍ୱାଭିମାନୀ, ତା'ର ଏ ଦାୟିତ୍ୱବୋଧ ସେତେ ତୀବ୍ର ଓ ଅଲଂଘନୀୟ ।

ସ୍ୱାଭିମାନ, ଏକ ମାନନୀୟ, ବରଣୀୟ ବୈଶିଷ୍ଟ୍ୟବିସ୍ତାରିତ ନାଗଫଣା ପରି, ସିଂହକଟା ପରି, କେକାପୁଚ୍ଛ ପରି । କିନ୍ତୁ ସ୍ୱାଭିମାନରେ ସବୁଠାରୁ ମହନୀୟ ଦିଗ ହେଲା, ତା'ର ଉତ୍ଥାନ ଦିଗ । ନିଜକୁ ଅହରହ ଅତିକ୍ରମ କରିବାର ଦୁର୍ବାର ଅଭିଳାଷ, ହତାଶା, ବିଷାଦ, ହୀନମନ୍ୟତା ଓ ମୃତ୍ୟୁକୁ ଅସ୍ୱୀକାର କରି ତା'ର ବିପରୀତ ଦିଗରେ ଟେକି ନେଇଯିବାର ପ୍ରଚଣ୍ଡ ଆତ୍ମବିଶ୍ୱାସ ଓ ଆସ୍ପୃହା ।

ପୂର୍ବପୁରୁଷଙ୍କ ଖଟୁଲିରୁ ଶାଳଗ୍ରାମ ବିକ୍ରୀ କରୁଥିବା, ନିଜ ମନ୍ଦିରରୁ ଦେବ ବିଗ୍ରହ ଚୋରିକରି ବିଦେଶୀ ଦସ୍ୟୁ ହାତରେ ଅର୍ପି ଦେଉଥିବା, ଅନ୍ୟ ସହିତ ମିଶିଯିବାକୁ ତାହାରି ଭାଷାରେ କଥା କହି, ତାହାରି ବେଶ, ପୋଷାକ, ଆଚରଣ, ତାହାରି ଭଳି

ନାଚି ଗୀତଗାଇ ନିଜ ପରିଚୟକୁ ପ୍ରତି ମୁହୂର୍ତ୍ତରେ ହତ୍ୟାକରି ଢାଙ୍କି ରଖୁଥିବା, କିଞ୍ଚିତ୍ ଅର୍ଥ, କିଞ୍ଚିତ୍ ବିଳାସ, ବିନିମୟରେ ଦେଶର ନିରାପତ୍ତା ନକ୍ସା ବିକ୍ରୀ କରିଦେଉଥିବା, ମରୁଡ଼ି ଟଙ୍କା, ବଢ଼ି କଉଡ଼ିରେ କୋଠା କରୁଥିବା, ଅଯୋଗ୍ୟ କୁଟୁମ୍ବୀଙ୍କୁ ବିଦେଶ ପଠାଇବା ଲୋଭରେ ଦେଶଟିକୁ ସମସ୍ତ ପ୍ରତିଯୋଗିତାରେ ପରାଜୟର ଗ୍ଲାନି ମୁଣ୍ଡାଇବାକୁ ବାଧ କରୁଥିବା, ନମକହରାମିକୁ ଜାଗିରିଦାରି ପାଇଁ ନୀତି ଭାବୁଥିବା ଖୋସାମତକୁ ବିଦ୍ୟା, ତୋଷରପାତକୁ ଉପାର୍ଜନ, ନୌକରୀକୁ ରାଜସେବା, ଠକିବାକୁ ଚାଲାକି, ମିଛ କହିବାକୁ ଦକ୍ଷତା, ଲାଞ୍ଚକୁ ମାମୁଲି କହି ଲୋକ ବିଶ୍ୱାସ ଜନ୍ମାଉଥିବା– ନିଜକୁ ଦରିଦ୍ର, ଦୀନହୀନ, ଅଜ୍ଞ, ନିରକ୍ଷର କହିବାରେ ଗୋପନ ଆନନ୍ଦ ଲାଭ କରୁଥିବା, ଏ ଦେଶରେ ସ୍ୱାଭିମାନର ମାତ୍ରା କେତେ, ହାତ କାଟି ଲେଖିବା କ'ଣ ନିହାତି ଅନିବାର୍ଯ୍ୟ ?



# ନିଜକୁ ସାରିଆ ମନେକରି

ଏଇ ତୁମରି ଦୁଆରେ ପଡ଼ି ମରିଯିବି ସିନା, ଆଉ କୁଆଡ଼େ ଯିବି ନାହିଁ । ମୁଁ ଆଉ କୁଆଡ଼େ ଯିବି କହୁନ' ? ମୋ ନେତକୁ ପରା ପଘା ପକେଇ ବାନ୍ଧି ରଖିଛି ଏଇଠି ? ନେତ ମୋ ନିଧନ ସଂଙ୍ଖାଳି । ନେତ ମୋ ରକ୍ତ ନଳି । ନେତ ମୋ ପଞ୍ଚ ପ୍ରାଣ । ମୁଁ ତାକୁ ନ ଦେଖିଲେ ବଞ୍ଚିବି କେମିତି ଭଲା । ତାକୁ ମତେ ଥରେ ଦେଖେଇ ଦିଅ, ତମର ଧର୍ମ ହେବ । ମୁଁ ତା ଦିହ ମୁଣ୍ଡ ଥରେ ଆଉଁସି ଦେବି, ସେଇଟା ଗେଲରଙ୍କୁଣିଟାଏ, ତମେ ଦେଖିବ, ମତେ ଜିଭ ଲଗେଇ ସେ ଚାଟି ଦେଇଯିବ, ହମ ହମ ହବ । ତା ପହ୍ନାରୁ କ୍ଷୀର ଥୋପି ପଡ଼ିବ । ତା ଆଖିରୁ କଜଳ ଗାର ଡେଇଁ ଲୁହନିଗିଡ଼ି ଯିବ । ମୋ ପଖାଳ କଂସାରେ ମୁହଁ ବୁଡ଼େଇ ଏକା ନିଃଶ୍ୱାସକେ ସେ ଅଧେ ଶୋଢ଼କି ନବ । ତେବେ ସିନା ମୁଁ ବଞ୍ଚିବି। ନେତ କ'ଣ ତମକୁ ଗାଈ ପରି ଦିଶୁଚି ? ସେ ପରା ମୋ ଝିଅ; ମୋର ଗୋଟିଏ ବୋଲି ଅଲିଅଳୀ ଗେଲବସର ଝିଅ । ମୋ ନେତକୁ ମତେ ଦେଇଦିଅ; ମୁଁ ଚାଲିଯିବି । ନ ଦେଲେ ମତେ ପିଟି ପିଟି ମାରିଦିଅ । ମୋ ତୋଟି କଣା କରି ରକ୍ତ ପିଇଦିଅ ! ତମେ ସ୍ତିରୀ ହତ୍ୟା ପାତକ ଯଦି ମୁଣ୍ଡେଇବ ମୁଣ୍ଡାଅ । ମୁଁ କୁଆଡ଼େ ଯିବି ନାଇଁ । ମୋ ନେତ ଏଇଠି ବନ୍ଧାହୋଇ ପଡ଼ିଚି... ମୋ ନେତ... ନେତ ଲୋ... ମୋ ମା... ମୋ ଧନ ।

ନାଇଁ ସାଆନ୍ତାଣି, ମୁଁ ତୁଣ୍ଡରେ ଅନ୍ନଜଳ ଦେଇ ନାଇଁ । ମତେ ଅର୍ଖିତ ନିର୍ମାଖୀ ପାଇ ମୋ ପାଖରୁ ମୋ ନେତକୁ ଝିଙ୍କି ଆଣିଲ। ଆମକୁ କେହି ସାହା ହବାକୁ ନାଇଁ ବୋଲି ଆମ ଘର ଉଜାରି ପକେଇଲ । ବର୍ଷା କାଳରେ ପକ୍ଷୀ ବସାଟିଏ ଭାଙ୍ଗି ଦେଲେ ପରା ପାତକ ଲାଗୁଛି, ସାନ୍ତାଣି ଆମକୁ ଉଛନ୍ନ କରିଦେଲେ, ଆମେ କି ଦୋଷ କରିଥିଲୁ ତୁମର । ମୋର ସେ କଳା ମଚ ମଚ ପିଣ୍ଡା ସାବଳ ଲଗେଇ ତାଡ଼ିଦେଲ । ନେତର ମାଈ ଗୋବର ଲଗେଇ ମୁଁ ସେ ବଖୁରିକ ଘରଟିକି କେତେ ଲିପିଛି । କାନ୍ଥରେ ରଂଗ ମାଟି ଗୋବର ଦେଇ ଚିକ୍‌କଣ କରିଛି । କାଚପରି ନିର୍ମଳ ଚିକ୍ ଚିକ୍ ଘରଟି ଆମେ କେଡ଼େ ଯତ୍ନରେ ଗଢ଼ିଥିଲୁ । କେଡ଼େ ସରାଗରେ ସବୁ ସଂପାଦି ଥିଲୁ । ତମେ ତାକୁ ଭାଙ୍ଗିରୁଜି ଗୁଣ୍ଡ କରିଦେଲ ତମହାତ ଗଲା କେମିତି ? ତମ ଦୁଆରେ ନିର୍ମାଖୀ ମାଇକିନିଆଟି ପଡ଼ି କାନ୍ଦିଲେ ତମେ ରଖେଇ ଦଉ ନାହଁ । ଚମ୍ପା ସଆନ୍ତାଣୀ

ଛାଞ୍ଚୁଣି ମୁଣ୍ଡାରେ ମାରି ତଡୁଛନ୍ତି। ତମେ ସବୁ ବାଉଁଶ ଫାଳରେ ବାଡ଼ଉଚ । ତମ ଘରକୁ ଏମିତି ସାତପ୍ରସ୍ଥ ଜଗୁଆଳି ଜଗେଇଚ । ତମ ଘର ତମର ଏଡ଼ିକି ଆପଣାର ଟି ? ଆମ ଘରଟିକି କେମିତି ଭାଙ୍ଗିଦେଲ କହିଲ ? ଆମଘର ଏମିତି ଉଆସ ସିନା ନୁହେଁ । ହେଲେ ଆମେ ପରା ତାକୁ ଝାଳ ଲଗେଇ ଗଢ଼ିଥିଲୁ । ପ୍ରାଣ ଲଗେଇ ଗଢ଼ିଥିଲୁ । କ'ଣ ସେଇଟା ନଡ଼ାଛପର ହୋଇଥିଲା ବୋଲି, ହିନିମାନିଆ ଦିଶିଲା ବୋଲି ସାନଟିଏ ଗରିବ କୁଡ଼ିଆଟିଏ ବୋଲି ଭାଙ୍ଗି ଦେଲ । ଟିକିଏ ବିଚାର କଲ ନାହିଁ । ତମେ ଏ ମୁଲକର କେଡ଼େ ବଡ଼ ଲୋକ, ମୁଣ୍ଡିଆଳ ନାହାକ ଲୋକ। ତମର ଟିକିଏ ବୋଲି ବୁଝାମଣା ହେଲାନାହଁ । ଆମକୁ ବାଡ଼େଇ ବାହାର କରିଦେଲ । କାନ୍ଥ ଭୁସୁଡ଼େଇ ଦେଲ । ଗୁରୁବାର୍ ଚିତା ଲେଖି ଥିଲି ସେ କବାଟରେ ତାକୁ ତାଡ଼ି ପକେଇ ଦେଲ । ଧର୍ମ କ'ଣ କେଉଁଠି ନାଇଁ ? ଧର୍ମ କ'ଣ ଏଇଆ ସହିବ ? ଆମେ ଗରିବ ଦୁଃଖୀ, ଆମେ ନିର୍ମାଖୀ । ଆମ ଘର ତମେ ଭାଙ୍ଗି ଦେଲ । ଆମେ କି ଦୋଷ କରିଥିଲୁ ତମର ? ତେମେ ସବୁ ବଡ଼ ଲୋକ । ତମେ କପଟ କଲ, ଛନ୍ଦ କଲ । ଆମକୁ ଓଲା ନିର୍ବୁଦ୍ଧିଆ ଦେଖି ଭଣ୍ଡି ଦେଲ । କଣ ସବୁ କାଗଜରେ ଟିପଚିହ୍ନ କରେଇ ନେଲ । ଆମେ ସିନା ବିଶ୍ୱାସରେ ତୁମ କଥାରେ ପଡ଼ିଗଲୁ । ତମେ ତ କପଟ କଲା ବେଳେ ଦି'ଆଖିରେ ଦେଖିଚ । ବିଶ୍ୱାସରେ ବିଷ ଦେଲାବେଳେ ଜାଣିଚ ତମ ଆତ୍ମାପୁରୁଷ ଜାଣିଚି । ତମେ କେମିତି ଏଡ଼ିକି ଅଧର୍ମ କଲ ? ମାଛିଟିଏ ମଶାଟିଏ ନିର୍ଦୋଷରେ ମାରି ଦେବାକୁ ହାତ ଯାଉନାଇଁ । ତମେ ଦି ପ୍ରାଣୀ ମଣିଷଙ୍କ ତୋଟି ଚିପି ଦେଲ । ତାଙ୍କ ମୁହଁରୁ ଆହାର କାଢ଼ି ନେଲ । ଅର୍ଥିତ କରି ଦାଣରେ ଠିଆ କରେଇ ଦେଲ । କି ଦୋଷ କରିଥିଲୁ ଆମେ ତମର ? ଆମେ ତ ଆମ ଦୁଃଖରେ ଥାଉ । ଆମକୁ ଠାକୁରେ ଦଣ୍ଡ ଦେଇଛନ୍ତି, ଆମେ ମୁଣ୍ଡ ପତେଇ ସହିଯାଉଛୁ । ଆମର ଆଗକୁ ନାଇଁ କି ପଛକୁ ନାଇଁ । କୋଉ ଜନ୍ମରେ କୋଉ ପାପ କରିଥିଲି ବୋଲି ଏ ଜନ୍ମରେ ଆଣ୍ଟୁକୁଡ଼ୀ ବାଞ୍ଝ ହେଲି । ମାଇକିନିଆ ଜନ୍ମ ପାଇଁ ମଲି ନାଇଁ ଯାହା; ଏମିତି ହିନିମାନୀ ଅଲକ୍ଷଣୀ ହେଇ ବଞ୍ଚିଲି । କେତେ ରାତି ପୁହାଇବି କାନ୍ଦି କାନ୍ଦି । କେତେ ଦିଅଁଦୁବ କରିଛି । ଅଫଳନ୍ତି ଗଛ ଫଳିଲା ନାଇଁ । ଏତେ ଲୋକଙ୍କର ଏତେ ପିଲା ହଉଚନ୍ତି । ପାଣ ସାଇରେ ଗୋଛା ଗୋଛା ପିଲା ଧୂଳିରେ ଗଡୁଛନ୍ତି । ମୋ କପାଳକୁ ସବୁ ଶୂନ୍ୟ । କାହାର ପିଲାଟାଏ ସେ କେଜାଣି । କଳା ମଚ ମଚ ହେଇ ବେକକୁ ମୁଣ୍ଡ ଲାଗି ବାହୁରୀ ପିଲା ପରି ଥାକୁଲୁ ଥାକୁଲୁ ପୁଅଟିଏ । ପୋଖରୀ ପଙ୍କ ଦାଢ଼ରେ ଆଣ୍ଠୁଏ କାଦୁଅରେ ପଶି କଙ୍କଡ଼ା ଗାତରେ ହାତ ପୂରାଉଥାଏ । ମୁଁ ଅଜାଣତରେ ତାକୁ ଚାହିଁ ରହିଗଲି । ମୋ ଗୋଡ଼ ଚଳିଲା ନାଇଁ, ମୋ ପେଟ ବୁକୁ ମନ୍ଥି ହେଇଗଲା । ମୁଁ ତାକୁ

ସାଉଁଟି ଆଣି ପୋଛି ପକେଇ ଥାନ୍ତି । କାଦୁଅ ଧୋଇ ଦେଇ ଥାନ୍ତି ତା ପାଦ ତଳିପାରୁ । ତାକୁ ବୁକୁ ପାଖରେ ଜାକି ଧରିଥାନ୍ତି । ଚମକି ପଡ଼ିଲି । କୋଉଠି ଥିଲା ତା ରାକ୍ଷୁଣି ମା; ଝପଟି ଆସି ମୁଁହେ ମୁଁହେ ଶୋଧି ଦେଇ ଗଲା । ପିଲାକୁ ଘୋସାରି ନେଇଗଲା ମୋ ଆଖି ଆଗରୁ । ମୋର ଅଲକ୍ଷଣି ଆଖି, ଖର ଆଖି । ମୋତେ ଖାଲି ଦିଶୁଥାଏ ପିଲାଟିର ଲୁହସରସର ମୁହଁ । ଅମଙ୍ଗ ହେଇ ଯାଉ ନଥିବାର ଅଝଟପଣ । ମୋ ପାଇଁ କେତେ ଝଙ୍କା ଓଟରା ସହିଲା ମୋ ଧନ, ମୁଁ ମରିଯାଏଟି–

ପିଲାଟିଏ କୋଡ଼ରେ ପାଇଥିଲେ ମୋର ଏ ଅସାର ମାଇକିନିଆ ଜନ୍ମ ସାର୍ଥକ ହୋଇଥାନ୍ତା, ଆମ ଘର ସୁନ୍ଦର ଦିଶିଥାନ୍ତା । ନ ହେଲା ନାଇଁ । ଆମେ ଦିନେ ଦିନେ ସେମିତି ଥୁଣ୍ଟା ଥୁଣ୍ଟି ପରି ବସିଥାଉ । ରାତି ପାହି ରାତି ହେଇଯାଏ । କଣ କରିବୁ ? ଆମ ଉପରେ ପଥର ମଡ଼େଇ ହେଇ ପଡ଼ିଥାଏ । ତୁଣ୍ଡରୁ କଥା ଫୁଟେ ନାହିଁ । ମୁଁ ତାକୁ ପୁଅପରି ଗେଲ କରେ । କୋଳରେ ବସେଇ ଖୁଆଇ ଦିଏ । ସେ ଲାଜ ଲାଜ ହୁଅନ୍ତି । ଫେର ମତେ ଓଲଟି କେତେ ଗେଲ କରନ୍ତି । ଆମେ ପିଲାଙ୍କ ପରି ଏକାଠି ବସି କାନ୍ଦୁ ଏକାଠି ବସି ହସୁ । ଆମ ଦୁଃଖ ଆମର । ଆମେ ତ ଆଉ କାହାରି କିଛି ଦୋଷ କରି ନାହୁଁ । ନେତଟି ଆସିବା ଦିନଠୁଁ ଆମର ସଂସାର ପୁରିଗଲା । ଆମେ ଦି'ପ୍ରାଣୀ ଥିଲୁ । ତିନି ପ୍ରାଣୀ ହେଲୁ । ଏକାଠି ରହିଲୁ, ଏକାଠି ଶୋଇଲୁ । ନେତକୁ ସେ କଣ ଉଣା ଭଲ ପାଉଥିଲେ । ଆହା ଆମକୁ କାହିଁକି ଏମିତି ଛିନ୍‌ଛତ୍ର କରିଦେଇ ଆମ ଛୋଟ ସଂସାରଟିକୁ ଉଜାଡ଼ି ଦେଲ ନାରଖାର କରିଦେଲ ।'

ତମର କ'ଣ ନାଇଁ ?– ତମକୁ ଠାକୁରେ କୋଉଥିରେ ଉଣା କରିଛନ୍ତି ? ତମେ ଏ ବିଶାଳହେ ପୃଥିବୀର ମାଲିକ । ତୁମ ଜମିତ ଏ ମୁଣ୍ଡରୁ ସେ ମୁଣ୍ଡ ଆଖି ପାଇବ ନାହିଁ । ତେମେ ପୁଣି ପରର ଜମି ସୋରାକୁ ଆଖି କଲ ? ଥାଳି ପରି ଏଡ଼ିକି ଟିକିଏ ଜାଗା, ତମ ବାରିର ଚଉଠେ ହବ ନାଇଁ । ଜମି ସାତ ମାଣ ହେଲେ ହେଇଥାନ୍ତା ! ଜମା ଛ'ମାଣ ଆଠଗୁଣ୍ଠ ଭୂଇଁ ତମ ପାଇଁ କେତେ ? ଆମର ସିନା ସେତକ ସର୍ବସ୍ୱ । ଆମର ଭାତହାଣ୍ଡି । ତମେ ତାକୁ ଛଡ଼େଇ ନେଇ କି ଯଶ ପାଇଲ ? ଏଇ ମାତ୍ର ଆମେ ଯୋଡ଼ାଏ ପ୍ରାଣୀ ବାରଦ୍ୱାରେ ପଡ଼ି ପଡ଼ି ଭୋକ ଓପାସରେ ମରିଯିବୁ, ତୁମର କ'ଣ ଲାଭ ହେବ ସେଥିରେ ? ଆମଭଳି ନିଆଶ୍ରୀ ଗରିବ ଲୋକଙ୍କୁ ଅବେଳ ପଡ଼ିଲେ ତମେ ସିନା ଆଶ୍ରା ଦିଅନ୍ତ । ଆମକୁ ମାଟିରୁ ଉପୁଡ଼େଇ ଫିଙ୍ଗିଦେଲ, ତମର ବଳ ଅଛି ବୋଲି, ତମ ଉପରେ ଆଉ କେହି ନାହିଁ ବୋଲି, ସବାଉପରେ ଧର୍ମ ନାହିଁ ବୋଲି !

ତମେ ବଡ଼ଲୋକ ବୋଲି ଧର୍ମକୁ ସୁଦ୍ଧା ଲଙ୍ଘିଲ । ତମେ ଥରେ ଜମି ବନ୍ଧା ନେଲେ ଆଉ ଫେରାଅ ନାଇଁ ବୋଲି ମୁଁ ଚଣ୍ଡାଳୁଣୀ ଜାଣିଥିଲି । ତମ ଚମ୍ପା ସାଆନ୍ତାଣିଙ୍କୁ

କହିଥିଲି । ହିଂସ୍‌କୁଟିଆ, ଖଚୁଆ ଲୋକେ ସହିନପାରି ସେମିତି ନିନ୍ଦା କରନ୍ତି ବୋଲି ସେ ମୋତେ ବୁଝେଇ ଦେଲେ । ଭାରି ସାକୁଲେଇ କଥା କହିପାରନ୍ତି ଚମ୍ପା ସାଆନ୍ତାଣି, ପାଣିରେ ସର ପକେଇ ଦେବେ । ମୋ ହାତରେ ଧଣ୍ଡାମାଳ ପ୍ରସାଦ ଟେକି ଦେଇ ସତ୍ୟ କରେଇନେଲେ । ମତେ ଲୋଭ ଦେଖେଇ ଦେଲେ, ଭୟ ଦେଖେଇ ଦେଲେ । ମୁଁ କଣ କେବେ ମା'ମଙ୍ଗଳାଙ୍କୁ ଅମାନ୍ୟ କରିଚି ? ସେ ସପନେଇଲେ । ଆମେ ଅଧିଆ ପଡ଼ିଥିଲାବେଳେ ଗମ୍ଭୀରା ଭିତରୁ ଡାକିଡାକି କହିଲେ । ସେ ଗୁଡ଼ା କ'ଣ ମିଛ ? – ତା' ଆରଦିନ ମନ୍ଦାର ଫୁଲ ତଳେ ସୁନାଟଙ୍କା କ'ଣ ମିଛ ? ମଙ୍ଗଳାଙ୍କ ମନ୍ଦିର ଗଢ଼ିଦେଲେ ଆମର ତିନି ପୁଅ ହେବେ ବୋଲି ସିନା ଆମେ ସେ ପରା ଜମି ଲେଖିଦେଲୁ । ପୁଅଟିଏ ହୋଇଥିଲେ କ'ଣ ଏ ଦୁଃଖ ବାଧନ୍ତା ? ପୁଅମୁହଁ ଦେଖି ଦେଲେ ବାଞ୍ଝଣି ସାରିଆ ମରିଯାନ୍ତା, ସେତିକିରେ ସ୍ୱର୍ଗ ପାଇଯାନ୍ତା !– ଆମ ହୀନ କପାଳକୁ ମଙ୍ଗଳାଙ୍କ ବର ଅଣ୍ଟିଲା ନାଇଁ । ଦିଅଁ ଦେବତା ମଧ ସବୁ ସେଇ ଥିଲାବାଲାଙ୍କ ପାଇଁ, ବଡ଼ଲୋକଙ୍କ ପାଇଁ । ଆମେ ନଥିଲା ପକ୍ଷ । ଆମର କେହି ନାଇ । ସମସ୍ତେ ଆମକୁ ଓଲା ନିଧୋଡିଆ ଦେଖି ଭଣ୍ଡିଦେଲେ । ମଙ୍ଗଳା କାଇଁ ଛାଡ଼ନ୍ତେ ?– ତୁ ଯଦି ସତରେ ମଙ୍ଗଳା ହେଇଚୁ ମୁଁ ଏଡ଼େ ଆତୁର ହେଇ ଡାକୁଛି ଟିକିଏ ଶୁଣି ଦେଉ ନାହୁଁ । ଅନ୍ନଜଳ ନ ପାଇ ମୋ ହଂସା ଉଡ଼ିଯାଉଛି, ଆମେ ଉଛନ୍ନ ହୋଇଗଲୁ ତୋ ପାଇଁ; ତତେ ଦ'ଣ ଦିଶୁ ନାଇଁ ? ଆଡ଼ ଆଖିରେ ଚାହିଁଦେଲେ ବିପତ୍ତି ଉଭେଇ ଯାନ୍ତା । କ'ଣ ଦୋଷ କରିବି ମୁଁ ? ପୁଅ ମୁହଁ ଦେଖିବାକୁ ଲୋଭ କଲି ବୋଲି କ'ଣ ଦ୍ରୋହ କଲି ? ମାଇକିନିଆ ଜନ୍ମ ପାଇ ତତେ ପୁଅଟିଏ ମାଗିବା କ'ଣ ଏଡ଼ିକି ଅପ୍ରାଧ ? –ହେଲା ଏବେ; ମୁଁ ଏମିତି ବାଞ୍ଝ ଅଲକ୍ଷଣି ହେଇ ରହିବି । ମତେ ମୋ ନେତକୁ ଫେରାଇ ଦେ । ମୋ ଛ'ମାଣ ଆଠଗୁଣ୍ଠ ଫେରାଇ ଦେ । ଆମେ ନହେଲା ପୁଣି ମାଟି ଝାଟି ଆଣି କୁଡ଼ିଆଟିଏ କରିବୁ । କାହାକୁ ଦୋଷ ଦବୁ ନାଇଁ । କାହାକୁ ନିନ୍ଦିବୁ ନାଇଁ । ମାଡ଼ ଖାଇ ମୋ ପିଠି ଫାଟି ଯାଇଚି । ମୋ ଜମିର ଦୂବ ଉପରେ ଶୋଇଗଲେ ଘା' ଶୁଖିଯିବ । ନେତକୁ ଥରେ ଆଉଁସିଦେଲେ ମୋର ସବୁ ଦୁଃଖ ପାଶୋର ହୋଇଯିବ । ମା ମଙ୍ଗଳା ହେଇ କ'ଣ ଦୁଃଖୀ ଦରିଦ୍ରଙ୍କ ଗୁହାରି ଶୁଣିବୁ ନାଇଁ ?– ଦେ ମା, ମତେ ସଂସାର ଫେରେଇ ଦେ । ଏମିତି କ'ଣ ନିର୍ଦ୍ଦୟୀ ହୁଅନ୍ତି । ମୁଁ ସିନା ମା' କ'ଣ ଜାଣି ନାଇଁ ତୁ ସମସ୍ତିଙ୍କ ମା' ପରା !

ନାଇଁ ସବୁ ମିଛ ! କେହି ନାହାନ୍ତି ଶୁଣିବାକୁ । ସାରିଆଟା ଗରିବ ତନ୍ତିଆଣୀ, ଅପୁତ୍ରକ ବାଞ୍ଝୁଣୀ ଅଲକ୍ଷଣୀ । ତା'ର ଆଗକୁ ପଛକୁ କେହି ନାଇ, ତଳେ ଉପରେ କେହି ନାଇଁ– ତା'ର ଘରଦ୍ୱାର ନାଇଁ, ଜମିବାଡ଼ି ନାଇଁ । ତା' ନେତ ଗାଈ ପଘାରେ

ବନ୍ଧା ହେଇ ସାଆନ୍ତ ଘର ଗୁହାଳରେ ପଡ଼ିଚି । ତା' ଗେରସ୍ତ ବାବନା ଭୂତ ପରି ଭୋକ ଓପାସରେ ବୂଲୁଚି । ତା' କଥା କିଏ କାହିଁକି ବୁଝିବ ? ହାଣ ଖାଉଥିବା ଛେଳିର ବୋବାଳି ଶୁଣି କିଏ କାଇଁକି ତାକୁ ଉଦ୍ଧାରିବ ? ...ଆହେ, କିଏ ଅଛ କେଉଁଠି ମୋ ବାପ ଭାଇ, କିଏ ଅଛ ଧର୍ମକାରୀ ତମ ଆଗରେ ନିର୍ଦ୍ଦୋଷୀ ମାଇକିନିଆଟାଏ ତମକୁ ସବୁଂ ଡାକି ଡାକି ମାଡ଼ ଖାଇ ମରିଯିବ । ତମେ ପାଟି ଫିଟେଇବ ନାଇଁ ? ତମକୁ ଧର୍ମ ସହିବ ନାଇଁ । ତମ ସମସ୍ତକୁ ସ୍ତ୍ରୀରୀହତ୍ୟା ପାତକ ଲାଗିବ ! ମତେ ଯେମିତି ନାରଖାର କରିଚ ସେମିତି ତମେ ନାରଖାର ହେଇଯିବ ।

ତମ ଗୋଡ଼ ଧରୁଚି, ମଙ୍ଗରାଜ ସାଆନ୍ତେ, ତମକୁ ନେହୁରା ହଉଚି ଚମ୍ପା ସାନ୍ତାଣି, ମତେ ମାରନା । ମୁଁ ତମର କିଛି ଦୋଷ କରି ନାଇଁ । ସେ ବାଉଁଶ ବାଡ଼ିରେ ପିଟି ଦେଲେ ଗୋଟିଏ ପାହାରରେ ମରିଯିବି ସାଆନ୍ତେ । ଏଡ଼ିକି ଅଧର୍ମ କର ନାଇଁ । ମୁଁ ଗରିବ ନିଆଶ୍ରୀ ମାଇକିନିଆ ପ୍ରାଣୀ । ମୋ ଘର, ମୋ ଜମି, ମୋ ଗେରସ୍ତ, ମୋ ନେତ କୁଆଡ଼େ ଗଲେ ସମସ୍ତେ । ମୁଁ କ'ଣ କରିବି ଚମ୍ପା ସାଆନ୍ତାଣି । ମୋତେ ଏମିତି ମାରନା, ମତେ ବଞ୍ଚିବାକୁ ଦିଅ, ମତେ ମୋ ସଂସାର ଫେରେଇ ଦିଅ ସାଆନ୍ତେ, ତମର ଧର୍ମ ହବ ! –ଓଃ, ମରିଗଲି, ମତେ ମାରନା, ମୁଁ ନିର୍ଦ୍ଦୋଷ....ଓଃ !



# ଭୋଗ ସଂହିତା

ପ୍ରଥମେ ଆପଣଙ୍କ ଦୃଷ୍ଟି ପ୍ରାଞ୍ଜଳ ହେଉ । ଚିନ୍ତା ଦ୍ୱିଧା ମୁକ୍ତ ହେଉ । ମନରେ କଳ୍ପନାଦି ବିକାରର ବିନାଶ ଘଟୁ । ଆପଣ ଜ୍ଞାନରୁ ତଥା ଅଜ୍ଞାନରୁ ମୁକ୍ତିଲାଭ କରନ୍ତୁ । ଆପଣଙ୍କୁ ଅଖଣ୍ଡ ଭୋଗ ପ୍ରାପ୍ତି ହେଉ । ଏ ସଂହିତା ଶ୍ରବଣର ପୂର୍ଣ୍ଣଫଳ ଆପଣ ଲାଭ କରନ୍ତୁ ।

ଏ ପୃଥ୍ୱୀ ଏକମାତ୍ର ଭୋଗଭୂମି । କାୟା ହିଁ ଆପଣଙ୍କର ଏକମାତ୍ର ଭୋଗକ୍ଷେତ୍ର । ଭୋଗକାଳ-କେବଳ ବର୍ତ୍ତମାନ । ଏବଂ ଭୋଗୀ ଆପଣ ନିଜେ । ଯାଭିତରୁ କୌଣସିଟିର ବିକଳ୍ପ ନାହିଁ । ଭୋଗ-କାମନା ପ୍ରାଣୀର ଆଦିମତମ ଏବଂ ଶ୍ରେଷ୍ଠତମ ଧର୍ମ । ସେଥିପାଇଁ ଆପଣ କୌଣସି ପ୍ରକାର ଲଜ୍ଜା, ଭୟ, ସଂକୋଚ କିମ୍ବା ଦ୍ୱିଧା କରନ୍ତୁ ନାହିଁ । ତାହାହିଁ ସମର୍ଥ ଭୋଗାଧିକାରୀ ପାଇଁ ସର୍ବପ୍ରଥମ ଆବଶ୍ୟକତା । କୌଣସି ଏକ କାଳ-ବିନ୍ଦୁରେ ଘଟିଥିବା ଘଟନା ଅନ୍ୟ ବିନ୍ଦୁରେ ନିରର୍ଥକ । ଅନ୍ୟର ଦୃଷ୍ଟାନ୍ତ ଦ୍ୱାରା ନିଜକୁ କଦାପି ବିଚାର କରନ୍ତୁ ନାହିଁ । ତାହା ଦୁର୍ବଳଚେତାର ଲକ୍ଷଣ । ଏଣୁ ନିଜକୁ ସର୍ବଦା ପ୍ରଭାବମୁକ୍ତ ରଖନ୍ତୁ । ଭୋଗହିଁ ଏ ସମସ୍ତ ଜଗତ୍‌କୁ ରସରେ ରୂପାନ୍ତରିତ କରେ । ରସ ହେଉଛି ପ୍ରାଚୀନତମ ସତ୍ୟ । ଭୋଗ ଏହି ସତ୍ୟର ସେବା ।

ଲୋକାନ୍ତର ଏକ କଳ୍ପନା; ଏଣୁ ମିଥ୍ୟା । ଯେଉଁମାନେ ସେଭଳି କୌଣସି ସ୍ୱର୍ଗ ବିଷୟରେ ଆପଣଙ୍କୁ ଲୋଭାନ୍ୱିତ କରିବାକୁ ଚେଷ୍ଟା କରନ୍ତି ସେମାନେ ସ୍ୱୟଂ ସେକଥା କିଛି ଜାଣନ୍ତି ନାହିଁ । ସେମାନେ କେବଳ ଅଧିକ ସୁଖ ସମ୍ଭୋଗ ଆଶାରେ ଏ ପୃଥିବୀକୁ ଅବହେଳା କରିଥାନ୍ତି । କାଳ ପ୍ରବାହର ଅର୍ଥ ବୁଝନ୍ତି, ଯାହା ଯେତେବେଳେ ସମ୍ଭବ ତାକୁ ସେଇ ମୁହୂର୍ତ୍ତରେ ଭୋଗ ନକରି ସେମାନେ ଆଉ ଗୋଟାଏ ସମୟକୁ ଅପେକ୍ଷା କରନ୍ତି । ଏଣୁ ତାଙ୍କ ହାତ ପାଉଥିବା ଡାଳରୁ କୋଳି ପାଚି ଝଡିଯାଏ; ହାତ ନ ପାଉଥିବା ଡାଳ ସର୍ବଦା ଅପହଁଚ ରହିଯାଏ । ସେ ସବୁବେଳେ ଅଭୁକ୍ତ, ଅତୃପ୍ତ ଅତୋନଷ୍ଟ-ତତୋ ଭ୍ରଷ୍ଟ ହୋଇ ରହିଯାନ୍ତି । ସ୍ୱାଦିଷ୍ଟ ଖାଦ୍ୟ ଆଗରେ ବଢ଼ା ହୋଇଥିବାବେଳେ ସେମାନେ ଆଉ ଏକ ଉଆସରେ ଆହୁରି ସୁମିଷ୍ଟ ଖାଦ୍ୟର ସ୍ୱପ୍ନ ଦେଖୁଥାନ୍ତି । ଏଣେ ବଢ଼ା ହୋଇଥିବା ଅନ୍ନକୁ ବିରାଡ଼ି ଖାଇଯାଏ । ସେମାନେ ସ୍ୱଭାବତଃ ଲୋଭୀ ଏବଂ ସ୍ୱପ୍ନଭୁକ୍ । ସେମାନେ ଆଖିଥାଇ ଅନ୍ଧ । ଆପଣ ସେଭଳି ଅଂଧତ୍ୱ ଏବଂ

ସେଭଳି ମିଥ୍ୟା ସ୍ୱପ୍ନରୁ ମୁକ୍ତ ରହନ୍ତୁ ଜାଗ୍ରତ ରହନ୍ତୁ । ପୃଥିବୀ ହିଁ ସ୍ୱର୍ଗ । ପୃଥିବୀ ହିଁ ନର୍କ । କାରଣ ସ୍ୱର୍ଗ ନାହିଁ କି ନର୍କ ନାହିଁ । ଏ ପୃଥିବୀକୁ ଭୋଗ କରିବାର କୁଶଳତା କିମ୍ବା ମୂଢ଼ତା ଅନୁପାତରେ ତାହା ଏହିଠାରେ ହିଁ ସେଭଳି ଫଳ ପ୍ରଦାନ କରିଥାଏ ।

ଆପଣ ପୃଥିବୀକୁ ଭୋଗ କରନ୍ତୁ ଏବଂ ବର୍ତ୍ତମାନ ଭୋଗ କରନ୍ତୁ କାରଣ ଲୋକାନ୍ତର ପରି କାଳାନ୍ତର ମଧ୍ୟ ମିଥ୍ୟା । ଭୋଗର ନ୍ୟୂନତମ ଅର୍ଥ ହେଲା ଏ କାୟାଘଟଟିକୁ ମଙ୍ଗ ପର୍ଯ୍ୟନ୍ତ ସୁମଧୁର ରସରେ ପରିପୂର୍ଣ୍ଣ କରିବା । ସେଥିପାଇଁ ବସୁଧାର ସମସ୍ତ ଐଶ୍ୱର୍ଯ୍ୟକୁ ଅଧିକାର କରନ୍ତୁ । ଅଧିକାର ନ କଲେ ଭୋଗ ସମ୍ଭବ ନୁହେଁ । ମହାବଳ ସିଂହ ମୃଦୁଳା ମୃଗୀକୁ ଆଛନ୍ନ କରି ତା'ର ରକ୍ତ ପାନ କଲା ପ୍ରାୟ ଆପଣ ପୃଥିବୀକୁ ଅଧିକାର କରନ୍ତୁ । ସେଥିପାଇଁ ପ୍ରତିଦ୍ୱନ୍ଦ୍ୱୀ ରୂପେ ଯେ କେହି ଆପଣଙ୍କ ବିରୋଧ କଲେ ତାକୁ ବିନା ଦ୍ୱିଧାରେ ହତ୍ୟା କରନ୍ତୁ । ଅଧିକାର ସବୁବେଳେ ନିଷ୍କଣ୍ଟକ ଆଧିପତ୍ୟକୁ ବୁଝାଏ । ସ୍ୱାର୍ଥ ହିଁ ଏକମାତ୍ର ଅର୍ଥ । ତଦ୍‌ଭିନ୍ନ ଅନ୍ୟସବୁ ଅର୍ଥହୀନ ଏବଂ ବିଚାରର ଅଯୋଗ୍ୟ । ଅଧିକାର କରିବା ପୂର୍ବରୁ କଳେ ବଳେ କୌଶଳେ ଯେଉଁମାନଙ୍କୁ ବ୍ୟବହାର କରିଛନ୍ତି, ଯେଉଁମାନେ ଆପଣଙ୍କୁ ଗୋପନରେ ବିନାଶ କରିବାକୁ ଇଚ୍ଛା କରି ଆଚରଣରେ ସହଯୋଗିତାର ଅଭିନୟ କରୁଥାନ୍ତି, ଅଥବା ଯେଉଁମାନେ ଆପଣଙ୍କୁ ଏକମାତ୍ର ହିତୈଷୀ ଏବଂ ସୁହୃଦ୍ ଭାବି ଆପଣଙ୍କୁ ବିଶ୍ୱାସ କରି ଆସିଛନ୍ତି, ସେମାନେ ସମସ୍ତେ ବିଭିନ୍ନ ସ୍ତରର ପ୍ରତିଦ୍ୱନ୍ଦ୍ୱୀ ଏବଂ ସେ ସମସ୍ତେ ସେହି କାରଣରୁ ହନନ-ଯୋଗ୍ୟ ନିଶୁଣିର ଶେଷଧାପ ପାରିହେଲା ପରେ ତାକୁ ପଦାଘାତରେ ଦୂର କଲାପରି ସେମାନଙ୍କୁ ଭୂମିସାତ୍ କରିବାକୁ ପଡ଼ିବ । କ୍ଷମତାର କୌଣସି ଅଂଶରେ ସେମାନଙ୍କର ଲେଶ ମାତ୍ର ଅଧିକାର ରହିଗଲେ ଆପଣଙ୍କର ସୁଖଭୋଗ ଖଣ୍ଡିତ ହୋଇଯିବ ।

କାୟା ସୀମିତ ନିଶ୍ଚୟ, କିନ୍ତୁ କ୍ଷୁଧା ସୀମିତ ନୁହେଁ । କ୍ଷୁଧାର ବିସ୍ତାର ଅଗ୍ନିର ବିସ୍ତାର ପରି ତାକୁ ତୃପ୍ତ କରିବା କ୍ରିୟା ହିଁ ତାକୁ ଉଦ୍ଦୀପିତ କରେ । କସ୍ମିନ୍ କାଳେ ପରିତୃପ୍ତ ହୋଇଯିବା କାୟାଧର୍ମ ନୁହେଁ । କାରଣ ପରିତୃପ୍ତ ହୋଇଯିବା ଅର୍ଥ ନିର୍ବାପିତ ହୋଇଯିବା । ଏଣୁ କ୍ଷୁଧାକୁ ଜାଗ୍ରତ, ଶାଣିତ, ପ୍ରଜ୍ୱଳିତ କରି ରଖିବା ଭୋଗ କୁଶଳତା । ମନେ ରଖିବାକୁ ହେବ ଯେ ଗ୍ରାସ ଭୋଗ ନୁହେଁ; ଗ୍ରାସ କରିବାର କ୍ରିୟା ହିଁ ଭୋଗ । ଏ କ୍ରିୟାଟିକୁ ଅହର୍ନିଶ ଚାଳିତ କରିବାକୁ ଭୋଗୀଜନମାନେ ଚେଷ୍ଟା କରିଥାନ୍ତି । ଖାଦ୍ୟ ନୁହେଁ କ୍ଷୁଧା; କାୟା ନୁହେଁ କାମନା ହିଁ ସେମାନଙ୍କର ସେବ୍ୟ । ତାହାହିଁ ତାଙ୍କ ଜୀବନର ଚରମ ସଫଳତା । ସେଥିପାଇଁ ପ୍ରଥମେ କାୟା ବ୍ୟୂହର ରକ୍ଷା କରିବାକୁ ହେବ । ତାକୁ ସେବା କରିବା, ସେହି ସେବାରେ ନିଯୁକ୍ତ ହୋଇ ରହିବା, ତାର ଭୋଗଦ୍ୱାର ଗୁଡ଼ିକୁ ସର୍ବଦା ସକ୍ଷମ, ସକ୍ରିୟ କରି ରଖିବା ଭୋଗର ପ୍ରଥମ ଅନୁଶାସନ ।

ଭୋଗ୍ୟ ବସ୍ତୁକୁ ଅନ୍ନ କୁହାଯାଏ । ଇନ୍ଦ୍ରିୟ-ଭେଦରେ ଅନ୍ନର ବିଭିନ୍ନତା ରହିଛି । ଯୂଇ, ଜାଇ, ମଲ୍ଲୀ, ଗୋଲାପ ନାଗେଶ୍ୱର ଆଦି ଅସଂଖ୍ୟ ଫୁଲର ସୌରଭ, ପ୍ରଥମ ବର୍ଷାପାତରେ ଉତ୍ତପ୍ତ ମାଟି, ଅରଣ୍ୟ ଏବଂ ପଶୁମାନଙ୍କର ଗନ୍ଧ, ଘୃତଘଟିତ ଅନ୍ନ, ତୈଳଜାରିତ ମତ୍ସ୍ୟମାଂସାଦି ବ୍ୟଞ୍ଜନର ବାସ୍ନା, ପୋଡ଼ାମାଛ, ଶୁଷ୍କ ମତ୍ସ୍ୟାଦିର ଗନ୍ଧ, ସୁରା ମଦିରା, ମରେୟର ଗନ୍ଧ, କାମିନୀର ସ୍ୱେଦ, କେଶ, ବାସ ଶଯ୍ୟାଦିର ଗନ୍ଧ– ଏ ସମସ୍ତ ଘ୍ରାଣର ଅନ୍ନ । ଏହାର ବିବିଧତା ଅପାର, ଏଣୁ ଏ ସମସ୍ତ ଅନ୍ନକୁ ଘ୍ରାଣେନ୍ଦ୍ରିୟରେ ଭୋଗ କରନ୍ତୁ । ପକ୍ଷୀର କୂଜନ, ବନମର୍ମର, ଦୂର ସ୍ତନିତ ନାଦ, ବେଣୁବୀଣା ପଟହାଦିର ମୂର୍ଚ୍ଛନା, ନୂପୂର , କେୟୂର, କଙ୍କଣ ମଂଜିରାଦିର ନିକ୍ୱଣ, ନିକଟବର୍ତ୍ତୀ ହେଉଥିବା ପଟ୍ଟ ବସ୍ତ୍ରର ସିସିକାର, ପଦ୍ମ ରଙ୍ଗର କୋମଳ ପଦପାତର ଶବ୍ଦ,– ଚୂଚୁକାର, ଚାଟୁକାର, ହୁଂକାର, ଇକ୍ଷିକାରାଦି ରତିସ୍ଫୋଟର ଶବ୍ଦ– ଏ ସବୁ କର୍ଣରସାୟନ ଅନ୍ନ । ଏହାକୁ ଶ୍ରବଣେନ୍ଦ୍ରିୟରେ ଭୋଗ କରନ୍ତୁ । ଶୀତଳ ଜ୍ୟୋତ୍ସ୍ନା, ଚନ୍ଦନ କର୍ପୂର କସ୍ତୁରୀ, ପ୍ରଲେପ, ଗୋଲାପଜଳରେ ଶୀତଳ ସ୍ନାନ, ଫୁଲ ପାଖୁଡ଼ାର ମୃଦୁତା, ମଳୟର ସ୍ନିଗ୍ଧତା, ଶୀତରାତ୍ରିରେ ଅନାବୃତ୍ତ ସ୍ତନ ଜଘନର ଉଷ୍ଣ କେମଳ ସ୍ପର୍ଶ, ଅଙ୍ଗ ପ୍ରତ୍ୟଙ୍ଗର ଆପାଦ ମସ୍ତକ ରୋମହର୍ଷ, କମ୍ପନ ବେପଥୁର ଶିହରଣ, ଚର୍ମେନ୍ଦ୍ରିୟରେ ଭୋଗ କରନ୍ତୁ । ଅସଂଖ୍ୟ ମୃଦୁକୋମଳ ସ୍ପର୍ଶହିଁ ଭୋଗ । ବିବିଧବର୍ଣ୍ଣ । ପୃଥିବୀର ରଙ୍ଗରାଗ, ଜଡ଼ ଜଙ୍ଗମ ପଶୁପକ୍ଷୀଙ୍କର ରଙ୍ଗ, ମଣି ମୁକ୍ତାଦିର ଦ୍ୟୁତି, ହାର କେୟୂର ମୁକୁଟାଦିର ଆଭା, ଚକ୍ଷୁ, ନାସା, ଅଧର, ଗ୍ରୀବା, ବକ୍ଷ, କଟି ଆଦି ନାରୀର ରୂପମାଧୁରୀ; ନାଗରକ ହର୍ମ୍ୟ, ମର୍କତ ମଣ୍ଡପ, ସ୍ନାନ ତଡ଼ାଗ, କେଳିପୁର, ମଧୁଶଯ୍ୟାର ଅଶେଷ ରୂପବର୍ଣ୍ଣର ଉପଭୋଗ ପାଇଁ ଦର୍ଶନେନ୍ଦ୍ରିୟକୁ ତୃଷିତ ରଖନ୍ତୁ, ଭୋଗ ସମର୍ଥ ରଖନ୍ତୁ । ଷଡ଼ରସର ପରିପକ୍ୱ ଅନ୍ନ, ଘୃଷ୍ଟି, ବସ୍ୱତରୀ, କୁକ୍‌କୁଟ, ପାରାବତ, ଟିଟ୍ଟିଭାଦିଙ୍କ ମାଂସ; ରୋହିତ, ଇଲ୍ଲିଶ, ଭେକଟା, ଭାକୁରାଦି ମତ୍ସ୍ୟ, ବିବିଧ ସ୍ୱାଦ, ବିବିଧ ବର୍ଣ୍ଣର ପାନୀୟ, ପଞ୍ଚବ୍ରୀହିର ପିଷ୍ଟକ, ମୋଦକ, ପାୟସ– ଏହିପରି ଅଗଣିତ ପ୍ରକାର ଅନ୍ନକୁ ରସନେନ୍ଦ୍ରିୟରେ ଭୋଗ କରନ୍ତୁ । ବିଭିନ୍ନ ଇନ୍ଦ୍ରିୟ କ୍ଷୁଧା ପାଇଁ ଅନ୍ନ ମଧ୍ୟ ବିବିଧ । ଏହି ଅନ୍ନକୁ ଗ୍ରାସ କରିବାର କଳାକୁଶଳତା ହିଁ ଭୋଗ ।

ଏ ସମସ୍ତ କିନ୍ତୁ ଆଉ ଏକ ବୃହତ୍ତର କ୍ଷୁଧାର ଅନୁରୂପକ । ତାହା ହେଲା ଉପସ୍ଥର କ୍ଷୁଧା । ସାମାଜିକ ସଂପର୍କ ନିର୍ବିଶେଷରେ ନରନାରୀର ମୌଳିକ ସଂପର୍କକୁ ପ୍ରଥମେ ସ୍ୱୀକାର କରନ୍ତୁ । ସାହସର ସହିତ ସାମାଜିକ ବାଧା ବନ୍ଧକୁ ଉଲ୍ଲଂଘନ କରି ନାରୀମାତ୍ରେ ସଂଭୋଗ୍ୟ ବୋଲି ଜାଣି ରଖନ୍ତୁ । ଶ୍ୱସା, ଜାୟା, ଜନନୀ, ସମସ୍ତେ ନାରୀ। ନବନବ କାମିନୀର ବିବିଧ ପ୍ରକାର ବିଭିନ୍ନ ପରିବେଶ, ଭଙ୍ଗୀ, ବେଗ,

ଆବେଗ, ସ୍ପନ୍ଦନ ସହିତ ଗାଢ଼, ଶିଥିଳ, ସଂଭୋଗ କାୟାକ୍ଷେତ୍ରର ସର୍ବାପେକ୍ଷା ଅଧିକ ସାର୍ଥକତା । ତାହାହିଁ ଭୋଗର ଶ୍ରେଷ୍ଠ ରୂପ । ତା'ର ତୃପ୍ତି ନାହିଁ କେବଳ ସାମୟିକ ବିରତିରେ ତାକୁ ଉତ୍ତେଜିତ ଓ ଉଦ୍ଦୀପିତ କରି ରଖାଯାଏ । ସଂଭୋଗର ପାରିବେଶିକ ମୂଲ୍ୟ ହାନି ହୋଇଯିବ । ପ୍ରୟୋଜନ ହେଲେ ପୃଥିବୀପୃଷ୍ଠରେ ଦୋଳାୟିତ ଯେ କୌଣସି ଋତୁକୁ ଯେକୌଣସି ସମୟରେ ଠାବ କରାଯାଇପାରେ ବୈଶାଖ ମାସରେ ଦକ୍ଷିଣ ଅଷ୍ଟ୍ରେଲିଆରେ ହେମନ୍ତ ଋତୁର ଶୀତ ରାତ୍ରି ଉପଭୋଗ କରାଯାଇପାରେ । ପୃଥିବୀର ଯେ କୌଣସି ଅଂଚଳରୁ ଉତ୍କୃଷ୍ଟ ମଦିରା ସହିତ ଯେ କୌଣସି ରୂପ, ରଙ୍ଗ ଗନ୍ଧ, ସ୍ୱାଦର ନାରୀ ଅଙ୍ଗ ସେବନ କରାଯାଇପାରେ । ଭୋଗ ପାଇଁ ସୀମା ନାହିଁ କିମ୍ବା ବାଧକ ନାହିଁ । ପ୍ରବଳ କ୍ଷମତା ସହିତ ଅନ୍ତହୀନ ଭୋଗ ତେଜସ୍ୱୀ ଅଶ୍ୱର ଚୂଳମାଳ ପରି ଶୋଭା ପାଇଥାଏ । ଭୋଗ–ସମର୍ଥ ପୁରୁଷର ଅଧିକାର, କ୍ଳୀବର ନୁହେଁ ।

ଭୋଗୀ କ୍ଷମତାରେ ପରିପୁଷ୍ଟ ହୁଏ କିମ୍ବା କ୍ଷମତା ଅଧିକାର କରେ । ସବୁକାଳେ ଧନବଳ ହିଁ କ୍ଷମତାର ବୃହଦଂଶ । ସେଥିରେ ବଣ୍ୟ ପଶୁଙ୍କୁ କିଣିଲା ପରି ବାହୁବଳୀନ୍ଦ୍ର ମାନଙ୍କୁ ଆପଣ କ୍ରୟ କରନ୍ତୁ, ରୂପଜୀବୀ ପରି ବୁଦ୍ଧିଜୀବୀଙ୍କୁ ମଧ୍ୟ କ୍ରୟ କରନ୍ତୁ । ଆପଣଙ୍କ ଭୋଗ କେନ୍ଦ୍ରକୁ ଏହିମାନେ ହିଁ ଶସ୍ତ୍ର ଓ ଶାସ୍ତ୍ର ଧାରଣ କରି ଚତୁର୍ଦ୍ଦିଗରୁ ଆବୃତ କରି ରଖିବେ । ଆପଣ କ୍ଷମତାହୀନ ରହି କାୟାକ୍ଷେତ୍ରକୁ ଏକମାତ୍ର ସେବ୍ୟ ରୂପେ ଅବାଧ ଆସ୍ୱାଦନ କରି ପାରିବେ । ଧନର ମାଧ୍ୟମ ଧାତୁ । ସେଥିରେ ପାପ ପୁଣ୍ୟର ବିଚାର ଅବାନ୍ତର । ମନ୍ଦିରର ଦେବଦେବୀ ନିଷ୍ପ୍ରାଣ ପଥର । ସେମାନଙ୍କୁ ନିରାଭରଣ କରିଦେବା ପାଇଁ ଆପଣ ଦ୍ୱିଧା କରନ୍ତୁ ନାହିଁ । ସହଜବଧ୍ୟ ଶିଶୁ କିମ୍ବା ନାରୀଠାରୁ ହାର କଙ୍କଣ ନେବା ପାଇଁ ସେମାନଙ୍କୁ ହତ୍ୟା କଲାବେଳେ ଦ୍ୱିଧାଗ୍ରସ୍ତ ହୁଅନ୍ତୁ ନାହିଁ । ଭାଇ ବନ୍ଧୁ କୁଟୁମ୍ବୀଙ୍କର ସଂପର୍କ ଦୁର୍ବଳ ଶଶକ ଗୋଷ୍ଠୀର ସଂପର୍କ । ବଳଶାଳୀ ତାଙ୍କୁ ସ୍ୱୀକାର ନକରି ପ୍ରଥମେ ଭକ୍ଷଣ କରିଯିବା ଉଚିତ । କାରଣ ସେମାନେ ସହଜଲଭ୍ୟ ଏବଂ ଅପ୍ରସ୍ତୁତ । କ୍ଷମତାକୁ ଗୋପନରେ ସଂଚୟ ଏବଂ ସୁରକ୍ଷିତ କରାଯାଏ । ତାକୁ ପ୍ରକାଶ୍ୟ ବ୍ୟବହାର କରାଯାଏ ଭୋଗରେ । କ୍ଷମତା ଯୌବନ ପରି । ତାହା ସ୍ୱୟଂଭୋଗ୍ୟ ନୁହେଁ; ତାହା ଭୋଗ କ୍ରିୟାର ସହାୟକ ।

ବଳାତ୍କାର ନଥିଲେ କ୍ଷମତାର ପୂର୍ତ୍ତି ନାହିଁ । ଭୋଗର ମଧ୍ୟ ସ୍ୱାଦ ନାହିଁ । ମୁମୂର୍ଷୁ ପଡ଼ିଥିବା ମୃଗୀକୁ ମୃଗେନ୍ଦ୍ର ଶିକାର କରେନାହିଁ । ଯେଉଁ ଅନ୍ନ ଯେତେ ଦୁଷ୍ପ୍ରାପ୍ୟ ତାହା ସେତିକି ଉପଭୋଗ୍ୟ । ଏଣୁ କାମଭୋଗ ପାଇଁ ବ୍ୟବସ୍ଥା କଲାବେଳେ ସେହିଭଳି ଦୁଷ୍ପ୍ରାପ୍ୟ କାମିନୀ ବା କାଞ୍ଚନକୁ ବଳ ପ୍ରୟୋଗ କରି ଆଣିବା ଦ୍ୱାରା ଭୋଗ ଉତ୍ତେଜିତ ହୁଏ । ସେହିପରି ବିସ୍ତାର ନଥିଲେ ଭୋଗ ଅବିକଶିତ ରହିଯାଏ । ଭୋଗୀ ଭୋଜନ

କରେ । ଏବଂ ଚତୁର୍ଦ୍ଦିଗରେ ଅନନ୍ତ ଭୋଜନର ବାତାବରଣ ସୃଷ୍ଟି କରିଥାଏ । ମାତ୍ର ଜଣକ ସକାଶେ ବାରଗୋଟି ଚର୍ବିଳ ସାବୟବ ବାର୍‌ହା ଭଜା ହୋଇ ସେହି ପରିମାଣର ଅନ୍ୟାନ୍ୟ ଅନ୍ନବ୍ୟଞ୍ଜନ ସହିତ ଅତି ବିସ୍ତୃତ ଅଂଚଳରେ ପରିବେଷିତ ହେବାର ସାଧାରଣ ଅର୍ଥ କିଛି ନାହିଁ । କିନ୍ତୁ ଭୋଗ-ବିଚାର ଦୃଷ୍ଟିରୁ ଏହା ଅବଶ୍ୟ କର୍ତ୍ତବ୍ୟ । କାରଣ ଶହ ଶହ ଭୋଗାଗ୍ନିକୁ ଏ ସମସ୍ତ ଅନ୍ନ ଅର୍ପିତ ହେଉଥିବା ବେଳେ ଭୋଗୀର କାୟାବିସ୍ତାର ଘଟେ । ସେ ଅଂସଖ୍ୟ କାୟାରେ ଅନୁପ୍ରବିଷ୍ଟ ହେଲାପରି ଅସଂଖ୍ୟ କ୍ଷୁଧା ମଣ୍ଡଳରେ ପାନ ଭୋଜନାଦିକୁ ଉପଭୋଗ କରେ । କୋଟି କୋଟି କୀଟ ପତଙ୍ଗ ତରୁ ତୃଣାଦି ଅକଳନୀୟ ମୁଖରେ ଅନନ୍ତ କାଳ ପାଇଁ ଅନ୍ନଭୋଗ କରୁଥିବାର ଦୃଶ୍ୟରେ ଭୋଗୀ ସ୍ୱୟଂ ପରିବ୍ୟାପ୍ତ ହୋଇଯାଇପାରେ ।

ସେହିପରି ନିଶାର୍ଦ୍ଧରେ ନିଭୃତ, ସଂଭୋଗ, ସାମାନ୍ୟ ଜୀବଧର୍ମ ମାତ୍ର । ସେଥିରେ ଭୋଗ ବିସ୍ତାର ନାହିଁ । ସେଥିପାଇଁ ସ୍ପଷ୍ଟ ଦିବାଲୋକରେ ଅତି ବିସ୍ତୃତ ସୁସଜ୍ଜିତ ମନୋରମ ତୂଳିତଳ୍ପ ମଣ୍ଡିତ ପ୍ରମୋଦ କକ୍ଷରେ ହସ୍ତିନୀ, ଚିତ୍ରିଣୀ, ଶଙ୍ଖିନୀ, ପଦ୍ମିନୀ ନାରୀଙ୍କ ସହିତ ଅଶ୍ୱ, ମୃଗ, ଶଶାକାଦି ପୁରୁଷ ମାନଙ୍କ ମିଥୁନ ପରିପ୍ଳୁତ ଉଚ୍ଚାଟନକାରୀ ଶବ୍ଦ ଗନ୍ଧ ରୂପର ବ୍ୟବସ୍ଥା ହେଲେ ଭୋଗୀ ସ୍ୱଚ୍ଛଳ ସଂଭୋଗର ଉତ୍କର୍ଷ ଆସ୍ୱାଦନ କରନ୍ତି । ଘୋଟକ, ବୃଷଭ, ଛାଗ, କୁକୁରାଦି ପଶୁମାନଙ୍କୁ ସେହି ଭଳି କ୍ରିୟାରେ ଉତ୍ତେଜନ ଦୃଶ୍ୟ ରୂପେ ବ୍ୟବହାର କରାଯାଇ ପାରେ । ସମଗ୍ର ଆକାଶ ପୃଥିବୀ ଆରୂଢ଼ ହୋଇ ସଂଭୋଗ କରୁ ଥିବାର ଅନୁଭବ କରାଯାଇ ପାରେ । ଏହିପରି ସକଳ ଇନ୍ଦ୍ରିୟ ସବୁ ପ୍ରକାର ତୃପ୍ତିରେ ନିମଜ୍ଜିତ ନହେଲେ ଭୋଗୀ ଚରମ ସାଫଲ୍ୟ ଲାଭ କରି ପାରନ୍ତି ନାହିଁ । ବ୍ରହ୍ମାନନ୍ଦ ନାମରେ ମାନବାତ୍ମା ପାଇଁ ଯାହା ଚରମ ତୃପ୍ତି ଏବଂ ଲକ୍ଷ୍ୟ ରୂପେ ବର୍ଣ୍ଣିତ ହୋଇଛି ତାହା ଏହି ପରିପୂର୍ଣ୍ଣ ସଂଭୋଗର ବିକୃତ କଳ୍ପନା ମାତ୍ର । ମାନବ ଜନ୍ମର ଚରମ ସିଦ୍ଧି ଓ ସଫଳତା ଏହିଠାରେ ଏବଂ ବର୍ତ୍ତମାନ । ଆପଣ ଯଦି ଯୋଗ୍ୟ ଏବଂ ସମର୍ଥ, ତାହା ତତ୍‌କ୍ଷଣାତ୍ ଲାଭ କରନ୍ତୁ । ନଚେତ୍ କଳ୍ପନାଦି ବିକାରରେ ପରୋକ୍ଷ ଭୋଗ ଆସକ୍ତି କେବଳ ପ୍ରତାରଣା ।

ଏ ପ୍ରକାର ଭୋଗ ସାଧନାରେ ଆପଣଙ୍କ ପାଇଁ କେତେଗୁଡ଼ିଏ ନିଷେଧର ବ୍ୟବସ୍ଥା ଅଛି । ପ୍ରଥମତଃ – ଯେ କୌଣସି ତଥାକଥିତ ବୌଦ୍ଧିକ କିମ୍ବା ଆଧ୍ୟାତ୍ମିକ ଶାସ୍ତ୍ର ଆଲୋଚନାକୁ ଆପଣ କର୍ଣ୍ଣପାତ କରିବେ ନାହିଁ । ସେମାନେ ଯୁଗ ଯୁଗ ଧରି ମଣିଷକୁ ତା'ର ଏକମାତ୍ର ସୁଖରୁ ବଂଚିତ କରି ଆସିଛନ୍ତି । ଆପଣଙ୍କ କାୟା ହିଁ ଆପଣଙ୍କର ଅସପତ୍ନ ସାମ୍ରାଜ୍ୟ । ତାକୁ ଭୋଗ କରିବା ସକାଶେ ସମଗ୍ର ପୃଥିବୀ ଉପଜୀବ୍ୟ । ଆପଣଙ୍କ ବୁଦ୍ଧି, ଶକ୍ତି ଆଦି କେବଳ ଏଇ କ୍ରିୟା ସାଧନ ପାଇଁ ନିୟୋଜିତ କରିବା ହିଁ ବିଜ୍ଞତା । କାରଣ ଏତଦ୍ ଭିନ୍ନ ଆଉ ବାକି ସବୁ କଳ୍ପନା ।

ଦ୍ୱିତୀୟ ନିଷେଧ ହେଲା ଯେ ଆପଣ ଭୋଗ କରୁଥିବାବେଳେ ଅନ୍ୟର କୌଣସି ସୁଖଦୁଃଖକୁ ବିଚାର କରିବେ ନାହିଁ, କାରଣ ତାହା ଅଯୌକ୍ତିକ ଓ ହାନିକାରକ । ଭୋଗ ଏକାନ୍ତ ଭାବେ ସ୍ୱାର୍ଥପର । ଆଉ କାହାର କଣ ହେଲା କି ନ ହେଲା ସେଥିରେ ଆପଣ ଚିନ୍ତିତ ହେଲେ, ଭୋଗର ସ୍ୱାଦ ମଳିନ ପଡ଼ିଯିବ । ଆପଣଙ୍କୁ ଆମୋଦିତ କରିବାରେ ଯଦି କେହି ତାର ମନୋରମା ପତ୍ନୀଟିକୁ ହରାଇଲା, କିମ୍ୱା କନ୍ୟାକୁ ହରାଇ ଲୋତକ ବର୍ଷଣ କଲା ସେଥିରେ ଆପଣଙ୍କର ଦୋଷ କଣ ? ଗଛରୁ ଫଳ ତୋଳିଲାବେଳେ ଏକମାତ୍ର ବିଚାର ହେଲା ଖାଦକର କ୍ଷୁଧା । ସେଥିରେ ଗଛର ଡାଳକୁ କଷ୍ଟହେଲା କି ନାହିଁ, ଡେମ୍ଫକୁ ଲସା ଝରିଲା କି ନାହିଁ, ସଂପୂର୍ଣ୍ଣ ଅବାନ୍ତର ପ୍ରଶ୍ନ । ଆପଣ କ୍ଷମତାଶାଳୀ । ନିଜର ଭୋଗ ପାଇଁ କ୍ଷମତା ପ୍ରୟୋଗ କରନ୍ତୁ, ସେଥିରେ ବିଚାରର ଅବକାଶ କିମ୍ୱା ପ୍ରୟୋଜନ ନାହିଁ ।

ତୃତୀୟ ନିଷେଧ ହେଲା– ଜରା, ବ୍ୟାଧି, ମୃତ୍ୟୁ ଆଦି ଆଦୌ ବିଚାରଣୀୟ ବୋଲି ଭାବନ୍ତୁ ନାହିଁ । ଜରା, ମୃତ୍ୟୁ ଆପଣଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଯେ ଭୋଗୀ, ସେ ମୃତ୍ୟୁ ପର୍ଯ୍ୟନ୍ତ ଏବଂ ମୃତ୍ୟୁକୁ ସୁଦ୍ଧା ସଂଭୋଗ କରି ଚାଲିଯାଏ । ସାଧାରଣ ଅବକ୍ଷୟ ଏବଂ ପରିଶେଷରେ ଅସହାୟ ମୃତ୍ୟୁ ସାମାନ୍ୟ ଜୀବଧର୍ମ ମାତ୍ର । ଭୋଗୀ ଭୋଗ ପାଇଁ ଅନ୍ୟକୁ ହତ୍ୟା କଲା ପରି ନିଜକୁ ମଧ ନିଃସଙ୍କୋଚ ହତ୍ୟା କରିଥାଏ । ନିଜକୁ ହତ୍ୟା କରି ନପାରି ଯନ୍ତ୍ରଣାରେ ପୀଡ଼ିତ ହେବା ଭୋଗୀ ପକ୍ଷରେ ଏକାନ୍ତ ହାସ୍ୟାସ୍ପଦ ବିଡ଼ମ୍ୱନା । ଏ ସଂସାରରେ ମୃତ୍ୟୁ ଏକ ଅନିବାର୍ଯ୍ୟ ବୁଢ଼ା ମଣିଷ । ସେ ଗୋଡ଼ ଥାପି ଥାପି ଶ୍ୱାପଦ ପରି ଆସି ତାର ଶିରା ବହୁଳ ହାତ ମଡ଼େଇବା ପୂର୍ବରୁ ଯେକୌଣସି ବିଜ୍ଞ ଲୋକ ତା ଉପରେ ଅପ୍ରତ୍ୟାଶିତ ଝାମ୍ପି ପଡ଼ିବା ଉଚିତ । ସେ ତା ହାତରେ ଏକ ଅତି ସମର୍ଥ ରୋଗ ଜରାମୁକ୍ତ କାୟାକ୍ଷେତ୍ର ଦେଖି ବିସ୍ମିତ ହୋଇଯିବ ଏବଂ ପରାସ୍ତ ବୋଧ କରିବ । ଅତଏବ ସମ୍ଭୋଗର ଚୂଡ଼ାନ୍ତ ସାଫଲ୍ୟ ପରେ ନିଜକୁ ହତ୍ୟା କରିଦେବା ହିଁ ଭୋଗୀ ଜନ ପାଇଁ ଏକମାତ୍ର ସ୍ୱାଧୀନ ଓ ସମୀଚୀନ କର୍ତ୍ତବ୍ୟ । କାୟା ବିଜ୍ଞାନୀମାନଙ୍କୁ ଧନ ଲୋଭରେ ବଶୀଭୂତ କରି ଏବଂ ମୃତ୍ୟୁ ଦଣ୍ଡରେ ଭୟଭୀତ କରି ସାମୟିକ ରୋଗ ଏବଂ ପ୍ରୟୋଗ ଦ୍ୱାରା ଭୋଗରେ ପରିଣତ କରାଯାଇ ପାରେ । ଏଣୁ ରୋଗ, ଜରା, ମୃତ୍ୟୁ, ଏ ସମସ୍ତ ମିଥ୍ୟା । କ୍ଷୁଧା, କାମନା, ଭୋଗ ହିଁ ସତ୍ୟ ।

ଆପଣ ପ୍ରବଳ ପ୍ରତାପୀ, ଆପଣଙ୍କ କ୍ଷମତା ଅପାର, ଆପଣ ଭୋଗ କରିବାକୁ ସଦା ଉନ୍ମୁଖ, କିନ୍ତୁ ଆପଣ ସେଥିରେ କୁଶଳ ନୁହନ୍ତି, ଆପଣଙ୍କର ବିଚାର ଶୁଦ୍ଧି ଆସି ନ ଥିବାରୁ ଦ୍ୱିଧା ସଙ୍କୋଚରେ ପଡ଼ି ଆପଣଙ୍କର ଅମୂଲ୍ୟ ସୁଯୋଗ ହରାଉ ଥିବାର ଆମ୍ଭେ ଲକ୍ଷ୍ୟ କଲୁ । ଏଣୁ ଆପଣଙ୍କୁ ଏଥିରେ ଦୀକ୍ଷିତ କରି ଆମ୍ଭେ ଆମ୍ଭର କର୍ତ୍ତବ୍ୟ

ସମ୍ପାଦନ କରୁଛୁ । ଆପଣ ଏଇ ମୁହୂର୍ତ୍ତରୁ ଜୀବନର ମହାର୍ଘ ମୂଲ୍ୟକୁ ଆବିଷ୍କାର କରନ୍ତୁ, କଳେବର ପାନ କରନ୍ତୁ । କାୟା ହିଁ ଏକମାତ୍ର ସତ୍ୟ । ବର୍ତ୍ତମାନ ଏକମାତ୍ର କାଳ । ଏ ପୃଥିବୀ ହିଁ ଏକମାତ୍ର ଭୋଗ ଭୂମି । ଭୋଗ କରନ୍ତୁ, ଏବଂ ସମାଜ, ଜାତି, ଧର୍ମ, ଦ୍ୱେଷ ଆଦି ଇତର ବିଚାର ପାଇଁ ମନର ସମସ୍ତ ଦ୍ୱାର ଅବରୁଦ୍ଧ କରି ଦିଅନ୍ତୁ । ଆପଣଙ୍କର ସଂଭୋଗ ସାଧନା ସଫଳ ହେଉ ।

ବହୁ ଅର୍ଥର ପ୍ରତିଦାନରେ ଆପଣଙ୍କୁ ଏ ସଂହିତା ଶ୍ରବଣ କରାଇବା ପାଇଁ ଆମ୍ଭେ ନିଯୁକ୍ତ ହୋଇଅଛୁ । ଆମ୍ଭେ ଆମ୍ଭ ବିଦ୍ୟା ବଳରେ ଭୋଗୀକୁ ଯୋଗୀ କିମ୍ୱା ଯୋଗୀକୁ ଭୋଗୀ କରି ଦେଇପାରୁ । କିନ୍ତୁ ଅଧିକାର ଭେଦରେ ହିଁ ବିଦ୍ୟା ପ୍ରଦାନ କରାଯାଏ । କାମ ଅର୍ଥ ଏବଂ ଅର୍ଥ- କାମ-- ଏହା ହିଁ ଆପଣଙ୍କ ପାଇଁ ବୀଜମନ୍ତ୍ର। ଏହା ହିଁ ଆପଣଙ୍କର ସାଧନା ଓ ସିଦ୍ଧି ।



# ନିଦ୍ରାଭଙ୍ଗ

ଶୋଇବା କୌଣସି ଅପରାଧ ନୁହେଁ । ଆଦୌ ନ ଶୋଇ ଜାଗର ଜାଳିବାର କୃଚ୍ଛ୍ର ସାଧନା ମଧ୍ୟ ସେପରି କିଛି ଅସାଧାରଣ ଗୌରବ ନୁହେଁ; ବରଂ ଜାଗ୍ରତ ରହିବାର ମୂଲ୍ୟ ଯେ ବୁଝିଛି, କିଛି ସମୟ ଶୋଇଯିବା ତା' ପାଇଁ ଏକ ସହଜ ଏବଂ ସ୍ୱାଭାବିକ ଅଧିକାର, ଏକ ପ୍ରୟୋଜନ ମଧ୍ୟ । ନ ଶୋଇଲେ ଜାଗିବ କେମିତି ? ନ ଜାଗିଲେ ଶୋଇବ ବା କେମିତି ? ଦିନ ଏବଂ ରାତି ପରି ଶ୍ୱାସ ପ୍ରଶ୍ୱାସ ପରି, ବଞ୍ଚିବା ଏବଂ ମରିବା ପରି ଜାଗିବା ଏବଂ ଶୋଇବା ଏକ ଅତି ପ୍ରାଚୀନ ସାଧାରଣ ଆଦିମ ଛନ୍ଦ । ଏ ଛନ୍ଦକୁ ରକ୍ଷାକରିବା ଧର୍ମ, ଏହାକୁ ଭଙ୍ଗ କରିବା ଅପରାଧ ।....

"କିହୋ, ମାଷ୍ଟ୍ରବାବୁ । ଏତେ ଉନ୍ମୁଖ ଛାତ୍ର ତୁମ ମୁହଁକୁ ଚାହିଁ ବସିଥିଲାବେଳେ ତୁମେ ଏ ଦିନ ଦିପହରଟାରେ କାହିଁକି ଢୁଳଉଛ ? ସଞ୍ଜରୁ ରାତି ବାରଟା ଯାଏ ଏବଂ ପାହାନ୍ତିଆରୁ ଦିନ ଦଶଟା ଯାଏ ଟିଉସନ ପାଇଁ ଯଦି ପରିଶ୍ରମ କରୁଥାଅ, ତେବେ ତୁମର ମୂଳ କାମଟି କରିବ କିଏ ?"..... "ତୁମେ ବାବୁ ଜଣେ ପଦସ୍ଥ କର୍ମଚାରୀ । ଗତ ରାତିରେ ତୁମ ନାଚଗୀତ ଏବଂ ଭୋଜି ସରୁସରୁ କୁକୁଡ଼ା ଡାକିବାବେଳ ହୋଇଗଲା । ଦପ୍ତରରେ ବସି ଏମିତି ରଙ୍ଗରଙ୍ଗ ଆଖି କରି ହାଇ ମାରୁଚ; କାଗଜରେ କଲମ ଥୋଇ ପାରୁନାହଁ । ବାହାରେ ପରା ଉଜୁଡ଼ି ଯାଉଥିବା ସଂସାରକୁ ନେଇ ଶହ ଶହ ପ୍ରାର୍ଥୀ ଅପେକ୍ଷା କରିଛନ୍ତି ।"

ରାତିରେ ଚାହିଁ ଦିନରେ ଶୋଉଥିବା ଏ ଅସଂଯମୀମାନଙ୍କ ଅପରାଧ ପାଇଁ କ୍ଷମା ନାହିଁ । କିନ୍ତୁ ତାଙ୍କୁ ଶାସ୍ତିବିଧାନ କରିବ କିଏ ? ଯେ କରନ୍ତା, ସେ ନିଜେ ଚାହିଁଥିଲେ ହୁଅନ୍ତା । ତାଙ୍କୁ ଆଉପ୍ରକାରେ ନିଦ ଗ୍ରାସିରହିଛି । ତାହା ହେଲା ନିଷ୍କ୍ରିୟତାର ନିଦ । ଚାହିଁ ରହି ସୁଦ୍ଧା ଯଦି କେହି ଚାହିଁବା ଭଳି କ୍ରିୟା ପ୍ରତିକ୍ରିୟା ପ୍ରକାଶ ନ କରେ, ସେ ସୁପ୍ତ । ଶରୀର ଥକି ଯାଇଛି, ଆଖି ବୁଜି ହୋଇ ପଡୁଛି– ଏପରି ଅବସ୍ଥାରେ ଦେହ ଏବଂ ମନ ଉପରେ ନିଦର ଗୋଟିଏ ପାତଳ ଚାଦର ମଡ଼େଇ ହୋଇଯିବା ଅତି ସ୍ୱାଭାବିକ୍ ଏବଂ ସୁନ୍ଦର ମଧ୍ୟ । କିନ୍ତୁ ମଟମଟ ଚାହିଁଥିଲେ ସୁଦ୍ଧା ଯାହାର ଦୃଷ୍ଟି ନାହିଁ; ଯାହାର ବୁଦ୍ଧି ଶୋଇ ଯାଇଛି ସେ ବିଚାର କରିପାରୁନାହିଁ, ମନ ଶୋଇଯାଇଛି, ସେ ଚିନ୍ତା କରିପାରୁ ନାହିଁ; ବିବେକ ଶୋଇଯାଇଛି ଏବଂ ସେ ହିତାହିତ କ'ଣ ବୁଝିପାରୁନାହିଁ

ସେ ଘୋରତର ଜଡ଼ ନିଦ୍ରାରେ ଆଛନ୍ନ । ତାକୁ ଉଠାଇବା ଅତି କଠିନ ବ୍ୟାପାର, ଏବଂ ବୋଧହୁଏ ଏକ ଦୁରୂହ ଆଧାତ୍ମିକ ବ୍ୟାପାର ।

ଅଳସୁଆ ବଳଦ ପରି, ଠାପୁଆ ପାଠଚୋର ପରି, କାମ କରିବା ଭୟରେ, ଦାୟିତ୍ୱ ଭାରରୁ ସହଜ ନିଷ୍କୃତି ପାଇଁ ଏ ଦେଶର ଅଧିକାଂଶ ଲୋକେ ଆଖି ବୁଜି ପଡ଼ିଛନ୍ତି । ସତକୁସତ ଛ'ମାସ ଶୋଇଥିବା କୁମ୍ଭକର୍ଣ୍ଣଙ୍କୁ ସିନା ଉଠେଇ ହୁଏ, କିନ୍ତୁ ଚାହିଁ ଶୋଇଥିବା ଏ ଠକ କର୍ମକୋଡ଼ିମାନଙ୍କୁ ଉଠେଇବା ସହଜ ନୁହେଁ । ଶଠତା, ମିଥ୍ୟାଚାର, ଆଳସ୍ୟର ନିଦ୍ରା ଘାରି ରହିଛି ସେମାନଙ୍କୁ ଚାରିଆଡୁ । ସମଗ୍ର ଦେଶ ଶୋଇଯାଇଛି । ତା'ର ସକ୍ରିୟ ଚେତନା ମୋହଗ୍ରସ୍ତ ହୋଇପଡ଼ିଛି । ଜାଗିଥିବା ବ୍ୟକ୍ତିଟି ଯେପରି ଜାଗିଛି ବୋଲି ଜାଣିପାରେ, ଅଥଚ ଶୋଇଥିଲେ ଶୋଇଛି ବୋଲି ଜାଣିପାରେନାହିଁ, ସେହିପରି ଏ ଜାତି ଜାଣିପାରୁନାହିଁ ଶୋଇଛି ବୋଲି । ସେ ଜାଗ୍ରତ ଥିବାର କୌଣସି ଲକ୍ଷଣ କେଉଁଠି ହେଲେ ଦିଶୁନାହିଁ । ଟ୍ରେନ୍‌ଟିଏ ଯାଉଯାଉ ଶୋଇଯାଉଛି; ଠିକ୍ ସମୟ ରଖିପାରୁନାହିଁ । ଯୋଜନା ଶୋଇଯାଉଛି, ତା' ଉପରେ ଅନ୍ୟ ଯୋଜନାଟିଏ ମଡ଼େଇ ହୋଇପଡୁଛି । ନିଦରେ ବାଉଳି ହେଲାପରି ଗୁଡ଼ିଏ ମୁଣ୍ଡିଆଳ ଲୋକ ମିଶି କ'ଣ ସବୁ ପାଟିତୁଣ୍ଡ କରୁଛନ୍ତି । ସେଇଠି ତାଙ୍କର କହିବା ଅପେକ୍ଷା ଖାଇବା ବେଶି, ଖାଇବା ଅପେକ୍ଷା ପିଇବା ବେଶି । ସେମାନେ ସେଇଠୁ ଉଠି ସବୁ ଭୁଲିଯାଆନ୍ତି । ଯେଉଁ ବନ୍ୟାରେ ବନ୍ଧ ପକାଇବେ ବୋଲି ସେମାନେ ବୈଠକ ବସାଇଥିଲେ, ସେ ବନ୍ୟା ପୂର୍ବପରି ମୁହାଣ ମେଲା କରି ମାଡ଼ି ଚାଲିଛି; ପୂର୍ବପରି ମରୁଡ଼ିରେ ମଣିଷ ହାହାକାର କରି ମରୁଛନ୍ତି ।

ଦେଶର ଏମିତି ନିଦ ଟଳମଳ ଅବସ୍ଥାରେ ଯଦି କିଛି ଅଙ୍ଗପ୍ରତ୍ୟଙ୍ଗ ଚଳପ୍ରଚଳ ହେଉଛି, ତାହା କେବଳ ସୂଚନା ଦେଉଛି ଯେ ମହାନିଦ୍ରା ଆହୁରି ଗ୍ରାସିନାହିଁ– ଜାତିଟି ବଞ୍ଚିଛି । କିନ୍ତୁ ସେ ଅନିଚ୍ଛିତ ଚଳପ୍ରଚଳ କୌଣସି କର୍ମ ନୁହେଁ । ତା'ର କୌଣସି ଅର୍ଥ ନାହିଁ । ଶୋଇଗଲେ କିଛି ଦିଶେନାହିଁ, କିଛି ଶୁଭେ ନାହିଁ । ହାତ ଥାଇ ନ ଥିଲା ପରି, ଗୋଡ଼ ଥାଇ ନ ଥିଲା ପରି ଜଡ଼ବତ୍ ଶରୀରଟି ପଡ଼ିରହେ । ସେପରି ଅବସ୍ଥାରେ ସେ ଭୋକ ଶୋଷକୁ ବୁଝିପାରେ ନାହିଁ । ଫୁଙ୍ଗୁଳା ଦେହରେ ଲୁଗା ନାହିଁ ବୋଲି ଅନୁଭବ କରିପାରେ ନାହିଁ । ସେତେବେଳେ ତାର ମର୍ଯ୍ୟାଦାବୋଧ ନଥାଏ, ଲଜ୍ଜା ଅପମାନ ନଥାଏ; କାରଣ ଲଜ୍ଜିତ ହେବା କିମ୍ବା ଅପମାନିତ ବୋଧ କରିବା ଜାଗ୍ରତ ଚେତନାର ଲକ୍ଷଣ ତ' । ଶୋଇଗଲେ ଚେତନା ହରଣ ହୋଇଯାଏ । ତା' ସାଙ୍ଗେ ସାଙ୍ଗେ ନିର୍ଦ୍ଦିଷ୍ଟ ଚରିତ୍ର ଲକ୍ଷଣ ମଧ୍ୟ ଲୋପ ପାଇଯାଏ । ନିଦ୍ରା ଏକପ୍ରକାର ମୃତ୍ୟୁ ।

ନିଦରୁ ଉଠିପଡ଼ିବା ମଧ୍ୟ ସେହିପରି ଏକ ନୂତନ ଜନ୍ମ। ଯେ ଜାଗ୍ରତ, ସେ ହିଁ ଅନ୍ୟଜଣକୁ ଜାଗ୍ରତ କରିପାରେ । କାହାକୁ କେଉଁଠି ଛୁଇଁଲେ ସେ ଜାଗି ଉଠିବ,

ତା'ର ସେପରି କୌଣସି ବିଧିବଦ୍ଧ ପଦ୍ଧତି ନାହିଁ । ସେ ଏକପ୍ରକାର ଯୋଗାଯୋଗ କଥା । ଶୋଇଥିଲେ ସୁଦ୍ଧା ଯେ ଗୋପନରେ ଉଠିବି ଉଠିବି ବୋଲି ଉନ୍ମୁଖ ହୋଇଥାଏ, ଅଥଚ ଉଠିପାରୁ ନଥାଏ, ତା' ଆଖି ପତାରେ ଅଳ୍ପ ଫୁଙ୍କିଦେଲେ ସେ ଜାଗିଉଠେ । ଦକ୍ଷିଣରୁ ପବନ ଆସି କୌଣସି ଅନୂଢ଼ା ଲତାଟିକୁ ସାମାନ୍ୟ ଦୋହଲାଇ ଦେଇ ପରମ ଯତ୍ନରେ ଏବଂ ଶ୍ରଦ୍ଧାରେ ମନ୍ତ୍ର ପଢ଼ିଲା ପରି କହେ, "ବସନ୍ତ ଆସିଲାଣି ପରା । ତୁ କ'ଣ ଏ ଯାଏଁ ଶୋଇଛୁ ମ', ଉଠ୍ ।" ଲତା ଶିହରି ଉଠେ । ତା' ଭିତରର ସମସ୍ତ ରଙ୍ଗ ଓ ସୌରଭ ଜାଗ୍ରତ ହୋଇଉଠନ୍ତି । ସେ ମଣ୍ଡି ହୋଇଯାଏ ପତ୍ର ପୁଷ୍ପର ନୂତନ ସମ୍ଭାବନାରେ । ଏତକ ହୋଇ ନଥିଲେ ଲତା ଜୀବନର ପୂର୍ଣ୍ଣାଙ୍ଗ ବିକାଶ ହୋଇ ନଥାନ୍ତା । ଶୋଇ ରହିଯାଇଥାନ୍ତା ସୁଷମାର ଗୋଟିଏ ପର୍ଯ୍ୟାୟ । ସେହିପରି ସମୁଦ୍ରକୁ ନିଦ୍ରାରୁ ଉଠାଇଦିଏ ପୂର୍ଣ୍ଣିମାର ଚନ୍ଦ୍ର । ସମୁଦ୍ରରେ ଜୁଆରର ଉଲ୍ଲାସ ଦେଖାଦିଏ । ..... ବର୍ଷା ଉଠାଇଦିଏ ଊଷର ଭୂମିକୁ; ଦିଗ୍‌ବଳୟ ଭରିଯାଏ ନୀଳାଭ ସବୁଜିମାରେ ।

ଉଠାଇବା ଅର୍ଥ ଶୋଇ ରହିଥିବା ସଂପୃକ୍ତ ଚେତନାକୁ ଉଦ୍‌ବୋଧିତ କରିବା। "ଉଠ, ଜାଗ୍ରତ ହୁଅ, ଶ୍ରେଷ୍ଠ କଲ୍ୟାଣ ଲାଭକର ।" ମୋଟ ଉପରେ ଉଠାଇବା ଅର୍ଥ ଆତ୍ମାକୁ ଉଠାଇବା ଅର୍ଥାତ୍ ଚିର ଜାଗ୍ରତ ଆତ୍ମା ଉପରୁ ଜଡ଼ ନିଦ୍ରାର ପ୍ରଲେପକୁ ଯତ୍ନରେ ଏବଂ ଶ୍ରଦ୍ଧାରେ ପୋଛି ପକାଇବା ।

ଜଡ଼କୁ ଉଠାଇବା କିନ୍ତୁ ମଣିଷକୁ ଉଠାଇବାଠାରୁ ଭିନ୍ନ । ଯେତେବେଳେ, ଅଣୁ ଭିତରେ ଅନନ୍ତ କାଳରୁ ଶୋଇରହିଥିବା ସିଂହ ଶକ୍ତିକୁ ଉଠାଇ ଦିଆଗଲା, ସେ ଜଳି ଉଠିଲା ସହସ୍ରେ ସୂର୍ଯ୍ୟ ପରି । ଶିବ ଜଟାରୁ ବାହାରି କାଳ ଭୈରବ ଗର୍ଜିଲା ପରି ସେ କହିଲା, "ମୁଁ ଅମିତ ପରାକ୍ରମଶାଳୀ । ମୁଁ ଜଗତକୁ ଧ୍ୱଂସ କରିପାରେ । ମୋତେ କାହିଁ ଆବାହାନ କଲ। କହ; ନଚେତ ମୁଁ ସବୁ ଜାଳିଦେବି ।" କରଯୋଡ଼ ହୋଇ ସେତେବେଳେ ସ୍ତୁତି କରିବାକୁ ହୁଏ, "କ୍ରୋଧ ସମ୍ବରଣ କରନ୍ତୁ, ହେ ମହାକାଳ । ଆପଣ ଚାହିଁଲେ ଏ ସମସ୍ତଙ୍କୁ ଦିବ୍ୟତେଜରେ ପାଳନ ମଧ୍ୟ କରିପାରନ୍ତି । ଆପଣ ପାଳନ କରନ୍ତୁ ।" ଖୁଣ୍ଟ ଭିତରେ ଲୁଚିଥିବା ନୃସିଂହ କିନ୍ତୁ ଥରେ ବାହାରି ଆସିଲେ ଅବଶ୍ୟ ହିରଣ୍ୟକଶିପୁକୁ ବିଦାରଣ କରିବେ । ମହାଶକ୍ତିଙ୍କର ସନ୍ତୋଷ ପାଇଁ ଯଜ୍ଞପଶୁ ବଧ ହେବ ହିଁ ହେବ । ଯୋଜନା ସ୍ଥିରକରି ମଣିଷ ଭିତରର ସମସ୍ତ ଦୈବୀଶକ୍ତିକୁ ଜାଗ୍ରତ କରିଦେଲେ, ସେ ଅପଶକ୍ତିମାନଙ୍କୁ ସଂହାର କରିଯିବ; ସମତୁଲ ହୋଇଯିବ ମାନଭୂମି । ଶୋଇବାବେଳେ ପଶା ଖେଳୁଥିବା ଏବଂ ଚାହିଁବାବେଳେ ମିଥ୍ୟାଚାର କରୁଥିବା ଏ ବ୍ୟଭିଚାରୀମାନଙ୍କର ବିନାଶ ହୋଇଯିବ ।

ଜଡ଼ ନିଦ୍ରାରେ ଆଚ୍ଛନ୍ନ ହୋଇ ମଣିଷ ଯାହା ମୂଢ଼ ଭଳି ଆଚରଣ କରୁଥାଏ ସେ ତାହା ବୁଝିପାରେନାହିଁ । ଶୋଇଥିବା ବ୍ୟକ୍ତିର ଆଚରଣ ଅତି କରୁଣ । ତାହା କଦାପି ଦଣ୍ଡନୀୟ ନୁହେଁ ବରଂ ଦୟନୀୟ । ଏ ଦେଶର ଚେତନା ସୁପ୍ତ । ଏଣୁ ଯାହା କିଛି ଅପକର୍ମ ଦିଶୁଛି ତାହା ସେ ମହତ୍ ଆତ୍ମାର ପ୍ରକାଶ ନୁହେଁ । ଶୋଇବା ଅବସ୍ଥାରେ ଯେପରି ସ୍ୱପ୍ନ ଭୂମିରୁ ଆସି ଗୁଡ଼ାଏ କୁତ୍ସିତ ଅପଶକ୍ତି ମନ, ପ୍ରାଣ ଏବଂ ଶରୀର ଭୂମିକୁ ଅଧିକାର କରିଥାନ୍ତି ସେହିପରି ଦେଶର ନିଦ୍ରାବସ୍ଥାରେ ଅନେକ ଅପଶକ୍ତି ମଣିଷକୁ ଆଶ୍ରୟ ଏବଂ ଆଳ କରି ଘୋର ଦୁର୍ବିପାକ ସୃଷ୍ଟି କରୁଛନ୍ତି । ଶୋଇଥିବା ବ୍ୟକ୍ତି ନିଜେ ନିଜକୁ ଆଘାତ କରି ସୁଦ୍ଧା ଜାଣି ନ ପାରିଲା ପରି, ଆମେ ଜାଣିପାରୁନାହୁଁ ଦେଶର ଅଧିକାଂଶ ବିପତ୍ତି ପାଇଁ ଆମେ କେତେ ଦାୟୀ, ଆମର ଆଚ୍ଛନ୍ନ ଚେତନା କେତେ ଦାୟୀ, ଆମର ନିଦ୍ରା କେତେ ଦାୟୀ ।

ଏ ଦେଶର ଆତ୍ମା ଚିରଜାଗ୍ରତ । ସେ ଉଠିବି ଉଠିବି ହୋଇ ଉଠିପାରୁନାହିଁ । ଯଥା ସମୟରେ ସେପରି କେହି ଆତ୍ମଦ୍ରଷ୍ଟା ମହାପୁରୁଷ ଆସି ତା'ର ହୃତ କମଳକୁ ସ୍ପର୍ଶ କରିଦେଲେ ସେ ଉଠିବସିବ। ଖସିଯିବ ତା'ର ନିଦ୍ରାର ନିର୍ମୋକ, ତା'ର ଆଳସ୍ୟ, ତା'ର ଆତ୍ମପ୍ରତାରଣା, ତା'ର ମୂଢ଼ତା। ସେ ବୁଝିବ ନିଜକୁ, ନିଜର ଶକ୍ତିକୁ, ସମ୍ଭାବନାକୁ ଏବଂ ପୁଣି ମର୍ଯ୍ୟାଦାବନ୍ତ ହେବ ଏ ଭୂମି । ତା'ର ନିଦ୍ରାଭଙ୍ଗ ହେବ।



# ମୁଁ ଏବଂ ମୋର ପ୍ରତିବଦ୍ଧତା

ନିଲାମ ବଜାରରେ ଯେଉଁ ଟିକକ ବିକ୍ରୀ ହୋଇପାରେ ନାହିଁ ତାହାହିଁ ଜୀବନର ମୌଳିକ ମୂଲ୍ୟ । ତାକୁ ନେଇ ପରିଚୟ, ତାକୁ ନେଇ ସାଧାନା ଓ ସିଦ୍ଧି । ସେଇଟା ଯଦି ପଣ୍ୟ ହୋଇଯାଏ, ତେବେ ମଣିଷ ଜୀବନର ଅର୍ଥ କିଛି ନାହିଁ, ତାହା ହୁଏତ ସୂର୍ଯ୍ୟାସ୍ତ ପରେ ପୃଥିବୀ ପରି ଏକ ମ୍ଳାନ ଅସ୍ତିତ୍ୱ; କୌଣସି ଭାରବାହୀ ପଶୁର ବିବଶ ଜୀବଧର୍ମ ।

ସେ ମୂଲ୍ୟକୁ କିନ୍ତୁ ଚିହ୍ନଟ କରିବା ସହଜ ନୁହେଁ । ସାଧାରଣ ଭାବରେ ବଞ୍ଚିବା ପାଇଁ ଯେଉଁସବୁ ଅପରିହାର୍ଯ୍ୟ ଆୟୋଜନ ରହିଛି, ତା' ଭିତରେ ସେ ନ ଥାଏ । କିନ୍ତୁ ଅପରିହାର୍ଯ୍ୟ ଏକ ଆପେକ୍ଷିକ ଶବ୍ଦ । ଏଣୁ ପ୍ରୟୋଜନର ଦୀର୍ଘ ତାଲିକାରେ ତୃତୀୟ କୋଠା, ଚତୁର୍ଥ ଗାଡ଼ି, ସାମ୍ରାଜ୍ୟ ପରେ ସାମ୍ରାଜ୍ୟ, ମୁକୁଟ ପରେ ମୁକୁଟ ଆସୁଥିବାରୁ ଏ ମୂଲ୍ୟଟିକୁ ଖୋଜିବାକୁ ବେଳ ଅଣ୍ଟେ ନାହିଁ । ବହୁ ତୃଷା ମେଣ୍ଟେଇବା ପାଇଁ ଜୀବନ ବି ଅଣ୍ଟେ ନାହିଁ ।

ଏଣୁ ସାମଗ୍ରୀ ଗୋଟାଉଥିବା ଜୀବନରେ କେବଳ ସାଲିସ୍ କରା ଚାଲିଥାଏ। ବେପାରରେ ଥରେ ପଶିଗଲେ ତେଣିକି କିଣା ବିକା ଏକ ସାଧାରଣ କଥା ହୋଇଥିବାରୁ ବିନା ବାଛ ବିଚାରରେ ସବୁ କିଛି ନିଲାମ ଡାକରେ ଛାଡ଼ି ଦେବାକୁ ପଡ଼ିଥାଏ। ଅମୁକ ଲୋକକୁ ସନ୍ତୁଷ୍ଟ ନ କଲେ ସମୁକ ମାଲିକ ବାଟ ଛାଡ଼ିବ ନାହିଁ। ସେ ରାଜି ନ ହେଲେ ପଡ଼ିଶା ଡିହଖଣ୍ଡ ହାତକୁ ଆସିବ ନାହିଁ। ଡିହ ନ ହେଲେ, କୋଠ ନାହିଁ। କୋଠା ନାହିଁ ତ ସ୍ୱପ୍ନ ନାହିଁ; ସମ୍ଭୋଗ ନାହିଁ। ଏ ଦୌଡ଼ା ଦୌଡ଼ି ଭିତରେ ଯଦି ବାପାଙ୍କ ପଥର ବସା ମୁଦି ମୂଳ ବେପାରରେ ଚାଲିଗଲା, ଗାଁରେ ଦିଅଁଙ୍କ ଖାସ୍‌ମାହାଲ ଜମି ମାଲିକ ଅଫିସରକୁ ରାଜି କରାଇବାରେ ଖର୍ଚ୍ଚ ହୋଇଗଲା, ସେଥିରେ କୌଣସି ଅବଶୋଷ ନାହିଁ।

ଯାହା ମନରେ ଅବଶୋଷ ଆସିଗଲା, ଯେ ଦ୍ୱିଧାଗ୍ରସ୍ତ ହେଲା, ସେ ଆଖିବୁଜି ସାମଗ୍ରୀ ଗୋଟାଇ ପାରେ ନାହିଁ । ତା' ଭିତରେ ଗୋଟାଏ ମୂଲ୍ୟବୋଧ ବାଟ ଜଗି ଠିଆ ହୁଏ । ଲକ୍ଷ୍ମଣ ଗାର କାଟି ଦେଇ କହେ, ଏଇ ହେଲା ବେପାର ବଣିଜର ସରହଦ । ଯାପରେ ଯାହା ରହିଲା ସେଠିକି ନିଲାମଡକାଳି ଆସି ପାରିବେ ନାହିଁ । କାରଣ ତାକୁ ବିକ୍ରୀ କରିଦେଲେ ତେଣିକି ଜୀବନର କୌଣସି ମୂଲ୍ୟ ନାହିଁ ।

ଯେଉଁ ଭୂମିରେ ଠିଆ ହୋଇ ଜଣେ ବୁକୁ ଉପରେ ହାତ ରଖି ହଲଫ୍ କରିପାରେ, ନିଶ ଉପରେ ହାତ ରଖି ଯୁଦ୍ଧ ଘୋଷଣା କରିପାରେ, ସେଇଟା ତା'ର ସ୍ୱାଭିମାନର ଅପରାଜେୟ ଭୂମି । ପୈତୃକ ଗର୍ବ ଏବଂ ଗୌରବର, ଅମ୍ଳାନ ଯଶ–କୀର୍ତ୍ତି–ସାଧନାର, ଭୂମି , ଯାହାପାଇଁ ସେ ସଂଗ୍ରାମ କରିପାରେ ପ୍ରାଣପାତ କରିପାରେ କିନ୍ତୁ ସାଲିସ୍ କରି ପାରେ ନାହିଁ, ସେ ଭୂମି ତା'ର ଇଜ୍ଜତ୍ । ତାକୁ ସେ କେମିତି ବିକ୍ରୀ କରିପାରିବ ?

ସମସ୍ତଙ୍କ ଜୀବନରେ ଏଭଳି ମୂଲ୍ୟବୋଧ ନ ଥାଇପାରେ । ଥିଲେ ମଧ୍ୟ ସମସ୍ତେ ସେଥିପାଇଁ ସଂଗ୍ରାମ କରିବାକୁ ପ୍ରସ୍ତୁତ ନ ଥାଇ ପାରନ୍ତି । ସଂଗ୍ରାମ କଲେ ସୁଦ୍ଧା ସମସ୍ତେ ଜିଣିବେ ଏବଂ ନିଜକୁ ଜାହିର୍ କରିପାରିବେ ବୋଲି କିଛି କଥା ନାହିଁ । କେତେଜଣ ଏ ମହାର୍ଘ ମୂଲ୍ୟକୁ ମୁଣ୍ଡ ଉପରେ ଟେକିଧରି ନିଜେ ଯମୁନାରେ ବସୁଦେବ ପରି ବୁଡ଼ିଯିବା ପାଇଁ ପ୍ରସ୍ତୁତ ?

ଜୀବନ ସଂଗ୍ରାମ କାହା ପାଇଁ କେମିତି । ଜୀବନର ନ୍ୟୂନତମ ସର୍ତ୍ତ ହେଲା ସର୍ବପ୍ରଥମେ ନିଜେ ବଞ୍ଚିବା । ଯେତେ ପ୍ରକାର ବସ୍ତୁ ଓ ବ୍ୟକ୍ତି ଏ ନିବିଡ଼ତମ ପରିଧି ଭିତରକୁ ଆସିଯାନ୍ତି ସେମାନେ ସମସ୍ତେ ତା'ର ପରିପୋଷକ । ବଞ୍ଚି ରହିବାର ଇଚ୍ଛାରେ ସେ ବଞ୍ଚେ; ବଞ୍ଚିବାର କ୍ଷୁଧା ମେଣ୍ଟାଇବାକୁ ସେ ବାକି ସମସ୍ତଙ୍କୁ ଆହାର କରେ । ଏ ନ୍ୟୂନତମ ଭୂମିରେ ଆଉ କିଛି ବିଚାର କରିବାର ଅବକାଶ ନାହିଁ । ତେଣିକି ସବୁ ଗାର ଉଲଘଂନ କରିଯିବା ଆପଦ୍‌ଧର୍ମ ।

ବଞ୍ଚିଲା ପରେ ସେ ଉପସ୍ଥିତ ଦେଶକାଳକୁ ସ୍ୱୀକାର କରେ । ନିଜର ପରିଚୟ ଏବଂ ଚିହ୍ନଟ ପାଇଁ ସେ କହେ ମୁଁ ଅମୂକ ଦେଶର ଲୋକ, ଅମୂକ କାଳର ଲୋକ । ସେହିପରି କହେ ମୁଁ ଅମୂକର ପୁଅ, ସମୂକର ନାତି । କେବେ କେଉଁଠି କାହାର ପିତୃତ୍ୱକୁ ଅବଲମ୍ବନ କରି ସେ ଜନ୍ମିବ ଏଇଟା ଉପରେ ତା'ର କୌଣସି ଆୟତ୍ତ ନାହିଁ । ଏହା ତା' ଜୀବନର ଅପରିହାର୍ଯ୍ୟ ଓ ଅନିବାର୍ଯ୍ୟ ଅଙ୍ଗ । ଏହାକୁ ସେ କେବଳ ସ୍ୱୀକାରି ନିଏ । ଏଥିପାଇଁ ଗର୍ବିତ ଓ ସମ୍ମାନିତ ବୋଧ କରିବା ନ କରିବା ପରବର୍ତ୍ତୀ ପର୍ଯ୍ୟାୟର କଥା ।

ଯେ ଭାବି ପାରିଲା ଯେ ଭାରତରେ ନ ହୋଇ ସେ ଫ୍ରାନ୍ସରେ ଜନ୍ମି ଯାଇଥା'ନ୍ତା, ଏଠି ଏ ଘରେ ନ ହୋଇପାରେ ଆଉ କେଉଁଠି ହୋଇ ପାରିଥା'ନ୍ତା, ତାହେଲେ ସେ ପ୍ରୟୋଜନ ପଡ଼ିଲେ ଏ ସମସ୍ତଙ୍କୁ ବିକ୍ରୀ କରି ଦେଇପାରେ । କିନ୍ତୁ ଏ ଗୁଡ଼ିକ ତା'ଜୀବନର ଅବ୍ୟଭିଚାରୀ ଅଙ୍ଗ : ଅବିଚ୍ଛେଦ୍ୟ ଏବଂ ଅବଶ୍ୟମ୍ଭାବୀ । ଏଣୁ ଚାହିଁଲେ ସୁଦ୍ଧା ସେ ଏଥିରୁ ମୁକ୍ତ ହୋଇପାରେ ନାହିଁ । ସେ ଆଜୀବନ ବାପକୁ ଘୃଣା କରିପାରେ, ଜନ୍ମଭୂମିକୁ ପଦାଘାତ କରିପାରେ । କିନ୍ତୁ ଏମାନଙ୍କୁ ସେ ଅସ୍ୱୀକାର କରିପାରେ ନାହିଁ ।

ସମାଜ, ଜାତି, ସମ୍ପ୍ରଦାୟ ଯାହା ସେ ଜନ୍ମଗତ ଅଧିକାରରେ ପାଇଛି ତାକୁ ଏପରି ବାନ୍ଧି ରଖି ପାରନ୍ତି ନାହିଁ । ସେ ସବୁକୁ ସ୍ୱୀକାର କରିବା ନ କରିବା ତା'ର ମର୍ଜି ଉପରେ ନିର୍ଭର କରେ । ତଥାପି ସେ ଯେତେବେଳେ ଗୋଟିଏ ସମାଜକୁ ପ୍ରତ୍ୟାଖ୍ୟାତ କରି ଆଉ ଗୋଟିଏ ସମାଜରେ ପଶିବାକୁ ଚାହେଁ, ସେଇଠି ତାକୁ ଗ୍ରହଣ କରିବାକୁ ଅନ୍ୟମାନେ ପ୍ରସ୍ତୁତ ନ ଥାନ୍ତି । ସେ ନିଜେ ପ୍ରତ୍ୟାଖ୍ୟାତ ହୋଇ ପୁରାତନ କକ୍ଷକୁ ଫେରିଆସେ । ତା'ପରେ ହୁଏ ତ ସେ ତା'ର ପିତୃପୁରୁଷମାନଙ୍କର ସମାଜକୁ ଚିହ୍ନିବାକୁ, ସଜାଡ଼ିବାକୁ ଚେଷ୍ଟାକରେ; କିଛି ମାତ୍ରାରେ ଭଲ ପାଇବାକୁ ମଧ ଚେଷ୍ଟାକରେ। କିମ୍ୱା ସମ୍ପୂର୍ଣ୍ଣ ଉଦାସୀନ ରହି, ନିଜ ଭଲ ମନ୍ଦରେ ବୁଡ଼ି ରହେ।

ରାଷ୍ଟ୍ର ଆଉ ଏକ ବିରାଟ ବିସ୍ତୃତ ପରିସର । ସେ ତା'ର ଚେତନାକୁ ପ୍ରସାରିତ କରି ପାରିଲେ ତାକୁ ଅବଧାରଣ କରିପାରେ ନଚେତ୍ କେବଳ ତାକୁ ମାନଚିତ୍ର ରୂପେ ହିଁ କାନ୍ଥରେ ଟଙ୍ଗେଇ ଦିଏ । ପଞ୍ଜାବରେ ରକ୍ତପାତ ହେଲେ ତା'ର ଅଶ୍ରୁପାତ କରିବାର କାରଣ ନ ଥାଏ । ଆସାମରେ ଆନ୍ଦୋଳନ ହେଲେ ସେ ଆନ୍ଦୋଳିତ ହେବାର କାରଣ ନ ଥାଏ । ତା'ର ସଂକୀର୍ଣ୍ଣ ଅପର୍ଯ୍ୟାପ୍ତ ଚେତନାରେ ସେ ଏଡ଼େବଡ଼ ସତ୍ତାକୁ ଗ୍ରହଣ କରିପାରେ ନାହିଁ । କେବଳ ଯୁକ୍ତିରେ, ଅନୁଭୂତି ଆସେ ନାହିଁ । ଅନନୁଭୂତ ସତ୍ୟ, ସତ୍ୟ ନୁହେଁ ।

'ବସୁଧୈବ କୁଟୁମ୍ୱକମ୍' ଅକଳନୀୟ ଦିଗନ୍ତ । ଗୋଟିଏ ଗୋଟିଏ ମଣିଷର ସୁଖଦୁଃଖ ଯନ୍ତଣା ପରିତ୍ରାଣର ସଂଘାତକୁ ବୋହିପାରୁନଥିବା ମାନସିକତାରେ, କିପରି କୋଟି କୋଟି ମାନବାତ୍ମାର ବିପୁଳ ବିବିଧତା, ବିସ୍ତାର ଓ ଗଭୀରତା ସମାଇପାରିବ ଏବଂ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଆବେଗ ସଂଚାର କରିପାରିବ ? ସେ କେବଳ ବିହ୍ୱଳ ବିମୂଢ଼ ହତବାକ୍ ହୋଇ ସେ ଶବ୍ଦଗୁଡ଼ିକୁ ଯନ୍ତପରି ଉଚ୍ଚାରଣ କରେ, ବସୁଧୈବ କୁଟୁମ୍ୱକମ୍ । ହୋଇପାରେ ସମଗ୍ର ମାନବଜାତି ଗୋଟିଏ ପରିବାର । ହୋଇପରେ ସବୁ ପ୍ରକାର ଶତ୍ରୁତା, ଯୁଦ୍ଧ ବିଗ୍ରହ, ରକ୍ତପାତ ସତ୍ତ୍ୱେ ସେମାନେ ଗୋଟିଏ କୁଟୁମ୍ୱ । କିନ୍ତୁ ସେଥିପାଇଁ ସେ ଦୃଢ଼ତାର ସହିତ ଛାତିରେ ହାତ ରଖି ହଲଫ୍ କରି ପାରିବ ନାହିଁ ।

ଯା ବାହାରେ ଆଉରି ଏକ ପରିଧି । ସେଥିରେ ସ୍ଥାବର, ଜଙ୍ଗମ, କୀଟପତଙ୍ଗ, ଜଳସ୍ଥଳ, ଆକାଶ, ପବନ, ପୃଥ୍ୱୀର ଏକ ବିପୁଳ ଆୟତନ । ଗ୍ରହ, ଚନ୍ଦ୍ର, ତାରକା, ବିଶ୍ୱଖଣ୍ଡ ଏବଂ ଅକଳନୀୟ ବ୍ୟାପ୍ତି । ସେମାନଙ୍କର ସ୍ଥିତିରେ ଗତିରେ ଏକ ଅମୋଘ ଛନ୍ଦ, ଏକ ଅଲଙ୍ଘ୍ୟ ଶୃଙ୍ଖଳା । ହୁଏତ, ଏହାର ଜନୟିତା, ନିୟନ୍ତା, ଅନୁମନ୍ତା କେହି ପରମରହସ୍ୟ ରୂପେ ଅଜ୍ଞାତ ରହିଆସିଛି । ତା ସହିତ ଏ ବିଚାରଟିର ସମ୍ପର୍କ କ'ଣ ?

ସେ ସ୍ୱେଚ୍ଛାରେ ହୁଏତ ଦୁର୍ଭେଦ୍ୟ ଜଟିଳତାକୁ ନିଜ ମୁଣ୍ଡରେ ପୂରାନ୍ତା ନାହିଁ । କିନ୍ତୁ ପୃଥିବୀରେ ଆଦିମତମ ମଣିଷ ଦେଖା ଦେବା ଦିନଠାରୁ ଏ ପରମ ରହସ୍ୟ ବିଷୟରେ କିଛି ନା କିଛି କୁହା ଚାଲିଛି । କଥା ସରିନାହିଁ, ବୁଝା ସରିନାହିଁ । ଅଥଚ ସରିଛି ବୋଲି ଭାବିବା ଲୋକଙ୍କର ଅଭାବ ନାହିଁ; ଯେଉଁମାନେ ଖଣ୍ଡାରେ ସତ୍ୟର ପ୍ରତିଷ୍ଠା କରି ଚାଲିଛନ୍ତି । ବହୁ ସମ୍ପ୍ରଦାୟ ବହୁ ବିଶ୍ୱାସର ଗୋଲକଧନ୍ଦା । ଗୋଟିଏ ଗ୍ରହଣ କଲେ ଅନ୍ୟମାନଙ୍କୁ ଅସ୍ୱୀକାର କରିବାକୁ ପଡୁଛି, ଗ୍ରହଣ ନ କରି ବେଶୀକାଳ ରହି ହେଉନାହିଁ । ହୁଏ ତ ସବୁ ମାର୍ଗ ଠିକ୍; କାରଣ ସମସ୍ତେ କିଛି କିଛି ଜାଣିଛନ୍ତି କିମ୍ବା ସବୁ ଭୁଲ୍। କାରଣ କେହି ଚୂଡ଼ାନ୍ତ ରୂପେ ଜାଣି ନାହାନ୍ତି ।

ଶୁକ୍ର କୀଟଠାରୁ ଆରମ୍ଭ କରି ଏ ଅକଳନୀୟ ରହସ୍ୟରେ ଲୀନ ହେବା ପର୍ଯ୍ୟନ୍ତ କ୍ରମଶଃ କ୍ଷୀଣତର ଏବଂ ବିରଳତର ହୋଇ ଯାଇଥିବା ତନ୍ତୁ ଜାଲ ପରି ବିସ୍ତୃତ ମୋର ସୃଷ୍ଟି, ସ୍ଥିତି ଏବଂ ଲୟର ଇତିହାସ । ଏ ବିସ୍ତୃତ ପୃଷ୍ଠଭୂମିରେ କେବଳ ମୋ ସନ୍ନିହିତ ମୂଲ୍ୟଗୁଡ଼ିକୁ ନେଇ ମୋର ପ୍ରତିବଦ୍ଧତା, ସେଥିପାଇଁ ମୋର ସଂଗ୍ରାମ, ପ୍ରତିରୋଧ ଏବଂ ସଙ୍କଳ୍ପ ।

ମୁଁ ମୋର ସ୍ୱତନ୍ତ୍ର ସତ୍ତାକୁ ସ୍ୱୀକାର କରେ, ସମ୍ମାନ କରେ ଏବଂ ତାର ସ୍ୱାତନ୍ତ୍ର୍ୟ ରକ୍ଷା କରିବାକୁ ମୋ ନିଜ ପାଖରେ ଅଙ୍ଗୀକାରବଦ୍ଧ । ମୋର ଦେହ, ମନ, ପ୍ରାଣ ମୋର ଆଦିଭୂମି, ଏଣୁ ରକ୍ଷଣୀୟ । ମୋର ଶରୀରର ପ୍ରତ୍ୟେକ ଅଙ୍ଗ, ସୁସ୍ଥ ନିରାମୟ ରଖିବାକୁ ମୁଁ ଚେଷ୍ଟା କରେ । ଶରୀର ମୋର କ୍ଷେତ୍ର । ଶରୀର ମୋର ବାହନ । ସଂସାର ଯାତ୍ରାରେ ଦୀର୍ଘପଥ ଅତିକ୍ରମ କରିବାକୁ ହେଲେ ଯେପରି ଗୋଟାଏ ଅଶ୍ୱକୁ ପୋଷଣ କରାଯାଏ, ସେହିପରି ଶରୀରକୁ ସକ୍ଷମ ସୁସ୍ଥ ରଖିବାକୁ ପଡ଼େ । କିନ୍ତୁ ସେତିକି ମାତ୍ର କର୍ତ୍ତବ୍ୟ । ଶରୀରରେ ଜିହ୍ୱା ଏବଂ ଉପସ୍ଥର କ୍ଷୁଧାକୁ ସ୍ୱୀକାର କରାଯାଏ, ସେଥିପାଇଁ ଆହାର ଯୋଗାଇ ଦିଆଯାଏ । କିନ୍ତୁ ଆହାର ବ୍ୟସନ ନୁହେଁ । ମୁଁ ଶରୀରାଶ୍ରୟୀ ନିଶ୍ଚୟ କିନ୍ତୁ ଶରୀର–ସର୍ବସ୍ୱ ନୁହେଁ ।

ମୋର ପ୍ରାଣ ଭୂମି ଆବେଗ, ସଂବେଗ, ଅନୁଭବ, ଆବେଦନର ଭୂମି । ସେ ସବୁବେଳେ ଆନ୍ଦୋଳିତ ହେଉଥାଏ । ସେଥିରେ ସ୍ୱପକ୍ଷ, ପରପକ୍ଷ, ଜୟ ପରାଜୟ, ପ୍ରେମ ଘୃଣା ଉଦ୍‌ବେଳିତ ହେଉଥାନ୍ତି । ଶରୀରର ପ୍ରବଳ କ୍ଷୁଧା ପାଇଁ ପ୍ରାଣ ବିକ୍ଷୁବ୍ଧ ହୁଏ । ପ୍ରାଣ ସ୍ଥିର ହେଲେ ପ୍ରଶାନ୍ତ ଗମ୍ଭୀର ସମୁଦ୍ରର ଅନୁଭବ ଦେଇପାରେ । ପ୍ରାଣର ଜ୍ୱାଳା, ତା'ର ବିକ୍ଷୋଭକୁ ମୁଁ ସ୍ୱୀକାର କରେ । ତା'ର ପୀଡ଼ନକୁ, ପ୍ଲାବନକୁ ପ୍ରଶ୍ରୟ ଦିଏ ନାହିଁ ।

ମୋର ମନୋଭୂମି ମୋ ସତ୍ତାର ଜ୍ୟେଷ୍ଠ, ଗରିଷ୍ଠ ଅଂଶ । ସେ ବାୟୁପରି ଚଞ୍ଚଳ, ପ୍ରବଳ ଏବଂ ଆକାଶ ପାତାଳ ସର୍ବତ୍ର ନିମେଷକରେ ଭ୍ରମି ଆସିବାପାଇଁ ସମର୍ଥ । ମୋର ଚିନ୍ତା ଶରୀରକୁ କେନ୍ଦ୍ର କରି ବ୍ୟସନା, ପ୍ରାଣକୁ ଆଶ୍ରୟ କରି ଅବାଧ ଏବଂ ଉଦ୍ଭଟ, କିନ୍ତୁ ନିୟନ୍ତ୍ରିତ ହେଲେ ପକ୍ଷୀରାଜ ପରି ସତ୍ୟଲୋକ ପର୍ଯ୍ୟନ୍ତ ଅଭିଯାନ କରିବାକୁ ସମର୍ଥ । ମୁଁ ବେଳେବେଳେ ତା'ଠାରୁ ଅଭିନ୍ନ । 'ମୁଁ' କହିଲେ ମୋ ମନକୁ ମୁଁ ବୁଝିଥାଏ । କିନ୍ତୁ ମନର ସୀମାରେଖାରେ ଅନ୍ୟଏକ ସ୍ଥିରସତ୍ତାର ସଂଘାତ ମୋତେ ସେ ବ୍ୟାମୋହରୁ ମୁକ୍ତ କରେ । ମୁଁ ମୋ ମନକୁ ମୋର ସବୁଠାରୁ ବଳିଷ୍ଠ ଅବୟବ ରୂପେ ବ୍ୟବହାର କରିବାକୁ ଶିଖିଯାଏ ।

ମୁଁ ଏଥିପାଇଁ ଏ ସବୁଠାରୁ ସ୍ୱତନ୍ତ୍ର; ଏଥିପାଇଁ ମୋର ଅନ୍ତରତମ ସତ୍ତା ପାଖରେ ଉତ୍ତରଦାୟୀ । ମୁଁ ମୋ ବାହାରେ କୌଣସି ବ୍ୟକ୍ତି, ଅନୁଷ୍ଠାନ ଶାସନ ତନ୍ତ୍ରର ଖାତିର୍‌ରେ କିଛି କରିବା ବା ନକରିବାରେ ବିଶ୍ୱାସ କରେନାହିଁ । ମୋ ଭିତରେ ଥିବା ସାକ୍ଷୀପୁରୁଷକୁ ମୁଁ ଚୂଡ଼ାନ୍ତମୂଲ୍ୟ ଦିଏ । କାରଣ ସେ ଚିରକାଳ ଉପସ୍ଥିତ ଥାଏ । ତାକୁ ଆଖିମିଟିକା ମାରିଦେବା ସମ୍ଭବ ନୁହେଁ । ତା' ପାଖରେ ମୁଁ ଦୋଷୀ ସାବ୍ୟସ୍ତ ହେଲେ ମୋର ସପକ୍ଷରେ କୌଣସି ଯୁକ୍ତି ପର୍ଯ୍ୟାପ୍ତ ନୁହେଁ ।

ଏଣୁ ବିଭିନ୍ନ ପରିସ୍ଥିତିରେ, ପାରିବାରିକ, ସାମାଜିକ, ସରକାରୀ, ବେସରକାରୀ ଭୂମିକାରେ ମୁଁ ମୋର ଦାୟିତ୍ୱକୁ ସ୍ୱୀକାର କରେ । ଅପରକୁ ସ୍ୱୀକାର କରେ । ଅଥଚ ସେଇ ସାକ୍ଷୀ ପାଖରେ ଚିରକାଳ ଉତ୍ତରଦାୟୀ ରହିବାକୁ ଚେଷ୍ଟା କରି ଚାଲିଯାଏ । ମୋର ଶିକ୍ଷା, ସଂସାର, ରିତି, ନୀତି, ପରମ୍ପରା, ମୋର ଧର୍ମଦର୍ଶନ, ଶାସ୍ତ୍ର, ମୋର ପ୍ରବୃତ୍ତି ଓ ଦୁର୍ବଳତା ସବୁ ତା' ପାଖରେ ମହଜୁଦ୍ ରହିଥାଏ । ଏଣୁ କ'ଣ କରିବା ଉଚିତ ବା ଅନୁଚିତ୍ ତା'ର ନିର୍ଭୁଲ ନିର୍ଦ୍ଦେଶ ମିଳୁଥାଏ । ତେବେ ମୋର ଏ ଆଭ୍ୟନ୍ତରୀଣ ସତ୍ୟ ସହିତ ମୁଁ ବଞ୍ଚିପାରେ ନାହିଁ । ବ୍ୟତିକ୍ରମ ହୁଏ, ମୋର ଦୁର୍ବଳତାରୁ ମୋର ଅସାମର୍ଥ୍ୟରୁ ।

ଧର୍ମ ସଙ୍କଟରେ ସବୁବେଳେ ଉତ୍ତୀର୍ଣ୍ଣ ହୋଇ ଆସିବା ହୁଏତ ସମ୍ଭବ ନୁହେଁ । ଚାକିରୀ ପାଇବା ପାଇଁ ପ୍ରାର୍ଥୀ ତାଲିକା ପ୍ରସ୍ତୁତ ହୋଇଛି । କ୍ଷମତାର ସୁଉଚ୍ଚ ସୋପାନରୁ ନିର୍ଦ୍ଦେଶ ଆସିଲା ଯେ, ତାଲିକା ବହିର୍ଭୂତ ଅଜ୍ଞାତ ମାଧିଆକୁ ନିଯୁକ୍ତି ପତ୍ର ଦିଆଯାଉ । ଆଦେଶକୁ ନିର୍ବିରୋଧ ମାନିଯିବା ଶାସନତନ୍ତ୍ରର ଶୃଙ୍ଖଳା । ଅନ୍ୟାୟର ବିରୋଧ କରିବା ନୀତିଗତ କର୍ତ୍ତବ୍ୟ । ଆଦେଶ ଅମାନ୍ୟ କରିବାର ପ୍ରତିଫଳ ଭୟ ସଂଚାର କରେ, ବିରୋଧ କରି ପାରୁ ନ ଥିବାର କ୍ଲୀବତା କ୍ଷୋଭ ଏବଂ କ୍ରୋଧ ସଂଚାର କରେ, ଉଭୟର ସଂଘର୍ଷରେ ଭୟକୁ ଅତିକ୍ରମ କରିଗଲେ ନିଜ ଇଜଲାସ୍‌ରେ ନିର୍ଦ୍ଦୋଷ ମୁକ୍ତି ମିଳିଯାଏ । ତେଣିକି ମାଲ୍‌କାନାଗିରିରେ ତେରବର୍ଷ ଅଜ୍ଞାତ ବାସ ବରଂ ବରଣୀୟ ।

ମିଥ୍ୟାଚାର ଏବଂ ଅର୍ଥଲୋଭ ପାଖରେ ସମର୍ଥରୁ ସମର୍ଥ ବ୍ୟକ୍ତି ମଧ୍ୟ ପରାଜୟ ସ୍ୱୀକାର କରିଆସିଛନ୍ତି । ସନ୍ତ୍ରାସବାଦୀଙ୍କଠାରୁ ରକ୍ଷା ପାଇବା ପାଇଁ ଜଣେ ଆସି ଆଶ୍ରୟ ଲୋଡ଼ିଛି । ବନ୍ଧୁକଧାରୀ ଆସି ଯଦି ପଚାରନ୍ତି ସେ ଅଛି ନା ନାହିଁ, କ'ଣ ଉତର ଦିଆଯାଇପାରେ ? ଶୀତ ରାତିରେ ରୋଗିଣା ପୁଅକୁ ଶେଷ ଟ୍ରେନ୍‌ରେ ନେଇ ନ ପାରିଲେ ଜୀବନ ବିପନ୍ନ । ଟି. ଟି. ଇ. ବାଟ ଜଗି ଠିଆ ରହିଛି ତିରିଶ୍ ଟଙ୍କା ଉତ୍କୋଚ ନ ନେଲେ ଉଠାଇବ ନାହିଁ ? କ'ଣ କରାଯାଇ‌ ..ରେ ? ଘନିଷ୍ଠ ବାଲ୍ୟବନ୍ଧୁ ଭଉଣୀ ବିଭା କରିବାକୁ ପ୍ରତିରକ୍ଷା ଅଫିସ୍‌ରୁ କାଗଜର ଗୁରୁତ୍ୱ ନ ବୁଝି ବିକ୍ରୀ କରି ଦେଇଛି । ରିପୋର୍ଟ କରିବାକୁ ପଡ଼ିବ କିନ୍ତୁ ପ୍ରାଣ ମନକୁ ବିକ୍ଷୁବ୍ଧ ନ କରି କେମିତି ହେବ ?

ଏହିପରି ଅସଂଖ୍ୟ ପରିସ୍ଥିତିରେ ସଙ୍କଟ : ନିଜ ସାମର୍ଥ୍ୟରେ ପରିମାପ ଅନୁସାରେ ଜୟ, ପରାଜୟ; ନିଜ ଇଜଲାସ୍‌ରେ ଦୋଷୀ, କିମ୍ବା ନିର୍ଦୋଷ ସାବ୍ୟସ୍ତ ହେବାର ସଙ୍କଟ । ଖୁବ୍ ନୀତିବନ୍ତ ଯେ ଶହେ ଟଙ୍କା ନୋଟଟିକୁ ନିର୍ବିକାର ଫେରାଇ ଦେଇପାରେ; ଦଶହଜାର ଟଙ୍କାର ନୂଆ ବିଡ଼ାଏ ନୋଟ୍ ଆସିଲେ ଓଟାରି ହେବ । ଦ୍ୱନ୍ଦ୍ୱ ସଂଘର୍ଷରେ ହୁଏତ ପ୍ରଲୋଭନକୁ ଏଡ଼େଇ ଦେଇପାରେ । କିନ୍ତୁ କେଉଁ ପର୍ଯ୍ୟନ୍ତ ? ଯଦି ବିଡ଼ାଏ ଜାଗାରେ ଦଶବିଡ଼ା ପହଞ୍ଚିଯାଏ, ବଢ଼ି ପାଣିରେ ମୁଣ୍ଡ ବୁଡ଼ିଯାଏ, ସେ କ'ଣ କରିପାରିବ ? ନିଜ ଇଜଲାସ୍‌ରେ ଲାଜ ଲାଜ ହୋଇ ହୁଏତ କହିବ, ଏ ଯୁଗରେ ସତ୍ୟପୁରୁଷ କାହାନ୍ତି ? ଯାହାକୁ ଦେଖିବ ତ ଏଇଆ ? ଏଥିରୁ ତ କେହି ମୁକ୍ତ ନୁହନ୍ତି ? ମୁଁ କି ଛାର । ଭିତରର ଧର୍ମ ସାକ୍ଷୀ କିଛି ନ କହି ବିମର୍ଷ ଚାହିଁ ରହିବ । ସେ ଚାହାଣିର ଧିକ୍କାର ସହିବା ସହଜ ନୁହେଁ । ତଥାପି ଯେ ମୂଲ୍ୟ ଲଂଘନ କରିଯାଇଛି ସେ ତେଣିକି ସରୀସୃପ ପରି ନିମ୍ନ ଭୂମିରେ ଘୋସାରି ହୋଇ ବଞ୍ଚିବ । ତା ପାଇଁ କୌଣସି ଉତ୍‌ଫଣ ସ୍ୱାଭିମାନର ସମ୍ଭାବନା ନାହିଁ ।

ମୋର ପରିବାର, ସମାଜ ଏବଂ ଦେଶ ମୋର ବିସ୍ତୃତ ଅଂଶ । ମୋର ଶରୀର ଆହତ ହେଲେ ମୁଁ ଯେପରି ଉତ୍‌କ୍ଷିପ୍ତ ହୋଇ ଉଠେ, ସେପରି ମୋର ପତ୍ନୀକୁ ବିବାହ କଲେ ମୁଁ ଧନୁଧାରଣ କରେ, ମୋର ଜନୟିତ୍ରୀର ଅପମାନ ପାଇଁ ମୁଁ ଯୁଦ୍ଧ ଘୋଷଣା କରେ, ମୋ ଦେଶ, ଜାତି ଧର୍ମର ବିରୋଧୀକୁ ମୁଁ ପ୍ରତିପକ୍ଷ ଭାବି ନିଶ୍ଚିହ୍ନ କରିବାକୁ ସଙ୍କଳ୍ପବଦ୍ଧ ହୁଏ । ଏସବୁ କିନ୍ତୁ ମୋର ନିଜ ଇଜଲାସ୍‌ରେ ବିଚାରାଧୀନ ହୁଏ । ସେଇଠି ମଧ୍ୟ ଧର୍ମ ସଙ୍କଟ ଦେଖାଦିଏ, ଦ୍ୱନ୍ଦ୍ୱ ଆସେ, ଦୁର୍ବଳତା ଦେଖାଦିଏ । ମୋର ଶରୀର, ପ୍ରାଣ ଏବଂ ମନକୁ ନିୟନ୍ତ୍ରିତ କରିବାର ଅସାମର୍ଥ୍ୟ ପ୍ରକାଶ ପାଏ ।

ସବୁଠାରୁ ମହାର୍ଘ ମୂଲ୍ୟ ମୋର ସ୍ୱାତନ୍ତ୍ର୍ୟ; ମୋର ସ୍ୱାଭିମାନ । ମୋତେ କ୍ରୀତଦାସ ଭାବି ମୋର ଇଜ୍ଜତ୍ ଉପରେ ନିଲାମ ଡାକ ହେଲେ ମୁଁ ସହିପାରେ ନାହିଁ।

ସେଥିରେ ମୋର ଅହଂ ଆହତ ହୁଏ । ପରାସ୍ତ ଅହଂ ନେଇ ବଞ୍ଚିବା ମସ୍ତକହୀନ କବନ୍ଧର ଜୀବନ । କୌଣସି ଅନ୍ୟ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଲୁଣ୍ଠିତ ହେଲେ, ମୁଁ ସେଥିପାଇଁ ସହିପାରେ ନାହିଁ । ବ୍ୟକ୍ତିକୁ ବସ୍ତୁ ଭଳି ବ୍ୟବହାର କଲେ ସହିପାରେ ନାହିଁ । ଯୁଦ୍ଧ ଘୋଷଣା କରେ । ପକ୍ଷୀ ଶାବକକୁ ଗ୍ରାସ କରିଥିବା ସମୁଦ୍ର ଅପରାଜେୟ ହୋଇପାରେ । କିନ୍ତୁ ପକ୍ଷିଣୀର ବାତ୍ସଲ୍ୟଆତ୍ମାର ଯୁଦ୍ଧ ଘୋଷଣାରେ ବିଶ୍ୱଛନ୍ଦ ମଥିତ ହୁଏ । ବ୍ୟକ୍ତି ପରାସ୍ତ ହେଲେ ସୁଦ୍ଧା ତା' ପକ୍ଷରେ ଠିଆ ରହିଥିବା ସତ୍ୟ ଚିରଭାସ୍ୱର ଏବଂ ଅଜେୟ । ମୁଁ ଏଥିରେ ବିଶ୍ୱାସ କରେ।

ମଣିଷର ଅସାଧାରଣ କ୍ଷମତାରେ ମୁଁ ବିଶ୍ୱାସ କରେ, କିନ୍ତୁ ତା'ର ନିର୍ବିଚାର ପ୍ରୟୋଗରେ ନୁହେଁ । ପ୍ରମତ୍ତ ମଦାନ୍ଧତା ଏକ ଶ୍ୱାପଦ ଲକ୍ଷଣ । ସେତେବେଳେ ପ୍ରବଳ ମଣିଷର ଦୁର୍ବଳକୁ ମର୍ଦ୍ଦିତ କରେ, ବେଇଜ୍ଜତ୍, ଅପମାନିତ କରେ । ଦୁର୍ବଳତାର ସୁଯୋଗ ନେଇ ନାରୀଟିକୁ ଧର୍ଷଣ କରେ, ଶିଶୁ ବୃଦ୍ଧକୁ ହତ୍ୟା କରେ । ସେ ଶ୍ୱାପଦ ମଣିଷର କ୍ଷମା ନାହିଁ ।

ମଣିଷର କ୍ଳୀବତାର ମଧ୍ୟ କ୍ଷମା ନାହିଁ । ନ୍ୟାୟାଳୟରେ ହେଉ ଅଥବା ଦେବାଳୟରେ, ରାଜଦ୍ୱାରରେ ହେଉ ଅଥବା ଶ୍ମଶାନରେ, ଯେ ନିଜକୁ ଅସହାୟ ଦୁର୍ବଳ ନିରାଶ୍ରୟ ବୋଲି ଘୋଷଣା କରେ; ଭିକ୍ଷା କରେ ଦୟା, ଭିକ୍ଷା କରେ ଅନ୍ନ ଓ ଆଶ୍ରୟ ତା'ର ବଞ୍ଚିବାର ଅଧିକାର ନାହିଁ । ସେ ଆଦିମ ଭୟକୁ ଜୟ କରିପାରି ନାହିଁ । ନିଜ ଭିତରେ ଲୁକ୍କାୟିତ ଅଫୁରନ୍ତ ଶକ୍ତିର-ଉତ୍ସକୁ ଆବିଷ୍କାର କରିନାହିଁ । ସେ ମୁଣ୍ଡ ଟେକି ଚାଲିପାରେ ନାହିଁ । ସବୁବେଳେ ହାହାକାର କରୁଥିବା ମଣିଷ ଶୈଶବକୁ ଅତିକ୍ରମ ନ କରି ହିଁ ଏ ସଂସାରରୁ ବିଦାୟ ନିଏ । ସେ ମଣିଷପଣିଆର ଅଯୋଗ୍ୟ, ତା ପାଇଁ କୌଣସି ସମ୍ବେଦନା ଜଣାଇବାକୁ ମୁଁ ପ୍ରସ୍ତୁତ ନୁହେଁ ।

ଅଥଚ ଯେ ଯୋଦ୍ଧା ଯେ ସଂଗ୍ରାମ କରି ଜାଣେ ଧନୀକ ପାଖରେ ମୁଣ୍ଡ ନୁଆଁଏ ନାହିଁ; ମୂଲ ନିଏ, ଦୟା ନୁହେଁ କି ଅନ୍ନ ନୁହେଁ, ସେ ମୋର ସୋଦର ଆତ୍ମା । ସେ ସମୁଦ୍ର ସହିତ ଲଢ଼ି ମୁକ୍ତା ଓଟାରି ଆଣେ । କୃପଣ ସଂସାରରୁ ତା'ର ବଞ୍ଚିବାର ଅଧିକାର ଟାଣି ନିଏ । ସେ ଈଶ୍ୱର ପାଖରେ ସୁଦ୍ଧା ଆଣ୍ଠୁ ନୁଆଁଏ ନାହିଁ । ଭାଗ୍ୟ ପାଖରେ ନୁହେଁ କି ମୃତ୍ୟୁ ପାଖରେ ନୁହେଁ ।

ସେହିପରି ନିର୍ଭୀକ ସତ୍ୟଧର୍ମକୁ ମୁଁ ସମ୍ମାନ ଦିଏ, ଯେ ମୃତ୍ୟୁକୁ ସାମ୍ନାରେ ରଖି ଅବିଚଳିତ ସତ୍ୟ ବୟାନ ଦେଇ ଚାଲିଥାଏ । ତା'ର ଶରୀର–ପିଣ୍ଡର ପତନରେ ସେ ମୃତ୍ୟୁବରଣ କରେ ନାହିଁ । ମୃତ୍ୟୁ ପରେ ସୁଦ୍ଧା ଯେଉଁମାନଙ୍କର ଅମର ଜୀବନର ଅବସାନ ଘଟେ ନାହିଁ, ସେ ମହାମାନବମାନଙ୍କୁ ମୁଁ ଈଶ୍ୱରଠାରୁ ଅଧିକ ସମ୍ମାନ ଦିଏ।

କିନ୍ତୁ ସାଧାରଣ ମଣିଷଟିକୁ ନିଜର ଅକ୍ଷମତା ପାଇଁ, ଲଜ୍ଜିତ କରୁଥିବାରୁ ତାକୁ ମୃଦୁ ଭର୍ତ୍ସନା ମଧ୍ୟ କରିଥାଏ ।

ଏମାନଙ୍କର ବିପରୀତ, କୋକିଶିଆଳୀମାନଙ୍କୁ କିନ୍ତୁ ମୁଁ କ୍ଷମା ଦେଇପାରେ ନାହିଁ । ସେମାନେ ନିଜ ସ୍ୱାର୍ଥର ବିବରକୁ ପୂରଣ କରିବା ପାଇଁ ପ୍ରବଳ ପାଖରେ ନିଜର ଇଜ୍ଜତ୍‌କୁ ବାରମ୍ବାର ବାଜି ଲଗେଇ ବଞ୍ଚୁଥାନ୍ତି । ଶଠତା ସେମାନଙ୍କର ବର୍ମ, ବଶୀକରଣ ହେଉଛି ବିଦ୍ୟା, ଚଟୁଳତା ଅସ୍ତ୍ର, ଛଳନା ଆବରଣ । ସେମାନେ ସ୍ୱାର୍ଥପାଇଁ ଦେଶକୁ ବିକ୍ରୀ କରନ୍ତି । ବନ୍ଧୁକୁ ହତ୍ୟା କରନ୍ତି । ବିଶ୍ୱାସର ଏମାନେ ଚିରକାଳ ଘାତକ; ମାନବ ସ୍ୱାଭିମାନର ପରିପନ୍ଥୀ । ଏ ପୋକମଣିଷମାନଙ୍କୁ କେବଳ ଅବଜ୍ଞା କରାଯାଇପାରେ । ସେମାନେ ଦଣ୍ଡପାଇଁ ମଧ୍ୟ ଅଯୋଗ୍ୟ ।

ମୁଁ ମୋ ଇଜ୍‌ଲାସ୍‌ରେ କାଠଗଡ଼ାରେ ଠିଆ ହୋଇଥାଏ । ବୟାନ ଦେଉଥାଏ ସାକ୍ଷୀପୁରୁଷ ପାଖରେ । ମୋର ନୀତି ନିୟମ ମୋର ମୂଲ୍ୟବୋଧ ମୋର ଆଚରଣ ଆସ୍ପୃହା ମୋର ସଂଗ୍ରାମ ସାଧନା, ପାଇଁ ସ୍ୱୀକୃତି ପ୍ରାର୍ଥନା କରୁଥାଏ । ମୋର ବିଫଳତା ପରାଜୟ, ଆତ୍ମଗ୍ଲାନି ପାଇଁ ନୀରବରେ ମଥା ପୋତି ଭର୍ତ୍ସନା ସହନ କରୁଥାଏ । ସେ ମୋର ବିଚାରକ, ମୋ ସାକ୍ଷୀ, ମୋର ସହାୟକ, ମୋର ପ୍ରଭୁ । କେବଳ ତା' ପାଖରେ ମୁଁ ଉତ୍ତର ଦାୟୀ । ମୋର ପ୍ରତିବଦ୍ଧତାର ଆଦିବିନ୍ଦୁ ସେ, ଅନ୍ତର୍ବିନ୍ଦୁ ମଧ୍ୟ ସେ । ମୁଁ ତା' ପାଖରେ ଚିରକାଳ ପ୍ରତିବନ୍ଧ ।



# ସଂସାରେ କରିଛୁ ଘର

ଥରେ ବଜାର ଛକରେ କିଛି ଲୋକ ଗାଁ' ଆମ୍ବ ତୋଟା ବିଷୟରେ ଖୁବ୍ ଉତ୍ସାହରେ ଆଲୋଚନା କରୁଥିବାର ଦେଖାଗଲା । ବିଭିନ୍ନ ପ୍ରକାର ଆମ୍ବର ଆକୃତି, ବାସ୍ନା ଏବଂ ସୁଆଦ ଉପରେ ଅନେକ ତାତ୍ତ୍ୱିକ କଥା ସବୁ କୁହାଗଲା । ପୁରାଣ ଶାସ୍ତ୍ରରୁ ସତ୍ୟଆମ୍ବ ଉପାଖ୍ୟାନ ମଧ୍ୟ କେହି ଜଣେ ବଖାଣି ଗଲେ । ଦେଖୁ ଦେଖୁ ଶ୍ରୋତାଙ୍କ ଭିଡ଼ ଜମିଗଲା । ଜଣେ ଆଲୋଚକ ଆରମ୍ଭ କଲେ "ମୋର ଦୃଢ଼ ବିଶ୍ୱାସ ଯେ ଗାଁର ପଶ୍ଚିମ ପଟେ ଏ ଆମ୍ବ ତୋଟାରେ ଅନ୍ୟୂନ ଦେଢ଼ ଶ' ଗଛ ଅଛି । ସବୁ ବାଇଗଣପଲ୍ଲୀ !" ହଠାତ୍ ଶ୍ରୋତାଙ୍କ ଭିତରୁ ଜଣେ କହି ଉଠିଲା "ଆଜ୍ଞା, ତୋଟାରେ ଦେଢ଼ଶ' ଗଛ କୁଆଡୁ ଆସିଲା ? ସେଠି ପରା ଜମାରୁ ତେରଟି ଗଛ !" ପ୍ରଥମେ ସମସ୍ତେ ଯା' ଉପରେ ଚିଡ଼ି ଉଠିଲେ, ପାଟି ତୁଣ୍ଡ କଲେ । ତାଙ୍କୁ ଲାଗିଲା ଯେ ଏଇ ଜଣକ ତାଙ୍କ ତୋଟାରୁ ସହେ ସଁତ୍ରିଶ୍ ଗଛ କାଟି ନେଇ ଗଲା । ସେ ସବୁ ପାଟି କଲେ "ତମେ କିଏ ହୋ, ପାଟି ଫିଟେଇବାକୁ ? ତୁନି ପଡ଼ ! ବାହାରି ଯାଅ !!" ସେ କିନ୍ତୁ ଅବିଚଳିତ ଠିଆ ହୋଇ ଦୃଢ଼ ସ୍ୱରରେ କହିଲା "ଆଜ୍ଞା ମୁଁ ସେଇ ତୋଟା ମାଳି ! ସେଇଠି ପିଲାଦିନୁ ଅଛି । ଗାଁର ଏଇ ଉତ୍ତର ଦିଗରେ ଆମ୍ବତୋଟା, ପଶ୍ଚିମରେ ନୁହେଁ । ସେଥିରେ ମାତ୍ର ତେରଟି ଗଛ କେଉଁ କାଳୁ ଅଛି । କୌଣସିଟି ବାଇଗଣପଲ୍ଲୀ ନୁହେଁ । ସବୁଯାକ ଦେଶୀ, ଖାଲି ଆମ୍ବୁଲ ପାଇଁ ଉପଯୋଗୀ ଗୋଟାଏ ବୁଢ଼ା ଗଛରେ ମିଠା ଆମ୍ବ ଫଳେ, ବାକି ସବୁ ଖଟା ।" ଜଣା ଗଲା ଯେ ସେ ହିଁ କେବଳ ଆମ୍ବତୋଟା ବିଷୟ ଜାଣେ । ବାକି କେହି ଦେଖି ନାହାନ୍ତି କିମ୍ବା ଜାଣି ନାହାନ୍ତି ! ଲୋକେ ତା' ଚାରିପଟେ ଘେରିଗଲେ । ଭାବିଲେ "ଆମ୍ବର ତତ୍ତ୍ୱ ଅପେକ୍ଷା ଆମ୍ବକୁ ଯେ ଭଲରୂପେ ଦେଖିଛି ଏବଂ ଚାଖିଛି ସେ ହିଁ ସେ ବିଷୟରେ କହୁ । ପୋଥି ବାଇଗଣ ଢେର ଚିକ୍କଣ ଆଉ ଲୋଭନୀୟ ନିଶ୍ଚୟ କିନ୍ତୁ ବାଡ଼ି ବାଇଗଣଟି ହିଁ ନିରାଟ ସତ !"

ଏଣୁ ଅସଂସାରୀଠାରୁ ସଂସାର ବିଷୟ ଢେର ଶୁଣି ସାରିଲା ପରେ ସେ ସଂସାରରେ ଘର କରି ରହିଛି ତା' ଠାରୁ ଶୁଣିବା ଉଚିତ୍ ନୁହେଁ କି ? କାରଣ ସେ ଜଣକ ଆମ ଅନୁଭବକୁ ଆମରି ଭାଷାରେ କହିପାରେ । ସେ ଆମକୁ ବୁଝି ପାରେ,

ଆମେ ବି ତାକୁ ବୁଝିପାରୁ । ଆମେ ଦୁଃଖ, ଆମ ଜ୍ୱାଳା ଯନ୍ତ୍ରଣା, ଆମ ଆଶା ଅଭିଳାଷ ସେ ଠିକ୍ ଠିକ୍ ବିହ୍ଣଟ କରି ପାରେ । କିନ୍ତୁ ସେ ଜଣକ କିଏ ? ସେ କ'ଣ ଆମ ଭିତରୁ ଜଣେ ? ସେ କ'ଣ ଅବିକଳ ଆମରି ଭଳି ? ଆଉ, ଯେଉଁ ଅସଂସାରୀ ମାନଙ୍କ କଥା କୁହାଗଲା ସେମାନେ କ'ଣ ଅନ୍ୟ ପୃଥିବୀର ମଣିଷ ? ସେମାନେ କ'ଣ ଜନ୍ମା ଆମ ଭଳି ନୁହନ୍ତି ?

ଏ ପ୍ରଶ୍ନଗୁଡ଼ିକର କୌଣସି ଉତ୍ତର ଠିକ୍ ନୁହେଁ । କାରଣ ଏଠି 'ହଁ' କହିଲେ ଚଳିବ । 'ନାଁ' କହିଲେ ମଧ୍ୟ ଚଳିବ । କାରଣ ଯେ କୌଣସି ଦୁଇଟି ମଣିଷକୁ ତୁଳନା କରି କହି ହେବ ନାହିଁ ଯେ ଜଣେ ଆଦୌ ଆର ଜଣକ ଭଳି ନୁହେଁ କିମ୍ବା କହି ହେବ ନାହିଁ ଯେ ଏ ଜଣକ ଅବିକଳ ଆର ଜଣକ ଭଳି । କିଛି ମିଶେ କିଛି ମିଶେ ନାହିଁ । କିଛି ଦିଶେ କିଛି ଦିଶେ ନାହିଁ । ଆକାଶରେ ଭାସୁଥିବା ମେଘଖଣ୍ଡ ଯେମିତି ପ୍ରତି ମୁହୂର୍ତ୍ତରେ ବଦଳି ଚାଲିଥାଏ ସେହି ପରି ଆମ ଚାରି ପାଖରେ ପଶୁପକ୍ଷୀ, ମଣିଷ, ଘର ବଜାର, ସହର ବଦଳି ଚାଲିଛନ୍ତି । ଆମେ ନିଜେ ବଦଳି ଚାଲିଛୁ। ଯାହା ଥିଲା, ତାହା ନାହିଁ । ଯାହା ଅଛି ତା' ରହିବ ନାହିଁ । ତେବେ କିଏ ଅଛି ? କାହା ସାଙ୍ଗରେ ଅଛି ? ଅଛି ନା ନାହିଁ ? —ଏ ସବୁ ବଡ଼ ବିଚିତ୍ର ଏବଂ ରହସ୍ୟମୟ । ସଂସାର ପ୍ରକୃତରେ ବିଚିତ୍ର । ସଂସାର ଏକ ଭେଳିକି । ହେଇ ଅଛି ହେଇ ନାହିଁ । ସଂସାର ମିଥ୍ୟା !!— ଏଇ ହେଲା ଅସଂସାରୀ ବୁଝାମଣା। ସେମାନେ ଜ୍ଞାନୀ, ପଣ୍ଡିତ କିନ୍ତୁ ସଂସାରୀ ନୁହନ୍ତି।

ଆମ ପାଇଁ ସଂସାର ସତ୍ୟ । ସୁଖ ଦୁଃଖ ସତ୍ୟ । ସଂପର୍କ ଅସଂପର୍କ ସତ୍ୟ । ଏ ସମସ୍ତଙ୍କୁ ନେଇ ତ ସଂସାର । ଏକାଠି ରହିବା ହିଁ ସଂସାର । ଏକାଠି ରହି ଶିଖିବା ହିଁ ସଭ୍ୟତା । କିନ୍ତୁ ଏକାଠି ରହିବା ଯେତେ ସହଜ ଜଣା ଯାଉଛି ପ୍ରକୃତରେ ତାହା ସେତେ ସହଜ ନୁହେଁ । ଏକାଠି ରହି ପାରିବା ଏକ ସାଧନା । ଅବଶ୍ୟ ଗୋଠରେ ଜନ୍ତୁ ଏକାଠି ରହିଲା ପରି; ବଜାରରେ ଗୋଟାଏ ସମୟରେ ଘଷି ହେଉଥିଲା ପରି ଏହା ନୁହେଁ । ଏହା ପରସ୍ପରକୁ ସ୍ୱୀକାର କରିବା, ଗ୍ରହଣ କରିବା ଏବଂ ନିଜକୁ କିଛି ପରିମାଣରେ ବଞ୍ଚିତ କରିପାରିବାର ଉଦାରତା । ଅପର ସହିତ ସମ୍ପର୍କଟିକୁ ଠିକ୍‌ଭାବେ ବୁଝିଗଲେ ଏକାଠି ରହିବା ସୁଖକର ହୁଏ ଏବଂ ସାଧନାମୟ ହୁଏ ।

ସେ ଅପରଟି ବେଳେ ବେଳେ ବ୍ୟକ୍ତି ହୋଇ ପାରେ, ଏବଂ ଆଉ ବେଳେ ବେଳେ ବସ୍ତୁ । ବନ୍ଧୁ କଲିକତାରୁ ଦର୍ପଣଟିଏ ପଠେଇ ଦେଇଛନ୍ତି । ଭାରି ସୁନ୍ଦରଟିଏ । ତାକୁ କାନ୍ଥରେ ଟଙ୍ଗେଇବାକୁ ହେଲେ, ନିଜର ଫୋଟଟିକୁ ହୁଏତ ବାକ୍‌ସରେ ରଖିବାକୁ

ପଡ଼ି ପାରେ । ତେବେ ବି ତାକୁ ପ୍ରତିଦିନ ପୋଛି, ତାକୁ ଚାହିଁ ରହିଲେ ତା' ସହିତ ଏକ ପ୍ରକାର ମମତା ଭାବ ଆସିଯାଏ । କିନ୍ତୁ ଯେଉଁ ଦିନ ସେ ଫାଟିଯାଏ, ତା'ର ଆଉ କଡ଼ାକର ପ୍ରୟୋଜନ ରହେ ନାହିଁ । ଆମେ ବସ୍ତୁଟିକୁ ବ୍ୟବହାର କରୁ । ସେଥିରେ କେବଳ ଆମର ସୁବିଧା ଅସୁବିଧା ବିଚାରକୁ ନେଇଥାଉ । ପ୍ରୟୋଜନ ହେଲେ କଣ୍ଟାଟିଏ ଖୋଜି ଆଣି କାନ୍ଥରେ ପିଟାଯାଏ କିନ୍ତୁ ସେଠି ଯଦି ଥରେ ଜାମା ଲାଗି ଚିରିଗଲା, ତାକୁ ତତ୍‌କ୍ଷଣାତ୍ ଉପାଡ଼ି ଫିଙ୍ଗି ଦେବାକୁ ଡର ସହେ ନାହିଁ । ବେଳେ ବେଳେ ମଣିଷଗୁଡ଼ିକୁ ମଧ୍ୟ ଆମେ ସେଇ ଭଳି ବ୍ୟବହାର କରିଥାଉ । ଆମ ସକାଶେ ଯେ ଯେତେ ଉପଯୋଗୀ ତାକୁ ସେତିକି ଆପଣାର ବୋଲି ଭାବିଥାଉ । ହଠାତ୍ ଦପ୍ତର ଭିତରକୁ ପଶି ଆସି ଜଣେ କହୁଛନ୍ତି, "ସାର୍, ଆପଣଙ୍କ ସାହାଯ୍ୟ ଭିକ୍ଷା କରୁଛି । ଆପଣଙ୍କ ସୁନାମ ଶୁଣି ଆସିଛି, ଆପଣ କଦାପି ନିରାଶ କରିବେ ନାହିଁ ବୋଲି ମୋର ବିଶ୍ୱାସ । ଆପଣ ଦୟା କରି ଏ ସାର୍ଟିଫିକେଟର ନକଲଟିକୁ ଦସ୍ତଖତ କରି ଦେଇ ପାରିବେ । ଆପଣଙ୍କୁ ଅନେକ ଦିନରୁ ଜାଣିଛି । ଆସିବି ଆସିବି ବୋଲି ଆସି ପାରି ନାହିଁ ।"—ଖୁବ୍ ଆତ୍ମୀୟ ଭାବ । ସେମିତି ମଇତ୍ରପଣର ଭାଷା ଶୁଣି ସେ ଜଣକ ହୁଏତ ଦସ୍ତଖତ କରି ଦିଅନ୍ତି । କାମ ସରିଗଲେ ତାକୁ ଧନ୍ୟବାଦ ନ ଜଣାଇ, ଥରେ ସୁଦ୍ଧା ପଛକୁ ଫେରି ନ ଚାହିଁ ଆଗନ୍ତୁକ ଚାଲି ଯାଆନ୍ତି । ଦୁଆର ପାଖରେ କେହି ଯଦି ପଚାରେ, "ଆଜ୍ଞା ୟା' ଭିତରେ କିଏ ବସନ୍ତି କି ?" ଉତ୍ତରରେ ଆସେ "କେଜାଣି, ମୁଁ ତାକୁ ଚିହ୍ନି ନାହିଁ । ଚିହ୍ନିବାର ପ୍ରୟୋଜନ ନାହିଁ ।" ଏ କ୍ଷେତ୍ରରେ ଦସ୍ତଖତ କରିଥିବା ଲୋକଟି ଏବଂ ତା'ର ସେ ରବର ଷ୍ଟାମ୍ପ ଭିତରେ କୌଣସି ପାର୍ଥକ୍ୟ ରହିଲା ନାହିଁ । ଆଗନ୍ତୁକ ସେ ଉଭୟକୁ ସମାନ ଭାବରେ ବେଖାତିର ବ୍ୟବହାର କରି ଚାଲେ । ବ୍ୟକ୍ତିକୁ ବସ୍ତୁ ଭଳି ଉପଯୋଗ କରିନେଲେ । ଖୁବ୍ ବିରକ୍ତିକର କଥା ନିଶ୍ଚୟ । କିନ୍ତୁ ଯଦି କୁହାଯାଏ ଯେ ଆମେ ଆମ ବନ୍ଧୁ ପରିଜନଙ୍କୁ ଏପରିକି ବାପ ମା' ଭାଇ ଭଉଣୀ ସମସ୍ତଙ୍କୁ କିଛି ପରିମାଣରେ ଏଇଭଳି ବ୍ୟବହାର କରୁ, ଏଇଭଳି ସେମାନଙ୍କୁ ନୁହେଁ ସେମାନଙ୍କ ଉପଯୋଗିତାକୁ ମୂଲ୍ୟ ଦେଉ । ଶୁଣିବାକୁ ଭାରି ଖରାପ ଲାଗିବ । କିନ୍ତୁ ଯେତେ ବିସ୍ମୟକର ଏବଂ ଅପ୍ରୀତିକର ହେଲେ ସୁଦ୍ଧା ଏହା ଏକ ନିଷ୍ଠୁର ସତ୍ୟ । ମଣିଷର ସର୍ବପ୍ରଥମ ଏବଂ ମୌଳିକ ପ୍ରବୃତ୍ତି ହେଲା, ସେ କିପରି ନିଜେ ବଞ୍ଚିବ ତାକୁ ସେଥିରେ ଯେ ସହାୟକ ହେଲା ସେ ମିତ୍ର ଓ ଯେ ନ ହେଲା ସେ ଶତ୍ରୁ । ସେଥି ପାଇଁ ହୁଏତ ଉପାର୍ଜନ କରିବାକୁ ଅସମର୍ଥ ବୁଢ଼ା ବାପା ବା ସ୍ୱାମୀକୁ ଅସମ୍ମାନିତ କରାଯାଏ । ଅନ୍ଧୁଣୀ ବୁଢ଼ୀ ମା'ଟିର ଉପଯୋଗିତା ନାହିଁ ବୋଲି ତାକୁ ଫିଙ୍ଗା ଫୋପଡ଼ା ସହିବାକୁ ପଡ଼େ ।

ଏମିତି କାହିଁକି ହୁଏ ? ଯଦି ଏହା ହିଁ ମଣିଷର ଅସଲ ଚିତ୍ର ତେବେ ତ ସେ କୌଣସି ଜନ୍ତୁଠାରୁ ଭିନ୍ନ ନୁହେଁ । କିନ୍ତୁ ସେମିତି କହିବା କ'ଣ ଠିକ୍ ହେବ ? ଯୁଦ୍ଧ ପଡ଼ିଆରେ ଦୁଇ ଜଣ ଆହତ ହୋଇ ପଡ଼ିଛନ୍ତି । ଜଣେ ସେନାପତି, ଆଉ ଜଣକ ସାଧାରଣ ସିପାହୀ । ଉଭୟଙ୍କୁ ଶୋଷ ହେଉଛି । ଏତିକି ବେଳେ ଅନେକ ଚେଷ୍ଟାରେ ମିଳିଥିବା କିଛି ପାଣି ନେଇ ସମସ୍ତେ ସେନାପତିଙ୍କ ସେବାରେ ଅର୍ପଣ କରୁଛନ୍ତି । ସିପାହୀଟି କିଛି ଦୂରରୁ ଚାହିଁ ରହିଛି ନୀରବରେ । ତା' ଆଡ଼କୁ କାହାର ଦୃଷ୍ଟି ନାହିଁ । ସେନାପତି ସିପାହୀଟିର ଚାହାଣୀରୁ ସବୁ ବୁଝି ଯାଉଛନ୍ତି ଏବଂ କହୁଛନ୍ତି "ଏ ପାଣିତକ ତମେ ପିଅ । ମୋ ଅପେକ୍ଷା ତୁମର ପ୍ରୟୋଜନ ଅଧିକ ।"—ଏହା ତ କୌଣସି ସ୍ୱାର୍ଥପର ଜନ୍ତୁ କରି ପାରିବ ନାହିଁ । ମଣିଷ ହିଁ ଏମିତି କରିପାରେ । ଯେତେବେଳେ ଅସୁରମାନଙ୍କ ପ୍ରବଳ ବ୍ୟାଘାତ ହେଲା ଦେବତାମାନେ ଖୋଜି ବୁଲିଲେ ତା'ର ପ୍ରତିକାର । ଶେଷରେ ଦଧିଚି ନିଜର ଅସ୍ଥିଦାନ କଲେ, ସେଇ ଅମୋଘ ବଜ୍ରରେ ଅସୁରବଳ ଧ୍ୱଂସ ହେଲା । ଏଥିରେ ଦଧିଚିଙ୍କର ସ୍ୱାର୍ଥ କ'ଣ ? ସେ ବରଂ ଚାହିଁଲେ ଜଗତର ସାମୂହିକ କଲ୍ୟାଣ ହେଉ । ସେଥିଲାଗି ବିନା ଦ୍ୱିଧାରେ ସେ ଆତ୍ମବଳି ଦେଇ ଦେଲେ । ସବୁବେଳେ ଅସୁରଶକ୍ତିର ବିନାଶ ପାଇଁ ମଣିଷ ହାଡ଼ରେ ହିଁ ବଜ୍ର ତିଆରି ହୁଏ । ଆକାଶରେ ସେଭଳି ମହାନ ଆୟୁଧ ନାହିଁ । ମଣିଷ ହିଁ ତା'ଭିତରେ ଥିବା ସ୍ୱାର୍ଥପର ଜନ୍ତୁଟିକୁ ଅତିକ୍ରମ କରିଯାଇ ପାରେ । ଭଲ ମଣିଷ, ବଡ଼ ମଣିଷ ବାରମ୍ବାର ଆସି ପ୍ରମାଣ କରି ଦେଉଛନ୍ତି ଯେ ଆମ ଭିତରେ ଏକ ଦିବ୍ୟ ସମ୍ଭାବନା ଲୁଚି ରହିଛି । ତାକୁ ଜାଗ୍ରତ କରି ପାରିଲେ ପଶୁତ୍ୱରୁ ମୁକ୍ତି ମିଳିଯିବ ।

କିନ୍ତୁ ତଳ ମାଳି ସାହିରେ ଯେ ଘର କରି ରହିଛି, ସେ ଏଇ ବଡ଼ ଲୋକଙ୍କ କଥା ଶୁଣେ, ବୁଝେ, ମାତ୍ର ଗୁରୁତ୍ୱ ଦିଏ ନାହିଁ। ସମସ୍ୟା ଅନ୍ୟ ପ୍ରକାର। ବାପ ତିଆରି କରିଥିବା ପୁରୁଣା ନଡ଼ା ଛାତ ତଳେ ତାକୁ ମିଶାଇ ତିନି ପୁରୁଷ ଏକାଠି ରହନ୍ତି । ବର୍ଷା ଦିନେ ଛାତରୁ ପାଣି ଗଳେ। ଶୀତ ଦିନେ ଘୋଡ଼ାଇ ହେବାକୁ ଲୁଗା ଅଣ୍ଟେ ନାହିଁ, ସବୁ ଦିନେ ସମସ୍ତଙ୍କ ପାଇଁ ଖାଇବା ଅଣ୍ଟେ ନାହିଁ। ସେମାନେ ପରସ୍ପର ପାଇଁ ଦୁଃଖ ସହନ୍ତି। ପଡ଼ିଶା ଘର ସହିତ ପ୍ରତି ଦିନ କଳି ଲାଗେ। ଉଭୟ ପକ୍ଷ ହାଲିଆ ହୁଅନ୍ତି। ସାହିବାଲାଙ୍କ ମେଳା ମଉଛବ, ଚାନ୍ଦାମାଗଣ ବର୍ଷସାରା ଲାଗିଥାଏ। ମଝିରେ ମଝିରେ ଭୋଟ ପାଇଁ ଲୋକେ ଆସନ୍ତି, ସାହି ଲୋକେ ଦୁଇଭାଗ ହୋଇଯାନ୍ତି। ପିଟାମରା ମୁଣ୍ଡ ଫଟାଫଟି ହୁଏ। ଘର ଭିତରକୁ ରୋଗ ଆସେ, ବାର୍ଦ୍ଧକ୍ୟ ଆସେ, ମୃତ୍ୟୁ ଆସେ। ଏ ସମସ୍ତ ସହିତ ସେ ସଂଗ୍ରାମ କରୁଥାଏ, ଦିନ ରାତି ଜୀବନ ସାରା।

ସଂଗ୍ରାମ ହୁଏ କାରଣ ମେଳ ହୁଏ ନାହିଁ । ସଂସାରକୁ ସେ ଯେମିତି ବୁଝିଥାଏ, ଯେମିତି ବଂଚିବାକୁ ଚାହୁଁଥାଏ, ସେମିତି ଆଉ କେହି ମିଳନ୍ତି ନାହିଁ । ସେ କିନ୍ତୁ ଆଶା

କରୁଥାଏ ଯେ ଯେଉଁମାନଙ୍କୁ ଆପଣାର ବୋଲି ସେ ମାନି ନେଇଛି– ବାପ, ମା, ଭାଇ, ସ୍ତ୍ରୀ ପୁଅ ଝିଅ– ଏମାନେ ଅନ୍ତତଃ ତା' ମନ କଥା ବୁଝୁଥିବେ । ଟିକିଏ ଲକ୍ଷ୍ୟ କଲା ପରେ ସେ ଜାଣିଯାଏ ଯେ ଏ ସମସ୍ତଙ୍କ ପୃଥିବୀ ମଧ୍ୟ ଅଲଗା ଅଲଗା । ବୁଢ଼ା ବାପା କହୁଥାଏ "ଆଉ ସେ କାଳ କଥା କାହିଁ ? ସେତେବେଳେ ଏଡ଼େ ମହରଗ ନ ଥିଲା, ଏତେ ଖଚ ମିଛ ନ ଥିଲା । ଆମ ସମୟରେ ଋତୁମାନେ ନିୟମରେ ଚାଲୁଥିଲେ । ସାତ ଦିନିଆ ପନ୍ଦର ଦିନିଆ ଝଡ଼ି ଲାଗୁଥିଲା ଯେ ସୂର୍ଯ୍ୟ ଦିଶୁ ନ ଥିଲେ । ଶୀତ ପଡୁଥିଲା କାହିଁରେ କ'ଣ ! ଖରା ଦିନେ ଦିପହରଟା ଜଳୁଥିଲା ଦୀପ ପରି । ଚାହିଁ ହଉ ନ ଥିଲା ଖରାକୁ । ସେ କାଳର ସାଗ ପଖାଳର ସୁଆଦ ଏବେ କାହିଁ ? ସେ କାଳର ଫୁଲର ବାସ୍ନା ଏବେ କାହିଁ ? ସେ କାଳର ମଣିଷ ଭଲ, ପଶୁ ପକ୍ଷୀ, ପୃଥିବୀ ସବୁ ଭଲ ।"....... ବାପ କଥା ଶୁଣି ସେ ଖୁସି ହୁଏ, ସତେ ଏଡ଼େ ସୁନ୍ଦର ପୃଥିବୀଟିଏ ଥିଲା କେବେ ! କିନ୍ତୁ ଏଇମାତ୍ର କୋଡ଼ିଏ ତିରିଶି ବର୍ଷ ଭିତରେ ଏମିତି କ'ଣ ହୋଇଗଲା ? କାହିଁକି ଏମିତି ହୋଇଗଲା ? ଏଠି କ'ଣ ମଣିଷ ପୁଣି ଯାକୁ ସଜାଡ଼ି ପାରିବ ନାହିଁ ? ପରସ୍ପରକୁ ବୁଝି ପାରିବ ନାହିଁ ?–ଏମିତି ଚାଉଳରେ ଗୋଡ଼ି ମିଶୁ ଥିବ, ଚିନିରେ କାଚଗୁଣ୍ଡ ମିଶୁଥିବ, ଔଷଧ ଖାଇ ପ୍ରାଣ ଯାଉଥିବ ? ରାସ୍ତାରେ ଚାଲିଗଲା ମଣିଷକୁ ଗୁଳି କରା ହେଉଥିବ, ମାଇପିଟାକୁ ଧର୍ଷଣ କରା ହେଉଥିବ ? ଯାକୁ ନ ସଜାଡ଼ିଲେ ଏଠି ବଞ୍ଚି ହେବ ନାହିଁ । ଅନ୍ତତଃ ମଣିଷ ଭଳି ବଂଚି ହେବ ନାହିଁ । ଠିକ୍– କିଏ ସଜାଡ଼ିବ ? କେମିତି ସଜାଡ଼ିବ ?— ସେ ଯାହା ସୁନ୍ଦର, ଶ୍ଳାଘ୍ୟ ବୋଲି ଭାବୁଛି, ତା' କ'ଣ ସମସ୍ତଙ୍କର ରୁଚି ଅନୁକୂଳ ହେବ କି ?...... ସେ ହୁଏତ ନିଜ ରୁଚିରେ, ନିଜ ସ୍ୱପ୍ନକୁ ଏ ପୃଥିବୀରେ ରୂପାୟିତ ହେବାକୁ ଚାହୁଁଛି । ସେଇଟା ତା'ର ବ୍ୟକ୍ତିଗତ ସ୍ୱପ୍ନ । ତାକୁ ଆଉ ଜଣେ କାହିଁକି ଗ୍ରହଣ କରିବ । ସତକୁ ସତ ଦିନକ ପାଇଁ କଲେ, ପଢୁଆ ପୁଅ କହେ "ଦେଖ ବାପା, ତମେ ସେଇ ଜେଜେଙ୍କ ଭଳି ପୁରୁଣାକାଳିଆ ହୋଇ ଗଲଣି ! ଏ ପୃଥିବୀଟା ଖରାପ ବୋଲି କିଏ କହିଲା ? ସବୁ ତ ବେଶ୍ ଚାଲିଛି । ଆମେ ବଢ଼ିଆ ଜିନିଷ ଚାହିଁଲେ ଖାଇ ପାରୁଛୁ, ପିନ୍ଧି ପାରୁଛୁ । ନାନା ଉପାୟରେ ଅର୍ଥ ଉପାର୍ଜନ କରି ପାରୁଛୁ । ସତ ମିଛ, ନ୍ୟାୟ ଅନ୍ୟାୟ ବିଚାର, ବେଳେ ବେଳେ ସମସ୍ତଙ୍କ ପାଇଁ ଏକା ନୁହେଁ । ଆମେ ଏ ପୃଥିବୀକୁ ଗ୍ରହଣ କରିଛୁ । ପୃଥିବୀ ଆମକୁ ଗ୍ରହଣ କରୁଛି, ତମେ ଘୁଞ୍ଚି ଯାଇଛ । ସେଥିରେ ପୃଥିବୀର ବା ସଂସାରର ଦୋଷ କଣ ?" ଆଶ୍ଚର୍ଯ୍ୟ, ଏ ସବୁ କାଲିକା ପିଲା । ଏମାନେ ପୁଣି ମୁହଁ ଫିଟାଇ ଏତେ କଥା କହିଲେଣି ? ସେ ବିସ୍ମିତ ହୋଇ ଅନାଏ ଅତୀତକୁ, ଅନାଏ ଭବିଷ୍ୟତକୁ । କାହାକୁ ବୁଝିପାରେ ନାହିଁ। ଲହଡ଼ିକୁ ମୁଣ୍ଡ ପାତି ସ୍ୱୀକାର କରିନିଏ।

ଯାହା ହେବାର ହେବ । ମୋ ଭଳି ସାଧାରଣ ମଣିଷଟିଏ ସଂସାରରେ ଘର କରି କିଛି ଦିନ ରହିଯିବା କଥା– ମୋ' ହାତରେ ଆଉ କ'ଣ ହୋଇ ପାରିବ । ମୁଁ ତ ପେଟରୁ ଜନ୍ମ କରିଥିବା ପୁଅକୁ ବୁଝିଲି ନାହିଁ । ପୁଅ ବାପାକୁ ବୁଝିଲା ନାହିଁ, ଆଉ ଏ ଜଟିଳ ସଂସାରକୁ କ'ଣ ବୁଝିବି, ଏ ପ୍ରବଳ ଲହଡ଼ିର ମୁକାବିଲା କ'ଣ କରିବି ?

କଥା ସତ, ଆଉ ଜଣକୁ ବୁଝିବା କେତେ କଷ୍ଟକର ଏଇ ଦୃଷ୍ଟାନ୍ତରୁ ବୁଝା ପଡ଼ିବ । ଥରେ ସଞ୍ଜବେଳେ ଗୋଟିଏ ସମ୍ଭ୍ରାନ୍ତ ପରିବାରର ସମସ୍ତେ ଏକାଠି ବସି ରାତ୍ରିଭୋଜନ କଲେ । ହସ ଖୁସି କଥାବାର୍ତ୍ତା ଖୁବ୍ ସ୍ୱାଭାବିକ ଢଙ୍ଗରେ ହେଲା । ବଡ଼ ଝିଅ, ପୁଅ ଏବଂ ବାପା ମା' ଅନେକ ସମୟ ଏମିତି କଟେଇଲା ପରେ ରାତି ହୋଇ ଗଲା । ସମସ୍ତେ ଶୋଇବାକୁ ଗଲେ । ବଡ଼ ଝିଅଟିକୁ ତା' ସ୍ୱତନ୍ତ୍ର ବଖରାରେ ମା' ନେଇ ଛାଡ଼ି ଆସିଲେ । କିଛି ସମୟ ପର୍ଯ୍ୟନ୍ତ ପାଖ ବଖରାରେ ତାଙ୍କୁ ନିଦ ନ ହେବାରୁ ସେ ଗଡ଼ପଡ଼ ହେଉ ଥାନ୍ତି । ସ୍ୱାମୀ ଶୋଇ ଯାଇଥାନ୍ତି । ତାଙ୍କୁ ହଠାତ୍ ଲାଗିଲା ଯେ, ତାଙ୍କ ଝିଅ ଶୋଇଥିବା ବଖରାରେ କେହି ଜଣେ ଚୁପ୍ ଚୁପ୍ କଥା କହୁଛି । ସେ ନିଃଶ୍ୱାସ ରୋଧି କାନେଇଲେ । ତାଙ୍କର ଆଉ ସନ୍ଦେହ ରହିଲା ନାହିଁ । ନିଶ୍ଚୟ କେହି ଜଣେ କ'ଣ କହୁଥିଲା । ତାଙ୍କ ବୁକୁ ଧଡ଼ ଧଡ଼ କରୁଥାଏ । ସେ ଅନେକ କଥା ଚିନ୍ତା କରି ଯାଉଥାନ୍ତି । ତାଙ୍କ ଝିଅ ପୁଣି ତାଙ୍କୁ ଲୁଚାଇ ଏମିତି କାହା ସହିତ ଗୁପ୍ତପ୍ରଣୟ କରି ପାରେ ? କିଏ ସେ ଦୁରାଚାରୀ ? ତା'ର କେଡ଼େ ସାହସ, ଘର ଭିତରେ ପଶିବାକୁ– କିନ୍ତୁ ଝିଅ ଯଦି ପ୍ରଶ୍ରୟ ଦେଲା ତା'ର ବା ଦୋଷ କ'ଣ ? ସେ କ'ଣ ସ୍ୱାମୀଙ୍କୁ ନିଦରୁ ଉଠାଇ ଆର ବଖରାକୁ ନେବେ ? ନା' ତା' କେମିତି ହେବ ? ଯେତେ ହେଲେ ସ୍ତ୍ରୀ ଲୋକର ଇଜ୍ଜତ୍ କଥା, ସେ ବାପା ହେଲେ କ'ଣ ହେଲା ? ସେ ଜାଣିବା ଉଚିତ ନୁହେଁ । ...ଏପରି ସହସ୍ର ଦୁଶ୍ଚିନ୍ତାରେ ବିବ୍ରତ ହୋଇ ସେ ଝାଳେଇ ଗଲେ । ଖୁବ୍ ସାହସ ସଞ୍ଚୟ କରି ଯାଇ ଆର ବଖରାର କବାଟରେ କାନ ଲଗେଇ ଶୁଣିଲେ । ତାଙ୍କ ସନ୍ଦେହ ଦୃଢ଼ୀଭୂତ ହୋଇଗଲା । ତାଙ୍କ ଝିଅ ଚୁପ୍ ଚୁପ୍ କ'ଣ ସବୁ କହି ଚାଲିଛି । ସେ କ୍ରୋଧରେ, ଲଜ୍ଜାରେ ଅବଶୋଷରେ କମ୍ପୁଥିଲା ବେଳେ କବାଟଟାକୁ ପେଲିଦେଲେ । କବାଟ ଖୋଲା ଥିଲା । ଭିତରେ ଭୁସ୍‌କିନା ପଶିଯାଇ ଯାହା ଦେଖିଲେ, ସେଥିରେ ତାଙ୍କର ଆଉ ଗୋଡ଼ ଚଳିଲା ନାହିଁ । ପାଟି ଫିଟିଲା ନାହିଁ । ମୁଣ୍ଡ ଆସ୍ତେ ଆସ୍ତେ ତଳକୁ ନଇଁ ଗଲା । ତାଙ୍କ ଝିଅଟି ଶୋଇବା ପୂର୍ବରୁ ତଳେ ନତଜାନୁ ହୋଇ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲା । ଜନ୍ମ ଦେଇଥିବା ଝିଅକୁ କୋଡ଼ିଏ ବର୍ଷ ପାଖରେ ରଖି ପାଳନ କଲା ପରେ ଯଦି ମା' ତାକୁ ବୁଝି ପାରେ ନାହିଁ ଏବଂ ତା' ଉପରେ ବିଶ୍ୱାସ ରଖିପାରେ ନାହିଁ, ଆଉ କିଏ ଭଲା ଅପର କାହାକୁ ବୁଝି ପାରିବ ଏବଂ ବିଶ୍ୱାସ କରି ପାରିବ ?

ତେବେ ବି ଚେଷ୍ଟା ଚାଲିଥାଏ, କାରଣ ଏକାଠି ତ' ରହିବାକୁ ପଡ଼ିବ । ନ ବୁଝିଲେ ସଂପର୍କ ସ୍ଥିର ହେବ କିପରି, ଏବଂ ସମ୍ପର୍କ ସ୍ଥିର ନ ହେଲେ ଆଚରଣ ବ୍ୟବହାର ଆଦି କେମିତି ସ୍ଥିର ହୋଇ ପାରିବ ? କିନ୍ତୁ ଘନିଷ୍ଠତମ ବ୍ୟକ୍ତିଟିକୁ ସୁଦ୍ଧା ସମ୍ପୂର୍ଣ୍ଣ ବୁଝିବା ସମ୍ଭବ ନୁହେଁ । କାରଣ ତା' ସହିତ ମିଳିମିଶି କଥାବାର୍ତ୍ତା କରି ଆମେ ତା' ବିଷୟରେ ଯାହା ଜାଣୁ ତା' କେବଳ ଶହେ ଭାଗରୁ ଭାଗେ । ଆଉ ଅନେଶତ ଭାଗ ଅଜ୍ଞାତ ରହିଯାଏ, ଏଇ ମାତ୍ର ଭାଗେ ସମ୍ବଳ କରି ଆମେ ତା' ବିଷୟରେ ଗୋଟିଏ ଧାରଣା କରି ନେଉ, ଏବଂ ସେଇ ଭାବମୂର୍ତ୍ତିଟିକୁ ସମ୍ପୂର୍ଣ୍ଣ ବ୍ୟକ୍ତି ଭାବି ତା ସହିତ ବ୍ୟବହାର କରୁ । କୃଷ୍ଣ ଏବଂ ଅର୍ଜ୍ଜୁନଙ୍କ ସମ୍ପର୍କ କେତେ ଗଭୀର ଏବଂ କେତେ ଜନ୍ମଜନ୍ମାନ୍ତରର ସମ୍ପର୍କ, ଅଥଚ ବିଶ୍ୱରୂପ ଦେଖିଦେଲାପରେ ବିଚରା ଅର୍ଜ୍ଜୁନ ବିହ୍ୱଳ ହୋଇ ପଚାରୁଛନ୍ତି, "ତୁମେ, କିଏ ? ତୁମର ଅଭିପ୍ରାୟ କ'ଣ ? ମୁଁ ତୁମକୁ ଅଜ୍ଞାନରେ, ସଖା ବୋଲି ଡାକିଛି । ତୁମ ସହିତ ଏକାଠି ଖାଇଛି, ଶୋଇଛି । ତୁମକୁ ମୁଁ ତ' ଜାଣିନଥିଲି, ମୋତେ କ୍ଷମା କର !" ଆମେ ଯାହାକୁ ଖୁବ୍ ଅନ୍ତରଙ୍ଗ ବୋଲି ଜାଣିଥାଉ ପରିସ୍ଥିତି ପଡ଼ିଗଲେ ସେ ମଧ୍ୟ ଏମିତି ବିଶ୍ୱରୂପ ଦେଖାଇ ଦେଇ ପାରେ । ସେତେବେଳେ ଆମ ଅବସ୍ଥା ସେଇ ଅର୍ଜ୍ଜୁନର ଅବସ୍ଥା ଭଳି । ବିଭିନ୍ନ ଲେଖକଙ୍କ ବିଷୟରେ ଥରେ ଗୋଟିଏ କାର୍ଟୁନ ଧାରାବାହିକ ବାହାରୁ ଥିଲା । "ସାର୍ଲୋ'ଙ୍କ ଆଖିରେ" ଏଇ ଶିରୋନାମାରେ କଳାକର ଯେ କୌଣସି ଅପରିଚିତ ଲେଖକର ବହି ପଢ଼ିବା ପରେ ତାଙ୍କ ମନରେ ଗଢ଼ି ଉଠିଥିବା ଭାବମୂର୍ତ୍ତିଟିକୁ ଆଙ୍କି ଦେଉଥିଲେ । ଲେଖା ମାଧ୍ୟମରେ ଲେଖକଟି ତାଙ୍କୁ ସେଇଭଳି ଦିଶୁଥିଲେ । ମଜା କଥା ହେଲା ଯେ ସେଇ କାର୍ଟୁନ ଚିତ୍ର ପାଖରେ ଲେଖକଙ୍କର ଫଟୋଚିତ୍ରଟିକୁ ମଧ୍ୟ ଛାପିଦେଉ ଥିଲେ । ପ୍ରକୃତ ମଣିଷଟି ତା' ବିଷୟରେ ଆମର ଧାରଣାଠାରୁ କେତେ ଭିନ୍ନ ସେଥିରୁ ପରିଷ୍କାର ଜଣା ପଡ଼ି ଯାଉଥିଲା ।

ଥରେ ଏଇ ଲେଖକର ସେଇଭଳି ଏକ ଅନୁଭବ ହୋଇଥିଲା । କୌଣସି ଏକ ପ୍ରେକ୍ଷାଳୟରେ ସାହିତ୍ୟ ଚର୍ଚ୍ଚା ଚାଲିଥାଏ । ଆଗ ଧାଡ଼ିରେ ସେ ବସିଥାଏ ଏବଂ ବାଁ ପାଖେ ଜଣେ ଅପରିଚିତ ଭଦ୍ର ଲୋକ ବସିଥାନ୍ତି । କିନ୍ତୁ ତାଙ୍କ ପାଖକୁ ଯେ ବସିଥାନ୍ତି ସେ ଏଇ ଲେଖକର ବେଶ୍ ପରିଚିତ ବନ୍ଧୁ । ମଝିରେ ଏ ଭଦ୍ରଲୋକଙ୍କୁ ରଖି ସେ ଦୁହିଁଙ୍କର କଥାବାର୍ତ୍ତା ଚାଲିଥାଏ । ପ୍ରସଙ୍ଗକ୍ରମେ ବନ୍ଧୁଟି ଏ ଲେଖକର ନାମୋଚ୍ଚାରଣ କଲେ । ଦେଖାଗଲା ଯେ ସଭାରେ ଆଚରଣଗତ ସୌଜନ୍ୟକୁ ସମ୍ପୂର୍ଣ୍ଣ ଭୁଲିଯାଇ ସେ ଅପରିଚିତ ଭଦ୍ରଲୋକ ଠିଆ ହୋଇପଡ଼ି ଖୁବ୍ ଆବେଗ ଉତ୍ସାହରେ ଏ ଲେଖକଟିର କାନ୍ଧ ଧରି ଝୁଙ୍କି ଲାଗିଲେ । କହିଲେ "ଆପଣ 'ଯନ୍ତାରୂଢ଼'ର ଲେଖକ ? କି ଆଶ୍ଚର୍ଯ୍ୟ !

ମୁଁ ଭାବିଥିଲି ଆପଣ ଖୁବ୍ ଲମ୍ବା । ତମ୍ବାତାର ବର୍ଣ୍ଣର ଅତି ସାତ୍ତ୍ୱିକ, ଶୋଭନ ଆକୃତି ମଣିଷ ହୋଇ ଥିବେ । ଏମିତି ଗୋଟାଏ ପହିଲମାନିଆ ଚେହେରା ତ' କଦାପି କଳ୍ପନା କରି ନ ଥିଲି । ଆପଣ ସତେ ଏତେ ମୋଟା, ଏବଂ କାଳିଆ ମଣିଷ ।" ସେ ହସି ହସି ଲୋଟି ପଡୁଥାନ୍ତି । ସେ କିଏ ବୋଲି ପଚାରି ବୁଝିବାରୁ ଏ ଲେଖକର ମଧ୍ୟ ତଦ୍ରୂପ ଅବସ୍ଥା ହୋଇଥିଲା । ଯାହାକୁ ସେ ଅପରିଚିତ ଭାବିଥିଲା, ସେ ପ୍ରକୃତରେ ଜଣେ ଅତି ବିଖ୍ୟାତ କବି, ତା'ର ଖୁବ୍ ପ୍ରିୟ କବି । କବିତା ପଢ଼ି ସେ ଭାବିଥିଲା କବି ନିଶ୍ଚୟ ଶାଣିତ ବର୍ଚ୍ଛା ପରି ଝଲମଲ କରୁଥିବେ । ବାଙ୍ଗୁରା ଦାନ୍ତୁରା ହସକୁରା ମଣିଷଟିକୁ ଦେଖି ସେ ବି ହସି ହସି ବେଦମ୍ ହୋଇ ଯାଇଥିଲା ।

ନ ଦେଖିଥିବା ବ୍ୟକ୍ତିଟିକୁ ତ' ଆମେ କଳ୍ପନା କରିବାକୁ ବାଧ୍ୟ । ଦେଖିଥିବା ମଣିଷଟିକୁ ମଧ୍ୟ କଳ୍ପନା କରିବା ଏକ ପ୍ରକାର ଅନିବାର୍ଯ୍ୟ । ଦୃଶ୍ୟ ଅଦୃଶ୍ୟ, ବ୍ୟକ୍ତି ବସ୍ତୁ, ପରିସ୍ଥିତି–ଏ ସମସ୍ତର ଗୋଟାଏ ଲେଖା ମାନସିକ ସଂସ୍କରଣକୁ ନେଇ ଆମେ ପ୍ରତ୍ୟେକେ ଗୋଟିଏ ପୃଥିବୀ ଗଢ଼ି ଦେଉ ଏବଂ ସେଇଠି ବଞ୍ଚି ରହୁ । ତାହାରି ଭିତରେ ରାମଚନ୍ଦ୍ର, ରାମକୃଷ୍ଣ, ବୁଦ୍ଧ, ଯୀଶୁ ସମସ୍ତେ ଥାଆନ୍ତି । ଦେଖିଥିବା ଜଗତର ରୂପଗୁଣ ଗୋଟେଇ ଆଣି ଗୋଟିଏଲେଖା କଳ୍ପିତରୂପ ଗଢୁ ଏବଂ ତାକୁ ନେଇ ସନ୍ତୁଷ୍ଟ ରହୁ । ଆମେ ଆମ ପଡ଼ୋଶୀ ବିଷୟରେ ଯାହା ଭାବୁ, ସେ ପ୍ରକୃତରେ ତାହା ନୁହେଁ । ସେ ଆମ ବିଷୟରେ ଯାହା ଭାବନ୍ତି, ଆମେ ବି ତାହା ନୋହୁଁ । ସେଥିପାଇଁ କୁହାଯାଏ ଯେ ସବୁ ଯୁଦ୍ଧ ମଣିଷ ମନରୁ ଆରମ୍ଭ ହୁଏ, ଶତ୍ରୁ ସେଇଠି ସୃଷ୍ଟି ହୁଏ, କଳ୍ପନାରେ ଅତିରଞ୍ଜିତ ହୁଏ ଏବଂ ସେହି ଧାରଣାର ବଶବର୍ତ୍ତୀ ହୋଇ ସତକୁ ସତ ମଣିଷ ତା' ପ୍ରତିବେଶୀ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରେ । ରାତି ଅଧରେ ପଡ଼ିଶା ଘରେ ଖଡ଼୍‌ଖାଡ଼୍ ଶୁଣିଲେ ଆମେ ତତ୍‌କ୍ଷଣାତ୍ ଆଶଙ୍କା କରୁ ଯେ ସେ ହୁଏତ ଅସ୍ତ୍ରଶସ୍ତ୍ର ଧରି ବାଡ଼ି ପଟୁ ଆମ ଘରେ ପଶିବାକୁ ଉଦ୍ୟମ କରୁଛି । କିନ୍ତୁ ପ୍ରକୃତରେ ଅସମୟରେ ଗୁଡ଼ିଏ କୁଣିଆ ପହଞ୍ଚିବାରୁ ଖିଆପିଆ ପାଇଁ ସେ ବିଚରା ଆୟୋଜନ କରୁଛି । ଆମ କଥା ତା'ର ମନେ ଙ୍କାନେ ନାହିଁ । ଆମେ ବରଂ ତାକୁ ସେ ଅବସ୍ଥାରେ କିଛି ସାହାଯ୍ୟ କରିବା ଉଚିତ । କିନ୍ତୁ ତା' ହୁଏ ନାହିଁ । ରାତି ସାରା ଆମ ମନ ଭିତରର ଭୂତ ନାନା ଭୟାବହ ଚିତ୍ର ଦେଖାଉଥାଏ ଏବଂ ଆମେ ରାତି ସାରା ଘୋର ଉଦ୍‌ବେଗରେ ଜାଗିରହୁ । ଆମେ ବ୍ୟକ୍ତି ଭାବରେ ଯେଉଁ ଭୁଲ୍ କରୁ, ଆମ ସମାଜ ମଧ୍ୟ ସେୟା କରେ, ଏପରିକି ଗୋଟିଏ ରାଷ୍ଟ୍ର ମଧ୍ୟ ଅନ୍ୟ ରାଷ୍ଟ୍ରକୁ ସେହିପରି ଭୁଲ୍ ବୁଝୁଥିବାରୁ ପୃଥିବୀରେ ଏତେ ଯୁଦ୍ଧ ହୁଏ ଏବଂ ଅନନ୍ତକାଳ ପାଇଁ ଯୁଦ୍ଧର ସମ୍ଭାବନା ଲାଗି ରହିଥାଏ ।

ଯଦି ଅପରକୁ ବୁଝିବା ଏପରି ଦୁଃସାଧ୍ୟ, କେମିତି ଆମେ ଏକାଠି ବଞ୍ଚିବା ଏ ସଂସାରରେ ? ସେଇ ମାତ୍ର ପରସ୍ପର ବିଷୟରେ ଆପେକ୍ଷିକ ଧାରଣା ନେଇ ବଞ୍ଚିବା ବ୍ୟତିରେକ ଅନ୍ୟ ଉପାୟ ନାହିଁ । ଏଇ ଅବୁଝାମଣାରୁ ଦୁଇ ପ୍ରକାର ଆଚରଣ ଦେଖାଦେଇ ଥାଏ । ଉଭୟଟି ମୌଳିକ ଜୀବଧର୍ମ ଉପରେ ଆଧାରିତ । ଗୋଟିଏ ହେଲା ବଞ୍ଚିବାର ଆଦିମତମ ପ୍ରବୃତ୍ତି । ଜୀବଟିଏ ଅନ୍ୟ ଜୀବକୁ ନ ଖାଇ ବଞ୍ଚି ପାରିବ ନାହିଁ । ପକ୍ଷୀ ପୋକ ଖାଏ । ମଣିଷ ଶସ୍ୟ ଖାଏ, ମାଂସ ଖାଏ । ଗଛ ମଧ୍ୟ ଜୈବିକ ସାର ଶୋଷେ । ଏ ପ୍ରବୃତ୍ତିର ଲକ୍ଷଣ ହେଲା ନିଜେ ବଞ୍ଚିବା ସକାଶେ ଜଗତକୁ ସଂହାର କରିଦିଆଯାଇପାରେ । ଏଥିରେ ପଶୁବଳ ପ୍ରୟୋଗ କରାଯାଏ । ନିଜର ରୁଚିକୁ ଅନ୍ୟ ଉପରେ ମଢ଼େଇ ଦିଆଯାଏ, ଧରାଯାଉ ଏବେ ଯେମିତି ବନ୍ଧୁକ ଦେଖାଇ ଉଡ଼ାଜାହାଜ ହରଣଚାଳ ହେଉଛି । ସମଗ୍ର ଦେଶକୁ ଏପରିକି ମାନବ ଜାତିକୁ ଗୁଡ଼ିଏ ଦୁର୍ଦ୍ଦାନ୍ତ ବ୍ୟକ୍ତି ଏମିତି ବଳାତ୍କାର ଘୋଷାରି ନେଇ ଯାଉଛନ୍ତି । ଉଚିତ ଅନୁଚିତ ବିଚାର ତାଙ୍କର ନାହିଁ । ଆଉ କିଏ କ'ଣ ଭାବୁଥିବ ଏ ବିଚାର ମଧ୍ୟ ନାହିଁ । ସେ ଯାହା ଚାହିଁବ ତାହା ହିଁ ହେବ । ଜଣେ ତୈମୁର କିମ୍ବା ନାଦିର ସାହାଙ୍କ ଇଚ୍ଛାରେ ଅସୁମାରୀ ଲୋକଙ୍କୁ ହତ୍ୟା କରାଯାଇଛି । ଅସଂଖ୍ୟ ସହରକୁ ଭସ୍ମୀଭୂତ କରାଯାଇଛି । ପୃଥିବୀ ଚାହୁଁ ନ ଚାହୁଁ, ମଣିଷ ଜାତି ଚାହୁଁ ନ ଚାହୁଁ ରକ୍ତସ୍ନାନ କରିବାକୁ ମଧ୍ୟ ବାଧ୍ୟ ହୋଇଛନ୍ତି । ଆଉ ପ୍ରକାରେ ଶକ୍ତିଶାଳୀ ଲୋକ ଆସିଛନ୍ତି ଯେଉଁମାନେ ମଣିଷର ଭାଗ୍ୟ ନିୟନ୍ତ୍ରଣ କରିଛନ୍ତି ଅନ୍ୟମାର୍ଗରେ । ସେମାନେ ମଣିଷ ଭିତରର ଦିବ୍ୟ ସମ୍ଭାବନାକୁ ଉନ୍ମୋଚିତ କରି ଦେଇଛନ୍ତି, ତଥାଗତ ବୁଦ୍ଧ ସେହି ଶ୍ରେଣୀର ।

ଅତି ଛୋଟ ପାରିବାରିକ ପରିସରରେ ମଧ୍ୟ ଏହାର ଛାୟାପାତ ହୁଏ । ପରିବାର ଭିତରେ ଏପରି ଜଣେ ହୁଣ୍ଡାଥାଏ, ଯାହାକୁ ସମସ୍ତେ ଡରନ୍ତି । ସେ କାହା କଥା ମାନେ ନାହିଁ, କାହାକୁ ଖାତିରି କରେ ନାହିଁ । ଅଥଚ ସମସ୍ତେ ତାକୁ ସହିଯାନ୍ତି । ସେ ଯାହା ଖାଇବାକୁ ସୁଖ ପାଏନାହିଁ ତାହା ଅନ୍ୟ ସମସ୍ତଙ୍କର ପ୍ରିୟ ହୋଇଥିଲେ ସୁଦ୍ଧା ରନ୍ଧାଯାଏ ନାହିଁ । ସେ କାଳେ ବିରକ୍ତ ହେବ ବୋଲି ସାନ ଝିଅର ସଙ୍ଗୀତ ଶିକ୍ଷା ବନ୍ଦ କରାଯାଏ, ସାନ ପିଲାଏ ପାଟି କରି ପଢ଼ିବା ବନ୍ଦ କରିଦିଅନ୍ତି । ସମସ୍ତେ ଆଡ଼ ହୋଇ ତା'ପାଇଁ ସବୁ ଭୂମି ଛାଡ଼ି ଦିଅନ୍ତି । କାହିଁକି ଏପରି ହୁଏ ? ଏପରି ହୁଏ, କାରଣ ଏକାଠି ରହିବା ପାରିବାରିକ ଜୀବନର ପ୍ରଧାନ ଲକ୍ଷଣ । ଯଦି କେବଳ ଜଣକ ସକାଶେ ସମସ୍ତଙ୍କ ସୁଖ ଶାନ୍ତି ବ୍ୟାହତ ହେଲା ତେବେ ତାକୁ ପରିବାରରୁ ବାହାର କରିଦେଲେ କେମିତି ହୁଅନ୍ତା ? ତା' ହୋଇ ପାରିବ ନାହିଁ । କାରଣ ପରିବାରର ଅଂଗଛେଦ ହୋଇଗଲେ ତା'ର ସୌଷ୍ଟବ ହାନୀ ହେବ । ସେଥିପାଇଁ ଚେଷ୍ଟା କରାଯାଏ,

ତାକୁ ସ୍ନେହରେ, ସହନଶୀଳତାରେ ଯେତେଦୂର ସମ୍ଭବ ଆବୃତ କରି ରଖିବା । ସେ କାଳେ ଅନ୍ୟର ସ୍ନେହକୁ ସମ୍ମାନ ଦେଇ ଶିଖିବ, କାଳେ ବଦଳିଯିବ–ଏଇ ଆଶାରେ ।

ଏଥିରେ ବେଳେ ବେଳେ ଭାରୀ ଅସୁବିଧା ହୁଏ । ଆରବର ଜଣେ ଯାତ୍ରୀ ଥରେ ମରୁଭୂମି ଉପରେ ତାଙ୍କ ଛୋଟ ତମ୍ବୁଟି ଭିତରେ ରାତ୍ରିଯାପନ କରୁଥାନ୍ତି । ଭୟଙ୍କର ଶୀତ ପଡ଼ିଥାଏ । ତାଙ୍କ ଓଟ ବିଚାରା ମେଲା ଦେହରେ ବାହାରେ ଶୋଇଥାଏ, ଏବଂ ବେଳେ ବେଳେ ଥୋମଣାରେ ତମ୍ବୁଟିକୁ ଛୁଇଁ ଦେଇଥାଏ, ଯାତ୍ରୀଟି ଅନୁଭବ କଲେ ଯେ, ଓଟ ବିଚାରାକୁ ନିଶ୍ଚୟ ଶୀତ ହେଉଥିବ, ତମ୍ବୁଟିକୁ ସାମାନ୍ୟ ମେଲା କରିଦେଲେ, ସେ ଅନ୍ତତଃ ତା'ର ମୁଣ୍ଡଟିକୁ ଭିତରେ ଗଳେଇ ପ୍ରବଳ ଥଣ୍ଡାରୁ ଆଂଶିକ ରକ୍ଷା ପାଇଯାଇ ପାରେ । ସେ ଓଟର ମୁଣ୍ଡ ଗଳିଲା ଭଳି ତମ୍ବୁର ମୁହଁ ଫିଟାଇ ଦେଲେ । ଓଟ ମୁହଁ ଗଳାଇ ଅନୁଭବ କଲା ଯେ ତମ୍ବୁ ଭିତରଟି ବେଶ୍ ସୁଖକର, ସେ ତେଣିକି ସଂପୂର୍ଣ୍ଣ ବେକଟିକୁ ଗଳାଇଦେଲା, ଯାତ୍ରୀ ଟିକିଏ ପାଖେଇ ଯାଇ ଓଟର ସେ ସୁବୃହତ୍ ବେକଟି ସହିତ ସେଇ ତମ୍ବୁରେ ସହାବସ୍ଥାନ କଲେ । କିନ୍ତୁ ଦେଖାଗଲା ଯେ ଓଟ ଆସ୍ତେ ଆସ୍ତେ ଆଗ ଗୋଡ଼ ଏବଂ ତା'ପରେ ତା'ର ବିରାଟ କୁଜକୁ ତମ୍ବୁ ଭିତରକୁ ଗଳାଇ ଦେଲା । ସେତେବେଳକୁ ତାକୁ ତଡ଼ିବାକୁ ମଧ୍ୟ ଯାତ୍ରୀ ମହାଶୟଙ୍କ ସାମର୍ଥ୍ୟ ନାହିଁ । ପରିଶେଷରେ ସମଗ୍ର ଓଟଟି ତମ୍ବୁ ଭିତରେ ପ୍ରବିଷ୍ଟ ହେବାରୁ, ମଣିଷଟିକୁ ସେଇଠୁ ବାହାରି ଆସିବାକୁ ପଡ଼ିଲା । ଏଇ ଅତି ପୁରାତନ ଏବଂ ପରିଚିତ ଦୃଷ୍ଟାନ୍ତରୁ ସୂଚନା ମିଳୁଛି ଯେ ଅପରକୁ ସାହାଯ୍ୟ କରିବା ଏବଂ ସହିଯିବାରେ ଏପରି ଅପ୍ରୀତିକର ପରିଣତି ଭୋଗ କରିବାକୁ ପଡ଼ିପାରେ । ଏଠି ଆପାତଦୃଷ୍ଟିରୁ ମଣିଷଟି ହାରିଗଲା, କାରଣ ସେ ଓଟଟିକୁ ସଂପୂର୍ଣ୍ଣ ନ ବୁଝି ତାକୁ ନିଜ ପରିସର ଭିତରେ ସ୍ଥାନ ଦେଇଥିଲା । ଓଟ ବିଚାରା ଜାଣିଶୁଣି ତାକୁ ତମ୍ବୁ ଭିତରୁ ବାହାର କରିନାହିଁ, ତମ୍ବୁଟି ଉଭୟଙ୍କ ପାଇଁ ଯଥେଷ୍ଟ ପ୍ରଶସ୍ତ ହୋଇଥିଲେ ସେ ତା' ସାହାଯ୍ୟକାରୀ ସହିତ ଏକାଠି ରହିବାକୁ ଆପତ୍ତି କରି ନଥାନ୍ତା । ସେ ତା'ର ବିରାଟ ଶରୀର ପାଇଁ ଦାୟୀ ନୁହେଁ । ଏଣୁ ନିଜେ ରହି ପାରିଲା ଭଳି, ନେଇ ପାରିଲା ଭଳି ଆୟତନକୁ ମାପି ସାରିଲାପରେ ଯାତ୍ରୀଟି ଓଟକୁ ଭିତରକୁ ଡାକିଥିଲେ ଏମିତି ବୋଧେ ହୋଇ ନଥାନ୍ତା । ଏଠି ମଣିଷଟି ହାରିଗଲା ସତ, ଗୋଟିଏ ବ୍ୟକ୍ତି ଗୋଟିଏ ପରିସ୍ଥିତିରେ ହାରିଗଲା । କିନ୍ତୁ ଅପର ପ୍ରତି ତା'ର ସମ୍ବେଦନଶୀଳତା, ଅନ୍ୟର ଦୁଃଖକୁ ନିଜର ବୋଲି ଅନୁଭବ କରିପାରିବାର କ୍ଷମତା, ଅନ୍ୟକୁ ସ୍ୱୀକାରର କରିବାର, ତା' ସହିତ ଏକାଠି ରହିବାର ଉଦାରତା କେବେ ହାରିଯାଏ ନାହିଁ । ତାହାହିଁ ମଣିଷକୁ ଏ ଯାଏଁ ବଞ୍ଚେଇ ରଖିଛି, ତା'ର ବିଶେଷତ୍ୱକୁ ବଜାୟ ରଖିଛି ।

ଥରେ ଯଦି ମନୁଷ୍ୟ ଅନୁଭବ କରିପାରିଲା ଯେ ଏ ପୃଥିବୀରେ ଅନ୍ଧାର ଯେତେ ଆଲୁଅ ସେତେ, ଏଠି କାହାରି ସେମିତି ଏକଚାଟିଆ ଅଧିକାର ନାହିଁ, ତା'ର ସହନଶୀଳତା ବଢ଼ିଯାଏ । ସେ ତେଣିକି ବିଶେଷ ବିରୋଧ କରେ ନାହିଁ, କେବଳ ନିଜ ପାଇଁ ସଂଘର୍ଷ କରେ ନାହିଁ । ଏ ପୃଥିବୀ କେବଳ ସାଧୁସନ୍ଥଙ୍କ ପାଇଁ ନୁହେଁ, ଏଠି ଚୋର, ଖଣ୍ଡ, ଡକାୟତ, ମଣିଷ ତ' ନିଶ୍ଚୟ ରହିବେ । ତା' ବାହାରେ ନାନା ଜାତିର ପଶୁପକ୍ଷୀ, କୀଟ ପତଙ୍ଗ, ତରୁ ତୃଣ, ମଧ୍ୟ ରହିବେ, ସେମାନଙ୍କୁ ନେଇ ସମସ୍ତଙ୍କୁ ସ୍ୱୀକାର କରି, ସମସ୍ତଙ୍କ ସହିତ ଏ ପୃଥିବୀରେ ବଞ୍ଚିବାକୁ ପଡ଼ିବ ।

ଦିନେ ବର୍ଷା ହେଉଥାଏ, ଭୁବନେଶ୍ୱରରୁ କଟକ ଯିବା ପାଇଁ ବସ୍ କିମ୍ବା ଟ୍ରେନ୍ ନଥିଲା । ଖୁବ୍ ଜରୁରୀ କାମ, ନ ଗଲେ ନ ଚଳେ । ଏତିକିବେଳେ ଗୋଟିଏ ଟେକ୍ସି ଡାକିଲା । ଦେଖାଗଲା ଯେ ବିଭିନ୍ନ ଆଡୁଆଳରୁ ନାନା ପ୍ରକାର ଲୋକ ସେଇ ଆଡ଼କୁ ଧାଇଁଲେ । ଯେ ପ୍ରଥମେ ପଶିଲେ ସେ ସାଥିରେ ଗୋଟିଏ ଶୁଆ ପଞ୍ଜୁରୀ ନେଇଥାନ୍ତି । କହିଲେ ଯେ ସେ ତାଙ୍କ ନିଜ ମୁଣ୍ଡରେ କିମ୍ବା କାନ୍ଧରେ ଥୋଇ ନେଇଯିବେ । ଆଉ ଇଞ୍ଚେ ସୁଦ୍ଧା ଅଧିକ ସ୍ଥାନ ନେବେ ନାହିଁ, ଦ୍ୱିତୀୟ ବ୍ୟକ୍ତି, ତାଙ୍କ ଝିଅକୁ ଆଠ ମଙ୍ଗଳା ଭାର ସହିତ ଛାଡ଼ିବାକୁ ଆସିଥାନ୍ତି । ଦୁଇଟି ବାଉଁଶିଆରେ ମୁଆଁ, ଖଇ, ଭାର ତାଙ୍କ ସାଥିରେ ଯିବା କଥା । ଆଉଜଣେ ବାବୁ ଅଫିସ କିରାଣୀ, ସାଙ୍ଗରେ ଗୋଟିଏ ମଜବୁତ୍ ଫାଇଲ୍ ଗଣ୍ଠିରୀ ନେଇଥାନ୍ତି, ପ୍ରାଣଠୁ ଅଧିକ କରି ତାକୁ ଜାବୁଡ଼ି ଧରିଥାନ୍ତି । ବାକି ଆମେ ଖାଲି ହାତବାଲା ଆଉ ଆଠଜଣ । ଜଣେ ପୃଥୁଳ ବ୍ୟବସାୟୀ ଭାଇଙ୍କୁ ଦୁଇଜଣ ବୋଲି ଗଣିଲେ ସଂଖ୍ୟା ହେଲା ଛଅ । ଟେକ୍ସିବାଲା ନିର୍ବିକାର ସମସ୍ତଙ୍କ ଉଦ୍ଦେଶ୍ୟରେ କହିଲା "ବସିଯାନ୍ତୁ" ଡ୍ରାଇଭର ଓ ତା'ର ସହକାରୀକୁ ଛାଡ଼ିଦେଲେ ଆମ୍ବାସେଡ଼ର ଗାଡ଼ିଟିରେ ଆଉ ଚାରି କିମ୍ବା ପାଞ୍ଚ ଜଣ ବସିପାରିବେ କିନ୍ତୁ ଏତେ ଲୋକ ଏତେ ଜିନିଷ ଯିବ କିପରି ? ବାହାରେ ବର୍ଷା, ଅପେକ୍ଷା କରିବାକୁ ଉପାୟ ନାହିଁ । ସମସ୍ତଙ୍କର ଏପରି ଜରୁରୀ ଯେ ନ ଗଲେ ନ ଚଳେ । ତା' ପରେ ଚାଲିଲା ସହାବସ୍ଥାନ ଉପରେ ଅଦ୍ଭୁତ ପରୀକ୍ଷା, କିନ୍ତୁ କିଏ ମଣିଷ କିଏ ବସ୍ତୁ ବାରି ହେଲେ ନାହିଁ । କାହା ଉପରେ କିଏ ବସିଲେ, କିପରି କେଉଁ ଅବୟବ କେତେ ପରିମାଣରେ ଚିପି ହେଲା କହିବା ଦୁଷ୍କର, କେବଳ ଦେଖାଗଲା ଯେ ସର୍ବୋପରେ ଅନ୍ୟମାନଙ୍କ ଉପରେ ନଇଁ ରହିଥିବା କେଇ ଜଣକ ପିଠି ଉପରେ ଶୁଆ ପଞ୍ଜୁରୀ ଥୁଆ ହୋଇଥିଲା ।

ସଂସାର ଯାତ୍ରା ପ୍ରାୟ ଏହିଭଳି । ଅସଂଖ୍ୟ ଅସମଞ୍ଜତା ଅସ୍ୱଚ୍ଛନ୍ଦତା ଭିତରେ କେମିତି ଗୋଟାଏ ଏକାଠି ରହିବାର ଅନିବାର୍ଯ୍ୟତାକୁ ସ୍ୱୀକାର କରି ନିଆଯାଏ। ନୀତିବାଦୀମାନେ କହିବେ ଯେ ଆତ୍ମମର୍ଯ୍ୟାଦା ରଖିବାକୁ ହେବ । ଅପରକୁ ସ୍ୱୀକାର

କଲ ବୋଲି ନିଜକୁ ସଂପୂର୍ଣ୍ଣ କାଦୁଅ ମେଣ୍ଢା ପରି କରିଦେବାର ଅର୍ଥ କିଛି ନାହିଁ । ସେଥିରେ ଉଦାରତା ପ୍ରକାଶ ପାଏନାହିଁ, କେବଳ ଦୁର୍ବଳତା ଏବଂ ଅସହାୟତା ହିଁ ପ୍ରକାଶ ପାଏ । ଜଣେ ଭଲ ମଣିଷ ହେଲା ବୋଲି କାହାକୁ କିଛି କହିଲା ନାହିଁ ବୋଲି, ତାକୁ ସମସ୍ତେ ଚକଟି ଚାଲିଯିବେ, ତାକୁ ବ୍ୟବହାର କରିଯିବେ, ଏହା କେଉଁ ପ୍ରକାର ଯୁକ୍ତି ? ସେ ଜଣକ କାହିଁକି ସମସ୍ତଙ୍କ ସୁବିଧାକୁ ଜଗି ଜଗି ନିଜେ ନିଃଶେଷ ହୋଇଯିବ ? ନ ହେଲା ନାହିଁ । ଏ ସଂସାରକୁ ଯଦି ଆୟତ୍ତ କରି ନ ପାରିଲା, ଛାଡ଼ିଦେବ ଏ ସଂସାରକୁ । କିମ୍ବା ଖଣ୍ଡାଧରି ସଂହାର କରିଯିବ ତା' ଆଖିକୁ ଦିଶୁଥିବା ଦୁରାଚାରୀମାନଙ୍କୁ । ନୀତିବାଦୀମାନେ ଏଭଳି କହିଥାନ୍ତି । ଏଥିରୁ କିଛି ଅସାଧାରଣ ବ୍ୟକ୍ତି ସୃଷ୍ଟି ହୁଅନ୍ତି, ଯେ କୌଣସି ନୀତି ପାଇଁ, ମୂଲ୍ୟପାଇଁ ସହୀଦ୍ ହୋଇଯାନ୍ତି । ଅନ୍ୟ ପକ୍ଷେ ଗୁଡ଼ିଏ ଅତି ଅସହନଶୀଳ ନିଜକୁ ହିଁ ଏକ ମାତ୍ର ମୂଲ୍ୟ ଦେଉଥିବା, ଅସାମାଜିକ, ଦୁର୍ଜନ ଗୁଡ଼ିଏ ମଧ୍ୟ ବହୁ ବ୍ୟୁତ୍ପାତ କରିଯାନ୍ତି ।

ସାଧାରଣ ମଣିଷଟିଏ, ସାମାଜିକ ମଣିଷଟିଏ, ସମସ୍ତଙ୍କୁ ନେଇ ସଂସାର କରିଥିବା ବେଳେ ମୁଣ୍ଡରେ ପଥର ପଡ଼ିଲେ ମଧ୍ୟ ସହିଯାଏ । ପରିଶ୍ରମର ମୂଲ୍ୟଦେଇ କିଣିଥିବା ଚାଉଳରୁ ଗୋଡ଼ି ବାଛି ଚଳେଇଦିଏ । ଭୁଲ ଔଷଧ ଦେଇ ପୁଅକୁ ମାରିଦେଇଥିବା ଡାକ୍ତରକୁ ନିରୁପାୟ ସହିଯାଏ । ଟଙ୍କା ନେଇ ତା' ଜମିକଥା ବୁଝୁଥିବା ଆଳରେ ତାକୁ ଠକୁଥିବା ସମାଜସେବୀକୁ ଉପରେ କିଛି କହିପାରେ ନାହିଁ । ମୋଟ ଉପରେ ଡରି ଡରି ଆଡ଼େଇ ହୋଇ ହୋଇ ସେ ବଞ୍ଚିଥାଏ ଜୀବନସାରା । ଏକାଠି ବଞ୍ଚିବାର ମୂଲ୍ୟ କ'ଣ ଏତେ ବେଶୀ ? ଥରେ ଜଣେ ମହାତ୍ମାଙ୍କ ପାଖରେ ଗୋଟିଏ ନାଗ ସାପ ଆସି ପହଞ୍ଚିଲା । ସାପ ଜନ୍ମରୁ ଉଦ୍ଧାର ପାଇବାକୁ ଉପଦେଶ ଗ୍ରହଣ କଲା । ହିଂସା, କ୍ରୋଧ, ତ୍ୟାଗ କରିନେଲା । ଦିନେ ଗୁରୁ ଆସିଲା ବେଳକୁ ସାପ ଗାତ ପାଖରେ ପାଟିତୁଣ୍ଡ । ଛୋଟ ପିଲାମାନେ ଅତି ଖୁସିରେ ଖେଳି ଲାଗିଛନ୍ତି । ବିରାଟ ନାଗ ସାପ କ୍ଷତ ବିକ୍ଷତ ହୋଇ ପଡ଼ିଛି ଏବଂ ସେମାନେ ଟେକା ମାରି ଲାଗିଛନ୍ତି । ସେ ପିଲାମାନଙ୍କୁ ଘଉଡ଼ି ନେଇ ଶିଷ୍ୟକୁ ତା'ର ଦୁରବସ୍ଥାର କାରଣ ପଚାରିଲେ । ସେ କହିଲା ଯେ ଗୁରୁଙ୍କ ଉପଦେଶ ଅକ୍ଷରେ ଅକ୍ଷରେ ପାଳନ କରି ସେ ହିଂସା କ୍ରୋଧ ପରିହାର କରିଥିବାରୁ ପିଲାମାନେ ତାକୁ ଗୋଟିଏ ଖେଳର ସାମଗ୍ରୀ ରୂପେ ବ୍ୟବହାର କରିନେଲେ । ଗୁରୁ ତାକୁ ବୁଝାଇଲେ ଏକ ତତ୍ତ୍ୱ । ହିଂସା, କ୍ରୋଧ ମନରୁ ତ୍ୟାଗ କରାଯାଏ, କିନ୍ତୁ ବାହ୍ୟ ଆଚରଣରେ ଫଣା ତୋଳି ଫୁ ଫୂକାର କରିବାକୁ ମନା ନାହିଁ, ତା' ନହେଲେ ସଂସାର ଚଳିବ କିପରି ?

ସଂସାର ଭିତରେ ଘର କରି ରହିଲେ ଘରେ ଚୁଲି ଜାଳିବା ଠାରୁ ଆରମ୍ଭ କରି ପାରମାଣିକ ଯୁଦ୍ଧ ଯାଏଁ ବିଭିନ୍ନ ପର୍ଯ୍ୟାୟର ବିସ୍ଫୋରଣକୁ ଧାରଣ କରିବା, ଏ ସମସ୍ତକୁ ସମ୍ଭାଳିବା । ଏହା ସତ ଯେ ବିରୋଧ, ସଂଘର୍ଷ, ସଂଗ୍ରାମ ସତ୍ତ୍ୱେ ଶତାବ୍ଦୀ ଶତାବ୍ଦୀ ଧରି ମଣିଷ ବଞ୍ଚି ଆସିଛି, ଏବଂ ଏକାଠି ବଞ୍ଚି ଆସିଛି । ନିଜକୁ ସ୍ୱୀକାର କରି, ଅନ୍ୟକୁ ମଧ୍ୟ ସ୍ୱୀକାର କରିବାର କଳା ଆୟତ୍ତ କରି ଚାଲିଛି । କୌଣସି ଗୋଟାଏ ଚାଲ୍‌ରେ ଇନ୍ଦ୍ରଜାଲ ଭଳି, ଏ ସଂସାରକୁ ବଦଳେଇ ଦେବା ସମ୍ଭବ ନୁହେଁ । ମଣିଷ ଦେହରୁ ଲୋମ ଝଡ଼ିଯିବା ଏବଂ ଲାଙ୍ଗୁଡ଼ଟି ଖସି ପଡ଼ିବା ସକାଶେ ଲକ୍ଷ ଲକ୍ଷ ବର୍ଷ ଲାଗି ଯାଇପାରେ । ଏଣୁ ଏତେ ବିଭିନ୍ନତା ସତ୍ତ୍ୱେ, ବିରୋଧ ସତ୍ତ୍ୱେ, ମଣିଷ ଏକାଠି ରହି ଶିଖିବ, ସଂସାରରେ ରହି ଶିଖିବ—ଏହା କୌଣସି ମାସ ବର୍ଷକର ଯୋଜନା ନୁହେଁ । ଗୋଟିଏ ସଂସ୍ଥା, ଗୋଟିଏ ଧର୍ମ ଗୁରୁ, ଗୋଟିଏ ପନ୍ଥାର କଥା ନୁହେଁ । ଅତି ବ୍ୟାପକ, ଅତି କଠିନ, ଅତି ସାଧନା ସାପେକ୍ଷ୍ୟ, ସମୟ ସାପେକ୍ଷ୍ୟ, ସଂସାର କରିବାର ସାମର୍ଥ୍ୟ ।



# ଆପଣା କଲା କର୍ମମାନ

ଢେଲାଟିଏ ପକାଇଲେ ପଥରଟିଏ ଥୁଆ ହୋଇଛି ବୋଲି କହି ଆମକୁ ନିବର୍ତ୍ତାଯାଏ । ପଇସାଟିଏ ଦାନକଲେ ଲକ୍ଷେ ଟଙ୍କାର ପୁଣ୍ୟଫଳ ଆତ୍ମାକୁ ଆତ୍ମଆଳ କରେ ବୋଲି ସେହିପରି ଆମକୁ ପ୍ରବର୍ତ୍ତାଯାଏ । ଭୟ, ଏବଂ ପ୍ରଲୋଭନ ଦେଖାଇ ସର୍କସର ସିମ୍ପାଞ୍ଜିକୁ ସିଗ୍ରେଟ ପିଆଇଲା ପରି ଆମକୁ ମଧ୍ୟ ନିୟନ୍ତ୍ରିତ କରାଯାଏ । ଆମ ପାଇଁ ଚଉରାଶି ପ୍ରାଣର ଭୟ, ଏବଂ ଚଉଷଠି ପ୍ରକାର ପ୍ରଲୋଭନ । ତା'ରି ଭିତରେ ଆମେ କିଛି କର୍ମକରୁ ବା' କରିବାକୁ ପ୍ରୟାସ କରୁ, ଏବଂ ଆଉ କିଛି କର୍ମ ନକରୁ ବା' ନକରିବାକୁ ଚେଷ୍ଟା କରୁ ! ଯା ଭିତରେ ଗୋଟିଏ କଥା କିନ୍ତୁ ସ୍ଥିରସତ୍ୟ ରୂପେ ଦେଖାଦିଏ ଯେ ଆମେ ଯାହା କରୁ ସେଥିପାଇଁ ଆମେ ସର୍ବତୋଭାବେ ଦାୟୀ । ଏଣୁ ତା'ର ଫଳାଫଳ ପାଇଁ ମଧ୍ୟ ଦାୟୀ । କୌଣସି କୁକର୍ମ କରି ତା'ର ପରିଣାମରୁ ଖସି ଯିବାର ଉପାୟ ନାହିଁ ।  ଜଣେ ଋଷିଙ୍କ ଦୃଷ୍ଟାନ୍ତ ଏଥିପାଇଁ ଦିଆ ଯାଇଥାଏ । ସେ ତାଙ୍କର ପିଲାଦିନେ ଗୋଟିଏ କୁଳିବେଙ୍ଗକୁ ନେଇ ଖେଳୁଥିଲା ବେଳେ ସ୍ୱାଭାବିକ ଚଗଲାପଣିଆରେ ତାକୁ ଗୋଟିଏ କଣ୍ଟାରେ ଫୋଡ଼ି ହତ୍ୟା କରିଥିଲେ । ପରିଣାମତଃ ତାଙ୍କୁ ରାଜଦଣ୍ଡ ସ୍ୱରୂପ ପରିଣତ ବୟସରେ ଗୋଟିଏ ନିର୍ମମ ଶୂଳି ଉପରେ ପ୍ରାଣତ୍ୟାଗ କରିବାକୁ ପଡ଼ିଥିଲା । ଶୂଳିରେ ଚଢ଼ିବାକୁ କାହାରି ପ୍ରବୃତ୍ତି ନହେବା କଥା । କିନ୍ତୁ ସେଥିରୁ ବଞ୍ଚିବାକୁ ହେଲେ ଆମକୁ ଗୋଟିଏ ନିର୍ଦ୍ଦିଷ୍ଟ ଆଚରଣକୁ ସ୍ୱୀକାର କରିବାକୁ ପଡ଼ିବ । ସେଇଟା ହେଲା, କେବଳ କୁଳିବେଙ୍ଗ ନୁହେଁ, କାହାକୁ ହେଲେ କଣ୍ଟାରେ ଫୋଡ଼ି ହତ୍ୟା କରିବ ନାହିଁ । କେବଳ କଣ୍ଟା ନୁହେଁ । ଆଉ କୌଣସି ଉପାୟରେ ମଧ୍ୟ କାହାକୁ ହତ୍ୟା କରିବ ନାହିଁ । ମୋଟ ଉପରେ ହତ୍ୟା କରିବ ନାହିଁ, ହତ୍ୟା ପାପ । ହତ୍ୟା ଏକ ଅପରାଧ । ସେହିପରି କାହାରି ଅନିଷ୍ଟ କରିବା ନାହିଁ । କାହାରି ଦାରା ହରଣ କରିବ ନାହିଁ, ତାକୁ ମା' ବୋଲି ଜ୍ଞାନ କରିବ । କାହାରି ଦ୍ରବ୍ୟ ଲୁଣ୍ଠନ କହିବା ନାହିଁ, ତାହା ମାଟି ଟେଲା ବୋଲି ଜ୍ଞାନ କରିବ । ମିଛ କହିବ ନାହିଁ । ଅପ୍ରିୟ କହିବା ନାହିଁ । ଅସତ୍ ଚିନ୍ତା କରିବ ନାହିଁ । ...ଇତ୍ୟାଦି ଇତ୍ୟାଦିର ତାଲିକା ହିସାବ କଲେ ସରିବ ନାହିଁ । ସାଙ୍ଗକୁ ଆହୁରି ଯୋଡ଼ି ଦିଆ ହୁଏ; ନଇ ପହଁରିବ ନାହିଁ । ଗଛ ଚଢ଼ିବ ନାହିଁ । ବିରୁଡ଼ି ବସା ଭାଙ୍ଗିବ ନାହିଁ । ଗୁଡ଼ାଏ ହସିବ ନାହିଁ କି କାନ୍ଦିବ ନାହିଁ—ଅତି

ଭକ୍ତି, ଅତି ପ୍ରୀତି ସବୁ ତ୍ୟାଗ କରିବ । ଏ ସମସ୍ତ ହେଲା ଆଚରଣର ନିଷିଦ୍ଧ ଅଙ୍ଗ । ଅନ୍ୟଟି ହେଲା ପ୍ରସିଦ୍ଧ ଅଙ୍ଗ । ସତ୍ୟ କହିବ । ମିତଭାଷୀ, ପ୍ରିୟଭାଷୀ ହେବ । ସମସ୍ତଙ୍କର ମଙ୍ଗଳ କରିବ ! ବିନୟୀ ହେବ ମାତୃଦେବ, ପିତୃଦେବ, ଆଚାର୍ଯ୍ୟଦେବ ଭବ । ...ଏ ତାଲିକା ମଧ୍ୟ ସେହିଭଳି ଦୀର୍ଘ । ଏ ଦୁଇଟି ଫର୍ଦ୍ଦ ନିର୍ଦ୍ଦେଶନାମାକୁ ବେକରେ ଓହଳେଇ ଦେଇ ଏ ସମାଜରେ ଚଳିବା ପାଇଁ ଆମକୁ କୁହାଯାଏ । ସ୍ମୃତିକାର ମାନଙ୍କର ଧାରଣା ଯେ ଏହାଦ୍ୱାରା ଖୁବ୍ ଦୃଢ଼ ଲୁହା ପଇ ପକେଇ ଦିଆଗଲା, ଏଣିକି ରେଳଗାଡ଼ିଟିଏ ପରି ଜୀବନ ପୂର୍ବରୁ ପଶ୍ଚିମକୁ ଅତି ସହଜରେ ନିର୍ବିରୋଧ ଗଡ଼ିଯିବା କଥା ।

କିନ୍ତୁ ଗଡ଼େନାହିଁ ଦୁଇଟି ନିର୍ଦ୍ଦିଷ୍ଟ କାରଣରୁ । ପ୍ରଥମଟି ହେଲା ତାଲିକାଭୁକ୍ତ କୁକର୍ମମାନଙ୍କର ପରିଣାମ ଯେତିକି ଭୟାବହ, ସେହି କର୍ମଗୁଡ଼ିକ ସେତିକି ଲୋଭନୀୟ । କୌରବ, କିମ୍ବା କୁମ୍ଭିପାଭୌରେ ପଡ଼ିବାକୁ ଆମର କାହାରି ସାହସ ନାହିଁ କି ଇଚ୍ଛା ନାହିଁ ସତ, କିନ୍ତୁ ଜୀବନରେ ଉଠିପଡ଼ି ସଂଗ୍ରାମ କଲାବେଳେ, ଏଠିସେଠି ଟିକିଏ ମୋହ ଲାଗିଗଲେ, ତାକୁ ଏଡ଼ିଯିବା ପାଇଁ ଆମର ସାମର୍ଥ୍ୟ କୁଳାଏ ନାହିଁ । ନାରୀ, ସୁରାର ଆକର୍ଷଣ, କାମିନୀକାଞ୍ଚନର ଦୁର୍ବାର ଲୋଭ ପାଇଁ ଇନ୍ଦ୍ରିୟାନୁଗତ ଜୀବନଟି ସାର୍ଥକ ବୋଧହୁଏ । ଡେଣା ବାରମ୍ବାର ପୋଡ଼ି ଯାଉଥିଲେ ସୁଦ୍ଧା ପତଙ୍ଗ ଜୀବନର ଏକମାତ୍ର ସ୍ୱାଭାବିକ ମୂଲ୍ୟ ଏଇ ଅଗ୍ନି ପରୀକ୍ଷା ! ସେ ସେତେବେଳେ ବୋଧକରୁଥାଏ ଯେ ସେ ଅଗ୍ନିରେ ଝାସ ଦେଉନାହିଁ, ବରଂ ସେ ତରଳ ଶିଖାଗୁଡ଼ିକୁ ଆକଣ୍ଠ ପାନ କରୁଛି । ସେ ଦହନକୁ ସ୍ୱୀକାର କରୁନାହିଁ, ତା' ପଶ୍ଚାତରେ ଆଉ ଗୋଟାଏ କ'ଣ ସ୍ୱାଦ ତାକୁ ବିଭୋର କରୁଛି । ସେ ସ୍ୱାଦ କ'ଣ ଜାଣିବାକୁ ହେଲେ ନିଜେ ପତଙ୍ଗ ହେବାକୁ ପଡ଼ିବ । ସେହିପରି ମିଛ କହିବାର ସ୍ୱାଦ ମଧ୍ୟ ଦୁର୍ବାର । ଗଛରେ ଚଢ଼ିବାକୁ, ଗଛର ଉଚ୍ଚ ଡାଳଗୁଡ଼ିକ ହିଁ ତରୁଣକୁ ଆମନ୍ତ୍ରଣ କରୁଥା'ନ୍ତି । ଖଳଖଳ ହୋଇ ବହିଯାଉଥିବା ନଦୀ ଆମନ୍ତ୍ରଣ କରୁଥାଏ ତା'ର ଗଜେଇ ଆସୁଥିବା ପୌରୁଷକୁ ! ସମଗ୍ର ପୃଥିବୀରେ ଅନେକ ଶୋଭା, ଅନେକ ଉପଭୋଗ୍ୟ ସାମଗ୍ରୀ ... ... ତାକୁ ତ୍ୟାଗ କରିବାର ସତ୍‌କର୍ମ ଖୁବ୍ କଷ୍ଟସାଧ୍ୟ ! ପ୍ରଲୋଭନ ହେତୁ କଷ୍ଟସାଧ୍ୟ । କିନ୍ତୁ ଲାଗେ ଯେ ଏପରି ରସବନ୍ତ ଶୋଭାବନ୍ତ ଜୀବନକୁ ସବୁଆଡୁ ନିବୃତ୍ତ କରି ରଖିବାରେ ଲାଭ କ'ଣ ? ଏକଦା ଜଣେ ଲୋହିତ ଭାରତୀୟ ତାଙ୍କର ଶହେ ପଚାଶ ବର୍ଷ ବ୍ୟାପି ଜୀବନର ରହସ୍ୟ ବଖାଣୁ ଥିଲେ ସେ କିପରି ସଂଯମ ଅଭ୍ୟାସ କରିଛନ୍ତି ତା'ର ବୟାନ ଦେଉଥିଲେ । ସେ ପିଠା ଖାଇ ନାହାଁନ୍ତି, ସୁରା ଛୁଇଁ ନାହାନ୍ତି । ଶହେ ବର୍ଷ ତଳେ ଜଣେମାତ୍ର ନାରୀକୁ ସହଧର୍ମିଣୀ କରି ଗ୍ରହଣ କରିଛନ୍ତି, ସିନେମା ଦେଖିନାହାନ୍ତି, ସମୁଦ୍ର

କୂଳରେ ବିହାର କରିନାହାନ୍ତି– । ଏ ସବୁ ଶୁଣି, ହାସ୍ୟ ଅଭିନେତା ଡେନିକୋୟଙ୍କୁ ସଂବୋଧନ କରିବା ଭଙ୍ଗିରେ ତାଙ୍କ ବନ୍ଧୁ କହିଲେ, "ଦେଖ ବନ୍ଧୁ, କେମିତି ଏ ଲୋହିତ ଭାରତୀୟଟି ବଞ୍ଚିଛି !" ସଙ୍ଗେ ସଙ୍ଗେ ଡେନିକୋୟ ଉତ୍ତର ଦେଲେ– "ସତେ ତ, କାହିଁକି ଏ ବେକୁବ୍ ଏମିତି ବଞ୍ଚିଛି କେବଳ !" ଦୀର୍ଘ ଜୀବନର ପୁରସ୍କାର ଭଳି ସ୍ୱର୍ଗ–ସୁଖର ପ୍ରତିଶ୍ରୁତି ମଧ୍ୟ ଅନେକ ସମୟରେ ଜୀବନର ତଥାକଥିତ ମଧୁଭାଣ୍ଡରୁ ଆମକୁ ନିବୃତ୍ତ କରିପାରେ ନାହିଁ । ଆମର ଧାରଣା ହୁଏ ଯେ ଆମକୁ ଅଯଥା ଭଣ୍ଡେଇ ଦିଆହେଉଛି । ପିଲାଙ୍କୁ ମିଛ କହି, ଭଳେଇ, ବହଲେଇ ଦେଲାପରି ଆମ ସାଙ୍ଗରେ ଏମିତି କେବଳ ଗୋଟାଏ ଖେଳ ଚାଲିଛି ।

ଜୀବନ ନ ଗଢ଼ିବାର ଦ୍ୱିତୀୟ କାରଣ ଏହାର ପରିପୂରକ । ସୁକର୍ମମାନଙ୍କର ତାଲିକା ପିତା ଓଷ୍ଠ ଭଳି ଉତ୍କଟ, ପାହାଡ଼ ଚଢ଼ାଭଳି ଦୁଃସାଧ୍ୟ । ବୈଶାଖ ମାସ ମଧ୍ୟାହ୍ନରେ ଆକାଶରୁ ନିଆଁ ଛିଡ଼ି ପଡୁଥିବା ବେଳେ ତାତିଲା ଭୂଇଁ ଉପରେ ଗୋଟାଏ ଗୋଡ଼ରେ ଠିଆ ହୋଇ ଚାରିଆଡ଼େ ଚାରିଟା ଧୂନି ଜାଳି ନାକ ଆଗକୁ ଚାହିଁଲେ ସତ୍ୟ ଦର୍ଶନ ହୁଏ । କେହି ନ ଶୁଣିଲାପରି ଆମେ କହୁ, "ସେ ସତ୍ୟ କ'ଣ ଏମିତି ଜରୁରୀ ?" ଭୋକିଲା ଛଞ୍ଚାଣକୁ କପୋତ ଓଜନର ମାଂସ ନିଜ ଦେହରୁ କାଟି ଦେଉ ଦେଉ କଙ୍କାଳସାର ଦାତା ନିକିତିରେ ସ୍ୱୟଂ ବସିଯିବା ଦାନଧର୍ମର ଚୂଡ଼ାନ୍ତ ଉଦାହରଣ । ଆମେ ପୁଣି କହୁ, "ଏଭଳି ଦାନ କରିସାରିଲାପରେ ତା'ର ଫଳ କିଏ ଭୋଗକରେ ?" ଏହିପରି, ବିନା ଦୋଷରେ ଫାଶୀ ପାଉଥିଲେ ସୁଦ୍ଧା ସତ କହିବା, ବିନାଦୋଷରେ ପେଟରେ ଗୁଳିମାଡ଼ ଖାଇଲେ ସୁଦ୍ଧା ହତ୍ୟାକାରୀକୁ କ୍ଷମା କରିବା, କାଠ ଛକିରେ କଣ୍ଟାପିଟା ହୋଇ ଝୁଲୁଥିଲେ ସୁଦ୍ଧା ନିର୍ବୋଧଙ୍କ ପାଇଁ ପ୍ରାର୍ଥନା କରିବା–ସବୁକାର୍ଯ୍ୟ ସତକର୍ମର ଅପରୂପ ଓ ଅନନ୍ୟ ଦୃଷ୍ଟାନ୍ତ !–ଆମେ ସାଧାରଣ ଭୂମି, ସାଧାରଣ ସଂଭାବନା ଏବଂ ସାମର୍ଥ୍ୟର ମଣିଷ । ଏ ସବୁ ଆମ ଆଚରଣ ପରିସର ଭିତରେ ଗ୍ରହଣ କରିବାକୁ ଆମେ ରାଜି ନୋହୁଁ । ହଁ, ଏସବୁ ଶୁଣି ଆମେ ନିଶ୍ଚୟ ବିସ୍ମିତ ହେବୁ । କେମିତି ଆମରିଭଳି ଗୋଟାଏ ଦେହଧରି, ଆଖି, ନାକ, କାନ, ମେଦରକ୍ତର ଶରୀର ଧରି ସେମାନେ ଏ ଅଦ୍ଭୁତ କାର୍ଯ୍ୟ କରିପାରିଲେ ? ଏହା କିଭଳି ସମ୍ଭବ ହେଲା ? ମଣିଷ ଜୀବନରେ କ'ଣ ଆଉ ଗୋଟାଏ ରହସ୍ୟ ଭୂମି ରହି ଯାଇଛି ଆମ ଅଜ୍ଞାତସାରରେ, ଯେଉଁଠି ଏମିତି ସାମର୍ଥ୍ୟ ମିଳେ ? ଏ ବିସ୍ମୟରୁ ସାମାନ୍ୟ କୌତୂହଳ ହୁଏ । ଖୁବ୍ ନିଭୃତରେ ଇଚ୍ଛାଟିଏ ଉଙ୍କିମାରେ ଯେ ଯେତେ ଛୋଟ ହେଲେ ମଧ୍ୟ, ହେଉ ନ ହେଉ, ଏମିତି ଟିକେ ଚେଷ୍ଟାକଲେ କେମିତି ହୁଅନ୍ତା ? ରାଜ୍ୟ ଛାଡ଼ି ଯିବା ପାଇଁ ଆମର ବୈଶାଳୀ ନଗରୀ ନାହିଁ, କିନ୍ତୁ ଜନ୍ତୁଭଳି ଦଶହାତ ଭୂଇଁର ସରହଦ ପାଖରେ ପଡ଼ୋଶୀକୁ

ହାଣିଦେବା ପାଇଁ ଆମେ ଯେଉଁ ଫାର୍ଶା ଟେକିଧରୁ ସେ ଭାବ ଟିକିଏ ହୁଗୁଳା କଲେ କେମିତି ହୁଅନ୍ତା ? ଅଭାବରେ ପଡ଼ି ଚୋରି କରିବା ଯଦି ଅପରାଧ ନ ହେଲା, ଅନ୍ତତଃ ନିର୍ଦ୍ଦୋଷ ଚାକର ଟୋକା ମୁଣ୍ଡରେ ସବୁ ଅଠା ବୋଲି ନିଜେ ସାଧୁ ହେବାର ଅଭିଳାଷଟାକୁ, ଖଂଜାଖଂଜି କରି ମିଛ ପାଚେରୀଟିଏ ଟେକିବାର ପ୍ରୟାସଟାକୁ ଟିକିଏ ଛାଡ଼ିଦେଲେ କେମିତି ହୁଅନ୍ତା ?

ହୁଅନ୍ତା ଯେ, ଖୁବ୍ ବଢ଼ିଆ ହୁଅନ୍ତା ! ଆମେ ନିଜେ ସବୁ ମିଠାଫଳ ଖାଇ ବାକି କଷାଯାକ ଖୁଆଇବାର ବିଚିତ୍ର ଆନନ୍ଦରୁ ନିଜକୁ ବଂଚିତ କରିବାକୁ ପଡ଼ନ୍ତା । କାରଣ ଆମର ଯୁକ୍ତି ହେଲା ଯେ ଆମେ ମନଇଚ୍ଛା ଆମକୁ ଯାହା ସୁହାଇଲା କରିବୁ, ଆମକୁ କେହି ବାରଣ କରିବେ ନାହିଁ । କିନ୍ତୁ ଫଳ ଭୋଗିଲା ବେଳକୁ ଆପଣମାନେ ଅଛନ୍ତି । ସେତେବେଳେ ମଧ୍ୟ ଆମକୁ ଯାହା ସୁହାଇବ ଆମେ ସେଭଳି ଫଳ ବାଛିନେବୁ; ଆମକୁ କେହି ବାରଣ କରିବେନାହିଁ । ନିଜପାଇ ଏହାଠାରୁ ଚମତ୍କାର ଯୁକ୍ତି ଆଉ କ'ଣ ଥାଇପାରେ ? ଏଇଟା କିନ୍ତୁ ଏଇଠି ସମ୍ଭବ ନୁହେଁ । ଏ ସୃଷ୍ଟିର ନିୟମରେ ସମ୍ଭବ ନୁହେଁ । ଏଇଠି ମଞ୍ଜିଟିଏ ପୋତିଲେ ଗଛଟିଏ ହେବ, କିନ୍ତୁ ଆମ୍ବଡ଼ା ପୋତିଲେ ଆମ୍ବ ହେବନାହିଁ ! ବିଛୁଆତି ଗଛଟିଏ ଲଗେଇଦେଇ ମଧୁମାଳତି ଆଶା କରୁଥିବାହିଁ ଆମ ଜୀବନର ବିଡ଼ମ୍ବନା । ପରିବାର ପୋଷିବାପାଇଁ ଡକାୟତି କରିବାକୁ କେହି ମନା କରୁନାହିଁ, କିନ୍ତୁ ମଣିଷ ମାରିବାର ଫଳ ରତ୍ନାକରହିଁ ଭୋଗିବ, ଆଉ କେହି ନୁହେଁ; ଏପରିକି ପ୍ରତିପାଳିତ ପୁଅଝିଅ ମାଇପ ମଧ୍ୟ ନୁହେଁ । ତେବେ ?.....ତେବେ ଆଉ କ'ଣ ? ଏ କାର୍ଯ୍ୟଟି ଛାଡ଼, ନହେଲେ ତା'ର ଫଳ ଭୋଗିବାକୁ ପ୍ରସ୍ତୁତ ହୋଇଯାଅ । ଅବହେଳାରେ ସୁଦ୍ଧା ଶୁଖିଲା ବଣରେ ନିଆଁ ଲଗେଇ ଦେଲେ ବହୁ ନିରୀହ ଜନ୍ତୁ ତ ପୋଡ଼ିଯିବେ, କଞ୍ଚା, ଜୀଅନ୍ତା ସହସ୍ରେ ଗଛ ଫଳ ଫୁଲ ସହିତ ପାଉଁଶ ହୋଇଯିବେ, କିନ୍ତୁ ସେଇ ବନାଗ୍ନି ଅତର୍କିତ ଆସି ଶେଷରେ ତୁମକୁ ଘେରିଯିବ ! ନିଆଁ ସବୁବେଳେ ନିଆଁ । ଖେଳିବାକୁ ମୁଁ ଆଙ୍ଗୁଠି ଦେଖେଇଥିଲି କହିଲେ ସେ ଛାଡ଼ିଦେବନାହିଁ । ଅବଶ୍ୟ ଝଲସେଇ ଦେବ । ସେହିପରି ପାଣି ସବୁବେଳେ ପାଣି । ଅର୍ଥାତ୍ ସେମାନଙ୍କର ସ୍ୱଧର୍ମ ଅବିଚଳିତ । ସେହିପରି ପ୍ରତ୍ୟେକ ମଣିଷର ଗୋଟାଏ ସ୍ୱଧର୍ମ ଅଛି ।

ସେଇଟା ପୁଣି କ'ଣ ? ସେଇଟା ଗୋଟାଏ ସୂତ୍ର । ଯେ କର୍ମ କ'ଣ ଜାଣିଛି, ସେ ଧର୍ମକୁ ମଧ୍ୟ ଜାଣିଛି । କିନ୍ତୁ ସ୍ମୃତିଶାସ୍ତ୍ରର ତାଲିକା ଯେତେ ଦୀର୍ଘ କଲେ ସୁଦ୍ଧା ସମସ୍ତଙ୍କ ପାଇଁ ସବୁକାଳର କର୍ମ ଏବଂ ଅକର୍ମ ନିର୍ଦ୍ଦିଷ୍ଟ ହୋଇ ପାରିବନାହିଁ । କର୍ମ କ'ଣ ଅକର୍ମ କ'ଣ, ଏଥିରେ ପରା ତ୍ରିକାଳଦ୍ରଷ୍ଟା ମଧ୍ୟ ବାଉଳା ହୋଇଛନ୍ତି । ଏଇଟା ଯେତେ ସହଜ ଦିଶେ ପ୍ରକୃତରେ ସେତେ ସହଜ ନୁହେଁ । ଆମ ପାଇଁ ଏଇଠି ଏବେ

ଯାହା କର୍ମ, ହୁଏତ ଆଉଠାଏ, ଆଉ କେବେ ତାହା ଅକର୍ମ । ଏଣୁ ଜଣେ କହିଛନ୍ତି ଯେ ପ୍ରାକ୍ ଭୌଗୋଳିକ । ଅର୍ଥାତ୍ ସ୍ଥାନରୁ ସ୍ଥାନକୁ, କାଳକୁ କାଳକୁ, ଏପରିକି ବ୍ୟକ୍ତିରୁ ବ୍ୟକ୍ତିକୁ ତାହା ବଦଳୁଥାଏ । ଆମେ ସବୁ ଯଦି ଗୋଟିଏ ମହାଶୂନ୍ୟରେ ଏକାଏକା ପହଁରୁଥା'ନ୍ତେ, ସେଇଠି କାର୍ଯ୍ୟକାରଣ ଆଉ ପ୍ରକାରେ ହୁଅନ୍ତା–ହୁଏତ ସରଳ କିନ୍ତୁ ଖୁବ୍ ଗହୀର ହୁଅନ୍ତା । ଆମେ କିନ୍ତୁ ଆଉ ସହସ୍ରେ ସାଙ୍ଗେ ରହିଥିବାରୁ ଏଠି କର୍ମଟିଏ ଏତେ ଜଟିଳ ଏବଂ ଏତେ ଗୁରୁତ୍ୱପୂର୍ଣ୍ଣ । ଆମେ ପରସ୍ପରକୁ ପ୍ରଭାବିତକରୁ । ଆମକୁ ଆମର ସାମୂହିକ ଇତିହାସ ପ୍ରଭାବିତକରେ । ଆମ ପୂର୍ବପୁରୁଷମାନଙ୍କର ସମସ୍ତ କର୍ମ ଏବଂ ଅକର୍ମ ଆମ ରକ୍ତପ୍ରବାହରେ ମିଶି ଆମକୁ ପ୍ରଭାବିତ କରୁଥାଏ । ଏକଦା ଲୋମଶ ବଣଜନ୍ତୁ ରୂପେ ବୁଲୁଥିବା ପ୍ରାଣୀମାନେ ଏବେ ମଧ୍ୟ ଆମ ମନ ଗହନଭିତରେ, ଆମ ଚେତନାରେ ବିଚରଣ କରୁଛନ୍ତି; ଆମକୁ ପ୍ରଭାବିତ କରୁଛନ୍ତି । ଏଣୁ ଆମେ ଯାହାକରୁ ସେଥିପାଇଁ କ'ଣ କେବଳ ଆମେ ଏବଂ ନିଛକ ଭାବରେ ଆମେହିଁ ଦାୟୀ ? ଅତଏବ ତା'ର ଫଳଭୋଗ କରିବାକୁ କ'ଣ ଆମେ, ଏବଂ କେବଳ ଆମେହିଁ ଦାୟୀ ?– ଆଉ କେହି ନୁହେଁ ? ଯଦି ଆମେ କର୍ମଫଳହିଁ ଭୋଗୁଥାଉ, ଆମର ସୁଖ ଦୁଃଖ ଯଦି କେବଳ ପରିଣାମ, ତେବେ କର୍ମ ଆରମ୍ଭ କରିନଥିବା ଅବୋଧ ଶିଶୁ କାହିଁକି ଉତ୍କଟ ମହାମାରି ରୋଗରେ ଚିତ୍କାର କରିକରି ମରିଯାଏ ?–ଏବଂ କାହିଁକି ଆମ ଆଖି ଆଗରେ ଆପଣଙ୍କ ତାଲିକାଭୁକ୍ତ ଅସଂଖ୍ୟ ଅପକର୍ମ କରିଥିବା ବ୍ୟକ୍ତି ପରମ ଐଶ୍ୱର୍ଯ୍ୟରେ ଲୋଟି ଲୋଟି କୌଣସି ଯନ୍ତ୍ରଣା ଜାଣିବା ପୂର୍ବରୁ ଏ ଦେହ ପଞ୍ଜୁରୀରୁ ଚୁପ୍‌ଚାପ୍ ଖସି ଯାଇପାରେ ?–କେଉଁଠି ଆମ ଜୀବନର ଗୁପ୍ତଚିତ୍ର ବିଚାର କରିବାକୁ ସେ ଚିତ୍ରଗୁପ୍ତ ମହାଶୟ ବସିଛନ୍ତି ?

ହଁ, ଆମେ ଅବଶ୍ୟ ମାନୁଛୁ ଯେ ମୋଟାମୋଟି ଆମକୁ ଏକାଠି ରହିବାକୁ ହେବ ଏବଂ ସେଥିପାଇଁ ଗୋଟାଏ ଆଚରଣ ପଦ୍ଧତି ପ୍ରୟୋଜନ ଅନୁସାରେ, ଯୁଗ ଅନୁସାରେ, ଦେଶ, ପରମ୍ପରା, ବିଶ୍ୱାସ ଅନୁସାରେ ମାନିନେବାକୁ ହେବ । ନହେଲେ ଏକାଠି ବଂଚିବା ତ ସମ୍ଭବ ହେବ ନାହିଁ, ଏକାଠି ମରିବା ମଧ୍ୟ ସମ୍ଭବ ହେବନି ।



# ଦୁଇଟି ବ୍ୟାଖ୍ୟା

ସତ୍ୟକାମ ଜାବାଳଙ୍କ ଉପାଖ୍ୟାନ ଚେତନାର ବିସ୍ତାର ଦୃଷ୍ଟିରୁ ଗଭୀର ତାତ୍ପର୍ଯ୍ୟପୂର୍ଣ୍ଣ । ଏଣୁ ବିଚାରଣୀୟ । ସତ୍ୟକାମଙ୍କର ମୌଳିକ ବୈଶିଷ୍ଟ୍ୟ ହେଲା ଯେ ସେ ସରଳ, ନିର୍ଭୀକ ଏବଂ ସ୍ପଷ୍ଟ । ଗୁରୁ ଗୌତମ ତାହା ଲକ୍ଷ୍ୟ କରି ତାଙ୍କୁ ଶିଷ୍ୟ ରୂପେ ଗ୍ରହଣ କଲେ । ତା'ପରେ ତାଙ୍କୁ ଚାରିଶହ ଶୀର୍ଣ୍ଣ ଗୋରୁ ଅର୍ପଣ କରି ଦାୟିତ୍ୱ ଦେଲେ ଯେ ନିଜ ପ୍ରୟାସରେ ତାଙ୍କୁ ରକ୍ଷା କରିବେ ଏବଂ ଏକ ସହସ୍ର ନ ହେବା ଯାଏଁ ଫେରିବେ ନାହିଁ । ସତ୍ୟକାମ ନିଷ୍ଠାର ସହିତ ଗୋ ରକ୍ଷା କଲେ । ଗୋ ଗୋଷ୍ଠ ଅଢ଼େଇ ଗୁଣ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସତ୍ୟକାମଙ୍କର ଶାରୀରିକ ଏବଂ ମାନସିକ ସାମର୍ଥ୍ୟ ମଧ୍ୟ ଅଢ଼େଇ ଗୁଣ ବୃଦ୍ଧି ପାଇଲା । ସେ ତେଣିକି ଜ୍ଞାନସମର୍ଥ ହେଲେ । ଏଭଳି ଅଭିବୃଦ୍ଧିରେ ଯେଉଁ ଶକ୍ତି କାର୍ଯ କରିଥିଲା ତା'ର ପ୍ରତୀକ ସ୍ୱରୂପ ବୃଷଭ ତାଙ୍କୁ ପ୍ରଥମେ ଜ୍ଞାନ ଦେବା ପାଇଁ ଆଗ୍ରହ ପ୍ରକାଶ କଲା । ସତ୍ୟକାମ ସମ୍ମତ ହେବାରୁ ସେ କହିଲା "ବ୍ରହ୍ମର ଏଇ ଗୋଟିଏ ପାଦକୁ ଅବଲମ୍ବନ କର । ଏହା ଚତୁଷ୍କଳ ଏବଂ ପ୍ରକାଶବାନ୍ । ଏହାର ଚାରୋଟି କଳା ହେଲା, ପୂର୍ବ ଦିକ୍ କଳା, ପଶ୍ଚିମ ଦିକ୍ କଳା, ଉତ୍ତର ଏବଂ ଦକ୍ଷିଣ ଦିକ୍ କଳା । ଯା ପରେ ତୁମକୁ ଅଗ୍ନି ଉପଦେଶ ଦେବେ ।"

ଏଇ ପ୍ରଥମ ପାଦଟି ହେଉଛି ଭୂମି ବିସ୍ତାର ବିଷୟରେ ସଚେତନତା ସତ୍ୟକାମ ଗୋ ଗୋଷ୍ଠକୁ ଅରଣ୍ୟରୁ ଅରଣ୍ୟକୁ ନେଉଥିଲା ବେଳେ ଅନେକ ଅଞ୍ଚଳ ଭ୍ରମିଥିବେ । ହଠାତ୍ ଦିନେ କୌଣସି ଗୋଟିଏ ଦିଗକୁ ଚାହିଁ ସେ ସ୍ମୃତିଚାରଣ କରିଥିବେ । ଦିଗ୍‌ବଳୟକୁ ଅତିକ୍ରମ କରି ଆଉ ଏକ ବିସ୍ତାର ତାଙ୍କୁ ଦିଶିଥିବ । ସେ ଆଶ୍ଚର୍ଯ୍ୟ ହୋଇ ଅନ୍ୟ ଦିଗ ମାନଙ୍କୁ ସେଭଳି ଚାହିଁଥିବେ । ପୃଥିବୀ ପୃଷ୍ଠରେ ଭୂମି ବିସ୍ତୃତ ହୋଇ ଯାଇଥିବ । ତାଙ୍କ ଚେତନାରେ ସେ ଦେଶାନ୍ତର ଏବଂ କାଳାନ୍ତରରେ ପ୍ରବେଶ କରିଥିବେ । ଏହାହିଁ ତାଙ୍କ ପାଇଁ ବ୍ରହ୍ମର ପ୍ରଥମ ପାଦ; ଜ୍ଞାନର ପ୍ରଥମ ପାଦ । ସେ ଯେତେବେଳେ ସଚେତନ ହୋଇ ତାତ୍‌କାଳିକତାକୁ ଫେରିଥିବେ, ଅର୍ଥାତ୍ Here and now' କୁ ଫେରିଥିବେ ତାଙ୍କ ଆଗରେ ହୁଏତ ସେଇ ବୃଷଭଟିକୁ ଠିଆ ରହିଥିବାର ଦେଖିଥିବେ ଯେ ତାଙ୍କ ଗୋଷ୍ଠ ବୃଦ୍ଧି କରିବାରେ ସାହାଯ୍ୟ କରିଛି । ସେ ଜ୍ଞାନ ତା' ହେଲେ ସେଇ ବୃଷଭ ପ୍ରଦାନ କଲା କି ? ତାଙ୍କୁ ହୁଏତ ଲାଗିଥିବ ବୃଷଭ କହୁଛି, "ସତ୍ୟକାମ !" ସେ ସମ୍ଭ୍ରମରେ ଉତ୍ତର ଦେଇଥିବ 'ଭଗବାନ୍' ସତ୍ୟକାମଙ୍କର ଚେତନାର ଏହା ହିଁ ଦିକ୍‌କାଳର

ଅଖଣ୍ଡ ବ୍ୟାପ୍ତିରେ କେବଳ ଭୂମି ବିସ୍ତାର ଅର୍ଥାତ୍ Time-space continume ରେ Horizontal ବିସ୍ତାର ।

ତା'ପର ଦିନ ରାତ୍ରିର ପ୍ରଥମ ପାଦରେ ସେ ଅଗ୍ନି ଜାଳି ପୂର୍ବ ଦିଗକୁ ମୁହଁ କରି ବସିଥିବେ । ପ୍ରଜ୍ଜଳିତ ଅଗ୍ନି ତାକୁ ସେହିପରି କହିବାର ସେ ଅନୁଭବ କରିଥିବେ 'ବ୍ରହ୍ମର ଦ୍ୱିତୀୟ ପାଦକୁ ଅବଲୋକନ କର । ତାହା ଚତୁଷ୍କଳ । ତାହା ଅନନ୍ତବାନ୍ । ତାର ଚାରିଟି କଳା ହେଲା, ପୃଥିବୀ, ସମୁଦ୍ର, ଦ୍ୟାବା ଏବଂ ଅନ୍ତରୀକ୍ଷ । ପୃଥିବୀର ଭୂମି-ବିସ୍ତାର ଯଥେଷ୍ଟ ନୁହେଁ । ସେଥିରେ ମହା ସମୁଦ୍ରର ବ୍ୟାପ୍ତି ମିଶୁଛି ଏବଂ ତାପରେ ସେ ବ୍ୟାପ୍ତିର ଉତଥାନ ଘଟୁଛି । ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱକୁ ଦ୍ୟାବା ଏବଂ ଅନ୍ତରୀକ୍ଷ । କାହିଁ କେଉଁ ଆଡ଼େ ଯାଇ ଲୀନ ହେଉଛି ଜଣା ପଡୁ ନାହିଁ । ତାର ଅନ୍ତ ନାହିଁ । ଏଣୁ ଏଇ ପାଦ ହେଉଛି ଅନନ୍ତବାନ୍ । Infinity ବିଷୟରେ ସଚେତନ ହୋଇଛନ୍ତି ସତ୍ୟକାମ । Time-space ଅର୍ଗଳକୁ ସେ ଅତିକ୍ରମ କରିଛନ୍ତି । ତାଙ୍କ ଚେତନାର ସୁବିପୁଳ ବ୍ୟାପ୍ତି ଘଟିଛି ।

ବ୍ରହ୍ମର ତୃତୀୟ ପାଦ ବିଷୟରେ କହୁଛି ହଂସ । ଏହା ଜ୍ୟୋତିଷ୍ମାନ୍ । ଏହାର ଚାରି କଳା ହେଲା ସୂର୍ଯ୍ୟ, ଚନ୍ଦ୍ରମା, ଅଗ୍ନି ଏବଂ ବିଦ୍ୟୁତ୍ । ଆଗରୁ ଯେଉଁ ବିପୁଳ ବିସ୍ତାର ବିଷୟରେ ସତ୍ୟକାମ ସଚେତନ ହୋଇଛନ୍ତି ତାହା ଜଡ଼ ବିସ୍ତାର ମାତ୍ର । ସେଥିରେ ଆଲୋକ ଏବଂ ଉତ୍ତାପ ନ ଆସିଲେ ପ୍ରାଣସଂଚାର ହୋଇ ପାରିବ ନାହିଁ । ଜ୍ୟୋତିଷ୍ମାନ୍ ପାଦରୁ ଯେଉଁ ଚାରି କଳା ବିଷୟରେ ହଂସ ଉପଦେଶ ଦେଉଛି ତାହା ଚିରକାଳ ଆଲୋକର ଉତ୍ସ । ହୁଏତ ତାହା ସୂର୍ଯ୍ୟ; ସ୍ୱୟଂ ଇନ୍ଧନ ରୂପେ ପ୍ରଜ୍ୱଳିତ ହେଉଥିବା ଉତ୍ତପ୍ତ ପିଣ୍ଡ, କିମ୍ବା ତାହା ଏକ ପ୍ରତିଫଳନ ଚନ୍ଦ୍ର ପରି, କିମ୍ବା ଅଗ୍ନି, କିମ୍ବା ବିଦ୍ୟୁତ୍ । ଏବେ ମଧ ଏଇ ଚାରିଟି ଆଲୋକ ଉତ୍ସକୁ ଆମେ ଅତିକ୍ରମ କରିନାହୁଁ । ଯଦି କରିଥାଉ ତେବେ ତାହା ଏଇ ମୌଳିକ ଉତ୍ସର ସାମାନ୍ୟ ରୂପାନ୍ତର ହୋଇଥିବ ।

ପ୍ରଥମେ ଅନ୍ଧାର ଥିଲା, ତା'ପରେ ଆସିଲା କାଳ ସମୁଦ୍ର ଏବଂ ସେଇ ଲହରୀରୁ ସୃଷ୍ଟି ହେଲା ସମ୍ବତ୍ସର ଏବଂ ଅହୋରାତ୍ର । ତା'ଉତ୍ତାରୁ ହିଁ ସୂର୍ଯ ଚନ୍ଦ୍ରାଦି ପୂର୍ବ ନିର୍ଦ୍ଧାରିତ ନିୟମାନୁସାରେ ସୃଷ୍ଟି ହେଲେ ।

ତତୋ ରାତ୍ରି ଅଜାୟତ, ତତଃ ସମୁଦ୍ରୋ ଅର୍ଣବଃ  
ସମୁଦ୍ରା ଦର୍ଣବାଦଧି ସମ୍ବତ୍ସରୋଽଜାୟତ  
ଅହୋରାତ୍ରିଣି ବ୍ୟଦଧତ୍ ବିଶ୍ୱସ୍ୟମିଶପେ ବସୀ  
ସୂର୍ଯ ଚନ୍ଦ୍ର ମଧ୍ୟେ ଧାତା ଯଥା ପୂର୍ବମ ଅକଳ୍ପୟନ  
ଦିବିସ ଚ ପୃଥିବୀଂ ଚୈବାନ୍ତରୀକ୍ଷ ମଥୋ ସ୍ୱଃ ।

ଆଲୋକ ବିହୀନ ବିଶ୍ୱ ଏକ-ଅନ୍ଧବିଶ୍ୱ । ଜ୍ୟୋତି ବିଷୟକ ସଚେତନ ଅନନ୍ତ ବ୍ୟାପ୍ତିକୁ ଆହୁରି ତାତ୍ପର୍ଯ୍ୟପୂର୍ଣ୍ଣ କରିଦେଲା ।

ଚତୁର୍ଥ ପାଦ ଗୋଟିଏ ଜଳଚର ପକ୍ଷୀ ଉପଦେଶ ଦେଲା । "ସତ୍ୟକାମ ଏଇ ଚତୁର୍ଥ ପାଦକୁ ଦେଖ । ଏହା ଆୟତନବାନ୍ । ଏହାର ଚାରିଟି କଳା ହେଲା, ପ୍ରାଣ, ଚକ୍ଷୁ, ଶ୍ରୋତ୍ର ଏବଂ ମନ । ପରିବ୍ୟାପ୍ତ ବିଶ୍ୱକୁ ଦୃଶ୍ୟ ଭାଗରେ ରଖି ଯେ ସ୍ୱୟଂ ଦ୍ରଷ୍ଟା ଭାଗକୁ ଅଧିକାର କଲେ । ଏ ସମସ୍ତ ଜ୍ଞାନର ଜ୍ଞାତା ପୁଣି କିଏ ? ଏଣୁ ଏଇ ଶେଷ ପାଦ ଆୟତନ (dimension) ନିର୍ଦ୍ଦେଶ କରୁଛି ।

ସେ ପ୍ରଥମେ ପ୍ରାଣବାନ୍ ହୋଇଥିବ ଜଡ଼ ନୁହେଁ । ତାର ଚକ୍ଷୁ, କର୍ଣ୍ଣ ନାସା ସକ୍ରିୟ ରହିଥିବେ ଏବଂ ତାକୁ ବିନିଯୋଗ କରିବାକୁ ସମୃଦ୍ଧ ଏବଂ ସମର୍ଥ ମନଟିଏ ଥିବ । ଏହା ନହେଲେ ଅନନ୍ତର ଅନୁଭବ ବ୍ୟାପ୍ତିର ଅନୁଭବ କିଏ ଗ୍ରହଣ କରିବ? ଇନ୍ଦ୍ରିୟମାନଙ୍କୁ ବ୍ୟବହାର କରି ଅତିକ୍ରମ କରିବ କିଏ ? ସେଥିପାଇଁ ସେଇ ସାକ୍ଷୀ ପୁରୁଷର କଳ୍ପନା ।

ଏଇ ଚାରି ପାଦକୁ ଏକତ୍ର କରି ପାରିଲେ ଯେଉଁ ସମାହାର ହେବ ତାହା ଦୃଶ୍ୟ ନୁହେଁ, କି ଦ୍ରଷ୍ଟା ନୁହେଁ । ତାହା କିମ୍ଭୂତ-ତାହାହିଁ ବ୍ରହ୍ମ ।

## (ଦୁଇ)

ନରେନ୍ ପଚାରିଲେ, "ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି ?

ରାମ ଉତ୍ତର ଦେଲେ, "ହଁ, ଦେଖିଛି ।"

ଉତ୍ତରରେ ଦ୍ୱିଧା ନାହିଁ, ସଙ୍କୋଚ ନାହିଁ, ସ୍ପର୍ଦ୍ଧା ନାହିଁ; ଅତି ସାଧାରଣ ସାମାନ୍ୟ ନିରୁଦ୍‌ବିଗ୍ନ ଉତ୍ତର । କିନ୍ତୁ ଜଗତବାସୀଙ୍କୁ ଚମତ୍କୃତ କଲା ଭଳି, ବିସ୍ମୟ ବିମୂଢ଼ ଏବଂ ଅଧିକାଂଶ କ୍ଷେତ୍ରରେ ସଂଶୟ ଓ ଅବିଶ୍ୱାସରେ ତାକୁ ଅଗ୍ରାହ୍ୟ କଲା ଭଳି ଉତ୍ତର ।

ଆଚ୍ଛା, ସେ ଯଦି ଈଶ୍ୱରଙ୍କୁ ଦେଖିଛନ୍ତି, କେମିତି ଦେଖିଛନ୍ତି ? ଏଇ ଆଖିରେ ଆମେ ତୁମେ ଦେଖିଲା ପରି ନା' ଆଉ କେମିତି ଅନ୍ୟ ପ୍ରକାର ଦେଖିଛନ୍ତି ? ସେ କ'ଣ ତା'ହେଲେ ଦର୍ଶନେନ୍ଦ୍ରିୟର ବିଷୟୀଭୂତ, ଏଣୁ ସାକାର ଏବଂ ରୂପାକୃତି ବିଶିଷ୍ଟ ? ସେ କେମିତି ଦେଖିବାକୁ ? ଶଂଖ ଚକ୍ର ଗଦା ପଦ୍ମଧାରୀ, ପଦ୍ମପଳାଶ ନେତ୍ର ହାର କେୟୂର ମଣ୍ଡିତ, ନବନୀରଦ କାନ୍ତି ?....ନା, ଆଉ କିଛି ?

ଅତି ସହଜ ସରଳ ଅନାୟାସ ଉତ୍ତରଟିଏ ଦେଲେ ପରମହଂସ କିନ୍ତୁ ଆମେ ପଡ଼ିଲୁ ହଇରାଣରେ । ଅବିଶ୍ୱାସ କରି ହେଉନାହିଁ ସତ୍‌ପୁରୁଷଙ୍କୁ, ଏଣେ କିନ୍ତୁ ବୁଝି ହେଉ ନାହିଁ ସେ କେମିତି ଦେଖିଲେ ! ଆମ ଭିତରେ କଥା ପଡ଼ିଲା ଏହିପରି-

"ଆଚ୍ଛା ଭାଇ, ଏ ଯେଉଁ ଅକଳନୀୟ ମହାକାଶ ଗର୍ଭରେ କୋଟି କୋଟି ତାରକା ପିଣ୍ଡ ଆମ ଆଖିକୁ ଦେଖା ଯାଉଛନ୍ତି, ଏମାନଙ୍କ ସ୍ରଷ୍ଟା କିଏ ? ଧୂଳିକଣାବତ୍ ପୃଥିବୀରେ ମଣିଷ ନାମକ ଏକ କ୍ଷଣସ୍ଥାୟୀ ଜୀବର ଆଖିରେ ଜାଣିବା ଏବଂ ଅବଧାରଣ କରି ପାରିଲା ଭଳି ରୂପ ପରିଗ୍ରହ କରି ପାରନ୍ତି ? ଯଦି ସେ ଏଇଠି ପରମହଂସଙ୍କୁ ଦେଖା ଯାଉଛନ୍ତି ଏବଂ ସେଇ କାରଣରୁ ଉପସ୍ଥିତ ଅଛନ୍ତି। ତା'ହେଲେ ଏତେ ବଡ଼ ବିଶ୍ୱରେ ସେ କ'ଣ ସେଇ କେତେ ମୁହୂର୍ତ୍ତ ଅନୁପସ୍ଥିତ ରହୁଛନ୍ତି ?

ନା, କଥାଟା ବୋଧହୁଏ ଅନ୍ୟ ପ୍ରକାର । ସେ ଆଦୌ ଏ ଦୃଶ୍ୟମାନ ସତ୍ତାଠାରୁ ଭିନ୍ନ ନୁହନ୍ତି । ସେ ହିଁ ନିଜକୁ ନିଜେ ଏପରି ବିପୁଳ ଆୟତନରେ ଗଢ଼ିଛନ୍ତି, ବିକୀର୍ଣ୍ଣ ହୋଇ ରହିଛନ୍ତି । ଇଚ୍ଛାରୁ ଶକ୍ତି, ଶକ୍ତିରୁ ଭୂତସକଳ ଉତ୍ପନ୍ନ ହୋଇ ସେଇ ଶକ୍ତି ବଳରେ ଜଗତ ପ୍ରବାହରେ ଏ ସମସ୍ତ ଉଦୟ ଅସ୍ତ ହେଉଛନ୍ତି। ସେ ସ୍ୱୟଂ ନିମିତ୍ତ ଏବଂ ଉପାଦାନ କାରଣ । ଏପରି ଶାସ୍ତ୍ର କହୁଛନ୍ତି ଋଷି କହୁଛନ୍ତି । ରେଣୁ ରେଣୁରେ ସେ ହିଁ ବିଦ୍ୟମାନ ।

କିନ୍ତୁ ତାକୁ କେମିତି ଅନୁଭବ କରିହେଉ ନାହିଁ ତ ! ଆମେ ଚାହୁଁଛୁ ପ୍ରତ୍ୟକ୍ଷ କରିବାକୁ, ଆମ ବିଚାର ଆୟତନ ଭିତରେ ଧରା ଦେବାକୁ । ମୋଟ ଉପରେ ଆମେ ଅପ୍ରମେୟର ପ୍ରମାଣ ଚାହୁଁଛୁ । ସେ କେଉଁ ଗୁମ୍ଫା ଭିତରେ ଉତ୍ତମ ରହସ୍ୟ ରୂପେ ଲୁଚି ରହିଛନ୍ତି ବୋଲି କହିଲେ ସୁଦ୍ଧା ଖୋଜିବା ଛାଡ଼ି ପାରୁ ନାହୁଁ । କେମିତି ଟିକିଏ ଈଶ୍ୱରଙ୍କୁ ଦେଖି ଦିଅନ୍ତେ କି ।

ଦୁଇଟି ବ୍ୟକ୍ତିଙ୍କ କଥା ଏଠି କୁହାଯାଉ :

ଜଣେ କହୁଛି, "ହେଲା, ଜଳ ସ୍ଥଳ ଆକାଶ ତୁମେ ହିଁ ପରିପୂର୍ଣ୍ଣ ହୋଇ ରହିଛ । ମୋ ଭିତର, ବାହାର ପ୍ରତିଟି ରକ୍ତକଣିକା, ରକ୍ତ ପ୍ରବାହ, ଚିନ୍ତା କଳ୍ପନା ଏ ସମସ୍ତକୁ ଆଚ୍ଛନ୍ନ କରି ତୁମେ ହିଁ ବିଦ୍ୟମାନ । ତଥାପି ମୋତେ ପୁଣି ସ୍ୱତନ୍ତ୍ର ସତ୍ତାଟିଏ ଦେଇ ତଦ୍‌ବିଷୟକ ବୁଦ୍ଧି ମଧ୍ୟ ପ୍ରଦାନ କରିଛ । ମୁଁ ଚିନ୍ତା କରି ପାରୁଛି ମୋର ଚିନ୍ତନୀୟ ସହସ୍ରେ ବିଷୟ ଭିତରେ ତୁମେ ହୁଏତ ଏକ । ଏ ସହସ୍ରେ ମଧ୍ୟ ତୁମେ । ତଥାପି ମୁଁ ଏତେ ସ୍ଥିରଚେତା ନୁହେଁ ଏ ସମସ୍ତ ଭିତରେ ତୁମକୁ ଦେଖି ଦେଇ ନୀରବ ହୋଇଯିବ । ମୁଁ ଚାହେଁ ସେଇଠି ପହଞ୍ଚିବାକୁ । ବାଟ କ'ଣ ? କେମିତି ତୁମକୁ ଚିନ୍ତା କରିବି–"କେଷୁ କେଷୁଚ ଭାବେଷୁ ଚିନ୍ତ୍ୟୋଽସି ଭଗବାନ ମୟା ।" ତା'ର ଉତ୍ତରରେ ତାକୁ କେବଳ ଶୀର୍ଷ ବିନ୍ଦୁଗୁଡ଼ିକ ଦେଖେଇ ଦେଇଛନ୍ତି । ମାସମାନଙ୍କରେ ମାର୍ଗଶୀର, ବୃକ୍ଷମାନଙ୍କରେ ଅଶ୍ୱତଥ, ପର୍ବତମାନଙ୍କରେ ହିମାଳୟ । ଶୀର୍ଷମାନଙ୍କରେ ମୋତେ ଖୋଜ ବୋଲି ସୂଚନା ଦେଇଛନ୍ତି । ସେ ଖୋଜିଛି । ଆମେ ବି ଏତେ ସହସ୍ର ବର୍ଷ

ଧରି ଖୋଜି ଚାଲିଛୁ । ଶିଖ ଅନେକ ଏଣୁ ରୂପ ମଧ ଅନେକ । ଏ ଅନେକତ୍ୱରୁ ମୁକୁଳି ହେଉନାହିଁ । ତା' ଭିତରେ ଅଖଣ୍ଡୈକ ଏକକ ସତ୍ତାକୁ ଦେଖି ହେଉ ନାହିଁ ।

ଆଉ ଜଣେ ପଚାରିଲେ, "ହେ ଯାଜ୍ଞବଳକ୍ୟ । ଈଶ୍ୱରଙ୍କ ପ୍ରମାଣ କଣ ? ସେ ଆକାଶକୁ ନିର୍ଦ୍ଦେଶ କରି କହୁଛନ୍ତି, "ତସ୍ୟ ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି, ସୂତ ଚନ୍ଦ୍ରମସୌ ବିଧୃତୌ ତିଷ୍ଠତଃ ।" ପୁଣି ଧରିତ୍ରୀକୁ ଦେଖେଇ କହୁଛନ୍ତି "ତସ୍ୟ ଅକ୍ଷରସ୍ୟ ପ୍ରଶାସନେ ଗତା । ପ୍ରଚ୍ୟୋନ୍ୟା ନଦ୍ୟଃ ସ୍ୟନ୍ଦ୍ୟନ୍ତେ ।" ଏଇ ପ୍ରମାଣ । ମହାଶୂନ୍ୟରେ ବର୍ତ୍ତୁଳ ବସ୍ତୁପିଣ୍ଡମାନେ ଝୁଲି ରହିଛନ୍ତି; ଗଙ୍ଗାଦି ସରିତ୍‌ମାନେ ନିମ୍ନ ମୁଖରେ ପ୍ରବାହିତ ହେଉଛନ୍ତି । ଅଗ୍ନି ଦାହ କରୁଛି । ପବନ ଶୀତଳ କରୁଛି । ଯେ ଯାହା ଧର୍ମ ଆଚରଣ ମାନି ଚଳୁଛନ୍ତି । ଏ ସମସ୍ତଙ୍କୁ କିଏ ପ୍ରଶାସିତ କରୁଛି ?

ଏ କିମ୍ଭୂତ ବିଶ୍ୱକୁ ଆଶ୍ଚର୍ଯ୍ୟବତ ଦେଖ । ଚେତନାର ଚକ୍ଷୁରେ ତାକୁ ବିଦ୍ୟୁତ୍‌ର ଝଲକ ପରି ଏକତ୍ର ଏକୀଭୂତ ଦେଖ । ସେଇ ବୋଧ ହୁଏ ଈଶ୍ୱରକୁ ଦେଖିବା । କିନ୍ତୁ ପରମହଂସ ତାକୁ ପ୍ରତି ମୁହୂର୍ତ୍ତରେ ଦେଶକାଳ ପାତ୍ର ନିର୍ବିଶେଷରେ ଅଖଣ୍ଡୈକ ପ୍ରତ୍ୟକ୍ଷ କରୁଥିଲେ । ମହାପୁରୁଷଙ୍କୁ ବୁଝିବା କଠିନ । ତାକୁ ବୁଝିଗଲେ ବୋଧହୁଏ ଈଶ୍ୱରକୁ ବୁଝି ହେବ ।



# ଭଲ ଗପର ଚିହ୍ନଟ

ଏମିତି ଯେ ଯାହା କଷଟିରେ ଗାରକାଟି ସୁନା ପରଖ କରନ୍ତି । ଭଣା ଅଧିକ ଶୁଦ୍ଧତାକୁ ନେଇ ସନ୍ତୁଷ୍ଟ ରହିବାକୁ ପଡ଼େ । ପୃଥିବୀର ଏକମାତ୍ର ଶ୍ରେଷ୍ଠ ଗଳ୍ପ ପାଇଁ କଷଟି ଅପେକ୍ଷା କରିଥାଏ । ସେ ଗାର ପଡ଼େ ନାହିଁ, କାରଣ ସେ ଗଳ୍ପ ଲେଖାହୋଇ ନାହିଁ, କିମ୍ବା ଲେଖା ହୋଇପାରିବ ନାହିଁ, ପ୍ରବହମାନତାରେ ଶେଷକଥା କିମ୍ବା ଶ୍ରେଷ୍ଠ କଥା ନାହିଁ ।

'ନାର୍ସିସସ୍' ଭଳି ନିଜକୁ ନିଜେହିଁ ଭଲ ପାଇବା ମଣିଷର ବିବଶତା । ସମ୍ପୂର୍ଣ୍ଣ ଅପରକୁ ଜାଣିବା କିମ୍ବା ଭଲ ପାଇବା ତା'ର ସାଧ୍ୟାତୀତ । ତଥାପି ସେଇ ଆଡ଼କୁ ଓହଟି ହେବା, ତାକୁ ଥରେ ଛୁଇଁ ଦେବାକୁ କଳ୍ପ କଳ୍ପ ଧରି ତା'ର ପ୍ରୟାସ ସାଧନା ଓ ତପସ୍ୟା । ଘୁଞ୍ଚିଯାଉଥିବା ପଦ୍ମ ପରି 'ଅପର' ସବୁବେଳେ ଅପହଁଚ, ଅଥଚ ଦୁର୍ବାର ଆକର୍ଷଣମୟ । ତାକୁ ପାଇବା ନିଶାରେ ମଣିଷ ନିଜର ହିଁ ପ୍ରତିବିମ୍ବଟିକୁ ପାଏ ଏବଂ ତାକୁ ଅପର ଭାବି ସବୁ ଭଲ ପାଇବା ତା'ଉପରେ ଅଜାଡ଼ି ଦିଏ । ଦିନେ ସେ ଆବିଷ୍କାର କରେ ଯେ ଯାହାକୁ ସେ ଫୁଲଚନ୍ଦନରେ ଚର୍ଚିତ କରି ଆସିଛି, ସେ ଦର୍ପଣ ବାଡ଼ରେ ପ୍ରତିଫଳିତ ନିଜର ବିମ୍ବଟିଏ ମାତ୍ର ।

ଏହିପରି ଯେଉଁଠି ଯେଉଁଠି ମୁଁ ମୋର ପ୍ରତିଫଳନ ଦେଖିବି, ସେଇଠି ମୋ ଅଜ୍ଞାତସାରରେ ଭଲ ପାଇଯିବି । ଏ ବିଧାନରୁ ଉଦ୍ଧାର ନାହିଁ । ଏଣୁ ଗଳ୍ପଟିଏ ପଢ଼ିଲେ ଯେତେ ପରିମାଣରେ ମୋର ନିଜର ସ୍ୱପ୍ନ ଅଭିରୁଚି, ମୂଲ୍ୟ, ମୋ ସହିତ ଯୋଡ଼ି ହୋଇଥିବା ଦୃଶ୍ୟ ହେଉ ଅଦୃଶ୍ୟ ହେଉ, ଯାବତୀୟ ସୁଖ ଦୁଃଖର ଧାରଣା, ବଞ୍ଚିବା, ମରିବା, କଥାବାର୍ତ୍ତା, ଶବ୍ଦ, ହାବଭାବ ଚଳଣି, ରୂପାୟିତ ହୋଇଥିବାର ଅନୁଭବ କରିବି, ମୁଁ ସେତିକି ତାକୁ ଭଲ ପାଇଯିବି । ଏହାର ମାତ୍ରାଭେଦରେ ଭଳି ଭଳି ଗଳ୍ପ, ଭଳି ଭଳି ପୃଥିବୀ ।

ଗୋଟାଏ ପ୍ରକାର ଗଳ୍ପରେ ମୋତେ ଲାଗେ ଯେ ଅବିକଳ ମୋରି କଥାଟାକୁ ସେ ଆଉ ଜଣକ କେମିତି କେଜାଣି ଲେଖିଦେଲା । ମୁଁ ତ' ଠିକ୍ ଏଇଭଳି ଭାବିଥିଲି ଲେଖି ପାରୁଥିଲେ ଠିକ୍ ଏମିତି ଲେଖିଥାନ୍ତି । କେତେ ସତ କଥା ଏସବୁ କେତେ ଚମତ୍କାର । ପୁରୁଣା ମୁହଁଟାକୁ ଆଉ ଥରେ ଦେଖିଲା ପରି ଲାଗେ । ମୋ ଜୀବନର

ଗୋଟାଏ ପୃଷ୍ଠା ପୁଣି ଲେଉଟିଯାଏ ସତେବା ! ସେ ଲେଖକ ଏବଂ ମୁଁ ଦୁଇଟି ସର୍ବତୋଭାବେ ସମାନ ସମକୋଣୀ ତ୍ରିଭୁଜ ପରି ପରସ୍ପର ସାମ୍ନାରେ ଠିଆ ରହୁ । ଯେ କୌଣସି ମୁହୂର୍ତ୍ତରେ ସ୍ଥାନ ବଦଳ ହୋଇ ଯାଇ ପାରେ ବା ଉଭୟେ ଏକାକାର ହୋଇଯାଇ ପାରନ୍ତି ।

ଆଉ ପ୍ରକାରେ ଗପରେ ପରାସ୍ତ ହେଲା ପରି ଲାଗେ, ଅଥଚ ଭାରି ଭଲ ଲାଗେ। ବାପ୍‌ରେ ବାପ୍, କି ସାଂଘାତିକ ହେଇଚି ଗପଟା ! ମୁଁ ଏମିତି କଦାପି ଲେଖି ପାରି ନଥାନ୍ତି । ମୋର ଭିତରର ଅଜ୍ଞାତ ଗହୀରରୁ ମୁଠାଏ ମୁକ୍ତା ତୋଳି ଆଣି ସତେବା ସେ ମୋ ଆଖି ଆଗରେ ଆଞ୍ଜୁଳା ମେଲି ଦିଏ । ମୁଁ ବିସ୍ମିତ, ହତବାକ୍ ଅଥଚ ଉଛୁଳି ପଡ଼ିଲା ପରି ଅନୁଭବ କରେ । ଜଣାଯାଏ ଯେ ଏଇଟା ମଧ୍ୟ ମୋ ବାକ୍ୟର ସତ୍ୟ । ମୁଁ ଯାକୁ ସୂକ୍ଷ୍ମ ରୂପରେ ଅନୁଭବ କରିଛି, ତାର ସ୍ପର୍ଶ ବାରିଛି, କିନ୍ତୁ ଠିକ୍ ଠଉରେଇ ପାରିନାହିଁ । ତାକୁ କଥାରେ କହି ପାରି ନାହିଁ । ହୁଏତ ସେଇଟା ମୋ ସାମର୍ଥ୍ୟ ବାହାରେ, କିନ୍ତୁ ମୁଁ ତାକୁ ଖୁବ୍ ଚିହ୍ନେ । ଏ ଗପଟା କିନ୍ତୁ ତାକୁ ଆଣି ମୋ ହାତରେ ଧରେଇ ଦେଇଚି ।

ତୃତୀୟ ଢଙ୍ଗର ଗପ ପଢ଼ିଲେ କହିବାକୁ ଇଚ୍ଛା ହୁଏ "ହେଲା, ଯେ...... କିନ୍ତୁ ଆଉ ଟିକିଏ କ'ଣ ହେଇ ପାରିଥାନ୍ତା । ଅତୃପ୍ତ ଲାଗେ । କ'ଣଟାଏର ଅଭାବ ଥିଲା ପରି ଲାଗେ; କିନ୍ତୁ ମୋଟ ଉପରେ ଭଲ ବି ଲାଗେ । ଏଠି ଷୋଳଅଣା ଭରପୂର ଲାଗେ ନାହିଁ । ତଥାପି ସ୍ୱାଦ ମନ୍ଦ ନୁହେଁ । ହଁ, ଗୋଟାଏ ପ୍ରକାର ହେଇଚି, କିନ୍ତୁ ସେମିତି କିଛି ପ୍ରେମରେ ପଡ଼ିଗଲା ପରି ଗଳ୍ପ ନୁହେଁ ।

ଆଉ ଗୁଡ଼ାଏ ଗଳ୍ପ ପଢ଼ିଲେ ମୁଥ ଖାଇବା ପରି ଲାଗେ । ସେଥିରୁ ଯଥାଶୀଘ୍ର ଥୋମଣା ଟେକି ନେବାକୁ ଇଚ୍ଛା ହୁଏ । ନାଃ, ଏଇଟା ମୋ ଲାଏକ୍ ଜିନିଷ ନୁହେଁ । ଯେ ପଢ଼ିବ ପଢୁଥାଉ, ମୁଁ ପାରିବି ନାହିଁ । ଧେତ୍, ଫାଲ୍‌ତୁ କଥା ଗୁଡ଼ାଏ ଗପୁଚି ବୁଡ଼୍‌ବକ୍ କାହାଁକା । କୋଉକଥା ନେଇ କୋଉଁଠି ଥୋଇଲାଣି । ଅଗଡ଼ମ୍ ବଗଡ଼ମ୍ ବକ୍‌ବାଜି କ'ଣ ଗପ ? ଲେଖକକୁ ମିଶେଇ ଆଉ ସଂସାର ଯାକ ତାକୁ ପଢ଼ନ୍ତୁ; ମୋର ସେଥିରେ କିଛି ଯାଏ ଆସେ ନାହିଁ । ଏଥିରେ ମୋର ଧାତୁ ଅମେଳ ହେଉଛି । ଏଇଟା ମୋ ପରି ଅଚଳ ଗେଙ୍ଗୁଟି !

ବିଭିନ୍ନ ନାୟିକା ଭଳି ଏ ଗଳ୍ପଗୁଡ଼ିକୁ ସାମର୍ଥ୍ୟ, ସ୍ୱାଧୀନଭର୍ତ୍ତୃକା, ଖଣ୍ଡିତା ବୋଲି ଅଭିହିତ କରାଯାଇପାରେ, କାରଣ ଭଲ ପାଇବା ଦୃଷ୍ଟିରୁ ହିଁ କଥାଟାକୁ ବିଚାର କରାଯାଇ ମନର ଚତୁଷ୍କୋଣକୁ ଭରପୂର କରିଦିଏ, ଯାହାକୁ ବାରମ୍ୱାର ଭୋଗ କରିବାକୁ ଇଚ୍ଛା ହୁଏ ସମୟ ସ୍ରୋତରେ ଘୁଞ୍ଚିଗଲେ ସୁଦ୍ଧା ଯାହାକୁ ବାରମ୍ୱାର ଲେଉଟି ଚାହିଁବାକୁ

ମନ ହେଉଥାଏ ସେଇଟା ହିଁ ଭଲ ଗପ । ସେଥିରେ କ'ଣ ଅଛି, ନ ଅଛି, ତା'ର ଅବୟବର ବିନ୍ୟାସ, ତା'ର ବର୍ଣ୍ଣ ରୂପ, ବ୍ୟକ୍ତିତ୍ୱ ସବୁର ଟିକିନିଖି ତାଲିକା କରିବା ସମ୍ଭବ ନୁହେଁ, ସମୀଚୀନ ବି ନୁହେଁ । ତା'ର ସବୁ ଭଲ ଲାଗେ । ତ୍ରୁଟି ବିଚ୍ୟୁତି ମଧ୍ୟ । ଖୁଣ ସବୁ ଗୁଣ ପରି ଦେଖାଯାନ୍ତି । ଆଖିରେ ପ୍ରେମର ପରଳ ମାଡ଼ିଗଲେ ଯାହା ହୁଏ ପ୍ରାୟ ସେଇଭଳି । ଏଇଟା ହିଁ ବୋଧେ ମୋ ପ୍ରାଣର ଦୋସର; ମୋର ସମ୍ପୂର୍ଣ୍ଣ, ଅନାଚ୍ଛାଦିତ ପ୍ରତିବିମ୍ବ । ଏଣୁ ମୋର ସମସ୍ତ ଭଲ ପାଇବାର ଅଧିକାରୀ ।

ମୋ ସାଙ୍ଗେ ଅମେଳ ହେଲେ ମୁଁ ତ' ସଂସାରକୁ ଛାଡ଼ି ଦେଇପାରେ, ଏପରିକି ଈଶ୍ୱରଙ୍କୁ ବି । ତେବେ ସେଇ କାରଣରୁ ମୁଁ ଯଦି କୌଣସି ଗଳ୍ପ ବା ଗାଳ୍ପିକକୁ ହୁଡ଼ିଯାଏ, ଖୁବ୍ ବେଶୀ ଭୁଲ କଲି ବୋଲି କୁହାଯାଇ ପାରିବ କି ? ଅନ୍ୟପକ୍ଷେ ମୁଁ ଯାହାକୁ ଭଲ ପାଇଛି, ତାକୁ ଆପଣାର କରିଛି । ତାକୁ ଲାଳନ କରିଛି । ତା ପାଇଁ ଝଣ୍ଡା ଟେକିଛି, ଓକିଲାତି କରିଛି । ବୁଝେଇଚି ବାରମ୍ବାର । କିନ୍ତୁ ବୁଝିବା ଲୋକ କାହାନ୍ତି ? ମୋତେ ଭଲ ପାଇବା ଲୋକ କେତେ ? ମୋତେ ଭଲ ନ ପାଇଲେ କ'ଣ ମୋର ମନ ପସନ୍ଦ ଗପଟି କିଏ ଭଲପାଇ ପାରିବ !

ହଁ, ପାରିବ। ବେଳେବେଳେ ମୋର ପ୍ରବର୍ତ୍ତଣାକୁ ଅପେକ୍ଷା ନ ରଖି, ସ୍ୱତନ୍ତ୍ର ଭାବରେ ବହୁ ପାଠକ ସେଇ ଗୋଟିଏ ଗପକୁ ଭଲ ପାଇଥାନ୍ତି। ସମସ୍ତଙ୍କ ପାଇଁ ସେଥିରେ କ'ଣ ଗୋଟାଏ ଆବେଦନ ଥାଏ ବୋଲି ନା' କଣ। ସେଥିରେ ହୁଏତ ଏପରି ଏକ ସାର୍ବଜନୀନ, ସର୍ବକାଳୀନ ମାନବୀୟ ଅନୁଭବଟାଏ ଅଛି, ଯାହା ସ୍ଥାନ କାଳ ପାତ୍ର ନିର୍ବିଶେଷରେ ଅମ୍ଳାନ ରହିପାରେ। ଯାହାର ବାରମ୍ବାର ପୁନର୍ବିନ୍ୟାସ ଘଟୁଥାଏ, ନବୀକରଣ ହେଉଥାଏ, ଅର୍ଥାତ୍ ଯାହାର ସତ୍ୟତା, ସ୍ୱତଃ ପ୍ରମାଣ ଭଳି କାଳକୁ ଉତ୍ତୀର୍ଣ୍ଣ ହେଉଥାଏ। ଯଥା ଧରାଯାଉ ଚେକଫଙ୍କ ଗାଡ଼ିବାଲା, ଗୋଗୋଲଙ୍କ ଘୋଡ଼ା, ଟଲଷ୍ଟୟଙ୍କ ମୋଚି, ରବି ଠାକୁରଙ୍କ କାବୁଲି ଇତ୍ୟାଦି। ଏଗୁଡ଼ିକ ଏବଂ ଆଉ ଅଳ୍ପ କେତେ ଗଳ୍ପ ମହାନ୍ ଗଳ୍ପ। ସବୁ ଭଲ ଗଳ୍ପ ମହାନ୍ ହେବାର କୌଣସି କାରଣ ନାହିଁ।

ଅନୁଭୂମିରୁ ଉଭ୍ତଭୂମିକୁ ଓହ୍ଲେଇ ଆସିଲା ବେଳେ ଭାଷା ଅନିର୍ବାର୍ଯ୍ୟ ମନେ ହେଉଥିଲେ ସୁଦ୍ଧା, ସେଇଟା ଗୋଟାଏ ନିଅଣ୍ଟିଆ ମାଧ୍ୟମ । ଏଣୁ ତାକୁ ପ୍ରସାରିତ, ପ୍ରଜ୍ୱଳିତ କରିବା ପାଇଁ ଯାଦୁକରୀ ବିଦ୍ୟାର ପ୍ରୟୋଜନ ହୁଏ । ଭାଷାହିଁ ସର୍ବ ପ୍ରଥମେ ଗଳ୍ପର ପରିଚୟ ଦିଏ । ଏଣୁ ଭଲ ଗଳ୍ପର ପ୍ରଥମ ଲକ୍ଷଣ ବୋଧ ହୁଏ ତା'ର ପଠନୀୟତା । ଚମତ୍କାର ଭାବରେ କଥାଟିକୁ କୁହାଯାଇଥିବ । ପଢ଼ିଗଲେ ଝୁଣ୍ଟିଲା ପରି ଲାଗୁନଥିବ । କିନ୍ତୁ ଶବ୍ଦମାନେ ଇଟାଧାଡ଼ି ପରି ନିର୍ଜୀବ ବୋଧ ହେଉ ନଥିବେ ।

ଶବ୍ଦଟିଏ ଶବ୍ଦ ମାତ୍ର ନ ହୋଇ, ପ୍ରୟୋଗରେ, ବିନ୍ୟାସରେ ଫୁଲ ଫୁଟି ଯାଉଥିବ। ଦ୍ୱିତୀୟ ଲକ୍ଷଣ ହେଲା ଅନୁଭବ୍ୟତା। କିପରି କୁହାଗଲା ଅପେକ୍ଷା କ'ଣ କୁହାଗଲା ହୁଏତ ବେଶୀ ଗୁରୁତ୍ୱପୂର୍ଣ୍ଣ। ସେଥିରେ ସ୍ଥାନ କାଳ ପାତ୍ର ଘଟଣା, ପରିସ୍ଥିତି, ମୋଟ ଉପରେ ଜୀବନ ଓହ୍ଲେଇ ଆସେ ଗୋଟିଏ ମଞ୍ଚ ଉପରକୁ। ବେଳବେଳେ ଖାଲି ନୀରବ ଗଭୀର ରାତିଟିଏ ମଧ୍ୟ ଓହ୍ଲେଇ ଆସିପାରେ। ଗୋଟିଏ ଥମ୍ ଥମ୍ ବେଳା, ଗୋଟିଏ ସମ୍ଭାବନା, ଗୋଟିଏ ଚିନ୍ତା ବା ଚେତନା ପ୍ରବାହ ମଧ୍ୟ ମଞ୍ଚ ଅଧିକାର କରିପାରନ୍ତି। ଯା ଭିତରେ ମନ ପ୍ରାଣ ସିଞ୍ଚିତ ହୁଅନ୍ତି। ଅନୁଭବଟିଏ ହୃଦୟରୁ ହୃଦୟାନ୍ତରକୁ ସଞ୍ଚରି ଯାଏ। ପାଠକକୁ ପାଛୋଟି ନିଆଯାଏ ଆଉ ଗୋଟିଏ ରାଜ୍ୟକୁ। ସେଇଠି ସେ, ତାପିତ, ପୁଲକିତ, ବିସ୍ମିତ, ଚମତ୍କୃତ, ପରାସ୍ତ ଅଥବା ବିହ୍ୱଳିତ ହୁଏ। ଏବଂ ଫେରି ଆସିଲେ ଆଉ ଗୋଟିଏ ଲକ୍ଷଣ ଦେଖାଦିଏ– ଗଳ୍ପର ସ୍ମରଣୀୟତା। ସେ ଗଳ୍ପଟିକୁ ପଢ଼ିବା, ଏକ ମହାର୍ଘ ଅନୁଭବ ହୋଇ ମନେ ରହିଯାଏ। ତାକୁ ଭୁଲି ହୁଏ ନା।

ଏମିତି ଯେ ଯାହା କଷଟିରେ ଗାର କାଟି ସୁନା ପରଖ କରନ୍ତି । ଊଣା ଅଧିକ ଶୁଦ୍ଧତାକୁ ନେଇ ସନ୍ତୁଷ୍ଟ ରହିବାକୁ ପଡ଼େ । ପୃଥିବୀର ଏକମାତ୍ର ଶ୍ରେଷ୍ଠ ଗଳ୍ପ ପାଇଁ କଷଟି ଅପେକ୍ଷା କରିଥାଏ । ସେ ଗାର ପଡ଼େ ନାହିଁ । କାରଣ ସେ ଗଳ୍ପ ଲେଖା ହୋଇ ନାହିଁ, କିମ୍ବାଲେଖା ହୋଇ ପାରିବ ନାହିଁ । ପ୍ରବହମାନତାରେ ଶେଷ କଥା କିମ୍ବା ଶ୍ରେଷ୍ଠ କଥା ନାହିଁ । ସେଥିପାଇଁ ଈଶ୍ୱର ସୁଦ୍ଧା ଅସଂଖ୍ୟ ଫୁଲ ଫୁଟାଇ ଚାଲିଥାନ୍ତି; ସର୍ବଶ୍ରେଷ୍ଠ ଫୁଲ ଫୁଟିଗଲେ ସୃଷ୍ଟି ଏବଂ ସ୍ରଷ୍ଟା ଏକାକାର ହୋଇଯିବେ, ଲୀନ ହୋଇଯିବେ, ଏଇ ଆଶଙ୍କାରେ।



# ନୂତନ ଚେତନାର ପୂର୍ବାଭାସ

ଏ ପୃଥିବୀ କେବେ ସମ୍ପୂର୍ଣ୍ଣ ସଙ୍କଟମୁକ୍ତ ହେବ କେଜାଣି ? ବୋଧହୁଏ କୌଣସି ନିକଟ ଭବିଷ୍ୟତରେ ନୁହେଁ । ବର୍ତ୍ତମାନ ପରିସ୍ଥିତି ଯେଉଁଭଳି ଭୟାବହ ରୂପ ନେଇଛି ସେଥିରେ ଯେକୌଣସି ସମୟରେ ଗୋଟିଏ ସାମୂହିକ ବିସ୍ଫୋରଣରେ ହୁଏତ ସମଗ୍ର ମାନବଜାତିର ଧ୍ୱଂସସାଧନ ହୋଇଯାଇପାରେ । ପ୍ରାଣୀମାତ୍ରେ ଲୋପ ପାଇପାରନ୍ତି । ଏଭଳି ଗମ୍ଭୀର ସମ୍ଭାବନା ଅତୀତରେ ଆଉ କେବେହେଲେ ଏତେ ପ୍ରାଞ୍ଜଳଭାବେ ପ୍ରକଟ ହୋଇ ନ ଥିଲା । କାରଣ ଏତେ ପରିମାଣର ଏବଂ ଏତେ ଶକ୍ତିଶାଳୀ ମାରଣାସ୍ତ୍ର ଆଉ କେବେ କଳ୍ପନା କରାଯାଇ ନ ଥିଲା । ବର୍ତ୍ତମାନ ଗଚ୍ଛିତ ଥିବା ପାରମାଣିକ ବୋମାର କିୟଦଂଶମାତ୍ର ଏ ପୃଥିବୀ ଭଳି ଗ୍ରହ ପିଣ୍ଡଟିକୁ ମାତ୍ର କେତେ ସେକେଣ୍ଡ୍ ଭିତରେ ଧୂଳିକଣାରେ ପରିଣତ ପରିଦେଇପାରେ । ଏଣୁ ମଣିଷ ପାଇଁ ବିପଦର ସୀମା ନାହିଁ । କାରଣ ତା'ର ମୂଢ଼ତା, ଅପରିଣାମଦର୍ଶିତା, ହିଂସ୍ରତା, ବିଜାତୀୟ ବିଦ୍ୱେଷର ସୀମାନାହିଁ । ଅଥଚ ଆଦୌ ବିଶ୍ୱାସ ହେଉନାହିଁ ଯେ, ଏତେ ବୌଦ୍ଧିକତା, ବିଚାରଶୀଳତା, ଜ୍ଞାନ ଓ ଦର୍ଶନର ଅଧିକାରୀ କେବେହେଲେ ସତକୁସତ ଯୋଜନାବଦ୍ଧ ଭାବରେ ନିଜର ହତ୍ୟା କରିପାରିବ । କାରଣ ସେ ଏ ପର୍ଯ୍ୟନ୍ତ ବଞ୍ଚିଆସିଛି ହୁଏତ ବଞ୍ଚି ଶିଖିଛି । ସବୁପ୍ରକାର ଧ୍ୱଂସକାରୀ ଶକ୍ତି ସତ୍ତ୍ୱେ ତା'ର ବିଲୋପ ହୋଇନାହିଁ । ଏଣୁ ହୁଏତ ଆଉଥରେ ବିଚାରଶୀଳତାର ବିଜୟ ହୋଇପାରେ ଏବଂ ଘନୀଭୂତ ହୋଇ ଆସୁଥିବା ଏ ସଙ୍କଟରୁ ସେ ଅକ୍ଷତ ପାରି ହୋଇଯାଇପାରେ । ଗୋଟିଏ ମାତ୍ର ଚରମ ନିଷ୍ପତ୍ତି ମଣିଷହିଁ ବର୍ତ୍ତମାନ ନେଇପାରିବ । ତଦ୍ଦ୍ୱାରା ନିୟନ୍ତ୍ରିତ ହୋଇଯିବ ତା'ର ଭାଗ୍ୟ ଓ ଭବିଷ୍ୟତ । ବର୍ତ୍ତମାନ ସେ ବଞ୍ଚିବାକୁ ଚାହିଁଲେ ଆଉ କୌଣସି ପ୍ରାକୃତିକ ବା ଇତର ଶକ୍ତି ତାକୁ ମାରିପାରିବ ନାହିଁ କିମ୍ବା ମରିବାକୁ ଚାହିଁଲେ ବି ତାକୁ କେହି ବଞ୍ଚାଇ ପାରିବ ନାହିଁ । ଏଭଳି ପରିସ୍ଥିତି ମାନବ ଇତିହାସରେ ଏଇ ପ୍ରଥମ ।

ମାତ୍ର ଦୁଇମାସ ତଳେ ଯେଉଁଭଳି ଅଶୁଭ ସଙ୍କେତମାନ ସାରା ପୃଥିବୀରୁ ମିଳୁଥିଲା ଅତି ବିସ୍ମୟକର ଭାବରେ ତା'ର ବର୍ତ୍ତମାନ ପରିବର୍ତ୍ତନ ଘଟୁଛି । ଶ୍ୱାସରୁଦ୍ଧ କରି ଆଣୁଥିବା ଜଟିଳ ଗ୍ରନ୍ଥିସବୁ ଫିଟିଯିବାର ଆଶ୍ୱସ୍ତି ଅନୁଭବ ହେଉଛି । ପ୍ରଥମେ ଧରାଯାଉ ବୃହତଶକ୍ତିମାନଙ୍କର ପାରସ୍ପରିକ ସମ୍ପର୍କ। ଏ ଶତାବ୍ଦୀର ପ୍ରାରମ୍ଭରୁ ସୋଭିଏତ୍‌ରୁଷ ଏବଂ

ଯୁକ୍ତରାଷ୍ଟ୍ର ଆମେରିକା ଅଖଣ୍ଡ ବୈରଭାବରେ ଜଣେ ଜଣକୁ ବିରୋଧ କରିଆସିଛନ୍ତି, ପ୍ରତିସ୍ପର୍ଦ୍ଧା କରି ଆସିଛନ୍ତି ପ୍ରତିକ୍ଷେତ୍ରରେ । ଏହା ସମଗ୍ର ପୃଥିବୀବାସୀ ମଧ୍ୟ ସାଧାରଣ ସତ୍ୟଭାବରେ ଗ୍ରହଣ କରି ନେଇଛନ୍ତି ଯେ, ସେମାନଙ୍କ ଭିତରେ ବୁଝାମଣା ସମ୍ଭବନୁହେଁ । ସେମାନେ ବିପରୀତ ମେରୁଭଳି ପୃଥକ୍ । ଜୀବନାଦର୍ଶ, ନୀତି, ସଂସ୍କୃତି, ଆନ୍ତର୍ଜାତିକ ସମ୍ପର୍କ ଏବଂ ରାଜନୈତିକ ଦୃଷ୍ଟିଭଙ୍ଗୀ କୌଣସି ବିଷୟରେ ସେମାନଙ୍କର ମେଳ ନଥିବା ଏ ପର୍ଯ୍ୟନ୍ତ ସନ୍ଦେହ କରାଯାଉଥିଲା । ଏବଂ ସେଭଳି ଧାରଣା ସୃଷ୍ଟି କରିବାରେ ସେମାନେ ସ୍ୱୟଂ ଅନେକାଂଶରେ ଦାୟୀ ରହୁଥିଲେ । ଉଭୟ ରାଷ୍ଟ୍ରର ପ୍ରଚାର ମାଧ୍ୟମରେ ଅଜସ୍ର ଅର୍ଥ ବ୍ୟୟକରି ପରସ୍ପରର ବିକୃତ ଅମିତ୍ରମୂର୍ତ୍ତି (Enemy image) ସୃଷ୍ଟି କରାଯାଉଥିଲା । କେବଳ ମହାକାଶ ଜୟ କରିବାର ଉଦ୍ୟମରେ ନୁହେଁ ସମରୋପକରଣରେ କିଏ କାହାଠାରୁ ଆଗୁଆ ହୋଇପାରିବ, କିଏ ଅଧିକ ମାରଣାସ୍ତ୍ରର ଅଧିକାରୀ ହୋଇପାରିବ ସେଥିପାଇଁ ଏକ ମାରାତ୍ମକ ପ୍ରତିଦ୍ୱନ୍ଦ୍ୱିତାରେ ସେମାନେ ପ୍ରାୟ ଉନ୍ମତ୍ତ ଥିଲେ ।

ହଠାତ୍ ଶୁଣାଗଲା ଯେ, ସୋଭିଏତ୍ ରୁଷ୍ ଗୋଟିଏ ନୂତନ ତଥ୍ୟ ଉପରେ ପରୀକ୍ଷା କରିବା ଆରମ୍ଭ କରିଛି । ତା'ହେଲା ମୁକ୍ତତା (Glasnost) । ସବୁ ପ୍ରକାର ଚିନ୍ତାର ଆବଦ୍ଧତା, କାର୍ଯ୍ୟର ନିଷ୍ପ୍ରାଣ ଗତାନୁଗତିକତା ଭିତରୁ ମୁକୁଳି ଯିବାର ଦୃଷ୍ଟି ଉପରୁ ଅନ୍ଧପୁଟୁଳି କାଢ଼ିନେବାର ପ୍ରୟାସ ଏଇ ମୁକ୍ତତା । ଖୋଲାଖୋଲି ମୌଳିକ ବିଚାରବୁଦ୍ଧିରେ ନିଜକୁ, ଅପରକୁ ଏବ ଆନ୍ତର୍ଜାତିକ ପାରିପାର୍ଶ୍ୱକୁ ଦେଖିବାର ଏବଂ ଯାହା ଦିଶିଲା ସେ ସତ୍ୟକୁ ସାହସର ସହିତ ସ୍ୱୀକାର କରିବାର ପ୍ରୟାସ ହେଲା Glasnost । ସୋଭିଏତ୍ କମ୍ୟୁନିଷ୍ଟପାର୍ଟିର ସତୁରୀ ବର୍ଷର ମହିମାମୟ ଇତିହାସ ସହିତ ଯେଉଁ ରକ୍ଷଣଶୀଳତା ପଥର ଖୋଳ ପରି ମଢ଼େଇ ହୋଇ ପଡ଼ିଥିଲା ତାକୁ ପରିହାର କରିବାର ପ୍ରସ୍ତାବ ସ୍ୱୟଂ ମିଖାଇଲ୍ ଗୋର୍ବାଚୋଭ୍ ଉପସ୍ଥାପିତ କଲେ । ସେ ସ୍ପଷ୍ଟ ଘୋଷଣା କଲେ ଯେ, ଆମୂଳ ନିରସ୍ତ୍ରୀକରଣ ପାଇଁ ସେ ପ୍ରସ୍ତୁତ । ଯୁକ୍ତରାଷ୍ଟ୍ର ଆମେରିକା ତଥା ଅବଶିଷ୍ଟ ପୃଥିବୀକୁ ଚମତ୍କୃତ କରି ସେ ଏଥିରେ ଆଶାତୀତ ଭାବରେ ଉଦ୍ୟମ କଲେ । ସେ ଉଦ୍ୟମର ଫଳ ସ୍ୱରୂପ ନିରସ୍ତ୍ରୀକରଣ ପ୍ରକ୍ରିୟାର ଅୟମାରମ୍ଭ ହୋଇସାରିଛି । ନୂତନ ସତ୍ୟକୁ ଗ୍ରହଣ କରିବାପାଇଁ, ତାକୁ ବ୍ୟକ୍ତିଗତ ଏବଂ ରାଷ୍ଟ୍ରୀୟ ଜୀବନଚର୍ଯ୍ୟା ପ୍ରତିସ୍ତରରେ କାର୍ଯ୍ୟକାରୀ କରିବାପାଇଁ ସେ ଆଉ ଏକ ଆହ୍ୱାନ ଦେଲେ ୧୯ତମ କନ୍‌ଭେନ୍‌ସନ୍‌ରେ । ଏକ ଆମୂଳଚୂଳ ପୁନର୍ବିନ୍ୟାସ (Porestroika) ପାଇଁ ଆଧାର ପ୍ରସ୍ତୁତ କରିବାକୁ ନିଜ ଦେଶବାସୀଙ୍କ ସହଯୋଗ କାମନା କଲେ । ସୋଭିଏତ୍ ରୁଷ୍ ତା'ର ଧର୍ମଉପାସନା, ତା'ର ସ୍ୱାଧୀନତାକୁ ନୂତନ

ମୂଲ୍ୟଦେଇ ସ୍ୱୀକାର କଲା । ସାରା ପୃଥିବୀ ସହିତ ସମ୍ପର୍କର ସ୍ୱଚ୍ଛତା ପ୍ରତିଷ୍ଠା କରିବାର ପ୍ରତିଶ୍ରୁତି ପ୍ରଦାନ କଲା । ସୋଭିଏତ୍ ରୁଷ୍‌ରେ ଏ ବିପୁଳ ଚେତନାଗତ ବିପ୍ଳବ ଚାଲିଥିବା ବେଳେ ଆତ୍ମସମୀକ୍ଷା, ମୁକ୍ତତା ଏବଂ ପୁନର୍ବିନ୍ୟାସର ଚିନ୍ତାତରଙ୍ଗ ସମଗ୍ର ପୃଥିବୀକୁ ଆନ୍ଦୋଳିତ କରୁଛି । ଆମେରିକାର ଆସନ୍ତା ରାଷ୍ଟ୍ରପତି ନିର୍ବାଚନ ପାଇଁ ଡିମୋକ୍ରାଟିକ୍ ପ୍ରାର୍ଥୀ ଡୁକାକିସ୍ ପ୍ରାୟ ଏଇ ଶାନ୍ତି ଭିତ୍ତିକ ଆଧାରଶୀଳା ଉପରେ ଯୁକ୍ତରାଷ୍ଟ୍ର ଆମେରିକାର ନୂତନ ନୀତିକୁ ପ୍ରତିଷ୍ଠିତ କରିବାକୁ ପ୍ରତିଶ୍ରୁତି ଦେଉଛନ୍ତି । ଜୋର୍ଡ଼ାନ୍‌ର ଯୁବରାଜ ପେରେସ୍ତୋଇକାକୁ ରାଷ୍ଟ୍ରନୀତିରୂପେ ସ୍ୱୀକାର କରୁଛନ୍ତି । ଯେଉଁମାନେ ନୀରବ ଅଛନ୍ତି, ସମସ୍ତେ ନିଶ୍ଚିତ ରୂପେ ଏକ ଆଲୋଡ଼ନ ଅନୁଭବ କରୁଛନ୍ତି ଏଥିରେ ସନ୍ଦେହ ନାହିଁ । ସମଗ୍ର ମାନବ ଚେତନାରେ ଏକ ଅଭୂତପୂର୍ବ ମନ୍ଥନ ଏବଂ ଜାଗରଣର ସୂତ୍ରପାତ ଘଟୁଛି । ଅନ୍ତତଃ ଏକଥା ନିଶ୍ଚିତ ଯେ, ମିଖାଇଲ୍ ଗୋର୍ବାଚୋଭ୍ ଏବଂ ଆଗାମୀ ଆମେରିକୀୟ ନୂତନ ନେତୃତ୍ୱ ଜରିଆରେ ବିଶ୍ୱଯୁଦ୍ଧ ସମ୍ଭାବନା ନାହିଁ । ଏକ ଆଶ୍ୱସ୍ତିକର ସୁସ୍ଥବାତାବରଣ ଆନ୍ତର୍ଜାତିକ ସମ୍ପର୍କକୁ ନୂତନ ମୂଲ୍ୟ ଏବଂ ସ୍ପୃହଣୀୟତା ପ୍ରଦାନ କରିଛି ।

ଏହା ସହିତ ସତେ ବା ତାଳ ରକ୍ଷା କଲାଭଳି ସାରା ପୃଥିବୀରୁ ସବୁ ହିଂସାର କ୍ରମେ ଅବସାନ ଘଟୁଛି । ଆଠବର୍ଷବ୍ୟାପୀ ଇରାନ୍ ଇରାକ୍ ଯୁଦ୍ଧର କେବେ ସମାପ୍ତି ଘଟିବ ବୋଲି କେହି ହେଲେ ଆଶା କରି ପାରୁ ନ ଥିଲେ । କାରଣ ସେ ଦିଗରେ ସମସ୍ତ ପ୍ରୟାସ ବିଫଳ ପ୍ରମାଣିତ ହୋଇ ସାରିଥିଲା । ଉଭୟପକ୍ଷର ୧୦ ଲକ୍ଷ ସମର୍ଥ ଯୋଦ୍ଧାଙ୍କର ମୃତ୍ୟୁ ଅଜସ୍ର ଅର୍ଥବ୍ୟୟ ଏବଂ ଯୁଦ୍ଧକାଳୀନ ଅବ୍ୟବସ୍ଥା ସେମାନଙ୍କୁ କ୍ଲାନ୍ତ ଓ ହତାଶ କରି ଦେଇଥିଲା ସତ କିନ୍ତୁ ନିରାପତ୍ତା ପରିଷଦର ଜେନେରାଲ୍ ସେକ୍ରେଟାରୀ କୁଏଲାରଙ୍କ ଶାନ୍ତି ପ୍ରସ୍ତାବକୁ ଉଭୟ ଇରାକ୍ ଓ ଇରାନ୍ ହଠାତ୍ ଏପରି ଗ୍ରହଣ କରିନେବା ସମଗ୍ର ପୃଥିବୀକୁ ଚକିତ ଏବଂ ଆହ୍ଲାଦିତ କରିଛି । ଆନ୍ତର୍ଜାତିକ ସମୀକ୍ଷକଙ୍କ ମତରେ ମଧ୍ୟପ୍ରାଚ୍ୟ ଭୂ-ଖଣ୍ଡରେ ଶାନ୍ତି ପ୍ରତିଷ୍ଠିତ ହେବା ଅବଶ୍ୟମ୍ଭାବୀ ।

କାମ୍ବୁଚିଆ ସମସ୍ୟା ଆଲୋଚନା ମାଧ୍ୟମରେ ସମାଧାନ କରିବାକୁ ଭିଏତ୍‌ନାମର ଯୁଗ୍ମ-ସମ୍ମିଳନୀ ମଧ୍ୟ ସେହିପରି ଆକସ୍ମିକ । ସ୍ମରଣୀୟ ଅତୀତରେ ଘଟିଥିବା କୋରିଆ କିମ୍ବା ଭିଏତ୍‌ନାମର ପୃଷ୍ଠଭୂମିରେ କାମ୍ବୁଚିଆର ଏଭଳି ସମାଧାନ ହେବା ସମପରିମାଣରେ ବିସ୍ମୟକର ଏବଂ ସ୍ୱାଗତଯୋଗ୍ୟ ।

ଆଫଗାନିସ୍ଥାନରେ ଆମେରିକା, ରୁଷିଆ ଏବଂ ପାକିସ୍ଥାନ ଏଭଳି ଗଭୀର ଭାବରେ ଜଡ଼ିତ ହୋଇସାରିଥିଲେ ଯେ, ସେମାନଙ୍କୁ ସେଥିରୁ ନିବର୍ତ୍ତାଇବାର ସମ୍ଭାବନା ଦିଶୁ ନ ଥିଲା । କେବଳ ମାର୍କିନ ସୋଭିଏତ୍ ମହାଯୁଦ୍ଧ କେତେବେଳେ ହେଇଯିବ

ଏଇ ଆଶଙ୍କାରେ ସାରା ପୃଥିବୀ ଶ୍ୱାସରୋଧ କରି ଅପେକ୍ଷା କରିଥିଲା । ଅଥଚ ଆକାଶରୁ ମେଘ ଘୁଞ୍ଚିଗଲା ପରି ଜେନେଭା ଚୁକ୍ତି, ସୋଭିଏତ୍ ସୈନ୍ୟ ଅପସାରଣ ଏବଂ ଆଫଗାନିସ୍ଥାନରେ ପାକି-ମାର୍କିନ୍ ହସ୍ତକ୍ଷେପର ଅବସାନ ଅତି ଅଳ୍ପ ସମୟ ମଧ୍ୟରେ ଘଟିଗଲା । ଏଣିକି ଆଫଗାନ୍ ସମସ୍ୟା ଆପେ ଆପେ ସେ ଦେଶର ଦୁଇଦଳ ମଧ୍ୟରେ ସମାଧାନ ହେବାରେ କୌଣସି ଅସୁବିଧା ନାହିଁ ।

ଶ୍ରୀଲଙ୍କାରେ ତାମିଲ୍ ପକ୍ଷରୁ ନିର୍ବାଚନ ପ୍ରସ୍ତାବକୁ ଗ୍ରହଣ କରିବା ଏବଂ ସେ ଦେଶରେ କିଛି କିଛି ହିଂସାକାଣ୍ଡ ସତ୍ତ୍ୱେ ଏକ ସମାଧାନ ଆଡ଼କୁ ଅଗ୍ରଗତି ଘଟୁଥିବା ବିଷୟରେ କାହାରି ସନ୍ଦେହ ନାହିଁ । ସେଇଠି ଆଉ ବିରୋଧରେ ତୀବ୍ରତା, ହିଂସ୍ରତା ନାହିଁ । ସୁସ୍ଥବିଚାର ଏବଂ ବୁଝାମଣାର ବାତାବରଣ ଆସ୍ତେ ଫେରିଆସୁଛି ।

ସବୁଠାରୁ ବିସ୍ମୟକର ଘଟଣା ଯେ, ନାମ୍ବିଆର ସ୍ୱତନ୍ତ୍ରତାକୁ ରକ୍ଷଣଶୀଳ ଦକ୍ଷିଣ-ଆଫ୍ରିକା ବିଚାରଣୀୟ ବୋଲି ସ୍ୱୀକାର କରିନେଇଛି । ଦକ୍ଷିଣ-ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ଏବଂ ତତ୍‌ଜନିତ ମାନବିକ ମୂଲ୍ୟବୋଧର ନିର୍ବିଚାର ସଂହାରନେଇ ସାରା ବିଶ୍ୱର ବିବେକ ପୀଡ଼ିତ ବୋଧ କରୁଛି । ଡଃ ନେଲ୍‌ସନ୍ ମ୍ୟାଣ୍ଡେଲାଙ୍କ ମୁକ୍ତି ପାଇଁ ଯେଉଁଭଳି ସାରାପୃଥିବୀରେ ଏପରିକି ଥାଚେରଙ୍କ ଇଂଲଣ୍ଡ ଏବଂ ରୋଗାନ୍ ଆମେରିକାରେ ମଧ୍ୟ ସମର୍ଥନ ପ୍ରକାଶ ପାଇଛି ତା'ର ତୁଳନା ନାହିଁ । ସାରା ମାନବଜାତି କେତେକ ମୌଳିକ ମାନବୀୟ ମୂଲ୍ୟ ବିଷୟରେ ବର୍ତ୍ତମାନ ସମ୍ପୂର୍ଣ୍ଣ ସଚେତନ । ଏବଂ ସେଥିପାଇଁ ଜାତି, ଧର୍ମ, ରାଷ୍ଟ୍ର ନିର୍ବିଶେଷରେ ଯେଉଁ ପ୍ରତିକ୍ରିୟା ପ୍ରକାଶ ପାଇଛି ତାହା କଦାପି ନିଷ୍ଫଳ ଯିବନାହିଁ । ଭାରତର ଆଭ୍ୟନ୍ତରୀଣ ବ୍ୟାପାର ହେଲେ ସୁଦ୍ଧା, ଏହି ସମୟ ମଧ୍ୟରେ ଦାର୍ଜିଲିଂ ସମ୍ପୂର୍ଣ୍ଣ ସ୍ୱାଭାବିକ ଅବସ୍ଥାକୁ ଫେରିଆସିବା ଏବଂ ପଞ୍ଜାବର ହିଂସାକାଣ୍ଡ ସ୍ତିମିତ ହୋଇଥିବା ମଧ୍ୟ ଉଲ୍ଲେଖନୀୟ ।

ମନେହେଉ ସତେବା କୌଣସି ପରିବ୍ୟାପ୍ତ ବନାଗ୍ନିର ପରିଧିରେ ପ୍ରଦୀପ୍ତ ଶିଖାସବୁ ଲିଭିଲିଭି ଯାଉଛି ଏବଂ ଆକାଶରୁ ଓ ଅରଣ୍ୟରୁ ଏକ ଶୀତଳତାର ଅବତରଣ ଘଟୁଛି । ପୃଥିବୀରେ ଏ ସମସ୍ତ ଘଟଣା ଏକାଠି ଘଟିବା ପଶ୍ଚାତରେ କ'ଣ କେବଳ କାକତାଳୀୟ ଆକସ୍ମିକତା ରହିଛି ନା ଆଉ କିଛି ବ୍ୟାପକ ଏବଂ ଗଭୀର କାରଣ କାର୍ଯ୍ୟ କରୁଛି ? ବ୍ୟକ୍ତି ଚେତନାପରି ମାନବଜାତିର ମଧ୍ୟ ଏକ ସମୂହ ଚେତନା ରହିଛି ।

କିନ୍ତୁ ତା'ର ପ୍ରବାହ ଏବଂ ଅଭ୍ୟୁତ୍‌ଥାନ ନିକଟରୁ ନୁହେଁ, ଅନେକ ଶତାବ୍ଦୀର ବ୍ୟବଧାନରୁ ହିଁ କେବଳ ଲକ୍ଷ୍ୟ କରାଯାଇପାରେ । ଯାହା ବର୍ତ୍ତମାନ ଘଟୁଛି ତା' ହୁଏତ ସେଭଳି କୌଣସି ଅଭ୍ୟୁତଥାନର ପ୍ରଥମ ଲକ୍ଷଣ ହୋଇପାରେ । ମାନବ ଇତିହାସରେ ଗୋଟାଏ ସମୟରେ ବିଭିନ୍ନ ଭୂମିରେ ସମପର୍ଯ୍ୟାୟର ବିଭୂତି ପ୍ରକାଶ ପାଇଥାଏ ।

ଗୋଟିଏ ଉଦାହରଣ ନିଆଯାଇପାରେ । ଗ୍ରୀକ୍ ସଭ୍ୟତା ସହିତ ଭାରତରେ ଗୌତମ ବୁଦ୍ଧ ଏବଂ ଚୀନ୍‌ରେ କନଫୁସିୟସଙ୍କ ପୂର୍ବାପର ବୌଦ୍ଧିକ ବିକାଶ ଆକସ୍ମିକ ନ ହୋଇପାରେ । ମାନବ ଇତିହାସର ବିଭିନ୍ନ ସନ୍ଧିକ୍ଷଣରେ ଚେତନାର ଯେଉଁ ବିବର୍ତ୍ତନ ଘଟିଛି ତା' ହୁଏତ ଆଉ ଏକ ଗଭୀର ନିୟମ ଦ୍ୱାରା ନିୟନ୍ତ୍ରିତ । କୌଣସି ଏକ ପ୍ରଚ୍ଛନ୍ନ ବିଶ୍ୱଛନ୍ଦର ଅନ୍ତର୍ଭୁକ୍ତ । ସାରା ପୃଥିବୀରେ ବର୍ତ୍ତମାନ ଘଟିଥିବା ଘଟଣାମାନଙ୍କୁ ନେଇ ଅତ୍ୟଧିକ ଆଶାବାଦୀ ହେବା ହୁଏତ ସମୀଚୀନ ନୁହେଁ । ମଣିଷର ଜାନ୍ତବତା ଓ ହିଂସ୍ରତାର ଅସଂଖ୍ୟ ପ୍ରମାଣ ଏବେ ମଧ୍ୟ ମିଳୁ ଥିବା ବେଳେ ପୃଥିବୀରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହୋଇପାରିବ ବୋଲି କହିବା ମଧ୍ୟ ଯୁକ୍ତିସମ୍ମତ ନୁହେଁ । କିନ୍ତୁ ମାନବ ଇତିହାସର ଏ ଅଭୂତପୂର୍ବ ପରିସ୍ଥିତିରେ ମଣିଷର ନିଷ୍ପତ୍ତି ଏବଂ ଦୃଷ୍ଟିଭଙ୍ଗୀ ଯେଉଁଭଳି ବିଚାରଦୀପ୍ତ ଜଣାଯାଉଛି ସେଥିରୁ କେବଳ ଅନୁମାନ କରିବାର କଥା ଯେ, ହୁଏତ ମାନବ ଚେତନାର ପ୍ରାନ୍ତ ଦେଶରେ ଏକ ମହନୀୟ ସମ୍ଭାବନାର ଅବତରଣ ଘଟିଛି । କେବଳ ଆଗାମୀ ଶତାବ୍ଦୀ ପାଇଁ ନୁହେଁ ଭବିଷ୍ୟତର ମାନବ ସମ୍ପର୍କରେ ଏକ ସୂକ୍ଷ୍ମ ନୁହେଁ ବରଂ ଶାନ୍ତି ପାଇଁ ଏବଂ ଶାନ୍ତିକୁ ନେଇ ବଞ୍ଚିବାର ସଙ୍କଳ୍ପ ହୁଏତ ଚେତନାର ଗଭୀର କେନ୍ଦ୍ରରେ ରୂପାୟିତ ହେଉଛି । ଏହାର ସତ୍ୟାସତ୍ୟ କେବଳ ଭବିଷ୍ୟତ ହିଁ ପ୍ରମାଣିତ କରିପାରିବ ।



# ଲୁମ୍ବିନୀରୁ କୁଶିନାରା

ଲୁମ୍ବିନୀର ସୁରଭିତ ବନଭୂମିରେ ଏକ ଉଜ୍ଜ୍ୱଳ ସକାଳ । ଚାରିଆଡ଼େ ଉଚ୍ଛ୍ୱସିତ ପକ୍ଷୀଗାନ । ଆକାଶର ଅନ୍ତରାଳରେ ଆଲୋକିତ ଦେବଭୂମି । ରାଶି ରାଶି ବନଫୁଲର ସୁରଭିରେ ଭାରାକ୍ରାନ୍ତ ମୃଦୁମନ୍ଦ ପବନ ।

ରାଜାଦେଶରେ ମହାରାଣୀ ମାୟାଦେବୀଙ୍କୁ ସୁନା ପାଲିଙ୍କିରେ ନେଇଯାଉଥିଲେ ସଶସ୍ତ୍ର ବାହକମାନେ ।

ମହାରାଣୀ ଆସନ୍ନପ୍ରସବା । ତାଙ୍କୁ ବାପଘରକୁ ପଠାଇବାରେ ଦୋହଦପୂରଣ କରିଥିଲେ ରାଜା ଶୁଦ୍ଧୋଦନ ।

ଲୁମ୍ବିନୀର ବନଭୂମି ମାୟାଦେବୀଙ୍କୁ ବିମୋହିତ କଲା । ସେ ଚାହିଁଲେ ପାଲିଙ୍କିରୁ ଓହ୍ଲାଇ ସେଇଠି ପଦଚାରଣ କରିବାକୁ । ସୁବର୍ଣ୍ଣ ପାଲିଙ୍କିରୁ ଶ୍ୱେତ କହ୍ଲାର ପରି ମହାରାଣୀ ମାୟାଦେବୀ ବାହାରି ଆସିଲେ । ଫୁଲପାଖୁଡ଼ାରେ ଆଚ୍ଛାଦିତ ଭୂମି । ଜାତି ଜାତି ଫୁଲର ସୁଗନ୍ଧରେ ସୁବାସିତ ପବନ ତାଙ୍କୁ ସ୍ୱାଗତ ଜଣାଇଲେ । ସ୍ୱାଗତ କଲେ ସ୍ୱଚ୍ଛ ଆକାଶ ଏବଂ କୋମଳ ଆଦିତ୍ୟ । ସ୍ୱାଗତିକା ଗାନ କଲେ ପକ୍ଷୀମାନେ ।

ସାମାନ୍ୟ ଶ୍ରମରେ ଘର୍ମାକ୍ତ ହୋଇ ପଡ଼ିଲେ ରାଜରାଣୀ । ତାଙ୍କର ବେଦନା ଅନୁଭବ ହେଲା । ଶରୀର କମ୍ପୁଥିଲା । ପଦପାତ ଅସ୍ଥିର । ସେ ବିଶାଳ ଶାଳ ବୃକ୍ଷକୁ ଆଉଜି ପଡ଼ିଲେ । ପରିଚାରିକା ବୁଝିପାରିଲେ ଯେ ପ୍ରତ୍ୟାଶିତ ମୁହୂର୍ତ୍ତ ଆସିଗଲା ।

ସେମାନେ ପାଟବସ୍ତ୍ରର ଘେର ଟେକି ଧରିଲେ । ମାୟାଦେବୀ ଶାଳବୃକ୍ଷର ଗୋଟିଏ ଡାଳକୁ ଧରି ବେଦନାର ବିଦାରଣକୁ ସହ୍ୟ କଲେ । ବେଦନାର୍ତ୍ତ ପୃଥିବୀ ଶ୍ୱାସରୋଧ କରି ପାରିହେଉଥିଲା ସେ ଅସହ୍ୟ ଯନ୍ତ୍ରଣାବିଦ୍ଧ ଆଶୀର୍ବାଦର ମୁହୂର୍ତ୍ତ । ସମଗ୍ର ବନଭୂମି ସ୍ତବ୍ଧ । ଦେବାକୀର୍ଣ୍ଣ ଆକାଶ ପ୍ରାର୍ଥନାରତ ।

ପ୍ରତୀକ୍ଷମାଣ ଦିଗନ୍ତରୁ ପରିପୂର୍ଣ୍ଣ ଚନ୍ଦ୍ରୋଦୟ ହେଲାପରି, ସଂସାରସିନ୍ଧୁକୁ ଉଲ୍ଲସିତ କରି ପ୍ରାଣୀଙ୍କର ଅପ୍ରମିତ ଦୁଃଖକୁ ସ୍ନିଗ୍ଧ କରୁଣାର ଜ୍ୟୋତ୍ସ୍ନାରେ ପ୍ଲାବିତ କରି ମାୟାଦେବୀଙ୍କ କୁକ୍ଷିରୁ ଜନ୍ମଲାଭ କଲେ ଶାକ୍ୟବଂଶର ପ୍ରଦୀପ ।

ଶୁଦ୍ଧୋଦନଙ୍କ ରାଜନବର ଏକ ଅଖଣ୍ଡ ସୁଖ, ସ୍ୱାଚ୍ଛନ୍ଦ୍ୟ ଏବଂ ପରିତୃପ୍ତିର ମାୟାପୁରୀ । ସେ ବଳୟ ଭିତରେ ଅତ୍ୟନ୍ତ ଯତ୍ନସହକାରେ ପାଳିତ ହେଉଥାନ୍ତି କୁମାର

ସିଦ୍ଧାର୍ଥ । ତାଙ୍କର ଶୁଭ୍ର ଲଲାଟରେ ସାମାନ୍ୟତମ ଚିନ୍ତାର ରେଖା ଦେଖିଲେ ତାକୁ ଦୂର କରିବାକୁ ତତ୍ପର ହୋଇ ଉଠୁଥାନ୍ତି ସ୍ୱୟଂ ରାଜା ଓ ସମସ୍ତ କର୍ମଚାରୀ ।

କିଶୋର ସିଦ୍ଧାର୍ଥ ଏବେ ଅପରୂପ ତରୁଣ । ଦେବଦୁର୍ଲଭ ଶରୀରର ସୌଷ୍ଠବ ଓ ମୁଖମଣ୍ଡଳର ପ୍ରଶାନ୍ତି ଉପରେ ପୌରୁଷର ଆଦ୍ୟ ପ୍ରଲେପ ଦେଖି ପିତା ଶୁଦ୍ଧୋଦନ ଆନନ୍ଦ ବିଭୋର ।

ସେ ଚାହିଁଲେ ଉପଯୁକ୍ତା ପାତ୍ରୀ ସନ୍ଧାନ କରି ସିଦ୍ଧାର୍ଥଙ୍କର ବିବାହ କରାଇଦେବେ । ତାଙ୍କ ମନ ଭିତରେ ଏକ ଆଶଙ୍କା ଲୁଚି ରହିଥିଲା । ତାକୁ ପ୍ରକାଶ କରି ଦେଲେ କନ୍ୟାପିତାମାନେ ।

"ସିଦ୍ଧାର୍ଥ ଅପରିପକ୍ୱ । ଶରୀରରେ ନାରୀ ସୁଲଭ ସୌକୁମାର୍ଯ୍ୟ । ବିଚାରରେ ଅପରିଣତ ଦୁର୍ବଳତା । ରାଜୋଚିତ ଦାୟିତ୍ୱ ବହନ କରିବା ପାଇଁ ଶକ୍ତି, ସାମର୍ଥ୍ୟ, ଦୃଢ଼ତା ଓ ଜ୍ଞାନର ଅଭାବ । ସେ ବିବାହ ପାଇଁ ଅନୁପଯୁକ୍ତ ।"

"ଯାହାଙ୍କ ଆଚରଣ ଏତେ ଶାନ୍ତ, ବାକ୍ୟ ଏତେ ଶିଷ୍ଟ, ସ୍ୱଭାବ ଏତେ କୋମଳ, ସେ ରାଜାର ପ୍ରଖର ବ୍ୟକ୍ତିତ୍ୱ ପ୍ରକାଶ କରିପାରିବେ ନାହିଁ । ଅସ୍ତ୍ରଧାରଣ କରି ରାଜ୍ୟ ରକ୍ଷା କରିପାରିବେ ନାହିଁ । ସେ ଉଦ୍ୟାନରେ ଜାମ୍ବୁଗଛ ମୂଳେ ବସି ଧ୍ୟାନ କରିପାରିବେ କିନ୍ତୁ ରାଜ୍ୟଶାସନ କରି ପାରିବେ ନାହିଁ ।

ଏହା ଶୁଦ୍ଧୋଦନଙ୍କୁ ପୀଡ଼ା ଦେଲା । ସିଦ୍ଧାର୍ଥ ତାଙ୍କୁ କହିଲେ "ଆପଣ ଅସ୍ତ୍ରଶସ୍ତ୍ରରେ ନିପୁଣ ବଳିଷ୍ଠ ଯୋଦ୍ଧାମାନଙ୍କୁ ଏବଂ ବିଦ୍ୟା ବିଶାରଦ ପଣ୍ଡିତମାନଙ୍କୁ ଆମନ୍ତ୍ରଣ କରନ୍ତୁ । ସର୍ବ ସମକ୍ଷରେ ସେମାନଙ୍କ ଉପରେ ମୋର ଶାରୀରିକ ଓ ମାନସିକ ସାମର୍ଥ୍ୟର ପରୀକ୍ଷା କରିବାକୁ ମୁଁ ଚାହେଁ । ମୋ ବିଷୟରେ ପ୍ରଚଳିତ ଭ୍ରମ ଦୂର କରିବାକୁ ଚାହେଁ ।"

ସେହିପରି ହେଲା, ଏବଂ ରାଜକୁମାର ସିଦ୍ଧାର୍ଥ କେବଳ ଶୌର୍ଯ୍ୟ ବୀର୍ଯ୍ୟରେ ନୁହେଁ, ବିଦ୍ୟା, ବୁଦ୍ଧି ଓ ଜ୍ଞାନରେ ମଧ୍ୟ ନିଜକୁ ସର୍ବଶ୍ରେଷ୍ଠ ରୂପେ ପ୍ରମାଣିତ କଲେ ।

ଯେଉଁମାନେ ତାଚ୍ଛଲ୍ୟ କରୁଥିଲେ, ସେମାନେ ଅତ୍ୟନ୍ତ ଆଗ୍ରହରେ କପିଳବାସ୍ତୁର ସୁଯୋଗ୍ୟ ଯୁବରାଜଙ୍କୁ କନ୍ୟାପ୍ରଦାନ କରିବାକୁ ଆଗଭର ହୋଇ ଆସିଲେ । ସିଦ୍ଧାର୍ଥ ସ୍ୱେଚ୍ଛାରେ ନିଜ କୁଟୁମ୍ବର କନ୍ୟା ଅପରୂପୀ ଲାବଣ୍ୟମୟୀ ଯଶୋଧାରାକୁ ପତ୍ନୀ ରୂପେ ସ୍ୱୀକାର କଲେ । ଅପାର ଆନନ୍ଦରେ ଶୁଦ୍ଧୋଦନ ବିବାହ କାର୍ଯ୍ୟ ସମ୍ପାଦନ କରାଇଲେ । ମଣିକାଞ୍ଚନର ସଂଯୋଗରେ ସମସ୍ତେ ଉଲ୍ଲସିତ ହେଲେ ।

ଯଥାସମୟରେ ଏ ସଂଯୋଗର ପରିଣାମସ୍ୱରୂପ ଜନ୍ମ ଲାଭ କଲା ଏକ ପୁତ୍ରସନ୍ତାନ । ତା'ର ନାମ ରଖାଗଲା ରାହୁଲ । ରାଜା ଶୁଦ୍ଧୋଦନ ଆଶ୍ୱସ୍ତବୋଧ କଲେ । ରାହୁଲ ହିଁ

ସଂସାର ସହିତ ବାନ୍ଧି ରଖିପାରିବ ତାଙ୍କର ଧ୍ୟାନୀ, ଆନମନା ପୁତ୍ର ସିଦ୍ଧାର୍ଥଙ୍କୁ । ରୂପସୀ ପତ୍ନୀ ଯଶୋଧାରା, ଦେବଶିଶୁ ପରି ସୁକୁମାର ପୁତ୍ର, କପିଳବାସ୍ତୁର ରାଜସମ୍ପଦ ଏବଂ ରାଜ୍ୟର ଅନୁଗତ ପ୍ରଜାଙ୍କୁ ଛାଡ଼ି ସିଦ୍ଧାର୍ଥ ଆଉ କୁଆଡ଼େ ଯାଇପାରିବେ ନାହିଁ।

ବନସ୍ତର ଗଜରାଜକୁ ଯେପରି ଶାଙ୍କୁଳିରେ ବାନ୍ଧି ରଖିହୁଏ ନାହିଁ, ଏବଂ ସେ ମୁକୁଳି ଯିବାକୁ ଭିଡ଼ି ହୁଏ, ସେପରି ସିଦ୍ଧାର୍ଥ ରାଜନବର ପାଚେରୀ ଭିତରେ ଆଉ ରହିବାକୁ ଚାହିଁଲେ ନାହିଁ ।

ଶୁଦ୍ଧୋଦନ ଆଦେଶ ଦେଲେ ଉପଯୁକ୍ତ ବ୍ୟବସ୍ଥା ପାଇଁ । ହୀରାଖଚିତ ରଥ ସଜ୍ଜିତ ହେଲା । ଚାରୋଟି ବ୍ରହ୍ମଜାତି ଧଳା ଘୋଡ଼ା ସେଥିରେ ଯୋଚି ଦିଆଗଲା । ରାଜକୁମାର ସହର ପରିକ୍ରମା କରୁଥିବା ସମସ୍ତ ମାର୍ଗ ସୁସଜ୍ଜିତ କରାଗଲା । ସତର୍କ କରି ଦିଆଗଲା ଯେପରି କୌଣସି ଅପ୍ରୀତିକର ଦୃଶ୍ୟ ସିଦ୍ଧାର୍ଥଙ୍କ ଆଖିରେ ନ ପଡ଼େ ।

ରଥର ବାହକ ହେଲେ ସିଦ୍ଧାର୍ଥଙ୍କ ପ୍ରିୟ ଅନୁଗତ ଚନ୍ନା। ସୁସଜ୍ଜିତ ରାଜପଥର ହର୍ଷୋଲ୍ଲାସ ସିଦ୍ଧାର୍ଥଙ୍କୁ ବିସ୍ମିତ କଲା ନାହିଁ । ମନେ ହେଲା ତାହା ରାଜନବରର ଭିତର ଦୃଶ୍ୟ ଠାରୁ ଭିନ୍ନ ନୁହେଁ। ସେ ଅନୁଭବ କରୁଥିଲେ ଯେ ତାହା ଏକ ଆବରଣ । ସେ ଆବରଣ ପଶ୍ଚାତ୍‌ରେ କୌଣସି ରହସ୍ୟ ଲୁଚି ରହିଛି । ତାହା ହିଁ ଆବିଷ୍କାର କରିବାକୁ ରାଜନବର ଛାଡ଼ି ସେ ଆସିଛନ୍ତି ।

ରାଜଧାନୀର ସୀମା ଅତିକ୍ରମ କରି ରଥ ବାହି ନେବାକୁ ସେ ଆଦେଶ ଦେଲେ । ମୁକ୍ତ ଆକାଶ; ଦୂରସ୍ଥ ପାହାଡ଼, ଶାନ୍ତ ଶୀତଳ ପ୍ରାକୃତିକ ପରିବେଶ ଦେଖି ସିଦ୍ଧାର୍ଥ ଗଭୀର ତୃପ୍ତି ଲାଭ କଲେ ।

କିନ୍ତୁ ହଠାତ୍ ସିଦ୍ଧାର୍ଥଙ୍କର ଆଦେଶ ଶୁଣାଗଲା "ରଥ ରଖ ବାହକ, ଏବଂ ମୋତେ କହ ଏ ଦୃଶ୍ୟର ଅର୍ଥ କ'ଣ !"

"କହ ସେ କିଏ । କାହିଁକି ତାହାର କେଶରାଶି ଧଳା ହୋଇଯାଇଛି । କାହିଁକି ତା'ର ଆଖି ଏତେ ନିଷ୍ପ୍ରଭ, କାହିଁକି ତା'ର ଶରୀର ଏପରି ଦୁର୍ବଳ, ଚର୍ମ ଏପରି କୁଞ୍ଚିତ । ସେ କାହିଁକି ଯଷ୍ଟି ଉପରେ ଭରା ଦେଇ ସୁଦ୍ଧା ଚାଲିପାରୁନାହିଁ।"

ସିଦ୍ଧାର୍ଥଙ୍କ ସ୍ୱରରେ ବିଚଳିତ ବିସ୍ମୟ !

ଚନ୍ନା ପାଇଁ ଘୋର ଧର୍ମ ସଙ୍କଟ । କହିବେ କି ନ କହିବେ ! କହିଲେ କ'ଣ କହିବେ । ଏକ ପକ୍ଷେ ରାଜାଦେଶ ସିଦ୍ଧାର୍ଥଙ୍କୁ କୌଣସି ବିକଟ ସତ୍ୟ କୁହାଯିବ ନାହିଁ । ଅନ୍ୟପକ୍ଷେ ସିଦ୍ଧାର୍ଥଙ୍କର ପ୍ରଶ୍ନକୁ ଉତ୍ତର ନ ଦେଇ ଉପେକ୍ଷା କରି ହେବ ନାହିଁ । ନିରବ

ରହିବା ସମ୍ଭବ ନୁହେ । ସତ୍ୟକୁ ଛଳ ବାକ୍ୟରେ ସିଦ୍ଧାର୍ଥଙ୍କୁ କହିବା ମଧ୍ୟ ସମ୍ଭବ ନୁହେଁ ।

ଚନ୍ନା ଯଥା ସମ୍ଭବ ସଂଯତ ରହି ଉତ୍ତର ଦେଲେ "ଆପଣ ଯାହା ପଚାରୁଛନ୍ତି ତାହା ସବୁ ଜରାବସ୍ଥାର ଲକ୍ଷଣ । ଏହି ବ୍ୟକ୍ତି ଏକଦା ଏକ ସ୍ତନ୍ୟପାୟୀ ଶିଶୁ ଥିଲା । କାଳକ୍ରମେ ସେ ଶକ୍ତିଶାଳୀ ଯୁବକରେ ପରିଣତ ହେଲା ଏବଂ ଏବେ ବୟସର ବୃଦ୍ଧି ହେବାରୁ ତା'ର ସମସ୍ତ ଶକ୍ତି ଏବଂ ସୌନ୍ଦର୍ଯ୍ୟ ସରିଯାଇଛି ।" ସିଦ୍ଧାର୍ଥ ସ୍ତବ୍ଧ ହୋଇ ଅନୁଭବ କଲେ ଜୀବନର ଦୁଃଖ । "ଦିନେ ନିଶ୍ଚିତ ରୂପେ ଏହିପରି ଜରାଜୀର୍ଣ୍ଣ ହୋଇ ସରିଯିବାକୁ ସେ ବାଧ୍ୟ ବୋଲି ଜାଣିଲେ, କିଏ ବା ଜୀବନରେ ସୁଖୀ ହୋଇପାରେ ?"

ଭାରାକ୍ରାନ୍ତ ରାଜପୁତ୍ର ଏବଂ ନିରବ ବାହକ ଧୀରେ ଧୀରେ କିଛି ବାଟ ଗଲା ପରେ ପଥପାର୍ଶ୍ୱରେ ଆଉ ଜଣକୁ ଦେଖିଲେ ।

ସେ ନିଶ୍ୱାସ ନେଇ ପାରୁନଥାଏ । ଅସହ୍ୟ ଯନ୍ତ୍ରଣାରେ ତା'ର ଶରୀର ଛଟପଟ ହେଉଥାଏ । ସେ ବିକଳ ହୋଇ ଚିତ୍କାର କରୁଥାଏ ।

ସିଦ୍ଧାର୍ଥ ରଥ ରଖିବାକୁ କହି ପଚାରିଲେ "ଏ କିଏ ? କାହିଁକି ତା'ର ଶରୀର ଏପରି ବିକୃତ, ସେ କାହିଁକି ଚିତ୍କାର କରୁଛି ।"

ଚନ୍ନା ପୂର୍ବବତ୍ ନିର୍ବିକାର ସତ୍ୟକୁ ପ୍ରକାଶ କରି କହିଲେ- "ଏ ହେଲା ଜଣେ ରୋଗୀ । ତା'ର ଶରୀରର ତତ୍ତ୍ୱଗୁଡ଼ିକ ସମତା ରକ୍ଷା କରିପାରୁନାହାନ୍ତି । ଶରୀର ଧାରଣ କରିଥିବା ସମସ୍ତ ପ୍ରାଣୀ ଏପରି ଅବସ୍ଥାରେ ପଡ଼ିବାକୁ ବାଧ୍ୟ । ଧନୀ, ଦରିଦ୍ର, ମୂର୍ଖ ପଣ୍ଡିତ କେହି ହେଲେ ଏ ଦୁର୍ଦ୍ଦଶାରୁ ମୁକୁଳି ପାରିବେ ନାହିଁ ।"

ରୋଗ ଯନ୍ତ୍ରଣାରେ ପୀଡ଼ିତ ଜୀବନରେ ସୁଖ ବୋଲି ତା'ହେଲେ କ'ଣ ଅଛି ? ଭାବିଲେ ବ୍ୟଥିତ ବିମର୍ଷ ସିଦ୍ଧାର୍ଥ ।

ଏଭଳି ଭୟାବହ ଦୃଶ୍ୟ ଆଉ ରାଜକୁମାରଙ୍କୁ ବ୍ୟଥିତ ନ କରୁ ଏହି ଆଶାରେ ଚନ୍ନା ଅତିଶୀଘ୍ର ରଥ ଚଳାଇ ନେବାକୁ ଚାହିଁଲେ । ଅଳ୍ପ କିଛି ବାଟ ଯାଇଛନ୍ତି କି ନାହିଁ, ତାଙ୍କର ପଥରୋଧ କରି ଚାରିଜଣ ଶବବାହକ ଦେଖାଦେଲେ ।

"ଏମାନେ କ'ଣ କାନ୍ଧେଇ ନେଉଛନ୍ତି ଚନ୍ନା ? ତା'ଉପରେ କାହିଁକି ଫୁଲ ପାଖୁଡ଼ା ପଡ଼ିଛି, ଅଥଚ ପଛରେ ଆସୁଥିବା ଲୋକମାନେ କାହିଁକି ଏପରି ବିଷଣ୍ଣ ଦେଖାଯାଉଛନ୍ତି । ତାଙ୍କ ଆଖିରୁ କାହିଁକି ଲୁହ ଝରି ଯାଉଛି ?"

"ହେ ରାଜକୁମାର । ସେମାନେ ଗୋଟିଏ ଶବକୁ କୋକେଇରେ ବୋହି ନେଉଛନ୍ତି । ସେ ଲୋକଟିର ମୃତ୍ୟୁ ଘଟିଛି । ତା'ର ଶରୀର ନିଶ୍ଚଳ ନିର୍ଜୀବ ପଡ଼ି

ରହିଛି । ପଛରେ ଯାଉଥିବା ଲୋକମାନେ ତା'ର ପରିବାର କୁଟୁମ୍ବ । ସେମାନେ ତାକୁ ଚିରକାଳ ହରାଇଥିବାରୁ କାନ୍ଦୁଛନ୍ତି ।"

"ଏ ଲୋକଟିର କାହିଁକି ମୃତ୍ୟୁ ହେଲା ? ସେପରି କ'ଣ ଅନ୍ୟମାନଙ୍କର ମଧ ହୁଏ କି ?"

ମଥାତଳକୁ ପୋତି ଏକ ଗଭୀର ଦୀର୍ଘଶ୍ୱାସ ନେଇ ଚନ୍ନା କହିଲେ "ହେ ରାଜକୁମାର,ପ୍ରାଣୀ ମାତ୍ରେ ଅନିବାର୍ଯ ଭାବରେ ଦିନେ ନା ଦିନେ ମୃତ୍ୟୁବରଣ କରିବାକୁ ବାଧ । ଏହା ଏକ ଅଲଘନୀୟ ନିୟମ । ଯେ ଜନ୍ମ ହୋଇଛି ସେ ନିଶ୍ଚୟ ମରିବ ।"

ସିଦ୍ଧାର୍ଥଙ୍କ କଣ୍ଠ ବାଷ୍ପରୁଦ୍ଧ । ସ୍ୱର କମ୍ପିତ । ସେ ମନକୁ ମନ ସ୍ୱଗତୋକ୍ତି କଲା ପରି ଅସ୍ପଷ୍ଟ ଶବ୍ଦରେ କହିଲେ । "ହେ ପୃଥିବୀବାସୀ ! ଦିନେ ତୁମର ଏ ଶରୀର ମାଟିରେ ମିଶିଯିବ । ତୁମେ କିପରି ଏଡ଼େ ବଡ଼ ଭ୍ରମରେ ଏ ସତ୍ୟକୁ ନ ଚାହିଁ ଜୀବନ ବଞ୍ଚି ରହିଛ ?" ଚନ୍ନା ଆତଙ୍କିତ ହୋଇ ଲକ୍ଷ୍ୟ କଲେ କିପରି ଏ ତ୍ରିବିଧ ଦୁଃଖର ଦୃଶ୍ୟ ସିଦ୍ଧାର୍ଥଙ୍କୁ ବିଚଳିତ କରି ପକାଇଛି ।

ସେ ରଥର ମୁହଁ ଫେରାଇ ଆଣି ଯଥାଶୀଘ୍ର ରାଜନଗରରେ ପ୍ରବେଶ କଲେ । ସାମନ୍ତମାନଙ୍କର ହର୍ମ୍ୟ ପାରିହେଲା ବେଳେ ଗୋଟିଏ ଅଳିନ୍ଦରୁ ନାରୀ କଣ୍ଠରେ ଶୁଭିଲା– "ଏ ଦେବପ୍ରତିମ ପୁରୁଷଙ୍କୁ ଯେ ପୁତ୍ର ବୋଲି ସମ୍ବୋଧନ କରିଛନ୍ତି ସେ ପିତାମାତା ଧନ୍ୟ । ଯେ ଏହାକୁ ପତି ରୂପେ ଲାଭ କରିଛନ୍ତି ସେ ନାରୀ ଧନ୍ୟା ।"

ସେ ଥିଲେ କିସ୍ସା ଗୌତମୀ; ସିଦ୍ଧାର୍ଥଙ୍କ କୁଟୁମ୍ବୀ ।

ତାଙ୍କୁ ଚାହିଁ ସିଦ୍ଧାର୍ଥ ଗମ୍ଭୀର ଉତ୍ତର ଦେଲେ "ନା, ଗୌତମୀ, ଯେଉଁମାନେ ମୁକ୍ତିର ସନ୍ଧାନ କରିପାରିଛନ୍ତି ସେମାନେ ଧନ୍ୟ । ଶାନ୍ତି ପାଇଁ ଆତୁର ହେଉଥିବା ମୋର ଅନ୍ତର ଏବେ ନିର୍ବାଣର ଆନନ୍ଦ ପାଇବାକୁ ଖୋଜି ବୁଲିବ ।"

"ନିର୍ବାଣ କିପରି ମିଳିବ ରାଜକୁମାର ?" ପଚାରିଲେ ଗୌତମୀ ।

ଅତି ସ୍ପଷ୍ଟ ନିଷ୍କମ୍ପ ସ୍ୱରରେ ଉତ୍ତର ଦେଲେ ସିଦ୍ଧାର୍ଥ, "ଲାଳସାର ଅଗ୍ନି ଲିଭିଗଲେ ନିର୍ବାଣ । ଦ୍ୱେଷ ଅସୂୟା ଭ୍ରମ ଅଜ୍ଞାନର ଶିଖା ଲିଭିଗଲେ ନିର୍ବାଣ; ଅନ୍ଧବିଶ୍ୱାସର ପଟଳ ଆଖିରୁ ଖସିଗଲେ ଓ ସମସ୍ତ ଅଶୁଭ ସତ୍ତା ଅନ୍ତରରୁ ଲୋପ ପାଇଗଲେ ନିର୍ବାଣ" । ସିଦ୍ଧାର୍ଥ ନିଜ କଣ୍ଠର ମୁକ୍ତା ହାର କାଢ଼ି କିସ୍ସା ଗୌତମୀକୁ ଟେକି ଦେଇ କହିଲେ "ତୁମର ପ୍ରେରଣା ପାଇଁ ଏ ଉପହାର ଗ୍ରହଣ କର ଗୌତମୀ ।"

ସିଦ୍ଧାର୍ଥଙ୍କ ହୃଦୟ କରୁଣାସିକ୍ତ, ମନ ଉଦାସ – ମୁଖମଣ୍ଡଳ ଭାରାକ୍ରାନ୍ତ। ରାଜନବରରେ ଯଶୋଧାରା ପଚାରିଲେ "ତୁମର ଦୁଃଖର କାରଣ କ'ଣ କୁମାର ?

"ପ୍ରତ୍ୟେକ ମଣିଷ ଜରା ବ୍ୟାଧିଗ୍ରସ୍ତ ହୁଏ ଏବଂ ମରେ । ଏହା କ'ଣ ଯଥେଷ୍ଟ ନୁହେଁ ଜୀବନର ଲାଳସାକୁ ନିର୍ବାପିତ କରିଦେବା ପାଇଁ ?"

ନିସ୍ତବ୍ଧ ଗଭୀର ରାତ୍ରି । କୋମଳ ଶଯ୍ୟା ଉପରେ ସୁଦ୍ଧା ସିଦ୍ଧାର୍ଥଙ୍କୁ ନିଦ ନାହିଁ । ସେ ଅସ୍ଥିର ବୋଧ କଲେ । ଉଠି ଆସିଲେ ବାହାରକୁ । ଉଦ୍ୟାନରେ ତାଙ୍କର ପ୍ରିୟ ଜାମୁଗଛ ତଳେ ବସି ଗଭୀର ଚିନ୍ତାରେ ନିମଗ୍ନ ହେଲେ । କେତେ ଦୁଃଖ, କେତେ ଯାତନା ଜୀବନରେ ସତେ ! କିଏ ଅଛି ଏଥିରୁ ତ୍ରାଣ କରିପାରିବ ? କିଏ ଅଛି ଯେ ମୃତ୍ୟୁକୁ ପରାସ୍ତ କରିପାରିବ ?

ଆକାଶରେ ଅସଂଖ୍ୟ ତାରା । ତାରାଲୋକରେ ଅସ୍ପଷ୍ଟ ତିମିରାଚ୍ଛନ୍ନ ନିଦ୍ରିତ ପୃଥିବୀ । ଏତିକିବେଳେ ଏକ ଦୀର୍ଘ ଉଜ୍ଜ୍ୱଳ ପୁରୁଷ ତାଙ୍କ ଆଗରେ ଆସି ଉଭା ହେଲେ ସେ ନିଜର ପରିଚୟ ଦେଇ କହିଲେ, "ମୁଁ ଏକ ଶ୍ରମଣ । ସଂସାରର ମିଥ୍ୟା, ଅଜ୍ଞାନ, ରୋଗ, ଦୁଃଖରେ ବିମୁଖ ହୋଇ ମୁଁ ସଂସାର ତ୍ୟାଗ କରିଛି । ଏଠି ସବୁ କ୍ଷଣସ୍ଥାୟୀ । ମୁଁ ଖୋଜୁଛି ଶାଶ୍ୱତ ସତ୍ୟ ଓ ଶାନ୍ତି ଯା'ର ବିଲୟ ନାହିଁ । ଖୋଜୁଛି ଏପରି ସୁଖ ଯାହାର ସମାପ୍ତି ନାହିଁ । ମୁଁ ନିର୍ଜନ ନୀରବତାରେ ମୋର ଏକମାତ୍ର ଲକ୍ଷ୍ୟର ସନ୍ଧାନ କରୁଛି, ମୁଁ ଏକ ଭିକ୍ଷୁ ।"

ତାଙ୍କୁ ଚାହିଁ ସିଦ୍ଧାର୍ଥ କହିଲେ, "ତୁମ ଭଳି ମୁଁ ମଧ୍ୟ ସଂସାର ପ୍ରତି ବିତୃଷ୍ଣ । ମୁଁ ଧର୍ମର ମାର୍ଗରେ ପ୍ରବେଶ କରିବାକୁ ଚାହେଁ । କିନ୍ତୁ ମୋର ପିତା ମୋତେ ରାଜକାର୍ଯ୍ୟରେ ନିଯୁକ୍ତ ରଖିବାକୁ ଚାହାନ୍ତି । ସଂସାର ବିରାଗୀ ହେବାକୁ ମୋର ବୟସ ହୋଇନାହିଁ ।"

ସେ ଉଜ୍ଜ୍ୱଳ ଭିକ୍ଷୁପୁରୁଷ ଆସ୍ତେ ମୁଣ୍ଡ ଦୋହଲାଇ ଏହା ଅସ୍ୱୀକାର କଲେ । କହିଲେ, "ଜାଣି ରଖ ଯେ ମୁକ୍ତିର ମାର୍ଗ, ସତ୍ୟ, ଧର୍ମର ମାର୍ଗ ଗ୍ରହଣ କରିବା ପାଇଁ କୌଣସି ବୟସ ସୀମା ନାହିଁ । ଯେକୌଣସି ସମୟ ସେଥିପାଇଁ ପ୍ରଶସ୍ତ ।" ସିଦ୍ଧାର୍ଥଙ୍କର ଆପାଦମସ୍ତକରେ ଏକ ଶିହରଣ ଖେଳିଗଲା– ତାଙ୍କ ଭିତରେ ଶୁଭିଲା "ବର୍ତ୍ତମାନ ହିଁ ସେ ଶୁଭମୁହୂର୍ତ୍ତ । ବର୍ତ୍ତମାନ ହିଁ, ସମସ୍ତ ବନ୍ଧନ ଛିନ୍ନ କରିବାର ବେଳ । ଭିକ୍ଷୁର ବ୍ରତ ଧାରଣ କରି ଆଲୋକ ଏବଂ ମୁକ୍ତିର ସନ୍ଧାନରେ ବାହାରି ପଡ଼ିବାରବେଳ ।"

ଶ୍ରମଣରୂପୀ ସ୍ୱର୍ଗଦୂତ ତାଙ୍କ ମନର ଭାବନାକୁ ଲକ୍ଷ୍ୟ କରି କହିଲେ– "ଅବଶ୍ୟ, ଅବଶ୍ୟ, ବର୍ତ୍ତମାନ ହିଁ ସେ ସର୍ବଶ୍ରେଷ୍ଠ ଶୁଭ ମୁହୂର୍ତ୍ତ । ଉଠ ସିଦ୍ଧାର୍ଥ, ତୁମ ଆବିର୍ଭାବର ଉଦ୍ଦେଶ୍ୟ ସାଧନ କର । ତୁମେ ହିଁ, ବୋଧିସତ୍ତ୍ୱ, ତୁମେ ହିଁ ତଥାଗତ ବୁଦ୍ଧ, ତୁମେ ହିଁ ଧର୍ମସ୍ଥାପନ କରିବାକୁ ଆସିଥିବା ଧର୍ମରାଜ, ତୁମେ ହିଁ ଜଗତକୁ ତ୍ରାଣ କରିବାକୁ ଆସିଛ । ତୁମର ଉଦ୍ଦେଶ୍ୟ ପୂର୍ଣ୍ଣ ହେଉ ।"

ସେ ଉଜ୍ଜ୍ୱଳପୁରୁଷ ଏତିକି କହି ଅନ୍ତର୍ହିତ ହୋଇଗଲେ ।

ସିଦ୍ଧାର୍ଥଙ୍କ ଅନ୍ତର ଆନନ୍ଦରେ ପୂରି ଉଠିଲା । ଆତ୍ମପ୍ରତ୍ୟୟ, ପରିଚ୍ଛନ୍ନ ହେଲା । ସଂକଳ୍ପ ଦୃଢ଼ୀଭୂତ ହେଲା – ସେ ନିଜକୁ ନିଜେ ବାରଂବାର କହିଲେ "ବର୍ତ୍ତମାନ ହିଁ ସେହି ଶୁଭ ମୁହୂର୍ତ୍ତ । ବର୍ତ୍ତମାନ ହିଁ ମୋତେ ସକଳ ବନ୍ଧନ ଛିନ୍ନ କରିବାକୁ ହେବ । ବର୍ତ୍ତମାନ୍ ହିଁ ଭିକ୍ଷୁ ବ୍ରତରେ ମୋତେ ପ୍ରସ୍ଥାନ କରିବାକୁ ହେବ । ମୁଁ ଯାତନାରୁ, ଦୁଃଖରୁ, ଜରା ଓ ମୃତ୍ୟୁରୁ ତ୍ରାଣ କରିବାର ମାର୍ଗ ସନ୍ଧାନ କରିବି । ମୁଁ ତଥାଗତ, ମୁଁ ବୁଦ୍ଧ ହେବି ।"

ରାଜକୁମାର ତାଙ୍କ ଶୟନ କକ୍ଷରେ ପ୍ରବେଶ କଲେ ।

ଦେଖିଲେ ସ୍ନିଗ୍ଧ ଦୀପାଲୋକରେ ରାହୁଲକୁ କୋଳରେ ଧରି ଯଶୋଧାରା ଗାଢ଼ ନିଦ୍ରାରେ ନିମଗ୍ନ ।

ଅନିନ୍ଦ୍ୟସୁନ୍ଦରୀ ପତ୍ନୀ ଯଶୋଧାରା । ତାଙ୍କର ପ୍ରସ୍ଫୁଟିତ ଯୌବନ ଉତ୍ତେଜକ ରୂପଲାବଣ୍ୟ ସିଦ୍ଧାର୍ଥଙ୍କ ଚିତ୍ତକୁ ଦ୍ରବୀଭୂତ କଲା । ହୃତ୍‌ସ୍ପନ୍ଦନ ଦ୍ରୁତତର କଲା ।

ସେ ପୁନରାବୃତ୍ତି କଲେ "ଦୁଃଖ ଶୋକ ଜରାମୃତ୍ୟୁ ପ୍ରପୀଡ଼ିତ ଏ ଜୀବନ । ମୋତେ ନିଷ୍କୃତିର ମାର୍ଗ ସନ୍ଧାନ କରିବାକୁ ହେବ । ବର୍ତ୍ତମାନ୍ ହିଁ ସେହି ଶୁଭ ମୁହୂର୍ତ୍ତ । ବର୍ତ୍ତମାନ୍ ହିଁ ସବୁ ବନ୍ଧନ ଛିନ୍ନ କରିବାକୁ ହେବ । ସେ ଯଶୋଧାରାଙ୍କ ରୂପଜାଲରୁ ନିଜକୁ ମୁକ୍ତ କରି ଆଣିଲେ ।

ଦେବଶିଶୁ ପରି ପବିତ୍ର, ସରଳ, ସୁନ୍ଦର ରାହୁଲ । ସିଦ୍ଧାର୍ଥଙ୍କ ପ୍ରାଣ ପ୍ରତିମ ରାହୁଲ । ତାଙ୍କର ଭାରି ଇଚ୍ଛା ହେଲା, ତାକୁ କୋଳରେ ନେଇ ବିଦାୟର ଶେଷ ଚୁମ୍ବନ ଦିଅନ୍ତେ । କିନ୍ତୁ ଯଶୋଧାରାଙ୍କ ବାହୁ ବନ୍ଧନରୁ ତାକୁ ଆଣିବା ସମ୍ଭବ ନ ଥିଲା । ସେ ତୀବ୍ର ବେଦନା ଓ ତୀବ୍ର ବିଜୟର ମୁହୂର୍ତ୍ତରେ ବ୍ୟଥିତ ହେଲେ ସିଦ୍ଧାର୍ଥ । ପତ୍ନୀ ପୁତ୍ର ରୂପରେ ସଂସାରର ନିବିଡ଼ତମ ବନ୍ଧନ ଏବଂ ଅନ୍ୟପକ୍ଷେ ଅନନ୍ତ ମୁକ୍ତି ଶାନ୍ତି ଆନନ୍ଦର ଆକର୍ଷଣ । ସେ ସଂକଳ୍ପକୁ ଦୃଢ଼ କଲେ । ପଥର କଲେ ହୃଦୟକୁ ଏବଂ ସଂଘର୍ଷର ଚୂଡ଼ାନ୍ତ ବିନ୍ଦୁରେ ମୁହଁ ଫେରାଇ ନେଲେ କ୍ଷଣକରେ ଶୟନ କକ୍ଷରୁ । ଆଉ ଫେରି ଚାହିଁଲେ ନାହିଁ ।

ଚନ୍ନାକୁ ସାଥୀରେ ନେଇ ଗଭୀର ନିଶୀଥିନୀରେ ପ୍ରସ୍ଥାନ କଲେ ସିଦ୍ଧାର୍ଥ । ତ୍ୟାଗ କଲେ ରାଜମୁକୁଟ, ଅଖଣ୍ଡ ସାମ୍ରାଜ୍ୟର ଆଧିପତ୍ୟ, ଅକଳନୀୟ, ଐଶ୍ୱର୍ଯ୍ୟ ସଂଭୋଗ, ତ୍ୟାଗ କଲେ ପ୍ରଦୀପ୍ତ ଯୌବନର ଲାଳସା, ଅପରୂପା ପତ୍ନୀ ଏବଂ ସୁକୁମାର ଶିଶୁପୁତ୍ର ।

ନିସ୍ତବ୍ଧ ରାତ୍ରିରେ କଣ୍ଟକର ଟାପୁଶବ୍ଦ କ୍ରମଶଃ ବିଲୀନ ହୋଇଗଲା ଦିଗ୍‌ବଳୟରେ । ଆଦିଷ୍ଟ ହୋଇ ଖଣ୍ଡିଏ ମଳିନ ବସ୍ତ୍ର ଆଣିଥିଲେ ଚନ୍ନା ।

ରାତିର ଅନ୍ଧାର ଭିତରେ ଗୋଟିଏ ଗଛମୂଳେ ସିଦ୍ଧାର୍ଥ ତାଙ୍କର ରାଜପୋଷାକ ପରିହାର କଲେ । କୁଞ୍ଚିତ କେଶରାଶି କର୍ତନ କଲେ ।

ଚନ୍ନାକୁ ଆଦେଶ ଦେଲେ କଣ୍ଟକ ସହିତ ଫେରିଯିବାକୁ । ରାଜପୁତ୍ରଙ୍କ ପୋଷାକ ଫେରାଇ ଦେଇ ରାଜା ଶୁଦ୍ଧୋଦନଙ୍କୁ ବାର୍ତ୍ତା ଦେବାକୁ ଯେ ସିଦ୍ଧାର୍ଥ ସଂସାର ତ୍ୟାଗ କଲେ ।

ବିଷଣ୍ଣ, ବିମର୍ଷ, ଶୋକାବିଷ୍ଟ କଣ୍ଟକ ଓ ଚନ୍ନା ଧୀରେ ଧୀରେ ଅନ୍ଧାରରେ ଅଦୃଶ୍ୟ ହୋଇଗଲେ ।

ମୃତ୍ତିକାବର୍ଣ୍ଣର ମଳିନ ବସ୍ତ୍ରଟିଏ ପିନ୍ଧି ସିଦ୍ଧାର୍ଥ ତାଙ୍କର ପାଦୁକାବିହୀନ ସୁକୁମାର ପାଦ କର୍କଶ ପୃଥିବୀରେ ସ୍ଥାପନ କରି ଦୃଢ଼ହୋଇ ଠିଆହେଲେ । ଆକାଶରେ ତାରାମାନେ ଚକିତହୋଇ ଚାହିଁରହିଲେ ।

ପୃଥିବୀ ସେ କୋମଳ ପାଦସ୍ପର୍ଶରେ ପୁଲକିତ ହେଲା ।

ନିଷ୍କୃତି ମାର୍ଗର ସନ୍ଧାନରେ ଶାକ୍ୟମୁନି ସିଦ୍ଧାର୍ଥ ପହଞ୍ଚିଲେ ଉରୁବିଲ୍ୱ ଅରଣ୍ୟରେ ।

ସେଠାରେ କଠୋର କୃଚ୍ଛ୍ର ସାଧନ କରୁଥିବା ପଞ୍ଚତପସ୍ୱୀଙ୍କର ନିଷ୍ଠା ଏବଂ ଏକାଗ୍ରତା ତାଙ୍କୁ ପ୍ରଭାବିତ କଲା ।

ସେ ନିଜେ ସେମାନଙ୍କ ସାଧନାରେ ଯୋଗ ଦେଲେ ।

କିନ୍ତୁ ପ୍ରଜ୍ଞା ଲାଭ ହେଲା ନାହିଁ । କାମନାର ବିନାଶ ଘଟିଲା ନାହିଁ । ସିଦ୍ଧାର୍ଥ ଜାମୁଗଛ ମୂଳେ ବସି ପୁନର୍ବିଚାର କଲେ । ଏ ମାର୍ଗର ଲକ୍ଷ୍ୟ ଏବଂ ପରିଣାମ ବିଷୟରେ । ତାଙ୍କର ମୋହଭଙ୍ଗ ହେଲା । ସେ ଜାଣିଗଲେ ତାହା ଏକ ଭ୍ରମ ।

ସେ ନିରଞ୍ଜନା ନଦୀ ଜଳରେ ପ୍ରବେଶ କଲେ ସ୍ନାନ କରିବାକୁ, କିନ୍ତୁ ଜଳମଧ୍ୟରୁ ଉଠି ପାରିଲେ ନାହିଁ । ଶରୀରର ସାମର୍ଥ୍ୟ ନ ଥିଲା ।

ବହୁ କଷ୍ଟରେ ଗଛ ଡାଳକୁ ଧରି ସେ ନିରଞ୍ଜନା ତଟ ଦେଶରେ ଆସି ମୂର୍ଚ୍ଛିତ ହୋଇ ଗଲେ । ପଞ୍ଚଭିକ୍ଷୁ ଭାବିଲେ ଯେ ତାଙ୍କର ମୃତ୍ୟୁ ହୋଇଗଲା ।

ପାଖରେ ରହୁଥିବା ଏକ ପଶୁପାଳକର କନ୍ୟା ନନ୍ଦା । ସେ ଦେଖିଲା ଯେ ସିଦ୍ଧାର୍ଥ ଜୀବିତ । ସେ କେବଳ ଚେତା ହରାଇ ପଡ଼ିଛନ୍ତି । ସେ ତାଙ୍କୁ କିଛି ତୋରାଣି ପିଇବାକୁ ଦେଲା ଏବଂ ସିଦ୍ଧାର୍ଥ ତାକୁ ଗ୍ରହଣ କଲେ ।

କୃଚ୍ଛ୍ରସାଧକ ଭିକ୍ଷୁମାନେ ଭାବିଲେ ଯେ ସିଦ୍ଧାର୍ଥ ଯୋଗଭ୍ରଷ୍ଟ ହୋଇ ସାଧାରଣ ଗୌତମ ମାତ୍ର ହୋଇଗଲେ । ଏଣୁ ତାଙ୍କୁ ସେମାନେ ପରିହାର କଲେ । ସିଦ୍ଧାର୍ଥ କୃଚ୍ଛ୍ରସାଧନାର ନିଷ୍ଫଳ ଅଥଚ କଠୋର ମାର୍ଗରୁ ମୁକ୍ତ ହେଲେ !

ଯେତେବେଳେ ଏକାକୀ ପରିବ୍ରାଜକ ସିଦ୍ଧାର୍ଥ ବୋଧିଦ୍ରୁମର ନିକଟବର୍ତ୍ତୀ ହେଲେ ସେତେବେଳେ ପୃଥିବୀ ଶିହରିତ ହେଲା ଏବଂ ଏକ ଅପୂର୍ବ ଆଲୋକ ବାୟୁମଣ୍ଡଳକୁ ଉଦ୍ଭାସିତ କଲା ।

ସେ ବୋଧିଦ୍ରୁମର ପାଦଦେଶରେ ସ୍ଥିରହୋଇବସିଲେ ଏବଂ ଗଭୀର ଧ୍ୟାନସ୍ଥ ହେଲେ ।

ମାର ତା'ର ସମସ୍ତ ବାହିନୀ ନେଇ ତାଙ୍କୁ ବିଚଳିତ କରିବାକୁ ଚେଷ୍ଟା କଲା । କାମ, କ୍ରୋଧ, ଦ୍ୱେଷ, କାମନା, ବାସନା, ଭୋଗଲିପ୍ସା କିଛି ହେଲେ ସେ ଶାକ୍ୟମୁନିଙ୍କ ଚିତ୍ତରେ ଉଦ୍ରେକ କରି ପାରିଲା ନାହିଁ ।

ଯେତେବେଳେ ସେ ଦେଖିଲା ଯେ ତା'ର ତରଳ ଅଗ୍ନି ପ୍ରବାହ ସୁଗନ୍ଧିତ ମଳୟରେ ପରିଣତ ହୋଇ ଯାଉଛି, ଏବଂ ସେ ନିକ୍ଷେପ କରିଥିବା ବଜ୍ରଶୂଳ ପଦ୍ମକୋରକରେ ବଦଳି ଯାଉଛି ସେ ଶାକ୍ୟମୁନିଙ୍କର ଅପାର ଶକ୍ତିର ପରିଚୟ ପାଇ ସେ ସ୍ଥାନ ତ୍ୟାଗ କରି ପଳାୟନ କଲା। ବୋଧିବୃକ୍ଷ ମୂଳରେ ଆକାଶରୁ ପୁଷ୍ପ ବୃଷ୍ଟିହେଲା । ସିଦ୍ଧାର୍ଥ ଅଖଣ୍ଡ ଧ୍ୟାନରେ ନିମଗ୍ନ ରହିଲେ ।

ତାଙ୍କର ବୋଧିକେନ୍ଦ୍ରରେ କ୍ରମଶଃ ଆଲୋକ ପଟଳ ଉନ୍ମେଷିତ ହେବାକୁ ଲାଗିଲା ।

"କାମନା ହିଁ ସମସ୍ତ ଦୁଃଖର ବୀଜାଧାର। କାମନା ହିଁ ତନ୍‌ହା । ଅଜ୍ଞାନ ହିଁ ସମସ୍ତ ଅନିଷ୍ଟର ହେତୁ । ଅଜ୍ଞାନ ମୋହାନ୍ଧତାର ପରିଣାମ । ଜନ୍ମ ଏବଂ ମୃତ୍ୟୁ ଦ୍ୱାଦଶ ନିଦାନକୁ ଗ୍ରଥିତ କରି ରଖିଛନ୍ତି ।

ପ୍ରଥମେ ଅଜ୍ଞାନର ସମୁଦ୍ରରେ କମ୍ପନ
କମ୍ପନରୁ ଚେତନା, ଅନୁଭବ ।
ଅନୁଭବରୁ ଅହଂକାର, ବ୍ୟଷ୍ଟିଚେତନା ।
ବ୍ୟଷ୍ଟିଚେତନାରେ ଷଟ୍‌ଭୂମି । ପଞ୍ଚେନ୍ଦ୍ରିୟ ଓ ମନ ।
ଷଟ୍ ଭୂମିରେ ସଂଘାତ ।
ସଂଘାତରୁ ଉତ୍ତେଜନା ।
ଉତ୍ତେଜନାରୁ ତୃଷ୍ଣା ।
ତୃଷ୍ଣାରୁ ମୋହ । ବସ୍ତୁ ସଂପୃକ୍ତି ।
ମୋହରୁ ଅହଂକାର । ଅହଂକାର ଜନ୍ମାନ୍ତରିତ ସଂସ୍କାର ।
ଏହା ହିଁ ସକଳ ଦୁଃଖ, ରୋଗ, ଜରା ଓ ମୃତ୍ୟୁର କାରଣ ।
ଜ୍ଞାନଦୀପ୍ତ ଦୃଷ୍ଟିରେ ବୋଧିସତ୍ତ୍ୱ ସିଦ୍ଧାର୍ଥ ଚତୁଷ୍ଟୟ ସତ୍ୟ ଦର୍ଶନ କଲେ ।

ପ୍ରଥମ ସତ୍ୟ ଦୁଃଖ । ଦୁଃଖମ୍ ସତ୍ୟମ୍ ।
ଦ୍ୱିତୀୟ ସତ୍ୟ ଦୁଃଖ ସକାରଣ । କାରଣ ନିରାକରଣୀୟ ।
ତୃତୀୟ ସତ୍ୟ ଦୁଃଖ ନିରାକରଣୀୟ ।
ଚତୁର୍ଥ ସତ୍ୟ ଦୁଃଖକୁ ନିରାକରଣ କରୁଥିବା ଅଷ୍ଟାଙ୍ଗ ମାର୍ଗ ।

ଏହା ହିଁ ସତ୍ୟ । ଏହା ହିଁ ଧର୍ମ । ପୂର୍ଣ୍ଣବିକଶିତ ଜ୍ଞାନ ଲାଭ କରି ବିମଳ ଆଭା ବିକିରଣ କଲେ ତଥାଗତ ବୁଦ୍ଧ ।

ତାଙ୍କ ଓଷ୍ଠପୁଟରୁ ପ୍ରଥମ ବିଜୟର ଗାନ ସ୍ଫୁରିତ ହେଲା-

ଜନ୍ମଜନ୍ମାନ୍ତରୁ କରିଛି ମୁଁ ନିଷ୍ଫଳ ପ୍ରୟାସ
ଖୋଜିବାକୁ ଦୁଃଖ ମନ୍ଦିରର କିଏ ସେ ନିର୍ମାତା
ଏବେ ତୋତେ ଦେଖୁଛି ମୁଁ ସ୍ପଷ୍ଟ
ଏହା ମୋର ଶେଷଥର ଏଠିକି ଆସିବା
ଏଥର ତୋ ଶେଣି ଛାତ ଭୁଷୁଡ଼ି ପଡ଼ିବ
କାମନାର ବିନାଶ ଘଟିବ, ମିଳିବ ପ୍ରଶାନ୍ତି ।—

ଏହି ଜୟଗାନ ଧ୍ୱନିତ ହେଲା ଅରଣ୍ୟ ପର୍ବତ ଝରଣାରେ, ଆକାଶର କୋଣ ଅନୁକୋଣରେ । ବୋଧିଦ୍ରୁମ ତଳେ ତଥାଗତ ବୁଦ୍ଧ ସ୍ୱକୀୟ ଦୀପ୍ତିରେ ଉଦ୍ଭାସିତ ହେଲେ ।

ସ୍ଥିର ଦୀପଶିଖା ପରି ସେହି ଗୋଟିଏ ସ୍ଥିତିରେ ତଥାଗତ ବୁଦ୍ଧ ମୁକ୍ତିର ବିମଳ ଆନନ୍ଦରେ ନିମଗ୍ନ ରହିଗଲେ ।

ସାତ ସପ୍ତାହ ପାରି ହୋଇଗଲା ।

ଏତିକି ବେଳେ ଦୁଇଜଣ ବଣିକ ତାଙ୍କୁ ଲକ୍ଷ୍ୟ କରି ପାଖେଇ ଆସିଲେ । ବହୁଦୂର କଳିଙ୍ଗରୁ ପଣ୍ୟ-ଶକଟ ନେଇ ଆସୁଥିବା ତପସ୍ସୁ ଓ ଭଲ୍ଲିକ ଏଭଳି ପ୍ରଶାନ୍ତ ଜ୍ୟୋତି ବିକୀରଣ କରୁଥିବା ଶ୍ରମଣଙ୍କୁ କେବେହେଲେ ଦେଖି ନ ଥିଲେ ।

ସେମାନେ ନମ୍ରତାର ସହିତ ତାଙ୍କ ଆଗରେ ଆସି ଠିଆ ହେଲେ । ତାଙ୍କ ପାଖରେ ଥିବା ଚାଉଳ ପିଠା ଏବଂ ମହୁ ତଥାଗତଙ୍କୁ ଅର୍ପଣ କଲେ ।

ତାଙ୍କର ନିର୍ମଳ ସରଳ ଶ୍ରଦ୍ଧା ସ୍ୱୀକାର କଲେ ତଥାଗତ ବୁଦ୍ଧ ।

ବୁଦ୍ଧତ୍ୱ ପ୍ରାପ୍ତି ପରେ ତାହା ଥିଲା ତାଙ୍କର ପ୍ରଥମ ଭୋଜନ ।

ତପସ୍ସୁ ଓ ଭଲ୍ଲିକ ବୁଦ୍ଧବାଣୀର ପ୍ରଥମ ଉଚ୍ଚାରଣ ଶୁଣିବାର ସୌଭାଗ୍ୟ ଅର୍ଜନ କଲେ । ସେମାନେ ହିଁ ତଥାଗତଙ୍କର ପ୍ରଥମ ଶିଷ୍ୟ ହେବାର ଅଧିକାର ଲାଭ କଲେ ।

ବାରାଣସୀର ଉପବନରେ ତଥାଗତ ଏକାକୀ ପ୍ରବେଶ କଲେ । ତଥାଗତ ସେଠାରେ ରହୁଥିବା ପଞ୍ଚଭିକ୍ଷୁଙ୍କୁ ପ୍ରଥମେ ତାଙ୍କର ଆଲୋକର ବାର୍ତ୍ତା ଦେବାକୁ ଚାହିଁଥିଲେ । ସେମାନେ ବୁଦ୍ଧଙ୍କୁ ଦୁର୍ଦ୍ଦିନରେ ଛାଡ଼ି ଆସିଥିଲେ ସତ କିନ୍ତୁ କରୁଣାବତାର ତାଙ୍କୁ ହିଁ ମାର୍ଗ ଦେଖାଇବାକୁ ନିଜେ ତାଙ୍କ ନିକଟକୁ ଆସିଥିଲେ ।

ବାରାଣସୀର ମୃଗବନରେ ରହୁଥିବା ପଞ୍ଚଭିକ୍ଷୁ ତଥାଗତଙ୍କୁ ଓ ତାଙ୍କ ବିମଳ ବ୍ୟକ୍ତିତ୍ୱକୁ ଦେଖି ସୁଦ୍ଧା ତାଙ୍କୁ ସ୍ୱୀକାର କରି ପାରିଲେ ନାହିଁ ।

ସେମାନେ ତେଣୁ ତାଙ୍କୁ ସମ୍ବୋଧନ କଲେ "ହେ ବନ୍ଧୁ ଗୌତମ କୁଆଡ଼େ ଆସିଲ ?" ତାଙ୍କର ଅବହେଳା ଓ ଅସମ୍ମାନ ଲକ୍ଷ୍ୟକରି ସେ କରୁଣାପ୍ରବଣ ହୋଇ ତାଙ୍କୁ ଉପଦେଶ ଦେଲେ ।

"ତଥାଗତଙ୍କୁ ନାମ ଧରି ଏପରି ସମ୍ବୋଧନ କରାଯାଏ ନାହିଁ । ସେ ବୁଦ୍ଧ, ସେ ପିତା ତୁଲ୍ୟ ସେଥିପାଇଁ ତାଙ୍କୁ ବନ୍ଧୁ ବୋଲି ସମ୍ବୋଧନ କରିବା ମଧ୍ୟ ଉଚିତ ନୁହେଁ ।

"ହେ ପଞ୍ଚଭିକ୍ଷୁ, କୃଚ୍ଛ୍ରସାଧନ କଲେ କାହାର ଆତ୍ମଶୁଦ୍ଧି ହୋଇ ଯାଏ ନାହିଁ। ଏ ଦୁଇଟିଯାକ ଚରମପନ୍ଥା ସେଥିପାଇଁ ବର୍ଜନୀୟ। ଶରୀରଉପରେ ଅତ୍ୟାଚାର କରି ତାକୁ ଦୁର୍ବଳ ଏବଂ ମନକୁ ଅସ୍ଥିର କରିବାଦ୍ୱାରା କୌଣସି ଶ୍ରେୟପ୍ରାପ୍ତ ହୁଏ ନାହିଁ ।

ଏଣୁ ସୂକ୍ଷ୍ମ ମଧ୍ୟମ ପନ୍ଥା ହିଁ ଗ୍ରହଣୀୟ । ଶରୀରକୁ ସୁସ୍ଥ ରଖିବା, ମନକୁ ସୁସ୍ଥ ରଖିବା ବିଧେୟ ।

ମଧ୍ୟମ ପନ୍ଥା ହିଁ ବିଜ୍ଞଜନଙ୍କ ପନ୍ଥା । ତାହା ମୁଁ ତୁମକୁ ଦେଖାଇବାକୁ ଆସିଛି । ତୁମେ ଏବେ ମଧ୍ୟ କୃଚ୍ଛ୍ର ସାଧନାକୁ ଶ୍ରେଷ୍ଠପନ୍ଥା ବୋଲି ଧରି ନେଇଥିବାରୁ ସେଥିରୁ ମୁକ୍ତ ହୋଇ ପାରୁନାହିଁ ଏବଂ ତଥାଗତ ବୁଦ୍ଧଙ୍କୁ ପ୍ରତ୍ୟାଖ୍ୟାନ କରୁଛ ।" ପଞ୍ଚଭିକ୍ଷୁଙ୍କର ଶୃଙ୍ଖଳ ଛିନ୍ନ ହେଲା । ସେମାନେ ତଥାଗତଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ ଏବଂ ଧନ୍ୟ ହେଲେ ।

ବାରାଣସୀର ଜନୈକ ଧନିକ ପୁତ୍ରର ନାମ ଯଶ । ସେ ତଥାଗତଙ୍କ ପ୍ରଥମ ଦର୍ଶନରେ ମୁଗ୍ଧ ହେଲା । ତାଙ୍କ ବାଣୀ ଶୁଣି ତା'ର ସମସ୍ତ ବିକ୍ଷୋଭ ଶାନ୍ତ ହେଲା । ସେ ଭିକ୍ଷୁବ୍ରତ ଗ୍ରହଣ କଲା । ଯଶକୁ ଖୋଜିବାକୁ ଆସି ତା'ର ଧନୀକ ପିତା ତଥାଗତଙ୍କ ପାଖରେ ପହଞ୍ଚିଲା ।

"ଆପଣ ମୋର ପୁତ୍ର ଯଶକୁ ଦେଖିଛନ୍ତି ।"

"ତୁମେ ମୋ ପାଖକୁ ଆସ ଯଶକୁ ପାଇ ପାରିବ"– ଉତର ଦେଲେ ତଥାଗତ । ସେ ବାଣୀରେ କୃତକୃତ୍ୟ ହୋଇ ସେ ତଥାଗତଙ୍କ ଠାରୁ ଉପଦେଶ ଗ୍ରହଣ କଲା ଏବଂ ସେ ଏପରି ଅଭିଭୂତ ହେଲା ଯେ ସେ ହିଁ ସର୍ବ ପ୍ରଥମେ ଶରଣ ବାକ୍ୟ ଉଚ୍ଚାରଣ କଲା । "ବୁଦ୍ଧଂ ଶରଣଂ ଗଚ୍ଛାମି ସଂଘମ୍ ଶରଣଂ ଗଚ୍ଛାମି, ଧମ୍ମଂ ଶରଣଂ ଗଚ୍ଛାମି" ଏବଂ ଏହି ବାକ୍ୟ ଦିଗ୍‌ବିଦିଗରେ ଗୁଞ୍ଜରିତ ହେଲା ।

ଯଶ ଏବଂ ତା'ର ପିତାଙ୍କ ଅନୁରୋଧ କ୍ରମେ ତଥାଗତ ତାଙ୍କ ଘରେ ଅତିଥି ହୋଇ ଭୋଜନ ସ୍ୱୀକାର କଲେ ।

ସେ ପରିବାରର ନାରୀମାନେ ତଥାଗତଙ୍କ ଅମୃତମୟୀ ବାଣୀ ଶୁଣି ତାଙ୍କର ଶିଷ୍ୟତ୍ୱ ପ୍ରାର୍ଥନା କଲେ । ସେମାନେ ହେଲେ ତଥାଗତ ବୁଦ୍ଧଙ୍କ ସର୍ବପ୍ରଥମ ଶିଷ୍ୟା । ଯଶର ତିନିଜଣ ଯୁବବନ୍ଧୁ ତା'ର ଆଚରଣରେ ପ୍ରଭାବିତ ହୋଇ ବୁଦ୍ଧଙ୍କ ନିକଟକୁ ଆସିଲେ ଏବଂ ଲୌହଖଣ୍ଡ ଚୁମ୍ବକର ସ୍ପର୍ଶ ଛାଡ଼ି ନ ପାରିଲା ପରି ସେମାନେ ମଧ୍ୟ ତଥାଗତଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ଧର୍ମଚକ୍ର ପ୍ରବର୍ତ୍ତିତ ହେଲା । ଆବର୍ତ୍ତିତ ହେଲା ଏବଂ ଆରମ୍ଭ ହେଲା ଧର୍ମଚକ୍ରର ଜୟଯାତ୍ରା । ବିପୁଳ ଶାନ୍ତି-ସାମ୍ରାଜ୍ୟର ପ୍ରସାର ।

ବୈଶାଳୀର ଅପରୂପା ରାଜନଟୀ ଅମ୍ବାପାଲି ।

ସେ ଶୁଣିବାକୁ ପାଇଲା ଯେ ଶିଷ୍ୟ ଗହଣରେ ତଥାଗତ ବୁଦ୍ଧ ବୈଶାଳୀରେ ପ୍ରବେଶ କରିବେ । ଏ ବାର୍ତ୍ତା ଶୁଣି ତା'ର ଅକାରଣ ପୁଲକ ଜାତ ହେଲା ।

ପର ମୁହୂର୍ତ୍ତରେ ସେହି ପରିମାଣରେ ସେ ଉଦାସ ବିଷଣ୍ଣବୋଧ କଲା ।

ହର୍ଷ ବିଷାଦ ତାକୁ ଯୁଗପତ୍ ବିଚଳିତ କଲା । ବୁଦ୍ଧ ଆସୁଛନ୍ତି, ଏହା ବୈଶାଳୀ କାହିଁକି, ପୃଥିବୀର ଯେକୌଣସି ପ୍ରାନ୍ତ ପାଇଁ ସୌଭାଗ୍ୟ ଓ ଉଲ୍ଲାସର ବାର୍ତ୍ତା । କିନ୍ତୁ ହତଭାଗିନୀ ଅମ୍ବାପାଳି । ତା'ର କଳୁଷିତ ଜୀବନକୁ କ'ଣ ତାଙ୍କୁ ଅର୍ପଣ କରିପାରିବ ? ସେ କ'ଣ ତାଙ୍କୁ ଦର୍ଶନ ଦେବେ ?

ସେ ପୁଣି ଶୁଣିଲା ଯେ ତଥାଗତ ଅଯାଚିତ ଆସି ଅମ୍ବାପାଲିର ବିସ୍ତୀର୍ଣ୍ଣ ଉଦ୍ୟାନରେ ଶିଷ୍ୟମାନଙ୍କୁ ନେଇ ଅବସ୍ଥାନ କରିଛନ୍ତି । ଅମ୍ବାପାଲି ବିଶ୍ୱାସ କରିପାରିଲା ନାହିଁ ନିଜର ସୌଭାଗ୍ୟକୁ । ତା'ର ଅବାରିତ ଅଶ୍ରୁଧାରାରେ ପ୍ରକାଶିତ ହେଉଥିଲା, ତା'ର କୃତଜ୍ଞତା, ନିସ୍ତରିଲି ନିସ୍ତରିଲି ଭାବ ।

ସେ କାଳ ବିଳମ୍ବ ନ କରି ଅତି ସାଧାରଣ ପରିଧାନରେ ଉପବନର ପ୍ରାନ୍ତ ପର୍ଯ୍ୟନ୍ତ ରଥ ନେଇ ସେଠାରୁ ପଦଗାମୀ ହୋଇ ଶିବିରରେ ପ୍ରବେଶ କଲା ।

ତଥାଗତ ଦୂରରୁ ଅମ୍ବାପାଲିକୁ ଦେଖି ପ୍ରୀତ ହେଲେ । ତା'ର ରୂପଯୌବନ, ସଂପତ୍ତି, ପ୍ରତିପତ୍ତି, ବିଳାସ ସଂଭୋଗର ଅନ୍ତରାଳରେ ଲୁଚିଥିବା ପ୍ରଗାଢ଼ ଶ୍ରଦ୍ଧା ଏବଂ ସ୍ୱଚ୍ଛ ହୃଦୟକୁ ଦେଖି ସେ ତାକୁ ଆଶୀର୍ବାଦ କଲେ ।

ଅମ୍ବାପାଲି ବୁଦ୍ଧଙ୍କ ପାଦତଳେ ବିନମ୍ରତା ସହିତ ବସି ତାଙ୍କଠାରୁ ଉପଦେଶ ଶୁଣିଲା । ତା'ର ସମସ୍ତ ଗ୍ଲାନି, ସଙ୍କୋଚ ଆତ୍ମଧିକ୍କାର ଦୂର ହେଲା । ସେ ଆଶ୍ୱସ୍ତ ହେଲା । ଶାନ୍ତ ହେଲା ।

ପରମ ଶ୍ରଦ୍ଧାରେ, ବୁଦ୍ଧଙ୍କୁ ସବିନୟେ ପ୍ରାର୍ଥନା କଲା, ତା'ପର ଦିନ ତା'ର ବାସଭବନରେ ଶିଷ୍ୟମାନଙ୍କୁ ନେଇ ପଦାର୍ପଣ କରିବାକୁ ଏବଂ ଭୋଜନ ଗ୍ରହଣ କରିବାକୁ ।

ବୁଦ୍ଧ ନିରବ ରହି ତା'ର ନିମନ୍ତ୍ରଣ ସ୍ୱୀକାର କଲେ ।

ଅମ୍ବାପାଲି ତା' ଜୀବନର ଚରମ ସାର୍ଥକତା, ତା'ର ଚରମ ଆନନ୍ଦକୁ ବିଶ୍ୱାସ କରିପାରୁନଥିଲା ।

ତା' ପରଦିନ ଅମ୍ବାପାଲି, ମନପ୍ରାଣ ଦେଇ ତା'ର ବାସଭବନକୁ ସଜ୍ଜିତ କଲା । ମନପ୍ରାଣ ଦେଇ ମିଷ୍ଟାନ୍ନ ପିଷ୍ଟକ ପ୍ରସ୍ତୁତ କଲା ଏବଂ ଅଶ୍ରୁବିଗଳିତ ଆନନ୍ଦ ଉତ୍କଣ୍ଠାରେ ଅପେକ୍ଷା କଲା ।

ଯଥା ସମୟରେ ବୁଦ୍ଧ ତାଙ୍କ ଶିଷ୍ୟମାନଙ୍କ ଗହଣରେ ଅମ୍ବାପାଲିର ବାସଗୃହରେ ପ୍ରବେଶ କଲେ । ଯେଉଁମାର୍ଗରେ କେବଳ ଧନିକ ଯୁବକମାନେ ଲାଳସା ନେଇ ପ୍ରବେଶ କରୁଥିଲେ, ତା'ର ସମସ୍ତ କଳୁଷକୁ ଗଙ୍ଗାଧାରରେ କ୍ଷାଳନ କରି ତଥାଗତ ପ୍ରବେଶ କଲେ ।

ଅମ୍ବାପାଲି ଆତ୍ମବିଭୋର ହୋଇ ଚାହିଁ ରହିଲା ତଥାଗତଙ୍କୁ ।

ଭୋଜନ ପର୍ବରେ ଅମ୍ବାପାଲି ନିଜେ ସମସ୍ତଙ୍କୁ ପରିବେଷଣ କଲା । ବୁଦ୍ଧଙ୍କ ନିକଟରେ ବସି ରହି ତାଙ୍କର ତୃପ୍ତି ଆସିବା ପର୍ଯ୍ୟନ୍ତ ସ୍ୱାଦିଷ୍ଟ ଅନ୍ନ ପରଷିଲା ।

ବୁଦ୍ଧ ଅତ୍ୟନ୍ତ ପ୍ରୀତ ହୋଇ ତାକୁ ଆଶୀର୍ବାଦ ଦେଲାବେଳେ ସେ ନତଜାନୁ ହୋଇ କୃତାଞ୍ଜଳିପୁଟରେ ନିବେଦନ କଲା- "ହେ ପରମପ୍ରଭୁ ! ମୁଁ ଆଜି କୃତାର୍ଥ । ମୋର ସମସ୍ତ ବନ୍ଧନ ଛିନ୍ନ ହୋଇଛି । ମୁଁ ଏ ଅଟ୍ଟାଳିକା, ଉପବନ, ଏ ସମସ୍ତ ଧନ ସମ୍ପତ୍ତି ଆପଣଙ୍କ ପାଦତଳେ ଅର୍ପଣ କରୁଛି । ଏ ସମସ୍ତ ସଂଘ ପାଇଁ ସ୍ୱୀକାର କରନ୍ତୁ ।"

ତଥାଗତ ନିରବରେ ତା'ର ଅର୍ପଣକୁ ସ୍ୱୀକାର କଲେ ।

ସମସ୍ତ ବାରଣ ସତ୍ତ୍ୱେ ଆନନ୍ଦଙ୍କର ଆଖି ବାଷ୍ପାକୁଳ ହୋଇ ଉଠୁଥିଲା । ଚିତ୍ତ ଉଦ୍ବିଗ୍ନ ହୋଇ ଉଠୁଥିଲା । ଦିଗ୍‌ବଳୟରେ ଦୀର୍ଘ ଛାୟା ମୂର୍ତ୍ତି ପରି ଉଭା ହୋଇ ଯାଉଥିଲା ଅନାଗତ ଆଶଙ୍କା ।

ଆନନ୍ଦଙ୍କର ଭାବାନ୍ତର ଲକ୍ଷ୍ୟ କରି ତଥାଗତ ତାଙ୍କୁ ପାଖକୁ ଡାକି କହିଲେ "ଶୁଣ ଆନନ୍ଦ ! ନିରଞ୍ଜନା ନଦୀର ତଟଦେଶରେ ଯେତେବେଳେ ତଥାଗତ ନିଗ୍ରୋଧ ବୃକ୍ଷମୂଳରେ ବସିଥିଲେ, 'ମାର' ତାଙ୍କୁ ଯାହା କହିଥିଲା ତାହା ପୁନର୍ବାର ସେ କାଲି ଏଠାରେ କହିଗଲା–

ସେ କହିଲା, "ହେ ତଥାଗତ । ତୁମେ ଅଜ୍ଞାନ, ଅନ୍ଧକାର, ରୋଗ, ଶୋକ, ଜରା, ମୃତ୍ୟୁ ଆଦି ପ୍ରାଚୀନ ନିଗଡ଼ରୁ ପ୍ରାଣୀକୁ ମୁକ୍ତିର ମାର୍ଗରେ ନେବାକୁ ଚାହିଁଥିଲ । ତୁମେ ଆଦିମ ରହସ୍ୟକୁ ଭେଦ କରି ଜ୍ଞାନ ମୁକ୍ତି ନିର୍ବାଣ ଲାଭ କଲ ଏବଂ ସେହି ସତ୍ୟକୁ ଏଠାରେ ପ୍ରତିଷ୍ଠିତ କଲ । ତୁମର ଚୂଡ଼ାନ୍ତ ଆବିର୍ଭାବ ସାର୍ଥକ ହେଲା । ଏବେ ମହାପରିନିର୍ବାଣ ପାଇଁ ପ୍ରସ୍ତୁତ ହୁଅ । କାରଣ ଯେଉଁ ପାର୍ଥିବ ଶରୀରକୁ ସ୍ୱୀକାର କରି ତୁମେ ଏଠି ବିଚରଣ କଲ ତାହା କାଳକ୍ରମେ ବିଲୟ ପ୍ରାପ୍ତ ହେବ । ତାହା ହିଁ ଏ ଜଗତର ଅଲଙ୍ଘ୍ୟ ନିୟମ । ତୁମେ ଏ ଶରୀରରେ ଚିରକାଳ ରହିପାରିବ ନାହିଁ ।"

"ଆନନ୍ଦ, ସେ ମୁହୂର୍ତ୍ତ ନିକଟତର ହୋଇ ଆସୁଛି । ଯାହା ଦିନେ ଏ ନଶ୍ୱର ଉପାଦାନକୁ ନେଇ ପିଣ୍ଡୀଭୂତ ହୋଇଥିଲା, ତା'ର ପତନ ହେବାକୁ ବାଧ୍ୟ ।"

ଆନନ୍ଦ ଶୋକାକୁଳ ହୋଇ ସାଶ୍ରୁ ନୟନରେ ନିବେଦନ କଲେ, "ଆଉ କିଛି କାଳ ଆମପ୍ରତି କରୁଣାପ୍ରବଣ ହୋଇ ଜଗତରେ ଅଗଣିତ ପ୍ରାଣୀଙ୍କ କଲ୍ୟାଣ ପାଇଁ ଏ ଆଶୀର୍ବାଦର ଶୁଭକାଳକୁ ସମାପ୍ତ କରନ୍ତୁ ନାହିଁ ।"

"ଯାହା ସମ୍ଭବ ନୁହେଁ ସେଥିପାଇଁ ଅନୁରୋଧ କର ନାହିଁ ଆନନ୍ଦ । ତଥାଗତ ଯାହା ଦେବା କଥା ଦେଇ ସାରିଛନ୍ତି, ନିଃସଙ୍କୋଚ ନିଃଶେଷ । ମାନବ ଶରୀର ପାଇଁ ଅଶୀବର୍ଷର ପରମାୟୁ କିଛି କମ୍ ନୁହେଁ। ଏହାପରେ ଯାହା ଅପରିହାର୍ଯ୍ୟ ତାହା ହିଁ ହେବ । ଧର୍ମର ମାର୍ଗରେ ଅବିଚଳିତ ରହିବ । ସତ୍ୟକୁ କଦାପି ଲଂଘନ କରିବ ନାହିଁ । ଏ ଶରୀର ବିଲୀୟମାନ । କିନ୍ତୁ ସତ୍ୟ ସ୍ଥିର, ଧର୍ମ ସ୍ଥିର । ମାର୍ଗ ସ୍ଥିର । ଦୃଢ଼ତାର ସହିତ ଶ୍ରେୟ ସାଧନ କର । ଏ ଆଲୋକର ବାର୍ତ୍ତା ପୃଥିବୀରେ ପ୍ରଚାରିତ କର । ଏବେ ଚାଲ କୁଶିନାରା ଯିବା । ଯାତ୍ରା ପାଇଁ ପ୍ରସ୍ତୁତ ହୁଅ ।"

ତଥାଗତଙ୍କ ଶରୀର ଯେ ଅସୁସ୍ଥ ତାହା ଆନନ୍ଦ ଜାଣିଥିଲେ ।

ପାୱା ପାରିହେଲାବେଳେ, ଯଦି ଚଣ୍ଡ କମାର ତଥାଗତଙ୍କୁ ତା' ଘରକୁ ଡାକି ନ ଥାନ୍ତା, ଯଦି ଚାଉଳପିଠା ଆଉ ଶୁଖିଲା ବାରହା ମାଂସର ବ୍ୟଞ୍ଜନ ସେ ତାଙ୍କୁ ଅର୍ପଣ

କରିନଥାନ୍ତା, ଏବଂ ଅଗାଧ କରୁଣାରେ ତଥାଗତ ତାହା ଗ୍ରହଣ କରିନଥାନ୍ତେ ତା'ହେଲେ ତାଙ୍କ ଶରୀର ଏପରି କ୍ଳେଶ ବହନ କରିନଥାନ୍ତା ।

ତଥାଗତ ସମସ୍ତ ଯାତନାକୁ ସ୍ୱୀକାର କରୁଛନ୍ତି, କିନ୍ତୁ ଚଣ୍ଡ କମାର ପ୍ରତି ମୁହୂର୍ତ୍ତକ ପାଇଁ ସୁଦ୍ଧା ଅଶ୍ରଦ୍ଧା ପ୍ରକାଶ କରୁନାହାନ୍ତି ।

ବାଟରେ ନଦୀଧାର ପଡ଼ିଲା । ତଥାଗତ କ୍ଳାନ୍ତ ହୋଇ ଗୋଟିଏ ଗଛକୁ ଆଉଜି ବସିବାକୁ ଚାହିଁଲେ । "ଏହିଠାରେ ମୋର ଆସନ କରିଦିଅ ଆନନ୍ଦ ।"– "ଯଥାଦେଶ ପ୍ରଭୁ !"

ବସିଲା ପରେ ତଥାଗତ କହିଲେ "କିଛି ପାଣି ଦିଅ, ଆନନ୍ଦ । ମୋତେ ଭାରି ଶୋଷ ।"

"ହେ ବୁଦ୍ଧ ! ବର୍ତ୍ତମାନ ଶଗଡ଼ ସବୁ ନଦୀ ପାରି ହୋଇ ଯାଇଥିବାରୁ ପାଣି ଗୋଳିଆ ହୋଇ ଯାଇଛି । କିଛି ସମୟ ଅପେକ୍ଷା କରନ୍ତୁ ।"

ତଥାଗତ ତୃଷାର ପୀଡ଼ାକୁ ଧାରଣ କଲେ ।

ଦ୍ୱିତୀୟବାର ତଥାଗତ ପାଣି ମାଗିଲେ ପିଇବାକୁ ।

ଦ୍ୱିତୀୟବାର ଆନନ୍ଦ ସେଇ ଉତ୍ତର ଦେଇ ଅପେକ୍ଷା କରିବାକୁ କହିଲେ ।

ତଥାଗତ ତୃଷା ଧାରଣ କରିଥାନ୍ତି । ଆନନ୍ଦ ଧାରଣ କରିଥାନ୍ତି ତାଙ୍କର ଉଦ୍‌ବେଗ ଓ ଅସହାୟତା । ଚାହିଁ ରହିଥାନ୍ତି କେତେବେଳେ କର୍ଦ୍ଦମାକ୍ତ ଜଳାଧାର ନିର୍ମଳ ହେବ, କେତେବେଳେ ଏ ପ୍ରବାହର ଜଳ ତଥାଗତଙ୍କର ଯୋଗ୍ୟ ହେବ ।

ଯେତେବେଳେ ତଥାଗତ ତୃତୀୟଥର ମାଗିଲେ । ଆନନ୍ଦ ଦେଖିଲେ ଯେ କର୍ଦ୍ଦମ ଅପସାରିତ ହୋଇଯାଇଛି, ଏବଂ ଜଳଧାର ସ୍ୱଚ୍ଛ ।

ସେ ପାଣିନେଇ ତଥାଗତଙ୍କୁ ଦେଲେ "ତୃଷା ନିବାରଣ କରନ୍ତୁ ହେ ବୁଦ୍ଧ! ହେ, ଦେବମାନଙ୍କର ଗୁରୁ, ତ୍ରାଣକର୍ତ୍ତା !"

କୁଶିନାରାକୁ ଯାଉଥିବା ରାଜମାର୍ଗରୁ ଜଣେ ନିମ୍ନବର୍ଗର ମଲ୍ଲ ଜାତିର ଲୋକ ତଥାଗତଙ୍କୁ ଦେଖି ଅଟକିଗଲା । ତା'ର ନାଁ ପୁକ୍କୁଷ । ସେ ଗଛମୂଳକୁ ଆସି ନତଜାନୁ ହୋଇ ତଥାଗତଙ୍କୁ ପ୍ରଣାମ କଲା ।

ତଥାଗତ ତାକୁ ଧର୍ମର ମାର୍ଗ ପ୍ରଦର୍ଶନ କଲେ ।

ସେ କୃତଜ୍ଞତାରେ ଉତ୍‌ଫୁଲ୍ଲିତ ହୋଇ ତା'ର ପରିଚାରକକୁ ଆହ୍ୱାନ କଲା ଏବଂ ନିର୍ଦ୍ଦେଶ ଦେଲା "ଦୁଇଟି ସୂକ୍ଷ୍ମ ସ୍ୱର୍ଣ୍ଣତନ୍ତୁର ପରିଧାନ ନେଇ ଆସିବୁ ।" ପରିଧାନ ଆସିବାରୁ ସେ ବିନୟର ସହିତ ତଥାଗତଙ୍କୁ ତାହା ଗ୍ରହଣ କରିବାକୁ ଅନୁରୋଧ କଲା ।

ତଥାଗତ ସ୍ୱୀକାର କରି କହିଲେ "ମୋତେ ଗୋଟିଏ ପିନ୍ଧାଇ ଦିଅ, ଏବଂ ଅନ୍ୟଟିରେ ଆନନ୍ଦଙ୍କୁ ଆଚ୍ଛାଦିତ କର ।"

ସ୍ୱର୍ଣ୍ଣବସ୍ତ୍ରରେ ତଥାଗତ ଜାଜ୍ୱଲ୍ୟମାନ ଦେଖାଗଲେ । ଆନନ୍ଦ ପରମ ବିସ୍ମୟରେ କହିଲେ "ହେ ତଥାଗତ, ଆପଣଙ୍କର ଶରୀର ଏଭଳି ଉଜ୍ଜ୍ୱଳ କନକବର୍ଣ୍ଣ ଧାରଣ କରିବା ମୁଁ ଦେଖିନାହିଁ । ଏ ସୁବର୍ଣ୍ଣବସ୍ତ୍ର ସୁଦ୍ଧା ଆପଣଙ୍କ ଶରୀର ତୁଳନାରେ ମଳିନ ଦେଖାଯାଉଛି ।"

ଅବିଚଳିତ ସ୍ୱରରେ ବୁଦ୍ଧ କହିଲେ "ଆନନ୍ଦ! ତଥାଗତ ବୁଦ୍ଧଙ୍କ ଶରୀର ଦୁଇଟି ଅବକାଶରେ ଏଭଳି ଦ୍ୟୁତି ପ୍ରକାଶ କରେ । ପ୍ରଥମଟି ଯେତେବେଳେ ସେ ବୁଦ୍ଧତ୍ୱର ପରମ ଜ୍ଞାନ ପ୍ରାପ୍ତ ହେଲେ ଏବଂ ଦ୍ୱିତୀୟଟି ଯେତେବେଳେ ଏ ଶରୀର ଅବସାନ ହେବାର ସମୟ ସନ୍ନିକଟ।" ଆନନ୍ଦ ନିରବ ହୋଇଗଲେ। ସ୍ତବ୍ଧ ହୋଇଗଲେ ।

କୁଶିନାରାର ଉପାନ୍ତରେ ହିରଣ୍ୟବତୀ ନଦୀର ଅପରପାର୍ଶ୍ୱରେ ମଲ୍ଲମାନଙ୍କର ଉପବନରେ ତଥାଗତ ବୁଦ୍ଧ ଉପନୀତ ହେଲେ । ଆନନ୍ଦଙ୍କୁ ଅନୁଚ୍ଚ ସ୍ୱରରେ ନିର୍ଦ୍ଦେଶ ଦେଲେ "ଆନନ୍ଦ ସେ ବୃହତ୍ ଶାଳଗଛ ଦୁଇଟିର ମଧ୍ୟଭାଗରେ ଉତ୍ତର ଦିଗକୁ ଶିରୋଭାଗ କରି ମୋର ଶଯ୍ୟା ପ୍ରସ୍ତୁତ କରିଦିଅ ।"

ତଥାଗତ ସେ ଶଯ୍ୟା ଗ୍ରହଣ କରିବାର ତାତ୍ପର୍ଯ୍ୟ ସମସ୍ତେ ବୁଝି ମଧ୍ୟ ବୁଝୁ ନ ଥିଲେ ।

ତଥାଗତ ପାଖରେ ଥିବା ଶିଷ୍ୟଙ୍କ ମାଧ୍ୟମରେ ରାତ୍ରିର ଦ୍ୱିତୀୟ ପ୍ରହର ପର୍ଯ୍ୟନ୍ତ ସମସ୍ତଙ୍କୁ ସ୍ମରଣ କରାଇ ଦେଉଥିଲେ ଯେ ଶରୀର ନଶ୍ୱର । କିନ୍ତୁ ଧର୍ମ ଓ ସତ୍ୟ ଅବିନଶ୍ୱର । ତଥାଗତ ନିଜକୁ ସଂପୂର୍ଣ୍ଣ ଉନ୍ମୁକ୍ତ କରି ବିତରଣ କରି ଦେଇଛନ୍ତି । ସମସ୍ତେ ଏ ସତ୍ୟ ଚତୁଷ୍ଟୟକୁ ସ୍ମରଣ କରିବେ । ଅଷ୍ଟାଙ୍ଗମାର୍ଗକୁ ସ୍ମରଣ କରିବେ । ଦୃଢ଼ତାର ସହିତ ଧର୍ମାନୁସରଣ କରିବେ ।

ରାତ୍ରିର ତୃତୀୟ ପ୍ରହର ବେଳକୁ ଉପବନ ସ୍ତବ୍ଧ ହୋଇଗଲା ।

ତଥାଗତ ତ୍ରିତଳ ଧ୍ୟାନରେ ସଂହତ ହେଲେ, ସମସ୍ତ ସତ୍ତାକୁ ଏକତ୍ର କରି ଏକମାତ୍ର ଦୀପଶିଖାରେ ସମାହିତ କଲେ ଏବଂ ଦୀପଶିଖା ମହାପରିନିର୍ବାଣରେ ନିର୍ବାପିତ ହେଲା ।

ଅକସ୍ମାତ୍ ଭୂକମ୍ପ ହେଲା । ବୃକ୍ଷ ସକଳ ବରଡ଼ା ପତ୍ର ପରି ଥରି ଉଠିଲେ । ବିନା ମେଘରେ ବଜ୍ରପାତ ହେଲା । ଆକାଶ ଆନ୍ଦୋଳିତ ହେଲା । ସମଗ୍ର କୁଶିନାରା ଉପରେ ମନ୍ଦାର ବୃଷ୍ଟି ହେଲା ।

ମହାଦୀପ ନିର୍ବାପିତ ହେଲା ।

ଅଚାନକ ମଲ୍ଲମାନଙ୍କର ବାଦ୍ୟନାଦ ଶୁଭିଲା । ଅସଂଖ୍ୟ ପୁଷ୍ପମାଳା ଏବଂ ଝୀନ ବସ୍ତ୍ରରେ ତଥାଗତଙ୍କର ସ୍ଥୂଳ ଅବଶେଷକୁ ଆବୃତ କରି ଚିତା କ୍ଷେତ୍ରକୁ ଧୂପିତ କରାଗଲା ।

ଚିତାରେ ଅଗ୍ନିସଂଯୋଗ କରାଗଲା । ଭସ୍ମୀଭୂତ ହେଲା ଅବଶେଷ । ଚିତାଗ୍ନି ସୁଦ୍ଧା ନିର୍ବାପିତ ହେଲା ।

ଉଷାକାଳରେ ପ୍ରାୟାନ୍ଧକାର ଭିତରେ ନିରବଶେଷ ନିର୍ବାଣର ବିଶାଳ ନିରବତା ଆଚ୍ଛନ୍ନ କରି ରଖିଥିଲା କୁଶିନାରାର ଆକାଶ ଓ ଉପବନ ।



# ଅନିର୍ବଚନୀୟା

ପ୍ରସ୍ତରୀଭୂତ ଆଦିମ ଅଂଧକାରର ନିବିଡ଼ ଅରଣ୍ୟ ଭିତରେ ଜଡ଼ ସୁଷୁପ୍ତିର ଘନ ଆସ୍ତରଣ ଭେଦକରି; ପ୍ରଥମ ଉଷାର ଅସ୍ପଷ୍ଟ ଆଲୋକରେଖା ସଦୃଶ ଅଭିନବ କମ୍ପନରେ ଅଂଧ ତମିସ୍ରାକୁ ସଚକିତ କରି; ବେଦ ମନ୍ତ୍ରର ଆଦ୍ୟ ପ୍ରଣବ ସଦୃଶ ନିସ୍ତରଙ୍ଗ, ଅବିକଶିତ ସ୍ତବ୍ଧତାକୁ ଜାଗୃତିର ଝଙ୍କାରରେ ପୁଲକିତ କରି; ଅଜ୍ଞାତର ପ୍ରଥମ ବାର୍ତ୍ତାରୂପିଣୀ; ତିମିର ଅବଗୁଣ୍ଠନବତୀ, ତିମିରାବୃତା, ଆଶାହୀନ ଅନ୍ଧତାରେ ବିମଳପୁଲକ ସଂଚାରିଣୀ, ଅପରିଚିତା, ଦୁର୍ଭେଦ୍ୟ ରହସ୍ୟମୟୀ ! — ତୁମେ କିଏ ?

ପ୍ରବଳ-ବାତ୍ୟା-ବିକ୍ଷୁବ୍ଧ, ଛନ୍ଦହୀନ, ଲକ୍ଷ୍ୟହୀନ, ବିଷମ, ଉଦ୍ଦାମ ସମୁଦ୍ରର ପ୍ରମଥିତ ଅସ୍ଥିରତାକୁ ଆଶ୍ୱସ୍ତ, ବିନ୍ୟସ୍ତ କରି; ଦୁର୍ନିବାର ଉତ୍ତପ୍ତ ବୁଭୁକ୍ଷାର ଧୂମାୟିତ ବିକ୍ଷୋଭକୁ କୋମଳ ଶୀତଳତାର ସ୍ପର୍ଶରେ ପ୍ରଶମିତ କରି; ବାତ୍ୟା ମୁଖରିତ ଅନ୍ଧ ରଜନୀର ଅସହାୟ ଉତ୍‌କ୍ଷିପ୍ତତାର କ୍ଷୁରଧାର ଉପରେ ସ୍ନିଗ୍ଧାହ୍ଲାଦିନୀ କର ସଂଚାଳନ କରି; ମହାବ୍ୟୋମରୁ ମନ୍ଦାକିନୀର ତ୍ରିଧାର ସଦୃଶ ପ୍ରେମ-ଶାନ୍ତି-କରୁଣାର ଅଖଣ୍ଡ ନିର୍ଝର-ରୂପିଣୀ, ଶାରଦୀୟ ଉଷାର ମୁକ୍ତାବର୍ଷିଣୀ, ଅପାର୍ଥିବୀ, ଝୀନ-ଶୁଭ୍ରା କୁହେଳିକା ସଦୃଶ ଶୀତଳ ପ୍ରଲେପରୂପିଣୀ, ଆଦ୍ୟ ଶ୍ଳୋକର ତରଳ କାରୁଣ୍ୟରୂପିଣୀ, ମୃଦୁ ବୀଣାର ସୁଦୂର କୋମଳ ଗୁଞ୍ଜନରୂପିଣୀ, ପ୍ରେମମୟୀ, କରୁଣାମୟୀ ସ୍ନିଗ୍ଧା, ତୁଷାର-ଶୁଭ୍ରା ଚନ୍ଦ୍ରିକା ପରିହିତା ! —ତୁମେ କିଏ ?

ବାୟବୀୟ ଧୂମ୍ରରୂପ ବିଷୟା-କାଶର ଅଚଳନୀୟ ଅନିର୍ଦ୍ଦିଷ୍ଟ ଭାବରୂପର ଦୁରାରୋଗ୍ୟ ବିକଟତାକୁ ବିନ୍ୟସ୍ତ କରି; ଆତ୍ମମ୍ଭରୀ କାମରୂପୀ ଶଠତାର ଚଞ୍ଚଳ ବିଗ୍ରହକୁ ଆୟତ୍ତ କରି; ବାୟୁ ସଦୃଶ ଦୁର୍ନିଗ୍ରହ ପ୍ରବଳ ଚଞ୍ଚଳାତାକୁ ବଶୀଭୂତ କରି; ଘୋର ସଂଶୟର ଅଂଧକାରରେ ଦ୍ୱନ୍ଦ୍ୱିଧାର ପ୍ରବଳ ତାଡ଼ନ ମଧ୍ୟରେ ବିଶ୍ୱାସର ବୀଜ ବପନ କରି; ପ୍ରଗାଢ଼ ସ୍ନେହମୟୀ, ଅନନ୍ତ ଧୈର୍ଯ୍ୟଶୀଳା ଜନନୀ ସଦୃଶ, ଦିଗହରା କୁଜ୍‌ଝଟିକାରେ ଅବିକମ୍ପିତ ଦୀପଶିଖା ସଦୃଶ, ସଂକୀର୍ଣ୍ଣ ପୁରାତନ ପରିସୀମାକୁ ବିଲୁପ୍ତ କରି, ଅପରିସୀମର ଉଦ୍ଦେଶ୍ୟରେ ଉଦ୍‌ବେଳିତ ଆଲୋକର ପ୍ରବାହ ସଦୃଶ, ଅଖଣ୍ଡ-ଶକ୍ତି ଶାଳିନୀ, ମାତୃରୂପା, ଆଲୋକମୟୀ, ବିଭାସମୟୀ, ସବିତାବରଣୀ !— ତୁମେ କିଏ ?

ଫୁଲ୍ଲାରବିନ୍ଦର କନକ କେଶରରେ ଉଦ୍ଦୀପ୍ତ ଆଲୋକ ବର୍ଷଣ କରି; ଆବଦ୍ଧ ଚେତନାର ବହୁ ଉନ୍ନତତର ପର୍ଯ୍ୟାୟରୁ ଆଶୀର୍ବାଦର ଧାରାସ୍ୱରୂପ ନୂତନ ସମ୍ଭାବନାକୁ ଅବତରଣ କରି; ମିଥ୍ୟାର ସାଗରରେ ନିମଜ୍ଜମାନ ଅଜ୍ଞାନ ଅବୋଧ ଅସହାୟ ଶିଶୁର

ଉଦ୍ଧାର ସାଧନ କରି; ପୁନିତା, ପାବନୀ ଗଙ୍ଗାର ପ୍ଲାବନରେ ବହୁ କ୍ଲେଦ କର୍ଦମ ଅପାସାରିତ କରି; ତାହାକୁ ସତ୍ୟ ଚେତନାର ଆଲୋକ-ସ୍ନାନରେ ଶୁଦ୍ଧ, ଶାନ୍ତ, ଉଦ୍ଭାସିତ କରି; ଘନ-ତାରକିତ ଆକାଶର ପ୍ରଶାନ୍ତ ବିସ୍ତୀର୍ଣତା ସଦୃଶ, ଅଶରୀରୀ ବିମୁକ୍ତ ଆତ୍ମାରୂପର ବିମଳ ଆଭାସଦୃଶ, ବହୁ ପର୍ଯ୍ୟାୟୀଭୂତ ଅପରିମେୟ ସୂକ୍ଷ୍ମ- ନୀରବତାର ବିସ୍ତାର ସଦୃଶ, ଆଲୋକର ସଂଘାତରେ ଅନନ୍ତଗର୍ଭ ଆକାଶର ଦିଗ୍‌ବଳୟର କମ୍ପନ ସଦୃଶ, ସୂକ୍ଷ୍ମାକାଶରୂପା, ଚୈତନ୍ୟସ୍ୱରୂପିଣୀ ସୂର୍ଯ୍ୟଶୀର୍ଷା, ଉଦ୍ଧାରିଣୀ, ସ୍ୱାଭରଣା, ଅଚିନ୍ତ୍ୟରୂପା !— ତୁମେ କିଏ ?

ଜ୍ଞାନାଜ୍ଞାନର ଦୁରଧିଗମ୍ୟା, ସର୍ବବ୍ୟାପିନୀ, ସର୍ବୋଦ୍ଭାସିନୀ, ସର୍ବକାରଣରୂପା, ଅବ୍ୟକ୍ତା, ଅପରିଚିତା, ଅଗଣିତ-ତପନ-ତାରକା-ମାଳିନୀ, ଅସଂଖ୍ୟ ସୃଷ୍ଟିତରଙ୍ଗର ଉଦ୍ଭବ ରୂପଣୀ, ଆଦିଛନ୍ଦମୟୀ, ଆଦିନାଦମୟୀ, ଆଦ୍ୟାଶକ୍ତି, ଅବାଙ୍‌ମନଗୋଚର ଅବିଚଳିତ ସତ୍ୟପୁରୁଷଙ୍କର ପ୍ରଥମ-ଇଚ୍ଛା-ରୂପିଣୀ, ଅବିଶ୍ରାନ୍ତା, ଚିର-ଜାଗ୍ରତା, ସର୍ବଭୂତ ସମନ୍ୱିତେ, ଜଗଜ୍ଜନନୀ, ଅୟି କଳ୍ପନାତୀତେ !— ତୁମେ କିଏ ?

ଅବ୍ୟକ୍ତର ବ୍ୟକ୍ତସ୍ୱରୂପା, ଅନନ୍ତ ସଂଭାବନାର ବାର୍ତ୍ତାରୂପିଣୀ ନିମ୍ନ ଚେତନାର ଆବର୍ତ୍ତରେ ଅଜ୍ଞାନାବୃତା, ସମୀମତାରେ ଅସୀମରୂପିଣୀ, ଅଖଣ୍ଡ-କରୁଣା-ବର୍ଷିଣୀ, ଅଗାଧ ବିମଳ-ବାତ୍ସଲ୍ୟର ଆଧାରରୂପା, ଅପୂର୍ଣ୍ଣ ଅବିକଶିତ ଚେତନାର ବ୍ୟକ୍ତ ରୂପକୁ ପୂର୍ଣ୍ଣ ବିକଶିତ ଅବ୍ୟକ୍ତର ଅସୀମ ସମ୍ଭାବନାରେ ଯୋଗକାରିଣୀ, ଯୋଗମାର୍ଗର ସେତୁରୂପା, ସାଧକ-ସାଧନା ସାଧ୍ୟରୂପିଣୀ, ସଶରୀରା, ସ୍ନେହଶାଳିନୀ, ଦଗ୍ଧକାଞ୍ଚନବର୍ଣ୍ଣା, ମା !— ତୁମେ କିଏ ?

ତୁମେହିଁ ଯୁଗେ ଯୁଗେ ଦିଗ୍‌ଭ୍ରାନ୍ତ ପାଇଁ ପଥପ୍ରଦର୍ଶିକା, ତୁମେହିଁ ଯୁଗଧର୍ମର ପ୍ରୟୋଜନ ଓ ଅଧିକାର ଭେଦରେ ବିଭିନ୍ନ ନାମ-ରୂପର ସଂଜ୍ଞାକୁ ପବିତ୍ରିତ କରି ଅବତୀର୍ଣ୍ଣା ହୁଅ; ଘଟାକାଶ ସଦୃଶ ମାନବୀ ଶରୀରର କ୍ଷୀଣ ଆବରଣକୁ ଆଧାର କରି ଲୋକାନୁଗ୍ରହ କରିଥାଅ ! ପ୍ରତି ପୁଷ୍ପର ସୌରଭରେ, ପ୍ରତି ତାରକାର ଆଲୋକରେ, ପ୍ରତି ସବିତାର ବିମଳ ବିକାଶରେ ନିରବଧିକାଳ ଗର୍ଭରେ ତୁମର ଅନନ୍ତ ବିଭୂତି ପ୍ରକଟିତ ହୁଏ; କରୁଣାର ମଧୁ ସିଞ୍ଚନରେ ବିକାଶୋନ୍ମୁଖୀ ଜଡ଼ ପ୍ରକୃତି ସୁଦ୍ଧା ଚେତନାସିକ୍ତ ହୁଏ;

ମା' କରୁଣାମୟି !
ଅବୋଧର ନିବେଦନ ଗୃହୀତ ହେଉ !
ତ୍ରିତାପକଳ୍ମଷ ବିଶୁଦ୍ଧ ହେଉ !
ଅଭୀପ୍‌ସାର କ୍ଷୀଣ ଦୀପଶିଖା ଉଦ୍ଦୀପିତ ହେଉ !
ଅବାରିତ କରୁଣାର କନକ ନିର୍ଝରରେ ମାନବଚେତନା ପ୍ରବୁଦ୍ଧ, ପ୍ରଶାନ୍ତ ଉନ୍ନତ ହେଉ !
ମା ! ତୁମର ଇଚ୍ଛା ପୂର୍ଣ୍ଣ ହେଉ !
ଓଁ ଆନନ୍ଦମୟି, ଚୈତନ୍ୟମୟି, ସତ୍ୟମୟି ପରମେ !

●

# ହେ ପ୍ରଭୁ, ଏହି ତୀବ୍ର ପୀଡ଼ାରୁ ମୁକ୍ତି ଦିଅ !

ଶହେ ବର୍ଷ ପାଇଁ ଆୟୁଷ ଯାଚନା କରିବାର ଅପୂର୍ବ ସମୟ ହେଉଛି ଶରତ୍ କାଳ । ଏତିକି ବେଳେ ବୋଧହୁଏ ମୃତ୍ୟୁକୁ ଅତିକ୍ରମ କରି ଅମର ହେବାର ବାସନା ଜାଗ୍ରତ ହୁଏ । ଏତେ ସ୍ୱଚ୍ଛ, ଏତେ ଶୁଭ୍ର, ପଦ୍ମ ପୋଖରୀ ପରି ଏତେ ସଂତୁଷ୍ଟ ଶରତ୍ କାଳ ଉପରେ କୌଣସି ମଳିନ ଛାୟା ପଡ଼ିପାରେ ନାହିଁ । ଶ୍ରାବଣର ମେଘ ସାଥିରେ ସବୁ ବଜ୍ର ବିଦ୍ୟୁତ୍, ସବୁ ପାଣି, ପବନ, ସବୁ ଦୁର୍ଦିନ ଅଂଧାର, କ୍ଲେଦ କର୍ଦମ ଅପସରି ଯାଇଥାଏ । ନୀଳ ଦର୍ପଣ ପରି ଆକାଶରେ ନିର୍ମଳ ଚଂଦ୍ରମଂଡ଼ଳ ବିରାଜୁଥାଏ । ଆକାଶ ପବନ ପୃଥ୍ୱୀ ଅକସ୍ମାତ୍ ଶୁଦ୍ଧ ସ୍ନାନ କରି କାହାର ଆବାହନ ପାଇଁ ପ୍ରସ୍ତୁତ ହୋଇଯାଂତି । ମନେ ହୁଏ ଆମର ସମସ୍ତ ମାଳିନ୍ୟ ଦୂରକରି ସମସ୍ତ ଗ୍ଳାନି ଅସହାୟତା ଅପସାରିତ କରି ଦଶଭୂଜା ଦେବୀ ଅବତରଣ କରିଛଂତି, ଆମର ନିସ୍ତେଜ ସ୍ନାୟୁମଂଡ଼ଳରେ ନୂତନ ତେଜ ସଂଚାର କରିବାକୁ; ହୃଦୟରେ ଆତ୍ମବିଶ୍ୱାସ ବାହୁରେ ବଳ, ମନରେ ଦୃଢ଼ତା, ଦୃଷ୍ଟିରେ ସ୍ପଷ୍ଟତା, ବାକ୍ୟରେ ନିର୍ଭୀକତା ପ୍ରତିଷ୍ଠା କରିବାକୁ ନଗାଧିରାଜ ତନୟା ଏ ନିମ୍ନଭୂମିରେ ଅବତୀର୍ଣ୍ଣା ହେଉଛଂତି ।

ନିମ୍ନଭୂମି ମହିଷାସୁରର ରାଜ୍ୟ; ଅଂଧାର, ଅସତ୍ୟ, ଦୁର୍ନୀତି ଦୁରାଚାରର ରାଜ୍ୟ । ସେଥିପାଇଁ ଦଶଭୁଜା ଦେବୀ ଦଶ ପ୍ରହରଣଧାରିଣୀ, ସିଂହବାହିନୀ । ସେଥିପାଇଁ ସେ ମହିଷମର୍ଦିନୀ, ଦୁର୍ଗତିନାଶିନୀ । ସେଥିପାଇଁ ଶରତ୍ କାଳ ଯୁଦ୍ଧ ଘୋଷଣା କରିବାର, ଶତ୍ରୁ ନିପାତ କରିବାର, ସାହସ, ସାମର୍ଥ୍ୟ, ବୀରତ୍ୱ ପରୀକ୍ଷା କରିବାର କାଳ । ସତ୍ୟ ପ୍ରତିଷ୍ଠା କରିବା, ଧର୍ମ ପ୍ରତିଷ୍ଠା କରିବା, ସାମ୍ରାଜ୍ୟ ପ୍ରତିଷ୍ଠା କରିବାର କାଳ । ଶରତ୍ କାଳ ଏକ ଆହ୍ୱାନ, ଏକ ପ୍ରତିଶ୍ରୁତି । ନିର୍ଜୀବ ନିଶ୍ଚେଷ୍ଟ ପଡ଼ି ରହିଥିବା, ଆଖିବୁଜି ଦୁଃସ୍ୱପ୍ନ ଦେଖୁଥିବା; ନିଜକୁ ହୀନବଳ, ଅସହାୟ ମଣୁଥିବା କାତର, ଭୀରୁ ପୁରୁଷକାର ପାଇଁ ଏକ ଏକ ଆହ୍ୱାନ । ପ୍ରତ୍ୟେକ ବ୍ୟକ୍ତି ଭିତରେ ମ୍ରିୟମାଣ ପୁରୁଷ ସିଂହ ଜାଗ୍ରତ ହେବାପାଇଁ ଏ ଆହ୍ୱାନ । ଜାଗ୍ରତ ସିଂହ ଉପରେ ପରମାଶକ୍ତି ଅବତରଣ କରଂତି । ମନପ୍ରାଣ ଶରୀରରେ ଶିରା ପ୍ରଶିରାରେ ଶକ୍ତି ସଂଚରିଯାଏ । ତେଣିକି ଆଖିରୁ ପରଳ ଖସିପଡ଼େ । ସତ୍ୟ ଦିଶେ ନିରାବରଣ, ନିର୍ଲେପ । ମନରୁ ଦ୍ୱିଧା, ସଂକୋଚ ଭୟ ଦୂର ହୋଇଯାଏ । ସତ୍ୟକୁ ସ୍ୱୀକାର କରିବାର ଦୃଢ଼ତା ଆସେ । ଦୁର୍ବଳର କବଚ ପରି ସତ୍ୟକୁ ଆବୃତ କରୁଥିବା, ବିକ୍ଷିପ୍ତ କରୁଥିବା ଯୁକ୍ତିର ଆଳୁଆଳ ଘୁଂଚିଯାଏ । ହୃଦୟରେ

ସତ୍‌ସାହସ ବଜ୍ରଦୃଢ଼ ହୁଏ । ମେରୁଦଂଡ଼ ସଳଖିଯାଏ । ମୁଂଡ଼ ଟେକି ହୋଇଯାଏ । ବାକ୍ୟରେ ସତ୍ୟ ପ୍ରକାଶିତ ହୁଏ । ପ୍ରତିଶ୍ରୁତି ନିର୍ମେଘ ଆକାଶରେ, ପ୍ରାଂଜଳ ପବନରେ ଅନୁରଣିତ ହେଉଥାଏ- "ମହିଷାସୁରର ଥାଟ ନିପାତ ହେବ । ଅମାପ ଅଂଧାର ମିଥ୍ୟା ଦୁରାଚାର ଶାସନ ଲୋପ ହେବ ।"

ଦୁର୍ମଦ, ଦୁରାସଦ, କର୍ଦମାକ୍ତ ଅରଣା ପଶୁ ବୃତ୍ତି ହିଁ ମହିଷାସୁର । ସେ କାଦୁଅରେ ଲୋଟୁଥାଏ । ଅଂଧାରରେ ବିଚରଣ କରୁଥାଏ । ତା'ର ପ୍ରବଳ ଶକ୍ତି । ତା'ର ଖୁରାଘାତରେ ଭୂମି ବିଦୀର୍ଣ ହୁଏ । ଜଣେ ମହିଷାସୁର ପ୍ରକଟ ହେଲେ ତା'ର ଛାୟା ଅସଂଖ୍ୟ ମହିଷଥାଟ ସୃଷ୍ଟି ହୋଇଯାଂତି । ସେମାନେ ବିଭିନ୍ନ କ୍ଷେତ୍ରକୁ ଅଧିକାର କରଂତି । ଅଂଧାରରେ ଅସୁର ସାମ୍ରାଜ୍ୟ ପ୍ରତିଷ୍ଠା ହୁଏ । ଅସତ୍ୟ, ଅଧର୍ମର ଅଭ୍ୟୁତ୍‌ଥାନ ହୁଏ ।

ମହିଷାସୁର ନିମ୍ନଭୂମିର କଦର୍ମରୁ, ଭୂତଳ ଅଂଧାରରୁ ଉଠିଆସି ସିଂହାସନକୁ ଅଧିକାର କରେ । ତାକୁ ଘେରି ମହିଷଥାଟ ତା'ର ସଭାମଂଡ଼ନ କରଂତି । ସେମାନଂକ ମାନଦଂଡ଼ରେ, ମୂଳରେ ଧର୍ମ ନାହିଁ କି ଶୀର୍ଷରେ ମୋକ୍ଷ ନାହିଁ । ପୁରୁଷାର୍ଥ କେବଳ ଦୁଇଟି । ଅର୍ଥ ଏବଂ କାମ । ତାଂକ ଅଭିଧାନରେ ସବୁ ପଣ୍ୟ; ସମସ୍ତେ ପଣ୍ୟ । କ୍ଷମତା, ପ୍ରତିପତ୍ତି, ସମ୍ମାନ, ମର୍ଯ୍ୟାଦା, ଖ୍ୟାତି କିଣାଯାଇପାରେ । ଉପାଧି, ମାନ୍ୟତା, ଏପରିକି ନ୍ୟାୟ ଧର୍ମ, ଇଜ୍ଜତ ସବୁ ପଣ୍ୟ । ବିଳାସ, ବ୍ୟସନ, ଭୋଗ ସଂଭୋଗର ସାମଗ୍ରୀ ଏକମାତ୍ର ଧ୍ୟେୟ ବସ୍ତୁ । ଆତ୍ମଜ୍ଞାନ କିଛି ନାହିଁ, ଆତ୍ମତୃପ୍ତି ହିଁ ଏକମାତ୍ର ସତ୍ୟ । ଅନ୍ୟ ସମସ୍ତ ବସ୍ତୁ ଓ ବ୍ୟକ୍ତି ଗ୍ରାସଯୋଗ୍ୟ । ସଂପର୍କ କେବଳ ଖାଦ୍ୟ ଓ ଖାଦକର । ମହିଷାସୁରର ରାଜ୍ୟରେ ବଂଚିବା ପାଇଁ ମାତ୍ର ଦୁଇଟି ବିକଳ୍ପ- ଆନୁଗତ୍ୟ କିଂବା ମୃତ୍ୟୁ । ପ୍ରଜାମାନେ ଶସ୍ୟ ଭଳି ଉପଜାତ ହୁଅଂତି ଏବଂ ଅନ୍ନରୂପେ ତାଂକୁ ଅସୁରଂକୁ ପରସି ଦିଆଯାଏ । ବସୁଂଧରା ବୀରଭୋଗ୍ୟା । ବୀର କେବଳ ମହିଷାସୁର, ଯେ ପ୍ରବଳ ଶିଂଗ ଓ ଖୁରା ଆଘାତରେ ତ୍ରିପୁର ବିଜୟ କରିପାରେ । ପଶୁ ଶାସନରେ କେବଳ କ୍ଷୁଧାକୁ ପାଳନ କରାଯାଏ, ତାକୁ ସଂତୁଷ୍ଟ କରାଯାଏ । କ୍ଷୁଧା ହିଁ ଅଗ୍ନି । କ୍ଷୁଧା ଜିହ୍ୱାରେ ଜଳୁଥାଏ; ତାକୁ ସଂତୁଷ୍ଟ କରିବା ଭୋଗ ଓ ସଂଭୋଗ। ତା' ପାଇଁ ଶାସନ ବ୍ୟବସ୍ଥା ତତ୍ପର । ପଶୁ ରାଜ୍ୟରେ ସବୁପ୍ରକାର ଚତୁଷ୍ପଦଂକର ଆବିର୍ଭାବ ହୁଏ । ସମସ୍ତେ ନିଜନିଜ ଶ୍ୱାପଦ ସ୍ୱଭାବକୁ ଜାରି ରଖି କିଛି କିଛି ରାଜଗୁଣକୁ ଆୟତ୍ତ କରଂତି । ଫଳରେ କଟାସ ଶିଆଳମାନେ ମଧ୍ୟ ମହିଷ ପରି କର୍ଦମାକ୍ତ ହୁଅଂତି । ଶିଂଗ, ଖୁରା ଥିଲା ପରି ଆଚରଣ କରଂତି । ମହିଷାସୁର ପରି ଭୋଗ ସଂଭୋଗ କରଂନ୍ତି ଏବଂ କରାଇବାରେ ନିଯୁକ୍ତ ହୁଅଂତି ।

ମହିଷାସୁରର ଇଚ୍ଛା ହିଁ ଆଦେଶ । ସେ କୌଣସି ବିଧାନକୁ ସ୍ୱୀକାର କରେ ନାହିଁ । ତା'ର ଯେତେବେଳେ ଯାହା ପ୍ରବୃତ୍ତି ପ୍ରକାଶ ପାଇଲା ତାହା ହିଁ ବିଧାନ । ସେ ଚାହିଁଲେ ମହିଷଥାଟକୁ ଏକତ୍ରକରି ଖାଦ୍ୟ ପାନୀୟରେ ବଶୀଭୂତ କଲାପରେ ଆଦେଶ କରିପାରେ ତାକୁ ସମର୍ଥନ କରିବାକୁ । ମହିଷଥାଟ ଶିଶିରଟେକି ଏକମାତ୍ର ସୁଦୀର୍ଘ ମହିଷ ରାବ କରଂତି । ମହିଷାସୁରର ଯଥେଚ୍ଛାଚାର ବିଧି ସମ୍ମତ ହୋଇଯାଏ । ଏହିପରି ରାବ କରୁଥିବା ପ୍ରତ୍ୟେକ ମହିଷ ପାଇଁ ଶୀତତାପ ନିୟନ୍ତ୍ରିଂତ ଯାନ, ଆସନ, ବ୍ୟସନ, ଶୟନର ବ୍ୟବସ୍ଥା । ପାନୀୟ ପାଇଁ ମଦିରା, ସଂଭୋଗ ପାଇଁ କୋମଳାଂଗୀ, କ୍ଷମତାକୁ ଭୋଗ କରିବା ପାଇଁ କିଛି ଶସ୍ୟରୂପୀ ପ୍ରଜାଂକୁ ଖର୍ଚ୍ଚ କରାଯାଏ । ନିର୍ଲଜ୍ଜ ଶସ୍ୟ ପୁଣି ଉଜ୍ଜୀବିତ ହୋଇଉଠେ । ମହିଷମାନଂକର ଚରାଭୂମି ସଦା ପ୍ରସ୍ତୁତ ରହେ ସେମାନଂକ ଅବାଧ ବିଚରଣ ପାଇଁ । ଶରୀରର ଉତ୍ତାପ ଅନୁପାତରେ, ମନର ବାସନା ଅନୁପାତରେ, ନିଜକୁ ଅନିବାର୍ଯ୍ୟ ଅପ୍ରତିହତ ପ୍ରମାଣ କରିବାକୁ ସମଗ୍ର ସାମ୍ରାଜ୍ୟରେ ସମସ୍ତଂକ ଇଚ୍ଛାକୁ ମର୍ଦ୍ଦିତ କରି ଚାରିଖୁରାରେ ଯଥେଚ୍ଛା ଭ୍ରମଣ କରିବା ପାଇଁ ମହିଷାସୁର ମୁହୂର୍ତ୍ତେ ମୁହୂର୍ତ୍ତେ ନୂତନ ବିଧାନ ପ୍ରଣୟନ କରୁଥାଏ । ନୀରବ ଅଶ୍ରୁବର୍ଷଣ କରୁଥାଏ ପୃଥିବୀ । ଘନଘଟା ଆଚ୍ଛନ୍ନ କରି ରଖିଥାଏ ନଭୋମଂଡ଼ଳ । ମହିଷାସୁରର କର୍ଦ୍ଦମ ଶାସନ ଚାଲିଥାଏ ଅଂଧାରରେ, ବଜ୍ର ବିଦ୍ୟୁତ୍‌ର କୁହାଟରେ। ଦଂଭ, ଦର୍ପ, କାମ କ୍ରୋଧ ସହିତ ମିଥ୍ୟାଚାର ଓ କପଟାଚାର ମହିଷାସୁରର ପରିଚୟ । ସେ ହତ୍ୟାକରେ, କିଂତୁ ରକ୍ଷାକର୍ତ୍ତାର ପୁଷ୍ପମାଲ୍ୟ ଗଳାରେ ମଂଡ଼ିହୁଏ । ସେ ଜ୍ଞାନୀଜନମାନଂକୁ ସଂହାରକରେ, କିଂତୁ ଅଜ୍ଞାନରୁ ଦେଶବାସୀକୁ ଉଦ୍ଧାର କରିଥିବା ଏକମାତ୍ର ଜ୍ଞାନୀ ମାର୍ତଂଡ଼ର ମୁକୁଟ ଧାରଣ କରେ । ସେ ଜନବସତିରେ ଅଗ୍ନିସଂଯୋଗ କରେ । ପୁଣି ଅଗ୍ନିଶମ ବ୍ୟବସ୍ଥାରେ ସବୁ ଧୋଇ ନିଶ୍ଚିହ୍ନ କରିଦିଏ । ଅଗ୍ନି ଜାଳିବାର ଏବଂ ନିର୍ବାପିତ କରିବାର ଉଭୟ ଖ୍ୟାତି ନିଜେ ବାଜ୍ୟାପ୍ତ କରିନିଏ । ସେ ପ୍ରଚାର କରାଇଦିଏ ଯେ ସେ ହିଁ ଦଂଡ଼ଧାରୀ । ନ୍ୟାୟଦଂଡ଼ ସେ ଧାରଣ କରେ । ସେ ଯାହାକୁ ଲୁଂଠନ କରେ ତାକୁ ହିଁ ନିଜ ଇଜ୍‌ଲାସ୍‌ରେ ନତଜାନୁ ନ୍ୟାୟ ଭିକ୍ଷା କରିବାକୁ ବାଧ୍ୟ କରେ । ଲୁଂଠନ କରିବା ଯେଉଁଭଳି ତା'ର ଅଧିକାର, ନ୍ୟାୟ ବିତରଣ କରିବା ସେହିଭଳି ତା'ର ମର୍ଜି । ନ୍ୟାୟରେ ଦଂଡ଼ ଅଛି, ମାନଦଂଡ଼ ନାହିଁ । କାହାକୁ କେତେବେଳେ କିଭଳି ନ୍ୟାୟ ମିଳିବ ତାହା ମହାମହିମଂକ ମର୍ଜି ଉପରେ ନିର୍ଭର କରେ । ତାକୁ ଅବମାନନା କରିବ ଏଭଳି କିଏ ଅଛି ଏ ଧରାତଳେ ? ଯଦି ଅଛି ଯେଉଁଠି ଅଛି ସେଇଠି ତାକୁ ସେଇ ମୁହୂର୍ତ୍ତରେ କବର ଦେଇଦେବାର ବ୍ୟବସ୍ଥା ରହିଛି ।

ମହିଷାସୁର ତା'ର ସ୍ୱଭାବସୁଲଭ ବେପରୁଆ ଢଂଗରେ ତା' ସିଂହାସନରେ ବସି ଘୋଷଣା କରେ, 'ମୁଁ ମହିଷାସୁର । ମୁଁ ଶାସିଛି, ଶାସୁଛି, ଶାସିବି । ମୁଁ ଖାଇଛି, ଖାଉଛି, ଖାଇବି । ମୁଁ ହାଣିଛି, ହାଣୁଛି, ହାଣିବି । ମୁଁ ରମିଛି, ରମୁଛି, ରମିବି । ମୋର କେହି କିଛି କରିପାରିବେ ନାହିଁ । ମୁଁ ଅଜେୟ, ଅପରାଜେୟ, ମୁଁ ହିଁ ଈଶ୍ୱର । ମୁଁ ପରମେଶ୍ୱର । ମୁଁ ସମସ୍ତଂକର ମୃତ୍ୟୁ । ମୋର ମୃତ୍ୟୁ ନାହିଁ । ମୁଁ ସମସ୍ତଂକର ଭୋକ୍ତା । ମୋର ଭୋକ୍ତା କେହି ନାହିଁ । ମୁଁ ସମସ୍ତଂକର ପ୍ରାଣ । ମୋର ପ୍ରାଣ କେହି ନାହିଁ ।" ମହିଷଥାଟ ଖୁରା ତାଳିରେ ସମର୍ଥନ କରଂତି । ସୁଦୀର୍ଘ ମହିଷ ରାବ ସଭାସ୍ଥଳକୁ ମଂଦ୍ରିତ କରେ ।

କିଂତୁ ଅକସ୍ମାତ୍ ସମସ୍ତ ମହିଷରାବକୁ ନିମଜ୍ଜିତକରି ଗିରିଶୃଂଗରୁ ଶିଳାଖଂଡ଼କୁ ବିଚ୍ୟୁତକରି ବଜ୍ରନାଦ ପରି ସିଂହନାଦ ଶୁଭେ । ଆକାଶର ମେଘମଂଡ଼ଳ ବିଦୀର୍ଣ୍ଣ ହୋଇଯାଏ । ମହିଷାସୁରର ହୃତ୍‌କଂପ ହୁଏ । ଅଂଧାର ବିଦୀର୍ଣ୍ଣ ହୋଇଯାଏ । କେହି ଜଣେ ଶୂନ୍ୟକୁ ଚାହିଁ ଘୋଷଣା କରେ ଯେ ଦୁର୍ଦ୍ଦିନର ଅବସାନ ହେବ । ମହିଷମର୍ଦ୍ଦନ ହେବ । ଆକାଶ ମେଘମୁକ୍ତ ହେବ । ଜାଗ୍ରତ ସିଂହ ଅବତରଣ କରିଛି । ତାହାରି ପୃଷ୍ଠରେ ବିଜେ ହେଉଛଂତି ଦଶଭୁଜା । ଦଶଦିଗରେ ଶକ୍ତି ବିଚ୍ଛୁରିତ ହେଉଛି । ଆଲୋକ ବିକୀରିତ ହେଉଛି । ଶରତ୍ କାଳ ଯୁଦ୍ଧକାଳ । ସାବଧାନ ମହିଷାସୁର । ତୋ'ର ବିଳୟ ଅବଶ୍ୟଂଭାବୀ ।

ଦୁରାଚାରୀ ମାତ୍ରେ ଭୀରୁ । ଅତ୍ୟାଚାରୀ ମାତ୍ରେ କାପୁରୁଷ । ମହିଷଥାଟ ଗୋଠ ବାଂଧଂତି । ପରସ୍ପରକୁ ଆତ୍ମରକ୍ଷା ପାଇଁ ବ୍ୟବହାର କରଂତି । ସେମାନଂକ ଭିତରେ ଭୟର ସଂଚାର ହୁଏ । ଅଂଧାର କ୍ରମଶଃ ବିଲୀନ ହୋଇଯିବାରୁ ମହିଷଥାଟକୁ ଲୁଚି ଲୁଚାଇବାର କ୍ଷେତ୍ର ମିଳେ ନାହିଁ । ଆକାଶ ନିର୍ମଳ ଦର୍ପଣପରି ଶୋଭାପାଏ । ଆଲୋକର ତ୍ରିଶୂଳ ଅଂଧାରର ବକ୍ଷଭେଦ କରେ । ଘୋର ଯୁଦ୍ଧ କରି ମହିଷାସୁର ନିପାତ ହୁଏ । ମହିଷମାନେ ଆଲୋକବିଭ୍ରାଂତ ହୋଇ ପରସ୍ପରକୁ ନିଧନ କରଂତି ।

ଶୁଭ୍ର, ସ୍ୱଚ୍ଛ, ପଦ୍ମପୋଖରୀ ପରି ସଂତୁଷ୍ଟ ଶରତ୍ କାଳ । ଭାରତ ଭୂମିରେ ଏହିପରି ବାରଂବାର ଶରତ୍ କାଳ ଅବତରଣ କରେ । ଦୁର୍ଗତିନାଶିନୀ ତିମିର ବିନାଶିନୀ ଦଶଭୁଜା ଆବିର୍ଭୂତା ହୁଅଂତି । ଅସୁର ବିନାଶ ହୁଏ । ସାମାନ୍ୟ ମାଟିପିଂଡ଼କୁ ଉଜ୍ଜୀବିତ କରି ଖରଶାଣ ଜାଜ୍ୱଲ୍ୟମାନା ଦେବୀ ଉଦ୍‌ଭାସିତ ହୁଅଂତି । କିଂତୁ ବକ୍ଷ ପାତି କେହି ମାତୃଶକ୍ତିକୁ ଧାରଣ କରେ ନାହିଁ । ମୃଣ୍ମୟୀ ପ୍ରତିମାକୁ ବିସର୍ଜନ କରି ଦିଆଯାଏ । ଅଂତର ଭିତରେ ମହିଷାସୁର ବିନାଶ ହୁଏ ନାହିଁ । ଶାରଦ ଉତ୍ସବରେ ପ୍ରକଟିତ ହୁଏ ମାହିଷ ପ୍ରବୃତ୍ତି । ଦେବୀ ପ୍ରତିମାକୁ ନାରୀମାତ୍ର କରି ଭୋଗ୍ୟବସ୍ତୁ ରୂପେ ମଂଚରେ

ସ୍ଥାପନ କରାଯାଏ । ଉତ୍ସବର ଆଡ଼ୁଆଳରେ ମହିଷାସୁର ସୁରାପାନ କରେ । ଜିହ୍ୱା ଉପସ୍ଥର କ୍ଷୁଧା ନିବାରଣ କରେ । କେହି ହେଲେ ପୁରୁଷ ସିଂହ ଏହାକୁ ପ୍ରତିରୋଧ କରେ ନାହିଁ । କହେ ନାହିଁ, "ସିଂହବାହିନୀ, ମା' ଦଶଭୁଜା ମୋର ଚେତନାରେ ଅଧିଷ୍ଠିତ ହୁଅ । ଶରତ୍ କାଳରୁ ଶରତ୍ କାଳ, ମୁଁ ହିଁ ଧାରଣ କରିବି ଅପରିସୀମ ଆଲୋକର ଶକ୍ତି । ମୁଁ ବିସର୍ଜନ କରିବି ନାହିଁ । ମୋର ଜୀବନକାଳ ଅନଂତ ଶରତ୍ କାଳରେ ମେଘମୁକ୍ତ ରହୁ । ମୋର ଜୀବଦଶା ହେଉ ଅଖଂଡ଼ ଯୁଦ୍ଧଭୂମି । ସତ୍ୟର ପ୍ରତିଷ୍ଠା ହେଉଥାଉ ଅହରହ ଚିରକାଳ । ଆଲୋକର ସାମ୍ରାଜ୍ୟ ଅଂଧକାର ଗର୍ଭରେ ପ୍ରତିଷ୍ଠିତ ହେବା ପର୍ଯଂତ ଦଶଭୁଜା ଦେବୀ, ଦଶପ୍ରହରଣଧାରିଣୀ ହୋଇ ରହିଥାଂତୁ । ସମର ନିରବଚ୍ଛିନ୍ନ ରହୁ । ବାହାରେ ଋତୁଚକ୍ରକୁ ଉପେକ୍ଷାକରି, ଅଂତଃକରଣରେ ଚିର ଶରତ୍, ନିର୍ମଳ ବିମ୍ବ, ସ୍ୱଚ୍ଛ ସଂପଦ ହୋଇ ସୁରକ୍ଷିତ ରହୁ ।"



# କିଛି ମୁକ୍ତଚିନ୍ତା

## (୧)

ସେ ଆମ ଗହଣରେ ରୂପ ପରିଗ୍ରହ କରିଥିବା ବେଳେ ଆମେ ତାକୁ ଚିହ୍ନି ପାରୁନା । "ଅବଜାନନ୍ତି ମାଂ ମୂଢ଼ାଃ ମାନୁଷୀଂତନୁମାଶ୍ରିତମ୍" ମଣିଷଟାଏ ତ'–ଏ ଆଉ ପରମେଶ୍ୱର କିପରି ହୋଇ ପାରିବ ? ଅତି ପାଖଲୋକ ମଧ୍ୟ ନ ଚିହ୍ନିବାର ଅପରାଧ କରିଥାନ୍ତି । "ସଖେତି ମତ୍ୱ ପ୍ରସଭଂ ଯଦୁକ୍ତଂ; ହେ କୃଷ୍ଣ, ହେ ଯାଦବ ହେ ସଖେତି । ଅଜାନତାମହିମାନଂ ତବେଦଂ, ମୟା ପ୍ରମାଦାତ୍ ପ୍ରଣୟେନ ବାପି ।" କେହି କେହି ପ୍ରମାଣ ଦାବି କରି ବସନ୍ତି, "ତୁ ଯେବେ ସତ୍ୟ ନାରାଣୟ । ଦେଖା ତୋ ଶଙ୍ଖ ଚକ୍ର ଚିହ୍ନ ।" ଏହିପରି ସେ ଆସନ୍ତି ଏବଂ ସ୍ୱ ମହିମାରେ କଲ୍ୟାଣ ସାଧନ କରି, ଧର୍ମ ସଂସ୍ଥାପନ କରି, ଅଜ୍ଞାତ, ଅଚିହ୍ନିତ, ଅସ୍ୱୀକୃତ ହୋଇ ଚାଲିଯାନ୍ତି । ତା'ପରେ ସେଇ କରୁଣାର ପ୍ରବାହରେ ଅତିସିକ୍ତ ମାନବ ଚେତନା ସଜାଗ ହୋଇ ଉଠେ ଏବଂ ପରମ ବିଶ୍ୱାସରେ, ହର୍ଷ ପୁଲକ ବିସ୍ମୟରେ ବ୍ରଜଧୂଳି ମୁଣ୍ଡରେ ମାରି ଅଶ୍ରୁସିକ୍ତ କଣ୍ଠରେ କହେ, "ସତେ କ'ଣ ପ୍ରଭୁ ଏଇଠି ସାକାର ବିଚରଣ କରୁଥିଲେ ? – ଏ ସମସ୍ତ ଲୀଳା ପ୍ରପଞ୍ଚ କବି କଳ୍ପନା ନୁହେଁ ତ ?"ଆସିଛନ୍ତି, ଆସିଛନ୍ତି, ବୋଲି ପ୍ରତ୍ୟେକ ଧୂଳି କଣା ସାକ୍ଷ୍ୟ ପ୍ରମାଣ ଦେଉଥିଲେ ସୁଦ୍ଧା ଏତେବଡ଼ ସଂକୀର୍ଣ୍ଣ ଚେତନା ପ୍ରସ୍ତୁତ ନ ଥାଏ । କିନ୍ତୁ ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍ୟପତି ସିଦ୍ଧୟେ । ସେଇ ବିରଳ ସିଦ୍ଧ ପୁରୁଷମାନେ ଏ ଅବତାର ସତ୍ୟକୁ ବିସ୍ମୟ ପୁଲକ ଏବଂ ପରମ ବିଶ୍ୱାସରେ ଗ୍ରହଣ କରନ୍ତି । ତାଙ୍କ ତୁଣ୍ଡରୁ କେବଳ ଉଚ୍ଚାରିତ ହେଉଥାଏ "କୃତାର୍ଥୋଽସ୍ମି । କୃତାର୍ଥୋଽସ୍ମି ।" ଏ ମର୍ତ୍ତ ମଣ୍ଡଳକୁ କୃତାର୍ଥ କରିଛ । ପଦ ସ୍ପର୍ଶରେ ଏ ମୃଣ୍ମୟପିଣ୍ଡ ମହିମା ମଣ୍ଡିତ ହୋଇଛି । ମାନବ ଶରୀର ଧାରଣ କରି ଏ କ୍ଷେତ୍ରକୁ ଦେବାୟିତ କରିଛ । ଧନ୍ୟ ଏ ବସୁନ୍ଧରା ତୁମକୁ କିଛି କାଳ ଧାରଣ କରିଛି, ଲାଳନ କରିଛି । ଧନ୍ୟ ସେ ପରିଜନ ମାନେ, ସେବା ସୌଭାଗ୍ୟ ଲାଭ କରିଛନ୍ତି । ଧନ୍ୟ ସେମାନେ ଯେଉଁମାନେ ଦେଖି ଶୁଣି କୃତାର୍ଥ ହୋଇଛନ୍ତି ।

ପଣ୍ଡିଚେରୀ ବ୍ରଜ, ସାକେତ ପରି ପୁଣ୍ୟଭୂମି । ସେଇଠି ଯୁଗବତାର ପରମ ପୁରୁଷ ଶ୍ରୀ ଅରବିନ୍ଦ ଏବଂ ଜଗଜ୍ଜନନୀ ଶ୍ରୀମା ସଶରୀରେ ଅବସ୍ଥାନ କରିଛନ୍ତି ।

ପରବର୍ତ୍ତୀ କାଳ ପାଇଁ ସମାଧି ଏବଂ ଫଟୋଚିତ୍ର । ସ୍ୱରପାଇଁ କିଛି ଟେପ୍ ରେକର୍ଡର । (ଆହା, ଅରବିନ୍ଦଙ୍କ ସ୍ୱର ସେହିପରି ସଂରକ୍ଷିତ ହୋଇ ଥାନ୍ତା କି) ଏବଂ କିଛି ବସ୍ତୁକୁ ନେଇ ଧ୍ୟାନସ୍ଥ ହେଲେ କିଛି ସ୍ପନ୍ଦନ ଅନୁଭବ ହୋଇପାରେ । କିନ୍ତୁ ସେ ଅମୂଲ୍ୟନିଧି ଆଉ ମିଳିବାର ନୁହେଁ ।

ପାଇଥିଲୁ ଚିହ୍ନିଲୁ ନାହିଁ । ସେ ଆସିଲେ ଏବଂ ଚାଲିଗଲେ। ଏବେ ଦଶଦିଗ ଅଣ୍ଡାଳିଲେ ସେ କାହୁଁ ମିଳିବେ ? ଥିଲାବେଳେ ବିଶ୍ୱାସ କଲୁନାହିଁ, ଏବେ ବିଶ୍ୱାସ କରିପାରୁନାହୁଁ। ସେତେବେଳେ ସାଧାରଣରେ ଅସାଧାରଣ ଦେଖି ପାରିଲୁ ନାହିଁ। ଏବେ ଅସାଧାରଣରେ ସାଧାରଣ ବିଶ୍ୱାସ ହେଉନାହିଁ ! ଉଭୟ କାଳରେ ହାରି ଯାଇଛୁ, ଭାଇ। କ'ଣ ଆଉ କରି ପାରିବା ? ମା'ଙ୍କୁ ଡାକ ଏବଂ ଡାକି ଚାଲିଥାଅ। ସେଥିରେ ଯଦି କିଛି କରୁଣା ମିଳିଯାଏ ତାହା ପରମ ଭାଗ୍ୟ। ନହେଲେ ଏହାହିଁ ଜୀବନର ବିଡ଼ମ୍ବନା।

(୨)

ପୁଣି କଶ୍ୟପ କହୁଥିଲେ ଯେ ପାପ ଫଳ କିମ୍ବା ପୁଣ୍ୟ ଫଳ ନାହିଁ । କାଳ ସ୍ରୋତରେ ଦୁଇଟି ସ୍ୱତନ୍ତ୍ର ଏବଂ ବିଚ୍ଛିନ୍ନ ଘଟଣାକୁ କାର୍ଯ୍ୟ କାରଣ ରୂପେ ଛନ୍ଦିବା ଯୁକ୍ତି ସଙ୍ଗତ ନୁହେଁ । ଚୋରି ଅପରାଧରେ ତତ୍କ୍ଷଣାତ୍ ଧରା ପଡ଼ି ଦଣ୍ଡିତ ହେବା, ଶାସନଗତ ନିୟମରେ ଗୋଟିଏ ଅନ୍ୟଟିର ହେତୁପରକ ହୋଇପାରେ । କିନ୍ତୁ ଅନ୍ଧାର ଭିତରେ ଅଜ୍ଞାତ ଅପରାଧ କରି କୌଣସି ଅଦୃଶ୍ୟ ଶକ୍ତିର ନିୟନ୍ତ୍ରଣରେ ଜୀବଦ୍ଦଶାର ଶେଷ ଭାଗରେ ଦୁଃଖ ଭୋଗିବା ଏକ ଅନ୍ଧ ବିଶ୍ୱାସ । ଏପରିକି ଅପରାଧ ଏବଂ ଦଣ୍ଡ ଦୁଇଟି ସ୍ୱତନ୍ତ୍ର କ୍ରିୟା । ତେବେ ଏ ଯୁକ୍ତି ଅନୁସାରେ ପାପାଚରଣ କିମ୍ବା ପୁଣ୍ୟାଚାରଣ ପାଇଁ ଭୟ କିମ୍ବା ଉତ୍ସାହ ନ ରହିବା ସ୍ୱାଭାବିକ୍ । ଯେ କୌଣସି କାର୍ଯ୍ୟ ପଛରେ ଦୁଇଟି ଫଳ ବିଚାର ରହିଛି । ଗୋଟିଏ ଦଣ୍ଡ ଭୟ ଅନ୍ୟଟି ପୁରସ୍କାର । ଭୟ ହେତୁରୁ ନିବୃତ୍ତି ଏବଂ ପୁରସ୍କାର ହେତୁ ପ୍ରବୃତ୍ତି ଜାଗ୍ରତ ହୁଏ । ଏଣୁ ପାପ ପୁଣ୍ୟ ବିଚାରରେ ଯଦି ଫଳପ୍ରାପ୍ତି ନାହିଁ ତେବେ ଯଥେଚ୍ଛାଚାରର ଆଶଙ୍କା ଅଛି ।

ବିଷୟକୁ ଆଉ ଟିକିଏ ଅନୁଧ୍ୟାନ କରାଯାଉ । କୌଣସି ଗୋଟିଏ କ୍ରିୟା କେତେବେଳେ ଅପରାଧ ପଦ ବାଚ୍ୟ ? ଯେତେବେଳେ ଏକ ସଂଗଠିତ ସମାଜରେ ପାରସ୍ପରିକ ସଂପର୍କ ଏବଂ ଆଚରଣ ନିୟମାବଦ୍ଧ ଓ ପରମ୍ପରା ଅନୁମୋଦିତ ହୁଏ, ଯେତେବେଳେ କେତେକ ଅହିତକର ଅନିଷ୍ଟକାରୀ ଅନ୍ୟର ଦୁଃଖଦାୟକ କ୍ରିୟାକୁ ନିଷିଦ୍ଧ କରାଯାଏ । ତା'ର ଉଲ୍ଲଙ୍ଘନ ହିଁ ଅପରାଧ ଏବଂ ଦଣ୍ଡନୀୟ । ଅଦଣ୍ଡିତ ଅପରାଧୀ ଅପରାଧ ବୋଧରୁ ମୁକ୍ତ ନୁହେଁ । ପୁରୁଷାନୁକ୍ରମେ ହତ୍ୟାକୁ ଅପରାଧ ରୂପେ

ଚିହ୍ନିତ କରାଯାଇଛି । ହତ୍ୟାକାରୀ ଦଣ୍ଡିତ ନହେଲେ ସୁଦ୍ଧା ଏ ଦୁର୍ବଳ ଅପରାଧ ବୋଧରୁ ଦଣ୍ଡଭୋଗ କରୁଥାଏ । ପାପ ଏବଂ ଅପରାଧ ଏକା କଥା ନୁହେଁ । ପାପ ପୁଣ୍ୟର ବିଚାର ଅନ୍ୟ ପ୍ରକାର । ପାପ ଅପରାଧ ଅପେକ୍ଷା ସୂକ୍ଷ୍ମତର ଗଭୀରତର ଏବଂ ଅତିରିକ୍ତ । ଚୋରୀ କରିବା ଅପରାଧ ଏବଂ ପରସ୍ୱାପହରଣ କରି ଥିବାରୁ ପାପ ମଧ୍ୟ, ସ୍ଥଳବିଶେଷରେ ଗୋହତ୍ୟା ପାପ, ପରସ୍ତ୍ରୀ ଗମନ ପାପ, ଯୌନକ୍ରିୟାହିଁ ପାପ କିନ୍ତୁ ଏଥିରେ ଦେଶ କାଳ ଅନୁସାରେ ମତ ପାର୍ଥକ୍ୟ ଅଛି । ସେଥି ପାଇଁ ବର୍ଟ୍ରାଣ୍ଡ ରସେଲ୍ କହିଛନ୍ତି ପାପ ଏବଂ ପାପର ବିଚାର ଭୌଗୋଳିକ Sin is Geographical ପାପ ପୁଣ୍ୟର ବିଚାର ପାଇଁ ସେପରି କିଛି ସର୍ବକାଳୀନ ମାନଦଣ୍ଡ ନାହିଁ ।

ଅପରାଧ ପାଇଁ ଦଣ୍ଡବିଧି ଏବଂ ନ୍ୟାୟାଳୟ ରହିଛି । ପ୍ରମାଣିତ ଅପରାଧ ଦଣ୍ଡିତ ହେବା ଏକ ସାମାଜିକ ପ୍ରଶାସନିକ ବ୍ୟବସ୍ଥା । କିନ୍ତୁ ପାପ ପାଇଁ ଅଦାଲତ ନାହିଁ। ଅଥଚ ତାହା ଦଣ୍ଡିତ ନ ହେଲେ ମାନବୀୟ ମୂଲ୍ୟବୋଧ ପ୍ରତିଷ୍ଠିତ ହୋଇପାରୁନାହିଁ। ଏଣୁ ତାହା ଅବଶ୍ୟ ଦଣ୍ଡିତ ହୁଏ ବୋଲି ବିଶ୍ୱାସ । ସେଥିପାଇଁ ସ୍ୱର୍ଗର କଳ୍ପନା । ପୂର୍ଣ୍ଣ କଶ୍ୟପ ଯାହା ଯୁକ୍ତି କରୁଛନ୍ତି ତାହା ଠିକ୍ ନୁହେଁ । କାରଣ ମହାଜାଗତିକ ଛନ୍ଦରେ କୌଣସି କ୍ରିୟା ସଂପୂର୍ଣ୍ଣ ବିଚ୍ଛିନ୍ନ କିମ୍ବା ସ୍ୱତନ୍ତ୍ର ହେବା ସମ୍ଭବ ନୁହେଁ । ପୂର୍ବକାଳରୁ ପର କାଳକୁ ଘଟଣା ପ୍ରବାହ ଚାଲିଥିଲା ବେଳେ କୌଣସି କ୍ରିୟାର ପରିଣାମ ରହିବ ନାହିଁ, ଏକଥା ଯୁକ୍ତି ସଙ୍ଗତ ନୁହେଁ । କିନ୍ତୁ ପାପ ପାଇଁ ପୁରସ୍କାର ବିଧାନ ହୁଏ ନାହିଁ ତାହା ନିଶ୍ଚିତ ରୂପେ କହିହେବ ନାହିଁ । କିନ୍ତୁ ଉଭୟ କ୍ଷେତ୍ରରେ ପରିଣାମ ଅନିବାର୍ଯ୍ୟ । ତାହା ତତ୍କ୍ଷଣାତ୍ ନଦିଶିପାରେ । କିନ୍ତୁ ପରିଣାମକୁ ଅସ୍ୱୀକାର କରିବାର ଉପାୟ ନାହିଁ ।

(୩)

Nothing happens in the Cosmic play. But in its time and in its foreseen place–

–Savitri

ପ୍ରତ୍ୟେକ ଘଟଣା ପାଇଁ ଦିକ୍ କାଳ ନିର୍ଦ୍ଦିଷ୍ଟ । କାଳାନ୍ତର କିମ୍ବା ଦେଶାନ୍ତରରେ ତାହା ସେଭଳି ହେବା ସମ୍ଭବ ନୁହେଁ । ଏଭଳି ଏକ ବ୍ୟାପକ ଏବଂ ଅଟଳ ବାକ୍ୟ ଉପରେ ଆଉ କଣ କହିବାର ଥାଇ ପାରେ । ସବୁତ ସ୍ଥିର ହୋଇ ସାରିଛି, କେବଳ ଅପେକ୍ଷା କରିବା କଥା । ମଣିଷର ଭୂମିକା କାହିଁ କର୍ତ୍ତା ଅଥବା ନିମିତ୍ତ ଭାବରେ! ଜଳୁଥିବା ଦୀପ ଲିଭିବା ପାଇଁ ସମୟ ଏବଂ ସ୍ଥାନ ନିରୂପିତ ହୋଇ ରହିଛି । ଜଣେ ଚାହିଁଲେ ଫୁଙ୍କି ଲିଭେଇ ଦେଇ ପାରିବ ନାହିଁ । ପାରିବ ନାହିଁ ମାନେ, ପାରିବ, କିନ୍ତୁ ସେହି ଅପରିବର୍ତ୍ତନୀୟ ଯୋଜନା ଅନୁସାରେ ହିଁ ପାରିବ । ତାକୁ ହିଁ ନିମିତ୍ତ ରୂପେ

ବ୍ୟବହାର କରି ଯଥା ସମୟରେ ଦୀପଟିକୁ ଲିଭାଇ ଦିଆଯିବ । ସେ ନିର୍ଦ୍ଦିଷ୍ଟ ମୁହୂର୍ତ୍ତଟି ସ୍ୱୟଂ ଆସି ଠିଆ ନହେବା ଯାଏ ତାକୁ ଚିହ୍ନଟ କରିହେବ ନାହିଁ । ଯଦି ପୂର୍ବରୁ ସୂଚନା ମିଳନ୍ତା ତେବେ ହୁଏତ ତାର ବ୍ୟତିକ୍ରମ ପାଇଁ ମଣିଷର ଦାୟିତ୍ୱ, ଅଧିକାର ଏବଂ ସାମର୍ଥ୍ୟର ପରୀକ୍ଷା ହୋଇ ପାରନ୍ତା । ତାହା ହୋଇ ପାରେ ନାହିଁ । ଖାଲି କୁହାଯାଏ, "ସମର୍ପିତ ହୋଇଯାଅ, ଠିକ୍ ସମୟରେ ଠିକ୍ କାର୍ଯ୍ୟ ହୋଇଯିବ ।" ଏଥିରେ ଗୋଟିଏ ଅତି ପ୍ରାଚୀନ ଏବଂ ଆଦିମ ମାଲିକପଣର ସୂଚନା ମିଳେ । ମଣିଷଟିକୁ କାୟମନୋବାକ୍ୟରେ ଅର୍ପଣ କରି ଦିଆ ହୁଏ । ସେଥିରେ ସେ ଭାଗ୍ୟବାଦୀ ହୋଇଯାଏ, ପ୍ରୟାସହୀନ ହୋଇଯାଏ ।

ତା ଜୀବନର ଘଟଣା ପ୍ରବାହରେ ତାର କର୍ତ୍ତୃତ୍ୱ ଆଉ ରହେ ନାହିଁ । ମହା-ଜାଗତିକ ଅଜ୍ଞାତ ଅପରିମେୟ ବିସ୍ତାର ଭିତରେ କାର୍ଯ୍ୟକାରଣ ସଂଘାତ କିପରି ତାକୁ ନେଇ ଖେଳିଯାଏ ସେ ଜାଣିପାରେ ନାହିଁ । ଜାଣିଲେ ବା ତାକୁ ବିନ୍ଦୁ ମାତ୍ର ବିଚଳିତ କରିବାକୁ ତାର ସାମର୍ଥ୍ୟ ନାହିଁ ? ଯେଉଁ ଅଜ୍ଞାତ ପରମକାରଣ ଏ ସମସ୍ତଙ୍କୁ କମ୍ପିତ କରୁଥାଏ ତାକୁ ହିଁ Divine ବୋଲି ବୁଝିବାକୁ ହୁଏ । ଜାଜ୍ଞ୍ୟବଲ୍କ୍ୟ କହନ୍ତି, "ତସ୍ୟ ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି ସୂର୍ଯ୍ୟ ଚନ୍ଦ୍ରମସୌ ବିଧୃତୌ ତିଷ୍ଠତଃ ।" ... ହେ ଗାର୍ଗି ସେହି ଅକ୍ଷରଙ୍କ ପ୍ରଶାସନରେ ସୂର୍ଯ୍ୟ ଚନ୍ଦ୍ର ଧାରିତ ହୋଇ ରହିଛନ୍ତି । ତାଙ୍କରି ଇଚ୍ଛାରେ ଜଗତ ପ୍ରବାହ ଆତଯାତ ହୁଏ । ସେ ପରମା ଶକ୍ତି ଏ ସମସ୍ତ ପରିଚାଳିତ କରନ୍ତି । ଗୋଟିଏ ଦିଗରୁ ଦେଖିଲେ ସେ ବ୍ୟବସ୍ଥାରେ ମଣିଷଟିଏ ତୃଣ ପରି ଅସହାୟ । କିନ୍ତୁ ଅନ୍ୟ ଦିଗରୁ ଦେଖି ଜାଣିଲେ ସେ ହିଁ ସେ ପରମା ଶକ୍ତିଙ୍କର ଅଙ୍ଗୀଭୂତ ସତ୍ତା । ସେ ହିଁ ମାଧ୍ୟମ ବା ଯନ୍ତ୍ର । ଯାହାକୁ ନେଇ ସେ କାର୍ଯ୍ୟ କରନ୍ତି । ସେ ତାଙ୍କଠାରୁ ଅଭିନ୍ନ। ଏଣୁ ନିର୍ଦ୍ଦିଷ୍ଟ ଦେଶ କାଳର ନିର୍ଘଣ୍ଟ ଅନୁସାରେ ଯାହା ସଂଗଠିତ ହୋଇଛି ତାହା ହିଁ ସର୍ବୋତ୍ତମ ବିକଳ୍ପ ହୀନ ବ୍ୟବସ୍ଥା ଏବଂ ସେହି ବ୍ୟବସ୍ଥାରେ ଯେତେ କ୍ଷୁଦ୍ର ହେଲେ ସୁଦ୍ଧା ମଣିଷ ସ୍ୱୟଂ ଅଂଶୀଦାର ମହାସ୍ରୋତର ଏକ ଅଣୁସ୍ରୋତ ।

